# ବିନ୍ଦୁ

ଲେଖିକା :
ଡଃ ଜ୍ୟୋସ୍ନା କୁମାରୀ ବିଶ୍ୱାଳ ରାଉତ

ପ୍ରକାଶକ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

# ବିହୁ

*ଲେଖକ :*

ଡଃ ଜ୍ୟୋତ୍ସ୍ନା କୁମାରୀ ବିଶ୍ୱାଳ ରାଉତ

*ପ୍ରକାଶକ*

ଶ୍ରୀ ଗଙ୍ଗାଧର ତ୍ରିପାଠୀ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦ ବିହାରୀ, କଟକ-୨

*ପ୍ରଥମ ସଂସ୍କରଣ* — ୨୦୦୧

*ପ୍ରଚ୍ଛଦ :* ରନ୍‌ଜିତ୍ ପରିଜା

*ଟାଇପ୍ ସେଟିଙ୍ଗ୍ :*

**ନ୍ୟାସନାଲ୍ କମ୍ପ୍ୟୁଟର୍ସ, କଟକ**

*ମୁଦ୍ରଣ :* **ସଂଗୀତା ପ୍ରିଣ୍ଟର୍ସ,** କଟକ

ମୂଲ୍ୟ : ଟ.୧୩୦.୦୦

# BIHU

*Writer :*

**Dr. Jyotsna Kumari Bishwal Rout**

*Published by :*

**Sri Gangadhar Tripathy**

**PRACHI SAHITYA PRATISTHAN**

Binodbehari, Cuttack-2

*1st Edition* — 2001

*Design by :*

**Ranjit Parija**

*Type Setting :*

**National Computers**

*Printed at :*

**Sangita Printers,** Cuttack

Price - **Rs.130.00**

# ପୂର୍ବଭାଷ

ବିହୁ ଅସମୀୟାର ଆନନ୍ଦ ଉଲ୍ଲାସ ବିଜଡ଼ିତ ଜାତୀୟ ଉତ୍ସବ । ଆସାମର ଗିରି କନ୍ଦରରେ ବାସ କରୁଥିବା ବିଭିନ୍ନ ଜାତି-ଉପଜାତି-ଜନଜାତି ଠାରୁ ଆରମ୍ଭ କରି ଭିନ୍ନ ଭିନ୍ନ ଧର୍ମ, ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ବିହୁ ଉତ୍ସବରେ ଯୋଗଦାନ କରି ଥାଆନ୍ତି । ଆସାମରେ ବିହୁ ବ୍ୟତୀତ ଅନ୍ୟ କୌଣସି ଗୋଟିଏ ଲୋକ ଉତ୍ସବ ନାହିଁ ଯେଉଁଥିରେ ସମଗ୍ର ଲୋକସମାଜ ଖୋଲା ମନରେ ଅଂଶ ଗ୍ରହଣ କରି ପାରିବେ । ବର୍ଷର ବିଭିନ୍ନ ସମୟରେ ତିନୋଟି ବିହୁ ପାଳନ କରାଗଲେ ହେଁ ବିହୁ କହିଲେ ବୈଶାଖର ରଂଗାଲି ବିହୁ ଏବଂ ବିହୁର ନୃତ୍ୟଗୀତର ମାଦକତା କଥା ପ୍ରଥମେ ଅନ୍ତରକୁ ସ୍ପର୍ଶ କରିଥାଏ । ତା'ପରେ କାତିବିହୁ ବା ମାଘବିହୁ କଥା ମନେ ପଡ଼େ । ଢ଼ୋଲର ତାଳେ ତାଳେ ବିହୁ ନୃତ୍ୟ ଦେଖି ଏବଂ ଗୀତ ଶୁଣି ମନେ ହୁଏ ଗୀତଗୁଡ଼ିକ ବିହୁ ନୃତ୍ୟର ଭାଷ୍ୟ । ଗୀତ ଓ ନୃତ୍ୟ ଏପରି ଜଡ଼ିତ ଯେ ଗୋଟିକର ବିନା ଅନ୍ୟଟିର ମୂଲ୍ୟହାନି ହୋଇଥାଏ । ପୃଥିବୀର ଅନ୍ୟାନ୍ୟ କେତେକ ଦେଶ ସଦୃଶ କୃଷି ସଂବୃଦ୍ଧିର କାମନା କରି ଯୁବକ ଯୁବତୀମାନେ ଏକାଠି ମିଶି ଚାଷ ଜମିରେ ଏହି ପର୍ବରେ ନାଚିଥାଆନ୍ତି । ଆଦିମଯୁଗରେ ଏହି ନାଚ ମନ୍ତ୍ରମୂଳକ ଏବଂ ଯୌନମିଳନର ସହାୟକ ଥିଲା । କୃଷିର ଉର୍ବରତା କାମନା କରି ବହୁ ପ୍ରାଚୀନ କାଳରୁ ଚାଷ ଜମିରେ ପରିବେଷଣ କରି ଆସୁଥିବା ବିହୁ ନାଚ ସହିତ ଯାଦୁ ନିହିତ ଥିଲା ଏବଂ ବିହୁ ଗୀତଗୁଡ଼ିକୁ ଯାଦୁର ବାହକ 'ମନ୍ତ୍ର' ଭାବେ ବିବେଚନା କରାଯାଉଥିଲା । ଆଦିମ ଲୋକର ପର୍ଯ୍ୟବେକ୍ଷଣଶୀଳତା ଯୋଗୁ ହୁଏତ ଯାଦୁବିଶ୍ୱାସ ବାସ୍ତବ ଅଭିଜ୍ଞତାର ଫଳ ହୋଇପାରେ । ତୀବ୍ର ପର୍ଯ୍ୟବେକ୍ଷଣ ଫଳରେ ଚାଷଜମିରେ ଜୋର୍‌ରେ ପାଦକୁ ବାଡ଼େଇ ବାଡ଼େଇ ଯୁବକ ଯୁବତୀ ନାଚି ନାଚି ଗୀତ ଗାଇଲେ ଜମିର ଫସଲ ବଢ଼େ ବୋଲି ସେମାନେ ହୁଏତ ଅନୁଭବ କରି ପାରିଥିଲେ । ଅତ୍ୟାଧୁନିକ ଯୁଗରେ ଉଦ୍ଭିଦବିଜ୍ଞାନୀମାନଙ୍କର ପ୍ରଚେଷ୍ଟା ଫଳରେ ଆଦିମ ଯୁଗର ସେହି ତତ୍ତ୍ୱର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଛି ।

ଯୁବକଯୁବତୀମାନଙ୍କର ନାଚ ଓ ଗୀତ ସହିତ ଢ଼ୋଲ, ପେଁପା, ଟକା, ଗଗନା ଆଦି ଲୋକବାଦ୍ୟ ଗୁଡ଼ିକର ସ୍ୱର ମୂର୍ଚ୍ଛନା ସତେ ଅବା ପୃଥିବୀ ଓ ଆକାଶ କଂପାଇ ଦିଅନ୍ତି ।

ଯୁବକ ଯୁବତୀମାନେ ରାତି ବିହୁର ନାଚରେ ସ୍ୱାଧିନ ମନରେ ଅନ୍ତରର ଭାବକୁ ଖୋଲା ଖୋଲି ଭାବେ ଗୀତ ମାଧ୍ୟମରେ ପ୍ରକାଶ କରିଥାଆନ୍ତି । ଯାହାକୁ କେହି କେହି ସମାଲୋଚକ ଅଶ୍ଳୀଳତା ବୋଲି ମନ୍ତବ୍ୟ ଦେଇଥାଆନ୍ତି । ଚାଷଜମିରେ ଶସ୍ୟ ଓ ବଂଶବୃଦ୍ଧିର କାମନା କରି ପରିବେଷଣ କରାଯାଉଥିବା ନୃତ୍ୟ ଓ ଗୀତ ସମୟ ଚକ୍ରରେ ବିହୁ ଉତ୍ସବର ରୂପ ନେଲା ଏବଂ ଏହା ଆସାମର ଜାତୀୟ ଉତ୍ସବ ହୋଇପଡ଼ିଲା । ବିହୁ ଜାତୀୟ ଉତ୍ସବ ଭାବେ ମର୍ଯ୍ୟାଦା ପାଇବା ପାଇଁ କିଛି ସମୟ ଅବଶ୍ୟ ନେଇଥିଲା ମାତ୍ର ଏହା ବହୁ ପ୍ରାଚୀନ କାଳରେ ମଧ୍ୟ ରାଜା ମହାରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରିଥିଲା । ପ୍ରାଚୀନ ଯୁଗରେ ଆସାମର ରାଜା ମହାରାଜାମାନେ ମଠ ମନ୍ଦିର ଆଦିରେ ବିହୁ ଉତ୍ସବ ପାଳନ କରିବା ରୀତି ପ୍ରଚଳନ କରିଥିଲେ । ୧୬୯୯ ଶକରେ ସ୍ୱର୍ଗତଃ ଶିବସିଂହଙ୍କ ଆଦେଶରେ ତରୁଣ ଦୁଆରା ବରଫୁକନ ଶୁଆଲକୁଚିର ଭୁଙ୍ଗେଶ୍ୱର ମନ୍ଦିରକୁ ଗୋଟିଏ ଧର୍ମୋତ୍ତର ଦାନପତ୍ର (ତାମ୍ରଶାସନ) ଦେଇଥିଲେ । ଏହି ଦାନପତ୍ରରେ ଅନ୍ୟାନ୍ୟ ଶାସନ ପ୍ରଣାଳୀର ବର୍ଣ୍ଣନା ସହିତ ମନ୍ଦିରରେ 'ବୈଶାଖ ବିହୁ' ପାଳନ କରିବା ପାଇଁ ନିର୍ଦ୍ଦେଶ ଦିଆ ହୋଇଥିଲା । ତେଣୁ ରାଜତନ୍ତ୍ର ଶାସନରେ ବିହୁ ରାଜା ମହାରାଜାମାନଙ୍କର ସହଯୋଗ ପାଇଥିଲା ବୋଲି ଅନୁମିତ ହୁଏ ।

ଅବଶ୍ୟ ସମୟକ୍ରମେ ରାଜା ମହାରାଜାଙ୍କ ଅମଳରେ ଚାଷଜମିର ନୃତ୍ୟଗୀତ ଗୃହର ଅଗଣାକୁ ଆସିଲା । ଔପନ୍ୟାସିକ ରଜନୀକାନ୍ତ ବରଦଲୈ 'ରଙ୍ଗିଲୀ' ଉପନ୍ୟାସରେ କହିଛନ୍ତି- ''ଅଭିଜାତ ରୂପେ ସମ୍ମାନିତ ବଡ଼ ବଡ଼ ଲୋକମାନଙ୍କର ବିହୁ ପ୍ରତି ଅଶ୍ରଦ୍ଧା ବା ବୀତସ୍ପୃହା ଇଂରେଜ ଶାସନ କାଳରେ ଗଢ଼ି ଉଠିଥିଲା ବୋଲି ଅନୁମିତ ହୁଏ । ବିହୁ ପ୍ରତି ବୀତସ୍ପୃହାର ମୂଳ କାରଣ ଥିଲା ବ୍ରାହ୍ମଣ୍ୟବାଦୀ ଆର୍ଯ୍ୟଧର୍ମର ପ୍ରତିଷ୍ଠା ଓ ପ୍ରଚାର କରିବା କାରଣ ରାଜା ଜୟଧ୍ୱଜ ସିଂହ ବ୍ରାହ୍ମଣ୍ୟବାଦୀ ବୈଷ୍ଣବ ଧର୍ମ ଗ୍ରହଣ କରି ବୈଷ୍ଣବଧର୍ମକୁ ରାଜଧର୍ମ କରି ଗଢ଼ି ତୋଳିବା ପରେ ରାଜା ପରିବାରର ବିହୁ ପ୍ରତି ବିରୂପ ମନୋଭାବ ଗଢ଼ି ଉଠିଥିଲା ବୋଲି ଅନୁମାନ କରାଯାଇଥାଏ । ଅବଶ୍ୟ ବୈଷ୍ଣବଧର୍ମର ପ୍ରଭାବ ପଡ଼ିବା ଫଳରେ ପୂର୍ବର ପ୍ରଜନନର ଉତ୍ସବ ବିହୁ ଧର୍ମୀୟ ଉତ୍ସବକୁ ରୂପାନ୍ତରିତ ହୋଇଥିଲା, ବିହୁ ଗୀତକୁ 'ବିହୁନାମ'ରେ ଲୋକମାନେ ଆଦରିଲେ ଏବଂ ବିହୁପର୍ବର ଏକ ମୁଖ୍ୟ ଅଂଶ ଭାବେ 'ବିହୁହୁଁଚରି' ବୈଷ୍ଣବ ଧର୍ମର ପ୍ରଭାବରେ ଆଶୀର୍ବାଦ ସୂଚକ ମାଙ୍ଗଳିକ ଗୀତରେ ପରିଣତ ହେଲା'' । ଇଉରୋପର 'ମେ ପଲ୍' (May pole) ଉତ୍ସବରେ ଯୁବକ ଯୁବତୀମାନେ ଗଛର ଡାଳକୁ ହାତରେ ନେଇ ଘର ଘର ବୁଲି ଆଶୀର୍ବାଦ ସୂଚକ ଗୀତ ଗାଇଲା ଭଳି ଆସାମରେ ହୁଁଚରିଦଳ ଘର ଘର ବୁଲି ବିହୁ ନାମ ଗାଇ 'ବିହୁ ହୁଁଚରି' ପରିବେଷଣ କରି ଗୃହସ୍ଥର ଆଶୀର୍ବାଦ କାମନା କରିଥାଆନ୍ତି । 'ମେ ପଲ୍' ରେ ଯୁବକ ଯୁବତୀମାନେ ନାଚି ନାଚି ଗ୍ରାମର ମଂଗଳ କାମନା କରିବା ସହିତ ନୂଆବର୍ଷକୁ ସ୍ୱାଗତ କରି ଗାଆନ୍ତି–

"We carry death out of the village,
we bring summer into the village."

ହୁଁଚରି ଦଳ ସେହିପରି 'ଗୃହସ୍ଥ କୁଶଳେ ଥାଓକ' ବା ଗୃହସ୍ଥର ମଂଗଳ ହେଉ ବୋଲି ଆଶୀର୍ବାଦ କରିଥାଆନ୍ତି ।

ବିହୁ ପର୍ବରେ ଆନନ୍ଦ ତଥା ଉଦ୍ଦୀପନା ଭିତରେ ଅତିଥି ସତ୍କାର ଓ ପ୍ରିୟ ଲୋକଙ୍କୁ ବିଭିନ୍ନ ଉପହାର ଦେବା ସଂଗେ ସଂଗେ ସମଗ୍ର ଲୋକସମାଜ ଭଲ ଭଲ ଜିନିଷ ଖାଇ, ନୂଆ ନୂଆ ବସ୍ତ୍ର ପିନ୍ଧି, ମନ ଫୁଲାଣିଆ ଗୀତ ଗାଇ, ହସିଖେଳି ନୂଆ ବର୍ଷକୁ ପୃଥିବୀ ବକ୍ଷକୁ ଆଦରି ଆଣନ୍ତି । ସନ୍ଧ୍ୟା ସମୟରେ ବିହୁତଳିରେ ଯୁବକ ଯୁବତୀମାନେ ବିହୁ ପରିବେଶଣ କରନ୍ତି । ସମଗ୍ର ଗ୍ରାମବାସୀ ଏହାକୁ ଉପଭୋଗ କରନ୍ତି । କେହି କେହି ବୃଦ୍ଧ ଓ ବୃଦ୍ଧା ତଥା ଛୋଟ ଛୋଟ ପିଲାମାନେ ନୃତ୍ୟ ଗୀତରେ ଭାଗ ନିଅନ୍ତି । ସମୟକ୍ରମେ ଗାଁର ବିହୁ ସହରାଭିମୁଖୀ ହୋଇ ମଞ୍ଚଉପରକୁ ଆସି ପ୍ରତିଯୋଗୀତାମୂଳକ ବିହୁ ଭାବେ ପରିବେଶିତ ହୋଇଆସୁଛି । ବିହୁଗୀତରେ ମୁଖ୍ୟତଃ ପ୍ରେମ ଓ ପ୍ରଣୟର କଥା ବର୍ଣ୍ଣନା କରାଗଲେ ହେଁ ସମାଜର ଦୈନନ୍ଦିନ ଜୀବନର ସମସ୍ୟା, ଅସମୀୟାର କର୍ତ୍ତବ୍ୟ ପରାୟଣତା, କୋମଳମତି ନାରୀର ଆଶା-ଆକାଙ୍କ୍ଷା ତଥା କର୍ମନିଷ୍ଠାର ପରିଚୟ ବିହୁଗୀତକୁ ଜୀବନ୍ତ କରି ଗଢ଼ି ତୋଳିଛି । ଆସାମର ବିଭିନ୍ନ ଜାତି-ଜନଜାତି, ପାହାଡ଼କନ୍ଦରର ପ୍ରାକୃତିକ ସୁଷମା, ବିଭିନ୍ନ ପଶୁପକ୍ଷୀ ଓ ଋତୁ ପରିବର୍ତ୍ତନର ମନୋରମ ଦୃଶ୍ୟ ବିହୁଗୀତ ସହିତ ଏଭଳି ଜଡ଼ିତ ହୋଇଯାଇଛି ଯେ ବେଳେବେଳେ ବିହୁତଳିରେ ଦର୍ଶକ ଏହି ଗୀତ ଭିତରେ ଭାବବିହ୍ୱଳ ହୋଇପଡ଼େ । ସେଥିପାଇଁ ଆଦିମ ଯୁଗର କୃଷି ବିଜଡ଼ିତ ଉତ୍ସବ ଆଜି ଆସାମର ଜାତୀୟ ଉତ୍ସବ 'ବିହୁ'ରେ ରୂପାନ୍ତରିତ ହୋଇଛି । ତେବେ ବିହୁ ଉତ୍ସବ ପ୍ରକୃତରେ ସମଗ୍ର ମାନବ ଜାତିର କୃଷି ସଭ୍ୟତାର ଏକ ଉତ୍ସବର ପ୍ରତୀକ । ନାନା ଦେଶରେ ଏବଂ ବହୁ ଯୁଗରେ ଏହି ଉତ୍ସବ ଭିନ୍ନ ଭିନ୍ନ ଆକାର ଧାରଣ କରିଛି । ଆଜିର ସମାଜରେ ବିହୁତଳିରେ ଯୁବକ ଯୁବତୀମାନେ ଯେ ବହୁଗୀତରେ ପ୍ରେମଭାବ ବିନିମୟ କରିଥାଆନ୍ତି, ଏହା କିଛି ନୂଆ କଥା ନୁହେଁ କାରଣ ଦୁଇ ଅଢ଼େଇ ହଜାର ବର୍ଷ ଆଗରୁ ପଶ୍ଚିମ ଚୀନ ଦେଶରେ ଆୟୋଜିତ ବସନ୍ତ ଉତ୍ସବ ସମୟରେ ଯୁବକ ଯୁବତୀମାନେ ନିଜର ପସନ୍ଦ ସାଥିକୁ ବାଛିବାର ରୀତି ପ୍ରଚଳିତ ଥିଲା । ଅଷ୍ଟ୍ରେଲିୟାର ଟରେଶ ଷ୍ଟେଟ୍‌ରେ ନୃତ୍ୟ ମାଧ୍ୟମରେ ଯୁବତୀମାନେ ନିଜର ପସନ୍ଦଯୋଗ୍ୟ ବର ବାଛିବାର ପ୍ରଥା ପ୍ରଚଳିତ ବୋଲି ଡଃ ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ (ଅସମୀୟା ଜନସାହିତ୍ୟ - ପୃ - ୨୧) ମତପ୍ରକାଶ କରିଛନ୍ତି ।

ଏହି ପୁସ୍ତକଟିରେ ବିଭିନ୍ନ ଦୃଷ୍ଟିକୋଣରୁ ବିହୁର ଆଲୋଚନା ଓ ସମାଲୋଚନା କରାଯାଇଛି । ବିଭିନ୍ନ ପରିସ୍ଥିତି ଓ ପରିବେଶକୁ ଆଖି ଆଗରେ ରଖି ଗାଉଥିବା ବିହୁ

ଗୀତଗୁଡ଼ିକୁ ଏହି ପୁସ୍ତକରେ ଯଥାସମ୍ଭବ ପର୍ଯ୍ୟାୟକ୍ରମେ ସଂଯୋଜିତ କରାଯାଇଛି । ତା ସହିତ ପ୍ରକୃତି, ପ୍ରେମ, ମିଳନ, ବିରହ ଓ ନାରୀର ଆଶା ତଥା ସମ୍ଭାବନା କିପରି ବିହୁଗୀତର କଳେବର ବୃଦ୍ଧି କରିବା ସହିତ ଶୋଭା ବର୍ଦ୍ଧନ କରିଛି, ତାହା ମଧ୍ୟ ପ୍ରସଙ୍ଗ କ୍ରମେ ଆଲୋଚନା କରାଯାଇଛି । ଅସମୀୟା ଲୋକବାଦ୍ୟର ଆଦର, ଅସମୀୟାର ଆଦର୍ଶ, କର୍ମତତ୍ପରତା ଓ ବିଭିନ୍ନ ସମୟରେ ଆସାମର ସାମାଜିକ, ଆର୍ଥିକ ଅବସ୍ଥା ତଥା ବିଦେଶୀ ସାହେବଙ୍କ ଆଗମନ ଏବଂ ଶାସନର କାହାଣୀ ଲୋକକବିର ଅନ୍ତରକୁ କିପରି ସ୍ପର୍ଶ କରି ବିହୁଗୀତରେ ରୂପାନ୍ତରିତ ହୋଇଛି, ତା'ର ଏକ ମନୋରମ ଛବି ଉକ୍ତ ପୁସ୍ତକଟିରେ ଆଙ୍କିବା ପାଇଁ ପ୍ରୟାସ କରିଛି । ଏହା ସହିତ ଆସାମର ବିଭିନ୍ନ ଜାତି ଜନଜାତି ମଧ୍ୟରେ ବିହୁ କିପରି ଆଦର ଓ ସମ୍ମାନ ଲାଭ କରିଛି ତାହା ପର୍ଯ୍ୟାଲୋଚନା କରାହୋଇଛି । ଏହାଦ୍ୱାରା ପାଠକ ଉପକୃତ ହେବେ ବୋଲି ଆଶା ।

ପୁସ୍ତକଟିକୁ ଅତି କମ୍ ସମୟରେ ଓ ସୁନ୍ଦରଭାବେ ପ୍ରକାଶ କରିଥିବାରୁ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ଗଙ୍ଗାଧର ତ୍ରିପାଠୀଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।

*ଡଃ ଜ୍ୟୋତ୍ସ୍ନା କୁମାରୀ ବିଶ୍ୱାଳ ରାଉତ*



# ସୂଚୀପତ୍ର

## ପ୍ରଥମ ପରିଚ୍ଛେଦ –



## ଦ୍ୱିତୀୟ ପରିଚ୍ଛେଦ –

**ତୃତୀୟ ପରିଚ୍ଛେଦ –**

## ଚତୁର୍ଥ ପରିଚ୍ଛେଦ –

**ପଞ୍ଚମ ପରିଚ୍ଛେଦ –**



**ଷଷ୍ଠ ପରିଚ୍ଛେଦ –**



ବାଉଁଶରେ ନିର୍ମିତ ଗଗନା ବାଦ୍ୟ



ବାଉଁଶରେ ନିର୍ମିତ ଟକା ବାଦ୍ୟ



ବ୍ରହ୍ମପୁତ୍ରରେ
ନୌକା ଚାଳନା



ବିହୁ ନାଚରେ ବିହୁ କୁମାରୀ



ମୁକଲି ବିହୁ ନାଚ



ମଇଁଷୀ ଶିଙ୍ଗରେ ନିର୍ମିତ ପେଁପା ବାଦ୍ୟ



ମାଘବିହୁର ଅଗ୍ନି ଉତ୍ସବ (ମେଜି)



ଭୋଗାଲି ବିହୁରେ ଗୋ-ସ୍ନାନ ପର୍ବ



ତନ୍ତଶାଳରେ ବସ୍ତ୍ର ବୟନର ଦୃଶ୍ୟ



ବିହୁ ନାଚରେ ପେଁପା ବାଦକ ଓ ନାଚୁଣୀ



ମାଘ ବିହୁର ଅଗ୍ନି ଉତ୍ସବ (ଭେଲାଘର)



ଅସମୀୟା ସରାଇ



ଅସମୀୟା ଢୋଲ



ବିହୁ ନାଚ



ଆସାମର ବିହୁ ପର୍ବରେ ମଇଁଷୀ ଯୁଦ୍ଧ

# ପ୍ରଥମ ପରିଚ୍ଛେଦ

ଉପକ୍ରମ— ବିହୁ ଆସାମର ଜାତୀୟ ଉତ୍ସବ । ଏହା ଲୋକମନ, ଲୋକପ୍ରାଣର ଅତି ଆଦରର, ଉଚ୍ଛ୍ୱାସବିଜଡ଼ିତ ଉତ୍ସବ । ସେଥିପାଇଁ ବିହୁ ଉତ୍ସବ ପ୍ରତି ପ୍ରତିଟି ଅସମୀୟାର ଆକୁଳତା ଫୁଟି ଉଠିଥାଏ । ବହୁ ପ୍ରାଚୀନକାଳରୁ ଏହି ଉତ୍ସବ ପ୍ରତି ରହି ଆସିଥିବା ଆନ୍ତରିକତା ଏବଂ ଜାତୀୟ ଜୀବନ ସହିତ ଥିବା ଅବିଚ୍ଛେଦ୍ୟ ସଂପର୍କର କଥା ବିହୁଗୀତ ଗୁଡ଼ିକର ଛନ୍ଦେଛନ୍ଦେ ଫୁଟିଉଠିଛି । ସମୟର ତାଳେତାଳେ, ପ୍ରକୃତିର ପରଶରେ ଆନନ୍ଦମୁଖର ହୋଇଉଠିଥିବା ଅସମୀୟା ଜାତିର ମନ ଓ ପ୍ରାଣର ଉଚ୍ଛ୍ୱାସର ସ୍ୱୀକୃତି ଏହି ବିହୁଗୀତ ମାଧ୍ୟମରେ ମିଳିଥାଏ ଓ କେତେବେଳେ ପୁଣି ଦୈହିକ ଚଞ୍ଚଳତା ମାଧ୍ୟମରେ ଆନନ୍ଦର ଅନୁଭୂତି ପ୍ରକାଶ ପାଇଥାଏ । ବିହୁ ଆଗମନଜନିତ ଅକୁହା ଆବେଗରେ ଦେହ ଶିତେଇ ଉଠେ, ମନଟା ଅସ୍ତବ୍ୟସ୍ତ ହୋଇପଡ଼େ । ତା'ର ପରିଣତି ସ୍ୱରୂପ ଢୋଲର ତାଳେ ତାଳେ ଥରେ ଗାଁମୁଣ୍ଡ ପଡ଼ିଆରେ ନାଚିବା ପାଇଁ ଅନ୍ତର ଭିତରେ ସମସ୍ତ ଆକୁଳତା ଏକଜୁଟ ହୋଇଥାଏ ।

ବର୍ଷର ବିଭିନ୍ନ ସମୟରେ ଆସାମରେ ମୁଖ୍ୟତଃ ତିନୋଟି ବିହୁ ପାଳନ କରାଯାଇଥାଏ । ଏହି ବିହୁଗୁଡ଼ିକୁ ଗାଉଁଲିଆ ଲୋକମାନେ ରଂଗାଲି, କାଙ୍ଗାଲି ଓ ଭୋଗାଲି ବିହୁ ନାମରେ ନାମିତ କରିଛନ୍ତି । ରଂଗାଲି ବିହୁ ଚୈତ୍ରମାସର ସଂକ୍ରାନ୍ତି ଦିନଠାରୁ ଆରମ୍ଭ ହୋଇ ବୈଶାଖମାସର ପ୍ରଥମ ଛଅଦିନ ପର୍ଯ୍ୟନ୍ତ ଅତି ଯାକଜମକ ସହକାରେ ଅସମୀୟା ସମାଜରେ ପାଳନ କରାଯାଇଥାଏ । ବୈଶାଖମାସରେ ଏହି ବିହୁ ପାଳନ କରାଯାଉଥିବାରୁ ରଂଗାଲି ବିହୁକୁ ବହାଗ ବିହୁ (ବୈଶାଖ ବିହୁ) ବା ସାତଦିନ ଧରି ପାଳନ କରାଯାଉଥିବା ଯୋଗୁ 'ସାତବିହୁ' କୁହାଯାଇଥାଏ । ନୂଆନୂଆ ବସ୍ତ୍ର ପିନ୍ଧି ବିଭିନ୍ନପ୍ରକାର ପିଠାପଣା କରି, ଖାଇ ଘରେ ଘରେ ଲୋକମାନେ ଆନନ୍ଦରେ ବିହୁ ଦିନ କେତୋଟି କଟାଇଦିଅନ୍ତି । ସନ୍ଧ୍ୟା ହେଲେ ଗାଁ ମୁଣ୍ଡର ବିହୁତଳିକୁ ଯାଇ ଛୋଟପିଲାଠାରୁ ଆରମ୍ଭ କରି ଯୁବକଯୁବତୀ ଓ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ବିହୁନାଚରେ ଭାଗ ନିଅନ୍ତି । ବହାଗ ବିହୁ ପ୍ରତ୍ୟେକ ମନ ଓ ପ୍ରାଣରେ ନୂତନ ରଂଗ ଓ ଉନ୍ମାଦନା ଭରି ଦେଇଥିବା ଯୋଗୁ ଏହାକୁ କେହି କେହି ରଂଗାଲି ବିହୁ କହିଥାଆନ୍ତି । କାର୍ତ୍ତିକ ମାସର ପ୍ରଥମ ଦିନ ପାଳନ କରାଯାଉଥିବା ବିହୁକୁ କାର୍ତ୍ତିକ ବିହୁ ବା କାଙ୍ଗାଲି ବିହୁ କୁହାଯାଇଥାଏ । ଏହି ସମୟରେ ଧାନକ୍ଷେତରେ ନୂଆ କରି ଧାନ ଗଛ ଗୁଡ଼ିକରେ ଫୁଲ ଉଠୁଥାଏ । ଧାନ ଅମାର ପ୍ରାୟତଃ ଖାଲି ହୋଇଆସେ । ସେଥିପାଇଁ ଏହି

ବିହୁରେ କେବଳ ଧାନଜମି ଏବଂ ତୁଳସୀ ଗଛ ପାଖରେ ସଞ୍ଜଦୀପ ଦିଆଯାଇ ପୂଜା କରାଯାଇଥାଏ । ଲୋକମାନଙ୍କର ଧାନ ଭଣ୍ଡାର ଏହି ସମୟରେ ଖାଲି ହୋଇ ଆସିଥିବାରୁ କାର୍ତ୍ତିକ ବିହୁକୁ କାଙ୍ଗାଲର ବିହୁ ବା କାଙ୍ଗାଲି ବିହୁ କୁହାଯାଏ । ମାଘ ମାସର ପ୍ରଥମ ଦିନ ପାଳନ କରାଯାଉଥିବା ବିହୁକୁ 'ମାଘ ବିହୁ ବା ଭୋଗାଲି ବିହୁ' କୁହାଯାଏ । ଏହି ସମୟରେ କୃଷକର ଧାନଭଣ୍ଡାରରେ ଧାନ ଭର୍ତ୍ତି ହୋଇଥାଏ । ବିଭିନ୍ନ ପ୍ରକାର ପିଠାପଣା କରି ଖାଇପିଇ ଲୋକମାନେ ନିଜେ ଆନନ୍ଦିତ ହେବା ସଂଗେ ସଂଗେ ଅତିଥିଙ୍କୁ ନିଜ ଆନନ୍ଦରେ ସମଭାଗୀ କରିଥାନ୍ତି । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଖାଇପିଇ ଖୁସିରେ ଦିନ କେତୋଟି ଉପଭୋଗ କରିବା ଯୋଗୁ ଏହି ବିହୁ 'ଭୋଗାଲି ବିହୁ' ନାମରେ ଗାଁ ଗହଳିରେ ଅତି ପ୍ରିୟ ଅଟେ ।

**ବିହୁ ଶବ୍ଦର ଉତ୍ପତ୍ତି**— ବିହୁ ଉତ୍ସବଗୁଡ଼ିକ ମୁଖ୍ୟତଃ କୃଷିଭିତ୍ତିକ ଉତ୍ସବ ଅଟେ । ବର୍ଷର ପ୍ରଧାନ ଚାଷବାସ, ପାଗର ସୂଚନା ବହାଗ ବିହୁରେ କରାଯାଇଥାଏ । ଚାଷ ଅମଳର ପୂର୍ବ ଇଙ୍ଗିତକୁ କାତି ବିହୁ ବା କାର୍ତ୍ତିକ ବିହୁରେ ପାଳନ କରାଯାଇଥାଏ ଏବଂ ଚାଷ ଅମଳର ଆନନ୍ଦ ମାଘ ବିହୁର ଉଦ୍‌ଯାପନ ଉତ୍ସବରେ ପ୍ରକାଶ ପାଇଥାଏ । ଆସାମ ତଥା ସମଗ୍ର ଉତ୍ତର ପୂର୍ବାଞ୍ଚଳରେ ବସବାସ କରୁଥିବା ବିଭିନ୍ନ ଜନଜାତିମାନଙ୍କ ମଧ୍ୟରେ କୃଷି ପ୍ରଧାନ ଉତ୍ସବଗୁଡ଼ିକ ବିଭିନ୍ନ  ନାମରେ ପାଳନ କରାଯାଇଥାଏ । ଡିମାସାକଚାରୀ ଜନଜାତିମାନଙ୍କ ମତରେ 'ବୁସୁ' ଶବ୍ଦରୁ ବିହୁ ଶବ୍ଦ ଆସିଛି । 'ବୁସୁ' ଅର୍ଥାତ୍ ସମସ୍ତେ ଏକତ୍ରିତ ହୋଇ ଆନନ୍ଦରେ ନାଚିଗାଇ, ଭୋଜିଭାତ କରି, ଖାଇ ଶସ୍ୟର ଦେବତା 'ବ୍ରାଇଶିବାଇ' ଏବଂ ପବନବର୍ଷାର ଦେବତା ଗାମାଡୀ ବା ଦେବୀ ପାର୍ବତୀଙ୍କୁ ସନ୍ତୁଷ୍ଟ କରି ଦିନ କେତୋଟିକୁ ଆନନ୍ଦରେ କଟାଇଦେବାକୁ ବୁଝାଇଥାଏ । ଏହି ଉତ୍ସବ ଡିମାସାମାନଙ୍କର କୃଷିଉତ୍ସବ ଅଟେ । (୧)

ଅରୁଣାଚଳ ପ୍ରଦେଶରେ ବାସ କରୁଥିବା ଆବର ଜନଜାତିମାନଙ୍କର ଉଇଂ (Uing) ଏବଂ ଆରାନ (Aran) ଉତ୍ସବ୍ ସହିତ ବିହୁ ଉତ୍ସବର ଅପୂର୍ବ ସାମଞ୍ଜସ୍ୟ ରହିଛି । ଅରୁଣାଚଳର 'ୱାଞ୍ଚୋ' ସମାଜରେ ବିହୁର ସମଧର୍ମୀ ଉତ୍ସବ 'ଲୁକୁ' ପରଂପରାଗତ ଭାବେ ପାଳନ କରାଯାଏ । ଟାଙ୍ଗ୍‌ସା ନାମକ ଅନ୍ୟ ଏକ ଜନଜାତି ସାମ୍‌ବୁନ୍‌ମୋର (Sambunmor) ନାମକ କୃଷିଉତ୍ସବ ଉଦ୍‌ଯାପନ କରି ପାଳନ କରନ୍ତି ଯେଉଁ ଉତ୍ସବରେ ସେମାନେ 'ବିହୁଉସି' ଗୀତ ଗାଇଥାଆନ୍ତି । ଡଃ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀଙ୍କ ମତରେ ଏହି 'ବିହୁଉସି' ଶବ୍ଦରୁ 'ବିହୁ' ଶବ୍ଦ ଆସିଛି ଏବଂ ସେମାନଙ୍କ ଭଳି ଆସାମରେ ଯୁବକଯୁବତୀମାନେ ବିହୁ ଗୀତ ଗାଇ ବିହୁ ନାଚ ନାଚିଥାଆନ୍ତି । ସଂସ୍କୃତ 'ବିଷୁବତ୍' ଶବ୍ଦରୁ ବିହୁ ଶବ୍ଦଟି ଆସିଛି ବୋଲି ଡଃ ନବୀନଚନ୍ଦ୍ର ଶର୍ମା ମତପ୍ରକାଶ କରିଛନ୍ତି । ତାଙ୍କ ମତରେ ବଂଗଳାଦେଶର ଆରାକାନ ଏବଂ ଚିଟାଗଙ୍ଗ ଅଞ୍ଚଳରେ ବାସ କରୁଥିବା ଚକ୍‌ମାମାନଙ୍କର ପ୍ରଧାନ ଉତ୍ସବ

'ବିଷୋ' ଅଟେ । ଏହି ଉତ୍ସବ ଏପ୍ରିଲ ମାସରେ ଉଦ୍‌ଯାପିତ ହୁଏ । ଭାରତର ବିଭିନ୍ନ ପ୍ରଦେଶରେ 'ବସନ୍ତୋତ୍ସବ' 'ମହାବିଷୁବ ସଂକ୍ରାନ୍ତି' ଆଦି ଉତ୍ସବ ଜାକଜମକ ଭାବେ ପାଳନ କରିବାର ଦେଖାଯାଏ । ଦକ୍ଷିଣ ଭାରତରେ ନାୟାରମାନଙ୍କ ମଧ୍ୟରେ ପ୍ରଚଳିତ ନବବର୍ଷର ଉତ୍ସବ 'ବିଷୁ' ରୂପେ ପରିଚିତ । ଅରୁଣାଚଳ ପ୍ରଦେଶର ଓରାଂ (Oraon) ଜନଜାତିମାନେ ସେମାନଙ୍କର ଗ୍ରୀଷ୍ମକାଳୀନ ଶିକାରକୁ 'ବିଷୁ ଶିକାର' ବୋଲି କହିଥାନ୍ତି । ତେଣୁ 'ବିଷୁବନ୍' ଶବ୍ଦରୁ 'ବିଷୁ' ବା 'ବିହୁ' ଶବ୍ଦ ଆସିଛି । (୨)

ବିହୁ ବା ବିଷୁ ଉତ୍ସବ ଧର୍ମୀୟ ଅଥବା ଅନ୍ୟରୂପରେ ଭାରତର ବିଭିନ୍ନ ଅଞ୍ଚଳରେ ପାଳନ କରାହୁଏ । ୧୯୮୦ ମସିହା ଏପ୍ରିଲ ୯ ତାରିଖରେ 'ଟାଇମ୍‌ସ ଅଫ୍ ଇଣ୍ଡିଆ' ପତ୍ରିକାରେ ଏକ ବିଜ୍ଞାପନ ଏହିଭଳି ଭାବେ ବାହାରିଥିଲା– ''ଦଶ ତାରିଖଠାରୁ ତ୍ରିଭେନ୍ଦ୍ରମର ଶବରୀମ୍ମାଳ ମନ୍ଦିରରେ ବିଷୁ ଉତ୍ସବ ପାଳନ କରାହେବ ଏବଂ ଅଠର ତାରିଖ ପର୍ଯ୍ୟନ୍ତ ଏହି ଉତ୍ସବ ଚାଲିବ'' । (୩)

କେହି କେହି ଆଲୋଚକ 'ବିହୁ' ଶବ୍ଦଟି ଟାଇଆହୋମ୍‌ମାନଙ୍କର 'ବୈ-ହୁ', ବା 'ବିଇ-ହୁ' ଶବ୍ଦରୁ ଆସିଛି ବୋଲି କହିଥାନ୍ତି । ଡଃ ନଗେନ ଦତ୍ତଙ୍କ ମତରେ ଆହୋମ ଭାଷାରେ 'ବୈହୁ' ଶବ୍ଦର ଅର୍ଥ ଗାଈଗୋରୁମାନଙ୍କର ପୂଜା ତଥା ଉପାସନାକୁ ବୁଝାଇଥାଏ । ବଡ଼ୋ ଭାଷାରେ 'ବୈଶାଗୁ' ଶବ୍ଦଟି ଆଶୀର୍ବାଦ ଦେବା ଏବଂ ନେବା ଅର୍ଥରେ ବ୍ୟବହାର କରାଯାଇଥାଏ । ବୈଶାଗୁ ଶବ୍ଦଟି ସମୟଚକ୍ରରେ 'ବିହୁ' ହୋଇଛି ବୋଲି ଅନୁମାନ କରାଯାଇଛି । ଆସାମର ଆଦିମ ଅଧିବାସୀମାନେ ଥଟ୍ଟା କୌତୁହଳରେ ତଥା ଆନନ୍ଦରେ ଉଲ୍ଲସିତ ହୋଇ ଚିତ୍କାର କଲାବେଳେ 'ହୈ-ହୁ' 'ହୈ-ହୁ' ଆଦି ଉଚ୍ଚାରଣ କରିଥାନ୍ତି । ସେହି ଶବ୍ଦ ଗୁଡ଼ିକରୁ ସମୟକ୍ରମେ 'ବୈହୁ' ଶବ୍ଦର ଉତ୍ପତ୍ତି ହୋଇଛି ଏବଂ ସେଥିରୁ 'ବିହୁ' ଶବ୍ଦର ଉତ୍ପତ୍ତି ହୋଇଛି ବୋଲି ଅନୁମାନ କରାଯାଇଥାଏ । (୪)

ଆସାମର ରାଭାନାମକ ଜନଜାତିମାନେ 'ବାୟଖୁ' ନାମରେ ବସନ୍ତ ଉତ୍ସବ ପାଳନ କରିଥାନ୍ତି । ଏହି ଶବ୍ଦରୁ 'ବିହୁ' ଶବ୍ଦ ଆସିଛି ବୋଲି ମଧ୍ୟ ଅନୁମାନ କରାଯାଇଥାଏ । ସେମାନଙ୍କ ମତରେ 'ବାୟ' ଅର୍ଥାତ୍ ଦେବତା, 'ଖୁ' ଅର୍ଥାତ୍ 'ଦେଇଥିବା ଜିନିଷ' । ତେଣୁ 'ବାୟଖୁ'ର ଅର୍ଥ ଦେବତା ଦେଇଥିବା ଆନନ୍ଦ କୌତୁହଳକୁ ହିଁ 'ବିହୁ' କୁହାଯାଇଥାଏ । 'ବାୟଖୁ → ବାୟହୁ → ବିହୁ' ଏହିଭଳି ଭାବରେ ବାୟଖୁ ଶବ୍ଦରୁ 'ବିହୁ' ଶବ୍ଦର ବିକାଶ ଘଟିଛି । ବୈଶାଖ, ଜ୍ୟେଷ୍ଠ ମାସରେ ଧାନ ଫସଲ ପାଇଁ ବିହନ ବୁଣିବା ପୂର୍ବରୁ 'ବାୟଖୁ' ଏବଂ 'ରିଷି' ଦେବତାଙ୍କ ନିକଟରେ ବିଭିନ୍ନ ପ୍ରକାର ପଶୁପକ୍ଷୀ ବଳି ଦିଆଯାଇ ଚାଷବାସର ମଙ୍ଗଳ କାମନା କରି ଜମିର ଉର୍ବରତା ବଢ଼ାଇବା ପାଇଁ ବାୟଖୁ ଉତ୍ସବପାଳନ କରିବା ରୀତି ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ହୋଇଆସୁଛି । (୫)

**ବିହୁର ପ୍ରାଚୀନତା ଓ ବିକାଶ**— ନୃତ୍ୟ ଓ ଗୀତ ବିଜଡ଼ିତ ବିହୁ ଉତ୍ସବ ଅସମୀୟା ସମାଜ ପ୍ରତି ଅଷ୍ଟ୍ରିକ୍ ଜାତିର ଅବଦାନ ବୋଲି ବିଶ୍ୱାସ କରାଯାଇଥାଏ । ହଜାର ହଜାର ବର୍ଷ ତଳେ ହୋଆଙ୍ଗ୍ ଏବଂ ଇୟାଂସିକିୟାଂ ନଦୀର ଆରପଟୁ କେତେଗୁଡିଏ ଲୋକ ଗଙ୍ଗା ଏବଂ ବ୍ରହ୍ମପୁତ୍ର ନଦୀର ଉପତ୍ୟକାକୁ ଆସିଥିଲେ । ଏମାନେ ମୁଖ୍ୟତଃ କୃଷିଜୀବି ଥିଲେ । କୃଷିକାର୍ଯ୍ୟର ସୁବିଧା ପାଇଁ ସେମାନେ ବୋଧହୁଏ ନଦୀର ଉପତ୍ୟକାରେ ବାସ କରିବା ପାଇଁ ଇଚ୍ଛାପ୍ରକାଶ କରିଥିଲେ । ସେହି କୃଷିଜୀବି ଲୋକମାନେ ଅଷ୍ଟ୍ରିକ୍ ଥିଲେ ବୋଲି ଅନୁମାନ କରାଯାଇଛି । ସେମାନେ ମୁଖ୍ୟତଃ ଦୁଇଟି ଉତ୍ସବ ବହୁତ ଆଡମ୍ବର ସହକାରେ ପାଳନ କରୁଥିଲେ । ଗୋଟିଏ ଉତ୍ସବ ଚାଷକାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଏବଂ ଅନ୍ୟଟି ଚାଷ ଅମଳ ପରେ ପାଳନ କରୁଥିଲେ । ଦୁଇଟି ଉତ୍ସବରେ ଏହି ଲୋକମାନେ ଆନନ୍ଦମୁଖର ହୋଇ ଉଠୁଥିଲେ । ସମୟକ୍ରମେ ଆସାମର ଲୋକସମାଜରେ ଏହି ଉତ୍ସବ ଦୁଇଟି 'ରଂଗାଲୀ ବିହୁ' ଏବଂ 'ଭୋଗାଲୀ ବିହୁ' ନାମରେ ଅତି ଜନପ୍ରିୟ ହୋଇଉଠିଲା ।

ଡାଃ ଗିରିଜାଶଙ୍କର ଗୁହ ଆଦି ସମାଲୋଚକମାନଙ୍କ ମତରେ ଅଷ୍ଟ୍ରିକମାନଙ୍କ ପରେ ଆଲପାଇନମାନେ ବ୍ରହ୍ମପୁତ୍ର ଉପତ୍ୟକାକୁ ଆସିଥିଲେ । ସେମାନଙ୍କର ସାଂସ୍କୃତିକ ଉତ୍ସବ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ଅଷ୍ଟ୍ରିକ୍‌ମାନଙ୍କର ମୁଖ୍ୟ ଉତ୍ସବ ଉପରେ ଆଲ୍‌ପାଇନ୍‌ମାନଙ୍କର ନିଜସ୍ୱ ସଂସ୍କୃତିର ପ୍ରଭାବ ପଡିଲା । ଫଳରେ ଅଷ୍ଟ୍ରିକ୍ ଏବଂ ଆଲ୍‌ପାଇନ୍‌ମାନଙ୍କର ସଂସ୍କୃତିର ସମନ୍ୱୟ ଘଟି ବିହୁ ଉତ୍ସବ କିଛିଟା ନୂତନ ଏବଂ ବିସ୍ତୃତ ରୂପରେ ମଣ୍ଡିତ ହେଲା। ଆଲ୍‌ପାଇନ୍‌ମାନେ ଅଧିକ ନୃତ୍ୟଗୀତ ପ୍ରିୟ ହୋଇଥିବାରୁ ଚାଷ କାମ ଆରମ୍ଭ କରିବା ପୂର୍ବରୁ ସେମାନେ ନାଚିଗାଇ ଅତି ଆଡମ୍ବରପୂର୍ଣ୍ଣ ଭାବେ ଉତ୍ସବଟିକୁ ପାଳନ କଲେ । ସେମାନେ ଦିନ, ମାସ, ତିଥି ଆଦି ଅତି ସତର୍କତାର ସହିତ ଗଣନା କରୁଥିଲେ । ସେଥିପାଇଁ 'ଚୈତ୍ର ସଂକ୍ରାନ୍ତି ଏବଂ ପୌଷ ସଂକ୍ରାନ୍ତିକୁ ଉପଯୁକ୍ତ ସମୟ ଭାବେ ଧରିନେଇ ଅତି ଉଲ୍ଲାସ ସହକାରେ ଦୁଇଟି ମୁଖ୍ୟ ଉତ୍ସବ ପାଳନ କରୁଥିଲେ । ଗୁରୁଜନମାନଙ୍କୁ ସମ୍ମାନ ଦେବା ସହିତ ଅତିଥି ସତ୍କାର କରିବା ପାଇଁ ଆଲ୍‌ପାଇନ୍‌ମାନେ ବହୁତ ଭଲ ପାଉଥିଲେ ଯାହାର ପ୍ରଭାବ ଓ ପରିଣତି ସ୍ୱରୂପ ଅସମୀୟାମାନେ ଅଧିକ ଅତିଥିସତ୍କାର ପ୍ରିୟ ଅଟନ୍ତି । କାତି ବିହୁ ଅସମୀୟା ସମାଜପ୍ରତି ଆଲ୍‌ପାଇନ୍‌ମାନଙ୍କର ଅବଦାନ ଅଟେ । ସମୟକ୍ରମେ ଆଲ୍‌ପାଇନ୍‌ମାନଙ୍କ ପରେ ତିବ୍ବତବର୍ମୀ ଲୋକମାନେ ବିହୁ ଉତ୍ସବକୁ ଅଧିକ ଲୋକପ୍ରିୟ କରିବା ପାଇଁ ଯତ୍ନ କଲେ । ଏମାନଙ୍କ ପରେ ତ୍ରୟୋଦଶ ଶତାବ୍ଦୀବେଳକୁ ଆହୋମମାନେ ଆସାମକୁ ଆସି ସେମାନଙ୍କର ରାଜତ୍ୱ ଆରମ୍ଭ କରିଥିଲେ । ଆହୋମମାନଙ୍କର ଆଗ୍ରହ ଓ ସଂସ୍କୃତିର ପ୍ରଭାବ ଫଳରେ ବିହୁ ଉତ୍ସବ ଏକ ଅଭିନବ ରୂପ ନେଲା ।

ଆସାମରେ ବିହୁ ଉତ୍ସବ ଅଷ୍ଟ୍ରିକ୍‌ମାନଙ୍କ ସମୟରୁ ଆରମ୍ଭ ହେଲେ ହେଁ ସମୟକ୍ରମେ ଆଲପାଇନ ଏବଂ ତିବ୍ବତବର୍ମୀମାନଙ୍କର ସଂସ୍କୃତିର ସ୍ପର୍ଶ ପାଇ ଏହା ଅଧିକ ଆକର୍ଷଣୀୟ ଓ

ଜନପ୍ରିୟ ହୋଇଉଠିଥିଲା । ସମୟଚକ୍ରରେ ଆହୋମମାନଙ୍କ ସମୟରେ ଏହା 'ବିହୁ' ଉତ୍ସବ ନାମରେ ନାମିତ ହେବା ସଂଗେ ସଂଗେ ବିହୁ ଆସାମର ଜାତୀୟ ଉତ୍ସବ ରୂପେ ପରିଗଣିତ ହେଲା । ଆହୋମାନଙ୍କ ସମୟରୁ ବିହୁ ଉତ୍ସବ ଆସାମର ଲୋକମନ, ଲୋକପ୍ରାଣ ଓ ଲୋକସମାଜର ଏକ ଅବିଚ୍ଛେଦ୍ୟ ଅଂଗ ରୂପେ ପରିଗଣିତ ହେଲା । ବିହୁ ଉତ୍ସବ ବିନା ଆସାମର ଲୋକସମାଜ ଓ ସଂସ୍କୃତିର ପରିଚୟ ଯେପରି ମିଳେନାହିଁ, ଏକଥା ପ୍ରତ୍ୟେକ ଅସମୀୟା ଅନୁଭବ କରିଥାନ୍ତି ।

ଦୁଇ, ଅଢ଼େଇ ହଜାର ବର୍ଷ ପୂର୍ବେ ପଶ୍ଚିମଚୀନ ଦେଶରେ ବସନ୍ତକାଳରେ ଯୁବକଯୁବତୀମାନେ ଆନନ୍ଦରେ ନୃତ୍ୟକରି ଗୀତ ଗାଉଥିଲେ ଏବଂ ପରସ୍ପର ପରସ୍ପରକୁ କପୌଫୁଲ (Orchid) ଆଦାନପ୍ରଦାନ କରୁଥିଲେ । ତେଣୁ ମଙ୍ଗୋଲୀୟ ଜାତି ସମୂହର ଆଗମନରେ ଏହିଭଳି ପରମ୍ପରା ଚୀନ୍‌ଦେଶରୁ ଆସାମକୁ ଆସିଥିଲା । (୬) ବିହୁ ମୁଖ୍ୟତଃ କୃଷି ସଂପର୍କୀୟ ପର୍ବ ହୋଇଥିବାରୁ ଏହାର ସୃଷ୍ଟି କେତେକ ପ୍ରାଥମିକ ଆଦିବାସୀ ଜୀବନ ସହିତ ଜଡ଼ିତ ଅଟେ । ଏପରିକି ବର୍ତ୍ତମାନ ମଧ୍ୟ 'ମିରି' ଆଦିବାସୀମାନଙ୍କ ମଧ୍ୟରେ ଦୁଇଟି ମୁଖ୍ୟ ବିହୁ ପାଳନ କରାଯାଇଥାଏ । 'ଗାରୋ' ଜନଜାତିମାନଙ୍କର ପର୍ବପର୍ବାଣୀଗୁଡ଼ିକ ମଧ୍ୟ ଚାଷ ସହିତ ସଂପୃକ୍ତ ଅଟେ ବୋଲି ଡଃ ଯୋଗେଶ ଦାଶ ମତବ୍ୟକ୍ତ କରିଛନ୍ତି । (୭)

ପ୍ରାଚୀନ ଆସାମରେ ପାଳନ କରାଯାଉଥିବା ବିହୁ ସଂପର୍କରେ କେତେଗୁଡ଼ିଏ ତଥ୍ୟ ମିଳିଥାଏ । ପ୍ରାଚୀନ ଆସାମର ରାଜାମାନଙ୍କ ସମୟରେ ପ୍ରଚଳିତ ତାମ୍ରପତ୍ରରେ ବିହୁର ଉଲ୍ଲେଖ କରାଯାଇଛି । ଏହା ବ୍ୟତୀତ ଗୋଟିଏ ଚେପ୍‌ଟା ବଡ଼ ପଥରରେ କଟା ହୋଇଥିବା ବିହୁର ନୃତ୍ୟଭଂଗୀର କେତେଗୁଡ଼ିଏ ମୂର୍ତ୍ତି ଉଦ୍ଧାର କରାଯାଇଛି । ଏହି ମୂର୍ତ୍ତିଗୁଡ଼ିକ ସାତଟା ଭାଗରେ ବିଭକ୍ତ । ଏହାର ପ୍ରତ୍ୟେକ ଭାଗରେ ପୁରୁଷ ମହିଳା ଏକା ସାଙ୍ଗରେ କେଉଁଠି ବା ଦୁଇଜଣ ମହିଳା ଅଥବା ଦୁଇଜଣ ପୁରୁଷ ଏକ ସଂଗେ ନାଚୁଥିବାର ଅଥବା ବାଦ୍ୟଯନ୍ତ୍ର ବଜାଉଥିବା ଅବସ୍ଥାରେ ରହିଛନ୍ତି । ବାମପଟରୁ ମୂର୍ତ୍ତିଗୁଡ଼ିକ ଏହିଭଳି ଭାବେ ଆରମ୍ଭ ହୋଇଛି

ଫଳକର ପ୍ରଥମ ଅଂଶରେ ଜଣେ ଲୋକ ଗୋଟିଏ ସିଂହ ସହିତ ଯୁଦ୍ଧ କରୁଥିବା ଦେଖା ଯାଇଛି । ଦ୍ୱିତୀୟ ଅଂଶରେ ବଇଁଶୀ ବଜାଉଥିବା ଜଣେ ଲୋକର ପାଖରେ ଜଣେ ମହିଳା ନାଚୁଥିବାର ଦେଖାଯାଉଛି । ତୃତୀୟ ଅଂଶରେ ଜଣେ ପୁରୁଷ ଶିଙ୍ଗା ବଜାଉଥିବା ଅବସ୍ଥାରେ ଏବଂ ଅନ୍ୟ ଜଣେ ପୁରୁଷ ନାଗରା ଜାତୀୟ ବାଦ୍ୟ ବଜାଉଥିବାର ଦେଖାଯାଇଥାଏ । ଚତୁର୍ଥ ଅଂଶରେ ଢ଼ୋଲ ବଜାଉଥିବା ଜଣେ ପୁରୁଷ ପାଖରେ ଜଣେ ନାରୀ ନାଚୁଥିବାର ମୂର୍ତ୍ତି ଅଛି । ପଞ୍ଚମ ଅଂଶରେ ଝାଞ୍ଜ ବଜାଉଥିବା ଜଣେ ପୁରୁଷ ନିକଟରେ ଜଣେ ନାରୀ ନାଚୁଥିବାର ମୂର୍ତ୍ତି ଅଛି । ଏହାର ପର ଅଂଶଟିରେ ବୀନ (ବୀଣା) ବଜାଉଥିବା ଗୋଟିଏ ମୂର୍ତ୍ତିର ବାମପଟେ ନାଚୁଥିବା ନାରୀମୂର୍ତ୍ତିର ଚିତ୍ର ଅଛି । ଫଳକଟିର ଶେଷ ଅଂଶରେ ଢ଼ୋଲ ବଜାଉଥିବା ପୁରୁଷ

ନିକଟରେ ନୃତ୍ୟରତା ନାରୀର ଚିତ୍ର ଦେଖାଯାଉଛି । ଫଳକରେ ବାଦ୍ୟ ବଜାଉଥିବା ଏବଂ ନୃତ୍ୟରତା ନରନାରୀର ଚିତ୍ରଗୁଡ଼ିକ ସ୍ୱାଭାବିକ ଏବଂ ଜୀବନ୍ତଭଳି ଦେଖାଯାଉଛନ୍ତି । ଏହି ମୂର୍ତ୍ତିଗୁଡ଼ିକ ଭିତରେ ସ୍ୱତଃସ୍ଫୂର୍ତ୍ତତା ଫୁଟି ଉଠିଛି । ମୂର୍ତ୍ତିଗୁଡ଼ିକର ନୃତ୍ୟଭଂଗୀ ଏବଂ ବାଦ୍ୟଯନ୍ତ୍ର ସମୂହକୁ ଲକ୍ଷ୍ୟକରି ଏହାକୁ ବିହୁନାଚର ମୂର୍ତ୍ତିବୋଲି ଚିହ୍ନିତ କରାଯାଇଛି । ବିହୁନାଚର ଏହି ଫଳକ ହିଁ ବର୍ତ୍ତମାନ ସୁଦ୍ଧା ଏକ ମାତ୍ର ଏବଂ ପ୍ରାଚୀନତମ ମୂର୍ତ୍ତି ଏବଂ ଏହା ନିଃସନ୍ଦେହରେ ଦ୍ୱାଦଶ ଶତକାର ପୂର୍ବର ମୂର୍ତ୍ତି ଅଟେ । ଏହି ମୂର୍ତ୍ତି ତେଜପୁରରୁ ଉଦ୍ଧାର କରାଯାଇଛି । ଡ଼ଃ ବିରିଞ୍ଚି କୁମାର ବରୁଆ ତାଙ୍କ A Cultural History of Assam ଗ୍ରନ୍ଥରେ ଏହି ଭଳି ଭାବେ ଲେଖିଛନ୍ତି । ସେଥିପାଇଁ ସମସ୍ତ ବିହୁ ମଧ୍ୟରେ ବହାଗବିହୁ ବା ବୈଶାଖବିହୁ ସର୍ବାଧିକ ଗୁରୁତ୍ୱ ପାଇ ଆସିଛି । ବିହୁର ଗୀତ-ନୃତ୍ୟ-ବାଦ୍ୟ ମୁଖ୍ୟତଃ ବହାଗବିହୁକୁ କେନ୍ଦ୍ରକରି ସୃଷ୍ଟି ହୋଇଛି । ସେଥିପାଇଁ ପ୍ରାଚୀନ ଆସାମର ଇତିହାସ ରଚନାରେ ମୁଖ୍ୟତଃ ବହାଗବିହୁର କଥା ଉଲ୍ଲେଖ କରାହୋଇଛି । (୮)

ବିହୁ ଉତ୍ସବର ଉଦ୍ଦେଶ୍ୟ ଯେ ସତ୍, ତା' ମୂଳରେ ଏକ ସାମାଜିକ ପଦ୍ଧତି ଅଛି । ଏହି ଉତ୍ସବରେ ଯେ କଳା ମୂଳକ ବିଶିଷ୍ଟତା ଥାଇପାରେ ଏହି ଧାରଣା କରିବା ପାଇଁ ଆସାମର ନବ୍ୟଶିକ୍ଷିତ ସମାଜ ବହୁଦିନ ପର୍ଯ୍ୟନ୍ତ ଚିନ୍ତା କରିଲେ । ୧୮୮୫ ଖ୍ରୀଷ୍ଟାବ୍ଦରେ ବିଲାତରେ ଶିକ୍ଷାଲାଭ କରିଥିବା ଇଂଜିନିୟର ବଳୀନାରାୟଣ ବୋରା ବିହୁକୁ ଜାତୀୟ ଉତ୍ସବ ରୂପେ ଗଣ୍ୟ କରିବାପାଇଁ ମନ୍ତବ୍ୟ ଦେଇଥିଲେ । ଅସମୀୟା ଲେଖକମାନଙ୍କ ମଧ୍ୟରେ ରଜନୀକାନ୍ତ ବରଦଲୈଙ୍କ 'ମିରିଜୀୟରୀ' ଉପନ୍ୟାସରେ ପ୍ରଥମେ ବିହୁନାଚ ଏବଂ ଗୀତ ସଂପର୍କରେ କିଛିଟା ଲମ୍ବା ବର୍ଣ୍ଣନା ଦେଖା ଯାଇଥାଏ । 'ମିରିଜୀୟରୀ' ୧୮୯୫ ମସିହାରେ ଛପାହେଲା । ୧୯୧୮ ମସିହାରେ ଗଣେଶଚନ୍ଦ୍ର ହାଜରିକା ''ବିହୁ ଆରୁ ତା'ର ପ୍ରାକୃତିକ ଚିତ୍ର'' ନାମରେ ଖଣ୍ଡିଏ ବହି ରଚନା କରିଥିଲେ । ସେ ସମୟରେ ବିହୁ ନାମରେ ପୁସ୍ତକ ରଚନା କରିବା ନିଶ୍ଚିନ୍ତ ରୂପେ ଏକ ଉଲ୍ଲେଖ ଯୋଗ୍ୟ ଘଟଣା କାରଣ ସେ ସମୟରେ ବହୁ ଶିକ୍ଷିତଲୋକ ବିହୁଗୀତକୁ ଅମାର୍ଜିତ ବୋଲି ଗଣ୍ୟକରୁଥିଲେ ଏପରିକି ଆଲୋଚକ ତଥା ବିଶିଷ୍ଟ ସାହିତ୍ୟକ ନକୁଳଚନ୍ଦ୍ର ଭୂୟାଁ ଥରେ ଲେଖକ ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀଙ୍କୁ ଏହିଭଳି ଭାବେ ଚିଠି ଲେଖିଥିଲେ - '' ଆପଣ ହୁଏତ ବର୍ତ୍ତମାନ ଏକଥା ବିଶ୍ୱାସ କରିବା ପାଇଁ ଉଚିତ ମନେ କରିବେନି କିନ୍ତୁ ଏ କଥା ସତ ଯେ ଆମେ ଯେତେବେଳେ ବିହୁଗୀତ ସଂଗ୍ରହ କରୁଥିଲୁ ଭୟ ଏବଂ ଲାଜରେ କେହି ଯେମିତି ଜାଣି ପାରିବେନି, ସେହିଭଳି ଭାବରେ ଆମେ ସଂଗ୍ରହ କରିଥିଲୁ ।''

ଲକ୍ଷ୍ମୀନାଥ ବେଜବରୁଆ ଯେପରି ବୈଷ୍ଣବଧର୍ମର ନୈତିକ ଏବଂ ସାମାଜିକ ଅବଦାନର କଥା ଲୋକସମ୍ମୁଖରେ ଉପସ୍ଥାପନା କରିବା ପାଇଁ ଯତ୍ନ କରିଥିଲେ, ସେହିଭଳି 'ବାଁହୀ' ନାମକ ପତ୍ରିକାରେ ସେ ବିହୁ ସପକ୍ଷରେ ଏକାଧିକବାର ଓକିଲାତି କରିଥିଲେ ।

୧୯୧୯ ମସିହାରେ ସେ ଲେଖିଥିଲେ - ''ବିହୁ କାହାକୁ ଦୁଃଖ ଦିଏ ନାହିଁ, ସମସ୍ତଙ୍କୁ ଆନନ୍ଦ ଦିଏ, ସେଥିପାଇଁ ବିହୁକୁ ଦେଖି ଲୋକମାନେ ହସନ୍ତି, ଖରାପ ଭାବନ୍ତି । ୧୯୩୧ ମସିହାରେ ଗୌହାଟୀର ନାଗରିକମାନଙ୍କ ଯତ୍ନରେ ଆନନ୍ଦ ଉଲ୍ଲାସ ତଥା ଜଳପାନ ମଧ୍ୟରେ ଆଡମ୍ବର ପୂର୍ଣ୍ଣ ସହକାରେ ବିହୁ ଉତ୍ସବ ପାଳନ କରାଯାଇଥିଲା । ସମ୍ଭବତଃ ସହରର ନାଗରିକ ମାନଙ୍କ ଚେଷ୍ଟାରେ, ବିହୁକୁ ନଗରୀଆ କରିବାର ଏହା ହିଁ ପ୍ରଥମ ଉଦ୍ୟମ ଅଟେ । ପ୍ରକୃତରେ ଗତ ମହାଯୁଦ୍ଧ ପରେ ବିହୁ ପୁନର୍ବାର ନିଜର ପ୍ରାଚୀନ ସମ୍ମାନ ଲାଭ କରିବା ପାଇଁ ସମର୍ଥ ହୋଇଛି । ବର୍ତ୍ତମାନ ଶତିକାର ଦ୍ୱିତୀୟ-ତୃତୀୟ ଦଶକ ଭାରତୀୟ ମାନଙ୍କ ପାଇଁ ଜାତୀୟ ଜାଗରଣର ସମୟ ଥିଲା । ଏହି ସମୟରେ ଜାତୀୟ ସାମାଗ୍ରୀଗୁଡ଼ିକର ପୁନରୁଦ୍ଧାର ଏବଂ ନବମୂଲ୍ୟାୟନ ହେଲା । ଏହି ଜାତୀୟ ଜାଗରଣ ବିହୁ ଉତ୍ସବର ଜନପ୍ରିୟତା ବଢ଼ାଇବାରେ ସାହାଯ୍ୟ କଲା । ବିହୁ ଗ୍ରାମୀୟ ପରିବେଶର ଚାଷ ଜମିରେ ସୀମାବଦ୍ଧ ନ ହୋଇ ସହରାଭିମୁଖୀ ହେଲା । ଅନ୍ୟପଟେ ଏହା ସହିତ ଜଡ଼ିତ ନୃତ୍ୟ ଏବଂ ଗୀତ ଆସାମର ଜାତୀୟ ମୌଳିକତାର ପ୍ରତୀକ ହୋଇ ପଡ଼ିଲା'' ।

ସପ୍ତଦଶ ଶତିକାର ମୁସଲମାନ ଭ୍ରମଣକାରୀମାନେ ଉଜନି ଆସାମର ବିହୁ ଉତ୍ସବ ଦେଖି ଏହା ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ଉତ୍ସବ ବୋଲି ବର୍ଣ୍ଣନା କରିଯାଇଛନ୍ତି । ଚତୁର୍ଦ୍ଦଶ ଶତିକାର ମାଧବକନ୍ଦଳୀଙ୍କ ରାମାୟଣରେ 'ବିଷୁ' ଶବ୍ଦ ଦେଖିବାକୁ ମିଳିଥାଏ । ନବମ ଦଶମ ଶତିକାରେ କାମରୂପର ରାଜା ବିହୁ ସମୟରେ ଭୂମିଦାନ କରିଥିଲେ ବୋଲି ଜଣାଯାଏ । ବିହୁ ମଙ୍ଗୋଲୀୟ ଏବଂ ବ୍ରାହ୍ମଣ୍ୟ ସଂସ୍କୃତିର ମିଳନ ଫଳରେ ଗଢ଼ିଉଠିଥିବା ଉତ୍ସବ, ଅନ୍ୟପଟେ ଏହା ବର୍ତ୍ତମାନ ସମୟର ସର୍ବଧର୍ମ, ସର୍ବବର୍ଣ୍ଣର ଲୋକର ମିଳନର ଏକ ଅଭିନବ କ୍ଷେତ୍ର । ସମଗ୍ର ଭାରତରେ ଏହି ଧରଣର ବ୍ୟାପକ ରୂପରେ ପାଳନ କରାଯାଉଥିବା କଳାପୂର୍ଣ୍ଣ ଏବଂ ଆନନ୍ଦମୟ ଉତ୍ସବ ପାଇବା କଷ୍ଟକର । (୯)

**ବିହୁ ଆଗମନ ଓ ଏହାର ଉପାଦେୟତା** - ସମାଲୋଚକ ଶରତ୍‌ଚନ୍ଦ୍ର ସିଂହଙ୍କ ମତରେ ସୂର୍ଯ୍ୟ ଏବଂ ପୃଥିବୀର ବିଶେଷ ଅବସ୍ଥାନ ହେତୁ ବିହୁର ସମୟ ଏବଂ ପରିବେଷ୍ଟ ସୃଷ୍ଟି ହୁଏ । ଚୈତ୍ରମାସର ଶେଷଦିନ ମହାବିଷୁବ ସଂକ୍ରାନ୍ତି । ବର୍ଷର ଶେଷଦିନ । ଏହି ଦିନ ବହାଗବିହୁ ନିଜର ରୂପ ପ୍ରକାଶ କରିଥାଏ । ତାହାହିଁ ବିହୁର ପ୍ରଥମ ଦିନ । ବୈଶାଖ ମାସର ପ୍ରଥମ ଦିନ ବହାଗବିହୁର ଦ୍ୱିତୀୟଦିନ ଅଟେ । ବୈଶାଖର ଛଅଦିନ ପର୍ଯ୍ୟନ୍ତ ଆସାମରେ ସାତବିହୁ ପାଳନ କରାଯାଇ ଥାଏ । ଏହି ବିହୁକୁ ରଙ୍ଗାଲି ବିହୁ କହିବାର ତାତ୍ପର୍ଯ୍ୟ ହେଉଛି ଏହା ଜୀବନ ଯୌବନର ମୂର୍ତ୍ତ ଆନନ୍ଦର ଦିନ । ତେଣୁ ଏହି ବିହୁରେ ପୁରୁଣା ବର୍ଷର ବିଦାୟ ଏବଂ ନୂଆବର୍ଷର ଆଦର କରାଯାଇଥାଏ । ସୂର୍ଯ୍ୟଙ୍କ ଅବସ୍ଥାନ ପାଇଁ ହେଉଥିବା ଋତୁ ପରିବର୍ତ୍ତନ

କ୍ରମରେ ଗ୍ରୀଷ୍ମାଦି ଋତୁଗୁଡ଼ିକ ଆମ ଜୀବନରେ କେତେଗୁଡ଼ିଏ ବୈଚିତ୍ର୍ୟ ଘଟାଇଥାଏ । ବୈଶାଖରେ ଆମେ କୃଷିଜୀବନର ସୂଚନା କରିଥାଉ । ଶରତରେ ଚାଷଜମିର ସବୁଜିମା ଦେଖି ଆମେ ଆନନ୍ଦିତ ହୋଇଥାଉ । କାର୍ତ୍ତିକ ବିହୁ ପାଳନ କରିଥାଉ । ଶୀତକାଳରେ ଧାନ ଅମଳ କରିସାରି 'ଭୋଗାଲୀବିହୁ' ପାଳନ କରିଥାଉ । ବସନ୍ତରେ ଆମର ଜୀବନ ଉଦ୍ଦାମ-ଉଚ୍ଛ୍ୱଳତାରେ ଭରି ଉଠିଥାଏ ।

ବୈଶାଖରେ ତୃଣ-ତରୁଲତା, ପାହାଡ଼-ପର୍ବତ ସବୁଆଡ଼େ ନୂଆ ଜୀବନର ଉନ୍ମେଷ ଘଟିଥାଏ । ପ୍ରକୃତି, ଉଦ୍ଭିଦ ଯୌବନା ହୋଇ ବିକଶିତ ହୋଇଥାଏ । ନିଜର ରୂପରେ ପରିବର୍ତ୍ତନ ଘଟିଥାଏ । ଆକାଶରେ ମେଘର ମେଳା, ଦିଗନ୍ତରେ ବିହୁନାଚ, ଢୋଲ ପେଁପାର ଆନନ୍ଦମୟ ସ୍ୱର ଲହରୀ, ଜୀବନରେ ଯେପରି ଆନନ୍ଦର ଜୁଆର ଆଣିଥାଏ । ସମସ୍ତେ ଆନନ୍ଦରେ ବିଭୋର ହୋଇ ନାଚିଥାଆନ୍ତି । ଗୀତ ଗାଇଥାଆନ୍ତି । ଆନନ୍ଦରେ ମାତୁଆଲା ହୋଇ ଉଠନ୍ତି । ଏହାହିଁ ବିହୁ ଆଗମନର ଆନନ୍ଦ, ଜୀବନ-ଯୌବନର ଉତ୍ସବ । ସୃଷ୍ଟିର ଉତ୍ସବ, ଚାଷର ଉତ୍ସବ । ଆସାମର ଜାତୀୟ ଉତ୍ସବ ।

ଏହି ବିହୁ ମାଧ୍ୟମରେ ପ୍ରତ୍ୟେକ ଅନୁଭବ କରନ୍ତି 'ଇଉନିଟି ଇନ୍ ଡ଼ାଇଭର୍ସିଟି' । ବିଭିନ୍ନତାର ମାଧ୍ୟମରେ ଆମର ଐକ୍ୟ, ଆମ୍ଭମାନଙ୍କର ଆଚାର ବ୍ୟବହାର, ପୋଷାକ ପରିଚ୍ଛଦ, କଥାବାର୍ତ୍ତା ଭିନ୍ନ ହେଲେ ହେଁ ଆମେ ଏକ, ଗୋଟିଏ ଜାତି, ଗୋଟିଏ ମହାନ ଐତିହ୍ୟର ଧାରକ, ବାହକ । ଉତ୍ତରରେ ନିମ୍ନ ହିମାଳୟର ବିଶାଳ ପର୍ବତ ଶ୍ରେଣୀ, ଦକ୍ଷିଣରେ ସୁଶୋଭିତ ମେଘାଳୟର ପର୍ବତମାଳା, ତା'ର ମଝିରେ ବହିଯାଇଛି ମହାବାହୁ ବ୍ରହ୍ମପୁତ୍ର ଏବଂ ଦକ୍ଷିଣରେ ଉତ୍ତର କାଚାରର ଉତ୍ତୁଙ୍ଗ ପର୍ବତ ଶ୍ରେଣୀ ଏବଂ ମିଜୋରାମର ପାହାଡ଼ ମଝିରେ ପ୍ରବାହିତ ହୋଇଛି ବରାକ । ନଦୀପର୍ବତ ସୃଷ୍ଟି କରିଥିବା ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ନାନା ପରିସ୍ଥିତିରେ ନାନା ପରିବେଶରେ ଆମେ ବିଭିନ୍ନ ଜନ ଗୋଷ୍ଠୀ ବାସ କରିଥାଉ । ପ୍ରକୃତି ଜନନୀ ଭାବେ ଏହି ବିଚିତ୍ର ଜୀବନଧାରା ଗଢ଼ଣ ଦେଇଛି । ଭିନ୍ନ ରୂପେ ଗଢ଼ି ମଧ୍ୟ ଏକ କରି ରଖିଛି । ପ୍ରକୃତି ଗଢ଼ିଥିବା ସଂପୂର୍ଣ୍ଣ ଏକକୁ ନେଇ ଅସମୀୟା ପରିପୂର୍ଣ୍ଣ ।

ବିହୁନାମରେ, ବିହୁନାଚର ଲୟ ଓ ଲାସ୍ୟରେ ମନ ଫୁଲାଣିଆ କରି ଗାଉଥିବା ବିହୁଗୀତରେ ସେହି ମହାଶକ୍ତି ମାନବଜାତିର ଜୀବନର ପରିପୂର୍ଣ୍ଣତା ପ୍ରକଟିତ ହୋଇଉଠେ । ଗୀତର ଛନ୍ଦରେ ତରଙ୍ଗାୟିତ ହୁଏ ଆମର ଜାତୀୟତାର ଉଦ୍ଦାମ ଉଚ୍ଛଳତା । ମହାକାଶରେ ପୃଥିବୀ ଏବଂ ସୂର୍ଯ୍ୟ ଏକ ବିଶେଷ ଅବସ୍ଥାନ ନେବା ହେତୁ ପୃଥିବୀରେ ମହାପରିବର୍ତ୍ତନର ସୂଚନା ହୁଏ । ଚୈତ୍ରର ଧୂଳିମୟ ଆକାଶରେ ବୈଶାଖର ଧୁମାଳ ଆସିଥାଏ । ବୈଶାଖ ଆକାଶରେ ବାଦଲରାଣୀ ବାଦଲମାନଙ୍କର ମେଳା ବସାଇଥାଏ । ବୈଶାଖ ମାସର ପ୍ରଥମ

ଛଅ ଦିନରେ ଗୋଆଲପାରା ଅଞ୍ଚଳରେ ମହାମାୟା ଦେବୀଙ୍କ ପାଖରେ ବିହୁମେଳା ବସିଥାଏ । ଶୋନିତପୁରର ଜାମୁଗୁରି ଅଞ୍ଚଳରେ ଓସ୍ତଗଛ ତଳେ ଅଣ୍ଟାରେ ହାତଦେଇ ଯୁବକ ଯୁବତୀମାନେ ବିହୁନାଚିଥା'ନ୍ତି । ତାହାହିଁ ବିହୁ ଆଗମନର ଆନନ୍ଦ ଅଟେ ।

ପ୍ରକୃତିର ରୂପାନ୍ତରରେ ନୈସର୍ଗିକ ଘଟଣା ପ୍ରବାହରେ ଜୀବନ ଯୌବନର ଆନନ୍ଦରେ ଆସାମରେ ବସବାସ କରୁ ଥିବା ବିଭିନ୍ନ ଜନଗୋଷ୍ଠୀମାନେ ନିଜର ସକ୍ଷମ ଅନୁଯାୟୀ ଆନନ୍ଦ ଉତ୍ସବ କରି ସୁସ୍ୱାଦୁଯୁକ୍ତ ଖାଦ୍ୟ ଖାଇ ଗୀତ ଗାଇ ନାଚିଥାଆନ୍ତି । ଚାଷ ଜମିରେ ଚାଷକାର୍ଯ୍ୟ ଆରମ୍ଭର ସୂଚନା ଏବଂ ସୃଷ୍ଟିର ଆନନ୍ଦ, ଗଛମାନଙ୍କରେ ନୂଆପତ୍ର ମେଲିବାର ଆନନ୍ଦ, ଲତାମାନେ ଉପରକୁ ମାଡ଼ିବାର ଆନନ୍ଦ, ଆକାଶରେ ମେଘ ଗର୍ଜନର ଆନନ୍ଦ, ମରିଯାଇଥିବା ଘାସବୁଦାରେ ନୂଆଘାସ କଅଁଳିବାର ଆନନ୍ଦ, ରିକ୍ତ ପୃଥିବୀ ସିକ୍ତ ହେବାର ଆନନ୍ଦ, ଝାଲିଚର ବୁଡ଼ିଯିବାର ଆନନ୍ଦ, ପାହାଡ଼ ପର୍ବତରୁ ଝରଣା ବହି ଆସିବାର ଆନନ୍ଦ, ଲୁଇତ ନଦୀର ଦୁଇପାର୍ଶ୍ୱ ପାଣିରେ ଉଚ୍ଛୁଳି ପଡ଼ିବାର ଆନନ୍ଦ, ଆକାଶରେ ପବନର ମହାନନ୍ଦ, ମେଘର ନୃତ୍ୟ, ପୃଥିବୀରେ ବିହୁର ନୃତ୍ୟାନୃତ୍ୟରେ ଛନ୍ଦେ ଛନ୍ଦେ ମହାନନ୍ଦରେ ଅସମୀୟାର ହୃଦୟ ନାଚିଉଠେ ।(୧୦)

**ବିହୁ - କୃଷିଭିତ୍ତିକ ଉତ୍ସବ -** ଆସାମର ପ୍ରାଚୀନ ଅଧିବାସୀ କୃଷିଜୀବି ଅଷ୍ଟ୍ରଲୟଡ଼, ମଙ୍ଗୋଲୟଡ଼ ଅଥବା ଆର୍ଯ୍ୟମାନଙ୍କ ବିଶ୍ୱାସର ଆଧାରରେ ସୃଷ୍ଟି ହୋଇଥିବା ଏବଂ କାଳକ୍ରମେ ପରିଶୋଧିତ ରୂପରେ ଉଦ୍‌ଯାପନ କରି ଆସୁଥିବା କୃଷି ଉତ୍ସବର ଆଧୁନିକ ସଂସ୍କରଣ ବିହୁ ଅଟେ ।

ପଣ୍ଡିତମାନଙ୍କ ମତରେ ପ୍ରାଚୀନକାଳରେ କୃଷିଜୀବିମାନବ ବିଶ୍ୱାସ କରୁଥିଲେ ଯେ ଯଦି ବର୍ଷ ଆରମ୍ଭର ପ୍ରଥମ ଭାଗରେ ମୁନି ଋଷି ତଥା ନାରୀ, ଯୁବକ-ଯୁବତୀ ଆଦି ସମସ୍ତେ ମିଶି ନୃତ୍ୟଗୀତ, ବାଦ୍ୟଯନ୍ତ୍ରର ସମନ୍ୱୟରେ କୃଷି କ୍ଷେତ୍ରକୁ ସଂଗୀତ ମୁଖର କରି ତୋଳନ୍ତି, ତା ହେଲେ କୃଷି କ୍ଷେତ୍ରରେ ଉର୍ବରତା ବଢ଼ିଥାଏ ଏବଂ ପରବର୍ତ୍ତୀ ଋତୁରେ କୃଷି କ୍ଷେତ୍ରର ଉତ୍ପାଦନ ବର୍ଦ୍ଧିତ ହାରରେ ମିଳିଥାଏ । ଏହି ବିଶ୍ୱାସର ଆଧାରରେ ସେମାନେ ବର୍ଷ ଆରମ୍ଭରେ କୃଷିକ୍ଷେତ୍ରରେ ବାଦ୍ୟ, ଗୀତ ଏବଂ ନୃତ୍ୟର ସହାୟତାରେ ଏକ ଆନନ୍ଦ ମୁଖର ପରିବେଶର ସୃଚନା କରିଥିଲେ । (୧୧)

ଅସମୀୟା ଲୋକସାହିତ୍ୟର ବିଶିଷ୍ଟ ସମାଲୋଚକ, ଗବେଷକ ଡ଼ଃ ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀଙ୍କ ମତରେ ପ୍ରାଚୀନ ଭାରତର 'ବିଷୁବନ'ର ଅପୂର୍ବ ସାମଞ୍ଜସ୍ୟ ରହିଛି । ପ୍ରତିଟି ବିହୁ ଉତ୍ସବ ମଧ୍ୟରେ କୃଷିର ଶୁଭ ଆକାଙ୍‌କ୍ଷା ଜଡ଼ିତ ଅଛି । (୧୨) ବହାଗ ବିହୁ ସମୟରେ ଚାଷବାସ ପାଇଁ ଜମିକୁ ଉପଯୁକ୍ତ ଭାବେ ଉର୍ବର କରାଯାଇଥାଏ । ମଣିଷର ଆଦିମ ପ୍ରବୃତ୍ତି

ଆତ୍ମରକ୍ଷା ବା ବଂଶବୃଦ୍ଧି ଯେପରି କୃଷିକର୍ମ ମାଧ୍ୟମରେ ରୂପାୟିତ ହୋଇଥିଲା ଏହା ସାଧାରଣତଃ ନୃତ୍ୟଗୀତ ମାଧ୍ୟମରେ ହିଁ ପ୍ରକାଶ ପାଇଥିଲା । ପୃଥିବୀର ଅନ୍ୟାନ୍ୟ କେତେକ ଦେଶରେ ମଧ୍ୟ ଯୁବକ ଯୁବତୀ ମାନେ ମିଶି ଚାଷ ଜମିରେ ନୃତ୍ୟ କରୁଥିଲେ । ଜର୍ଜିୟାର '୨୩ମେ' ସେଣ୍ଟଜର୍ଜ୍ ଦିବସରେ ଏହି ଉତ୍ସବର ଆୟୋଜନ ହୋଇଥିଲା । ଚାଷ ଜମିରେ ପ୍ରଥମ କରି ଚାଷ ଗଢ଼ିବା ଉଦ୍ଦେଶ୍ୟରେ ୨୩ ମେ ଦିନ ରାତିପୁହା ଜଣେ ପୁରୋହିତ ଚାଷ ଜମିକୁ ଯାଇ ମନ୍ତ୍ରପଢ଼ି ଚାଷ ବୃଦ୍ଧିର କାମନା କରୁଥିଲେ । ଏହାପରେ ଯୁବକ ଯୁବତୀମାନେ କ୍ଷିପ୍ର ଗତିରେ ଚାଷ ଜମିକୁ ଯାଇ ତା'ଉପରେ ଗଡୁ ଥିଲେ । ସେମାନଙ୍କର ଧାରଣା ଥିଲା ଚାଷଜମିରେ ଏଭଳି ଗଡ଼ିଲେ ଜମିର ଫସଲ ବୃଦ୍ଧିପାଏ । ଭଲଫସଲ ପାଇଁ ସମୟ ଅନୁଯାୟୀ ବର୍ଷାର ଆବଶ୍ୟକ ଅଟେ । ବର୍ଷାର କାମନାରେ ଲୋକମାନେ ବେଙ୍ଗ-ବେଙ୍ଗୁଲୀର ବିବାହ କରୁଥିଲେ । ବିବାହ ସମୟରେ ଏହିପରି ଗାଉଥିଲେ-

" ବେଂର ବିୟା ଐ
ଜୋର୍‌ଜୋର୍ ବରଷୁଣ ଦିୟା ଐ"

ତେଣୁ ବର୍ଷାର କାମନା କରି ଆଦିମ ଯୁଗରୁ ପୁରୁଷ ତଥା ସ୍ତ୍ରୀଲୋକମାନେ ମିଳି ନୃତ୍ୟ କରୁଥିଲେ । ପ୍ରାଚୀନ କାଳରୁ ନାରୀ ପୁରୁଷକୁ ଘରକାମ ସହିତ ଚାଷ କାମରେ ସାହାଯ୍ୟ କରିଆସିଛି । ସେଥିପାଇଁ ନୃତ୍ୟଗୀତ ବେଳେ ନାରୀ ପୁରୁଷସହିତ ଯୋଗ ଦେଇଥାଏ । ସମୟକ୍ରମେ ନୃତ୍ୟଗୀତ ସହିତ ପରିବେଶଣ କରାଯାଉଥିବା ଢ଼ୋଲ, ପେଁପା(ଶିଙ୍ଗା) ଟକା ଆଦିର ଯାଦୁକରୀ ଅର୍ଥ ମଧ୍ୟ ରହିଛି । ଢ଼ୋଲର ଶବ୍ଦ ଯେପରି ମେଘର ଗର୍ଜନ ଭଳି ମନେ ହୋଇଥାଏ, ପେଁପାର ଶବ୍ଦ ବର୍ଷାର ମୂଷଳ ଧାରାର ଶବ୍ଦ ଏବଂ ଟକା ବାଦ୍ୟର ଶବ୍ଦକୁ ବ୍ରଜାପାତର ଶବ୍ଦ ସହିତ ତୁଳନା କରାଯାଇଛି । ତେଣୁ ଢୋଲ, ପେଁପା, ଟକାକୁ ବୈଶାଖର ମେଘର ଗର୍ଜନ ସହିତ ବର୍ଷାର ପ୍ରତିରୂପ ରୂପେ ତୁଳନା କରାଯାଇଛି । (୧୩)

ଅସମୀୟା 'ରଙ୍ଗିଲୀ' ଉପନ୍ୟାସରୁ ଜଣାଯାଇଥାଏ ଯେ ଆସାମରେ ବିହୁ ଉତ୍ସବ ପ୍ରଥମେ କେବଳ ଚାଷ ପଡ଼ିଆରେ ହିଁ ପାଳନ କରାଯାଉଥିଲା । ମରାଣ ଜନଜାତି ମଧ୍ୟରେ ବର୍ତ୍ତମାନ ବିହୁ କେବଳ ଚାଷ ପଡ଼ିଆରେ ପାଳନ କରାଯିବାର ନିୟମ ଅଛି । (୧୪) ବହାଗବିହୁ ପ୍ରକୃତରେ କୃଷିଭିତ୍ତିକ ଲୋକ ଉତ୍ସବ ଏବଂ ଏହା ସହିତ ଲୋକବିଶ୍ୱାସ, ଲୋକାଚାର ନୀତିର ନିବିଡ଼ ସଂପର୍କ ରହିଛି । ବହୁ ବର୍ଷ ଧରି ପାଳିତ ହୋଇ ଆସୁଥିବା ଲୋକାଚାର ନୀତି କୌଣସି ଆଧ୍ୟାତ୍ମିକ ଧ୍ୟାନ ଧାରଣା, ଧର୍ମ ଦର୍ଶନର ନୀତିନୁହେଁ ବରଂ

---

ଶବ୍ଦାର୍ଥ : ବେଂ-ବେଙ୍ଗ, ବିୟା- ବିବାହ, ବରଷୁଣ - ବର୍ଷା, ଟକା - ଏକ ପ୍ରକାର ବାଦ୍ୟଯନ୍ତ୍ର ।

ବେଦଗ୍ରାହ୍ୟଠାରୁ ବେଦବ୍ୟାହ୍ୟ  ନୀତି ଏଥିରେ ଅଧିକ ପରିମାଣରେ ରହିଛି । କୃଷି ଭିତ୍ତିକ ଜନମାନସରେ ଜନବିଶ୍ୱାସ ପ୍ରାଧାନ୍ୟ ଲାଭକରି ବିହୁ ଉତ୍ସବକୁ ସର୍ବାଙ୍ଗସୁନ୍ଦର କରି ଗଢ଼ି ତୋଳିଛି । ସେମାନଙ୍କର ଜନବିଶ୍ୱାସ ଯେ ଯୁବକ ଯୁବତୀମାନଙ୍କର ସମଦଳୀୟ ନୃତ୍ୟ-ଗୀତ, ବାଦ୍ୟ-ସଂଗୀତର ମୂର୍ଚ୍ଛନାରେ ବସୁନ୍ଧରା ଉର୍ବରା ହୋଇଥାଏ । ସଂଗୀତର ମୂର୍ଚ୍ଛନାରେ ଶସ୍ୟ ଅଙ୍କୁରିତ ହୋଇ ସୌନ୍ଦର୍ଯ୍ୟ ବୃଦ୍ଧି ସାଧନାରେ ବିପୁଳ ଇନ୍ଧନ ଯୋଗାଏ ଏବଂ ଏହି କ୍ଷେତ୍ରରେ ସଂଗୀତର ପ୍ରଭାବ କଥା ଆଧୁନିକ ବିଜ୍ଞାନ ମଧ ପ୍ରମାଣ କରିଛି ।

ଜମିକୁ ଉର୍ବରା କରିବାପରେ ଏଥିରେ ବିହନ ବୁଣାଯାଇଥାଏ । ଗଛ ଉଠିଲା ପରେ ବିଭିନ୍ନ ପ୍ରକାର ଯତ୍ନ ନେବାକୁ ହୁଏ । ଏହି ସମୟରେ କାର୍ତ୍ତିକ ବିହୁରେ ଭଲ ଫସଲ ପାଇବାର ମଂଗଳ କାମନା କରି କୃଷକ ଚାଷ ଜମିରେ ସଞ୍ଜଦୀପ ଜଳାଇ ଭୋଗରାଗ କରିଥାଏ । କାର୍ତ୍ତିକ ବିହୁପରେ ଧାନଜମିରେ ଧାନ ବଢ଼ିଥାଏ । ଏହାର କିଛିଦିନ ପରେ ଫସଲ ଅମଳର ସମୟ ପାଖେଇ ଆସେ । ଫସଲ ଅମଳ ପରେ ଆନନ୍ଦରେ ଚାଷୀ ଆଗାମୀ ବର୍ଷ ପାଇଁ ଘରେ ଖାଦ୍ୟ ରଖି ଖୁସୀରେ କେତୋଟି ଦିନ କଟାଇଥାଏ । ମାଘବିହୁରେ କୃଷକ ଖାଇପିଇ କିଛିଦିନ ପାଇଁ ବିଶ୍ରାମ କରେ । ସେଥିପାଇଁ ମାଘବିହୁକୁ 'କ୍ଷେତିଚପୋଆ' ବା ଫସଲ ଅମଳ ପର୍ବ କୁହାଯାଇଥାଏ । ଫସଲ ଆରମ୍ଭରୁ ଅମଳ ପର୍ଯ୍ୟନ୍ତ ବିଭିନ୍ନ ଅବସ୍ଥା ସହିତ ବିହୁପର୍ବ ପାଳନର ସଂପର୍କ ନିବିଡ଼ ଅଟେ । ଏହି ପର୍ବମାନଙ୍କ ମଧରେ ବିହୁପର୍ବ ଗୁଡ଼ିକ ଶ୍ରେଷ୍ଠ ଅଟେ । ସମସ୍ତ ବିହୁ ମଧରେ 'ବହାଗବିହୁ' ସବୁଠାରୁ ଅଧିକ ଆକର୍ଷଣୀୟ ଅଟେ । ଏହାକୁ ରଂଗାଲୀ ବିହୁ (Bihu of merriment) କୁହାଯାଏ । ଆଲୋଚକ ହେମ ବରୁଆଙ୍କ ମତରେ ରଂଗାଲି ବିହୁରେ ଲୋକମାନଙ୍କର ମନ ଆନନ୍ଦରେ ବିଭୋର ହୋଇଉଠେ । ମନଫୁର୍ତ୍ତିରେ ସେମାନେ ବହାଗ ବିହୁରେ ସ୍ୱତଃପ୍ରବୃତ୍ତ ଭାବେ ପ୍ରକୃତି କୋଳରେ ଗୀତଗାଇ ନାଚିଥାଆନ୍ତି । (୧୬)

ଗଛର କଅଁଳିଆ ପତ୍ରଦେଖି ମଣିଷର ମନ ପ୍ରଜାପତି ଭଳି ଉଡ଼ିବୁଲେ । କୃଷକ ସମାଜ ନୃତ୍ୟଗୀତ ସହିତ ପୂର୍ବପୁରୁଷ ଏବଂ ଦେବତା ମାନଙ୍କୁ ଶ୍ରଦ୍ଧା ଜ୍ଞାପନ କରି ଆନୁଷ୍ଠାନିକ ଭାବେ କେତେଗୁଡ଼ିଏ ଆଚାର ବା ନୀତିନିୟମ ଭିତରେ ବିହୁ ଉତ୍ସବ ପାଳନ କରି ଥାଆନ୍ତି । ସ୍ତ୍ରୀ ପୁରୁଷର ନୃତ୍ୟଗୀତ ଏବଂ ଆନୁଷ୍ଠାନିକ ମିଳନ ପୃଥିବୀର ଉର୍ବରାଶକ୍ତି ବଢ଼ାଏ ବୋଲି ପ୍ରାଚୀନ ବିଶ୍ୱାସ ରହିଆସିଛି । ଯେତେଦିନ ପର୍ଯ୍ୟନ୍ତ ଆସାମର ବିଭିନ୍ନ ଜନ ଗୋଷ୍ଠୀ ଚାଷବାସ ଉପରେ ନିର୍ଭର କରୁଥିଲେ ସେତେଦିନ ପର୍ଯ୍ୟନ୍ତ ବିହୁ ସମୟରେ ଘରଦ୍ୱାର ସଫା କରି ନାମ ବା ଭଜନ ଗାଇ ନୂଆ ନୂଆ ବସ୍ତ୍ର ପିନ୍ଧି ନୂତନ ବର୍ଷର ଆଗମନକୁ ଆନନ୍ଦରେ ଆହ୍ୱାନ କରୁଥିଲେ । ଏହି ସମୟରେ ଲୋକମାନେ ବର୍ଷର ଧାରକରଜ ଚାଷ ଅମଳ ପରେ ପରିଶୋଧ କରନ୍ତି । ଜମିବାଡ଼ିର ଚାଷ ମଣିଷର ଉପକାରୀ ଜୀବ ହିସାବରେ ଗୋରୁଗାଈର ସମ୍ମାନ

କରାଯାଇଥାଏ । ତେଣୁ ପରଂପରାଗତ ଭାବେ ଯେଉଁ ବିହୁ ଉତ୍ସବ ପାଳନ କରାଯାଇଥାଏ ଏହାର ଆଚାର ଭିତରେ ଜମିବାଡ଼ିର ଚାଷବାସ ଏବଂ ମାନବସମାଜ ତଥା ଗାଈଗୋରୁମାନଙ୍କର ମଂଗଳ ର ଭାବ ନିହିତ ଥାଏ । (୧୭)

**ବିଭିନ୍ନ ଜନଜାତିମାନଙ୍କ ମଧ୍ୟରେ କୃଷିଭିତ୍ତିକ ଉତ୍ସବ ବିହୁ** - ବହାଗବିହୁ ମୁଖ୍ୟତଃ କୃଷି ଉତ୍ସବ । ବହାଗ ବା ବୈଶାଖ ବିହୁର ରୀତିନୀତି କୃଷିଜୀବି ଆଦିମ ସମାଜର ଆଶା-ଆକାଙ୍କ୍ଷାର ଆଚରଣମୂଳକ ଅନୁଷ୍ଠାନର ପ୍ରତିଫଳନ । ପୃଥିବୀର କୃଷିଜୀବି ଆଦିମ ସମାଜ ଭଳି ବହୁ ଜନଗୋଷ୍ଠୀମାନଙ୍କ ମଧ୍ୟରେ କୃଷିକାର୍ଯ୍ୟର ଆରମ୍ଭରୁ ଶସ୍ୟକ୍ଷେତ୍ରକୁ ଅଧିକ ଉର୍ବରା କରି ଅଧିକ ଶସ୍ୟଫଳନ ଆଶାରେ ବିହୁପର୍ବ ସମୟରେ କେତେଗୁଡ଼ିଏ ଆଚାର ଅନୁଷ୍ଠାନ ପାଳନ କରାହୋଇଥାଏ । ଏହି ଆଚାର ଅନୁଷ୍ଠାନ ମଧ୍ୟରେ ସ୍ଥାନ ଭେଦରେ କେତେଗୁଡ଼ିଏ ସାମାନ୍ୟ ପାର୍ଥକ୍ୟ ଥିଲେ ହେଁ ଏହି ଅନୁଷ୍ଠାନ ବା ଉତ୍ସବର ମୌଳିକ ଉପାଦାନ ଏବଂ ଉଦ୍ଦେଶ୍ୟର ସମଧର୍ମୀତା ଅତ୍ୟନ୍ତ ଉଲ୍ଲେଖନୀୟ ଅଟେ । (୧୮)

ଆସାମର ଡ଼ିମାସା ଜନଜାତିମାନଙ୍କର ବିହୁ ଉତ୍ସବ 'ବୁସୁ' ନାମରେ ପାଳନ କରାଯାଇଥାଏ । ଶସ୍ୟ ବୃଦ୍ଧି ଉଦ୍ଦେଶ୍ୟରେ ଶସ୍ୟର ଦେବତା ବ୍ରାଇ ଶିବାଇ ଏବଂ ମେଘପବନର ଦେବତା ଦେବୀ ଗାମାଡ଼ୀ ବା ପାର୍ବତୀଙ୍କୁ ଡ଼ିମାସାମାନେ ପୂଜା କରନ୍ତି । ଭୋଜିଭାତ ଖାଇ ଯୁବକଯୁବତୀମାନେ ଏକା ସାଙ୍ଗରେ ମିଶି ନୃତ୍ୟ କରିବା ହିଁ ଏହି ଉତ୍ସବର ପ୍ରଧାନ ଆକର୍ଷଣ ।

ଟିଓ୍ୱାମାନେ ଚୈତ୍ର ବୈଶାଖର ସଂକ୍ରାନ୍ତିର ପ୍ରଥମ ବୁଧବାର ଦିନ ବିହୁ ପାଳନ ଆରମ୍ଭ କରନ୍ତି । ଏହିଦିନ ଚାଷବାସର ପ୍ରଧାନ ଉପକରଣ ହିସାବରେ ଲଙ୍ଗଳ ଯୁଆଳି ଆଦିକୁ ଆନୁଷ୍ଠାନିକ ଭାବେ ଧୋଇ ପୂଜା କରନ୍ତି । ଏହାପରେ ଗୋ-ପୂଜା କରାଯାଇଥାଏ । ଦ୍ୱିତୀୟଦିନ ହୁଁଚରି ଏବଂ କାଦୁଅନାଚ ଆରମ୍ଭ ହୁଏ । ବୋଲ୍ଲା ନାଚ ବିଲ ପାଣି ଥିବା ଖାଲୁଆ ଜାଗାରେ ଯୁବକ ଯୁବତୀମାନେ ମିଶି ନାଚିଥାଆନ୍ତି । ଏହି ନାଚରେ ନୃତ୍ୟଗୀତ ସହିତ ଯୁବକ ଯୁବତୀମାନେ ପରସ୍ପରକୁ ଥଟ୍ଟା ପରିହାସ କରି ଥାଆନ୍ତି । ବୋକାନାଚରେ ଧାନବୁଣା, ଢିଙ୍କି କୁଟିବା, ମାଛ ଧରିବା, ଶୀକାର କରିବା ଆଦି ଅଭିନୟଧର୍ମୀ ଭଂଗୀ ଥାଏ । ଏହି ନାଚପରେ ପରବର୍ତ୍ତୀ ବୁଧବାରଦିନ ବିହୁପର୍ବର ସମାପ୍ତି ଘଟିଥାଏ ।

ରାଭା ଜନଜାତି ମଧ୍ୟରେ ବୈଶାଖ-ଜ୍ୟେଷ୍ଠ ମାସରେ ଚାଷକାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ 'ବାୟାଖୋ' ଉତ୍ସବ ପାଳନ କରାଯାଇଥାଏ । ସାଧାରଣତଃ ବର୍ଷାହେଲେ ଅଧିକ ସନ୍ତାନ ଏବଂ ଶସ୍ୟର କାମନା କରି ଦେବତାଙ୍କ ଉଦ୍ଦେଶ୍ୟରେ ବଳି ଦିଆଯାଇ 'ବାୟାଖୋ' ବା ଖୋକ୍‌ଚି ପୂଜା ପାଳନ କରାଯାଇଥାଏ । ଏହି ପର୍ବରେ ପ୍ରାପ୍ତବୟସ୍କ ରାଭାଜନଜାତିର

ଯୁବକ ଯୁବତୀମାନେ ଅବାଧରେ ମିଳାମିଶା କରି ବିଭିନ୍ନ ପ୍ରକାର ଥଟ୍ଟା ତାମସା ପରିବେଶଣ କରିଥାଆନ୍ତି । ଏହି ସମୟରେ ସେମାନେ ନୃତ୍ୟ ପରିବେଶଣ କରି ସମର (Summer) ଗୀତ ଗାଇଥାଆନ୍ତି । ବାୟଖୋ ପୂଜା ଶେଷ କରି ଘରକୁ ଫେରି ଯୁବକ ଯୁବତୀମାନେ ଦୁଇଦଳ ହୋଇ ଗୋଟିଏ ଲମ୍ବା ଏବଂ ବଡଲତାର ଦୁଇମୁଣ୍ଡକୁ ଧରି ଦୁଇ ଦଳ ଦୁଇପଟୁ ଟାଣିଥାଆନ୍ତି । ରାଭାମାନଙ୍କ ଭଳି ହାଜଂମାନଙ୍କ ଭିତରେ ଏହିଭଳି ବିହୁସମୟରେ ଲତାକୁ ଦୁଇମୁଣ୍ଡରୁ ଦୁଇଦଳ ଧରି ଟାଣିବା ପ୍ରଥା ମଧ୍ୟ ଅଛି । ଆସାମର ପଶ୍ଚିମ ପ୍ରାନ୍ତରର ରାଜବଂଶୀମାନେ ମଧ୍ୟ ବିଷୁଓ୍ୱା ଉତ୍ସବ ସମୟରେ ଶୀକାରକୁ ଯିବାର ପ୍ରଥା ପୂର୍ବରୁ ପ୍ରଚଳିତ ଥିଲା ବୋଲି ଜଣାଯାଇଥାଏ ।

ମିଶିଂ ଜନଜାତିମାନଙ୍କ ମଧ୍ୟରେ ଆହୁଧାନ (ଏକ ପ୍ରକାର ସୁବାସଯୁକ୍ତ ଧାନ) ଚାଷ କରିବା ପୂର୍ବରୁ 'ବିହୁ ଆଲି ଆଇ ଲୃଗାଂ' ନାମରେ ବିହୁପର୍ବ ପାଳନ କରାଯାଇଥାଏ । ଏହି ପର୍ବ ଫାଲ୍‌ଗୁନ ମାସର ପ୍ରଥମ ବୁଧବାର ଦିନ ଆରମ୍ଭ ହୁଏ । ବିହୁଦିନ ଘରେ ଘରେ କଂସାଧାତୁ ନିର୍ମିତ ବାଦ୍ୟ ବଜାଇ ମେଘଦେବତାକୁ ମେଘ ଦେବାପାଇଁ ଜଗାଇ ଦିଆଯାଇଥାଏ । ଉପରବେଳା ଚାଷବାସର ବିଭିନ୍ନ ସରଞ୍ଜାମ ପୂଜା କରାଯାଇଥାଏ ।

କାମରୂପର ମଙ୍ଗଳଦୈ ଏବଂ ଗୋଆଲପରାର ଜନଜାତୀୟ ଲୋକସମାଜ ଭିତରେ କୃଷିକୈନ୍ଦ୍ରିକ ବିହୁ ଉତ୍ସବର ଲୌକିକ ରୂପ 'ଭଠେଲି', 'ସରି', 'ରାଶପୂଜା', 'ହୁଦୁମ ପୂଜା' ଆଦି ଅନୁଷ୍ଠାନ ମାଧ୍ୟମରେ ରଖାଯାଇଛି । x x x ଦକ୍ଷିଣ କାମରୂପର ହରି ବା ସୁଁବ୍‌ରୀ ଉତ୍ସବ ମୁଖ୍ୟତଃ ଶସ୍ୟ କ୍ଷେତ୍ରରେ ଉର୍ବରତା କାମନା କରି ପାଳନ କରାଯାଉଥିଲା ।

ମଙ୍ଗଳଦୈ ଅଞ୍ଚଳରେ ପାଳନ କରାଯାଉଥିବା 'ଦେଉଳ ଉତ୍ସବ'ରେ ବିହୁଭଳି ଗୀତ-ନାଚର ପ୍ରଚଳନ ରହିଥିଲା । ଏହିଭଳି ଗୀତ ତଥା ନାଚ ମାଧ୍ୟମରେ ଶସ୍ୟକ୍ଷେତ୍ରକୁ ଅଧିକ ଉର୍ବରା କରି ଅଧିକ ଶସ୍ୟଉତ୍ପାଦନର ସହିତ ସନ୍ତାନ ଉତ୍ପାଦନର କାମନା ମଧ୍ୟ ନିହିତ ଥିଲା । ଗୋଆଲପରାର ରାସପୂଜା ବା ମଦନ କାମପୂଜା ଏବଂ ହୁଦୁମ ପୂଜାରେ କୃଷି ନିର୍ଭର ସମାଜର ଶସ୍ୟ ଏବଂ ସନ୍ତାନ ଉତ୍ପାଦନର କାମନା ନିହିତ ରହିଛି । (୧୯)

ଆସାମ ଏକ କୃଷିପ୍ରଧାନ ଦେଶ । ସେଥିପାଇଁ ଆସାମରେ ବସବାସ କରୁଥିବା ବିଭିନ୍ନ ଜନଗୋଷ୍ଠୀ ସମୂହର ସମସ୍ତ ଉତ୍ସବ ପାର୍ବଣର କୃଷି ସହିତ ସମ୍ବନ୍ଧ ଓତଃପ୍ରୋତ । ଆଓନଗାମାନେ 'ମେ' ମାସର ପ୍ରଥମ ସପ୍ତାହରେ 'ଚୌଁବାଇଟୁ' ଉତ୍ସବ ପାଳନ କରନ୍ତି । ସ୍ୱର୍ଗର 'ଗାଇ୍‌ଦେବତାଙ୍କୁ' ଜମିର ଫସଲ ଶସ୍ୟଶ୍ୟାମଳା କରିବା ପାଇଁ ଭଣ୍ଡାରରେ ଧାନ ଭର୍ତ୍ତିକରି ଦେବାପାଇଁ ପୂଜା କରାଯାଇଥାଏ । ବିଷୁ, ବିଚୁ, ବୈଶାଗୁ ବା ବିହୁ- ଯାହା ହେଉନା କାହିଁକି ନୂଆବର୍ଷର ଆରମ୍ଭରେ ଅର୍ଥାତ୍ ବସନ୍ତ କାଳରେ ବା ବହାଗ ମାସର

ଆରମ୍ଭରେ ଆଁସାମର ସମୂହ ଜନଗୋଷ୍ଠୀମାନେ ନିଜ ନିଜ ସ୍ୱକୀୟ ବୈଶିଷ୍ଟ୍ୟରେ ପାଳନ କରୁଥିବା ଆନନ୍ଦ ଉତ୍ସବଗୁଡିକ ସହିତ କୃଷି ସରଞ୍ଜାମ ଯେପରି ଗୋରୁ, ମଇଁଷୀ, ବାଡ଼ି, ଧନର ଦେବୀ ଲକ୍ଷ୍ମୀ, ମଞ୍ଜିବୁଣା ଆଦି କାର୍ଯ୍ୟର ଗଭୀର ସଂପର୍କ ରହିଛି । ଆସାମର କେତେଗୁଡିଏ ଜନଗୋଷ୍ଠୀ ସମୂହ ମଧ୍ୟରେ ପ୍ରଚଳିତ କେତେଗୁଡିଏ ପରଂପରା ସମୟ ଗର୍ଭରେ ହଜିଯାଇଛି ଅଥବା ଅସମୀୟା ଜାତି ସହିତ ବିଲୀନ ହୋଇ ଯାଇଛି । ତଥାପି ଆସାମର ବିଭିନ୍ନ ପ୍ରାନ୍ତରରେ ଆଜି ମଧ୍ୟ ପରମ୍ପରାଗତ ବୈଶିଷ୍ଟ୍ୟରେ ନିଜନିଜ କୃଷି ସଂସ୍କୃତିକୁ ଲୋକମାନେ ଅବ୍ୟାହତ ରଖିଛନ୍ତି । ତନ୍ମଧ୍ୟରୁ କେତେଗୁଡିଏ ଜନଗୋଷ୍ଠୀର ବସନ୍ତ ଉତ୍ସବ କୃଷି ସହିତ ଜଡ଼ିତ ଅଟେ ।

ବଡ଼ୋମାନଙ୍କର ବୈଶାଗୁ ଉତ୍ସବରେ ଯୁବତୀମାନେ ନାଚିଲେ ପୃଥିବୀ ଶସ୍ୟଶ୍ୟାମଳା ହୁଏ ବୋଲି ବଡ଼ୋଜନଜାତିରେ ବିଶ୍ୱାସ ରହିଛି । ବୈଶାଖ ମାସରେ ବଡ଼ୋମାନେ 'ବୈଶାଗୁ' ଉତ୍ସବ ପାଳନ କରନ୍ତି । ବଡୋମାନଙ୍କ ଭଳି ମିଶିଂମାନେ ବୃହତ୍ ମଙ୍ଗୋଲୀର୍ୟ ପ୍ରଜାତିର ଗୋଟିଏ ଶାଖା ଅଟନ୍ତି । ପୂର୍ବରୁ ଏମାନେ ଅରୁଣାଚଳରେ ବସବାସ କରୁଥିଲେ । ପରେ ପର୍ବତରୁ ଆସି ଏମାନେ ସମତଳର ନଦୀ କୂଳରେ ବସବାସ କରିଲେ । ବର୍ତ୍ତମାନ ଆସାମର ବିଭିନ୍ନ ଜିଲ୍ଲାର ନଦୀର ପାର୍ଶ୍ୱବର୍ତ୍ତୀ ସ୍ଥାନରେ ଏମାନଙ୍କର ଘନବସତି ଦେଖାଯାଏ । ଆସାମରେ ସମ୍ଭବତଃ ମିଶିଂମାନେ ସର୍ବପ୍ରଥମେ ବସନ୍ତକୁ ଆଦରି ନେଇଥିଲେ । ବସନ୍ତ ଆଗମନର ସଂଗେ ସଂଗେ ମିଶିଂମାନେ 'ଆଲିଆଇ ଲୃଗାଂ' ନାମକ କୃଷି ଉତ୍ସବଟି ପାଳନ କରିଥାଆନ୍ତି । ଏହି ଉତ୍ସବ ମିଶିଂମାନଙ୍କର ସ୍ୱକୀୟ ସାଂସ୍କୃତିକ ବୈଶିଷ୍ଟ୍ୟ । ଫାଲ୍‌ଗୁନ ମାସର ପ୍ରଥମ ବୁଧବାର ଦିନ ଏହି ଉତ୍ସବ ପାଳନ କରାହୁଏ । ଉତ୍ସବର ପ୍ରଥମ ଦିନ ଗୃହସ୍ଥ ନିଜ ନିଜ୍ଜ ଜମିରେ ମେଗେଲାଗଛ (ବେଣା)ର ଡ଼ାଳ ପୋତି ଶସ୍ୟର ବୀଜ ସିଞ୍ଚିଥାଆନ୍ତି । ଏମାନେ ତରାପତ୍ରରେ (ଏକପ୍ରକାର ଗଛ) ମଦ ରଖି ପୂର୍ବପୁରୁଷ ତଥା ଅଦୃଶ୍ୟ ଦ୍ଦେବାଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥାଆନ୍ତି । ପରିବାରକୁ ରୋଗମୁକ୍ତ କରି ଦୀର୍ଘାୟୁ କରିବା ସଂଗେ ସଂଗେ କୃଷିର ସୁଫଳ ଲାଭ କାମନା ଉଦ୍ଦେଶ୍ୟରେ ପୂର୍ବପୁରୁଷ ତଥା ଦେବାଦେବୀଙ୍କୁ ପୂଜା ଦେଇଥାଆନ୍ତି ।

ସେହିଦିନ ଉପରବେଳା ମାଛମାଂସ ଏବଂ ମଦର ଆୟୋଜନ କରାଯାଇଥାଏ । ଏହା ସହିତ ରାତିରେ ଭୋଜିଭାତ କରି ବହୁ ଆଡମ୍ବରରେ ବିହୁ ଉତ୍ସବ ପାଳନ କରାଯାଇଥାଏ । ରାତିରେ ଯୁବକଯୁବତୀମାନେ ନନଫୁଲାଣିଆ ଗୀତ ଗାଇ ଖୁବ୍ ଉତ୍ସାହରେ ନାଚି ଥାଆନ୍ତି । ଏହି ନାଚକୁ 'ଗୁମରାଗ-ଚ-ମାନ' ନାଚ କୁହାଯାଇଥାଏ । ଏହି ନୃତ୍ୟଗୀତରେ ଗାଆଁର ସମସ୍ତେ ଭାଗନେଇ ଥାଆନ୍ତି । ଏହିଦିନ ପରଠୁ ନଅଦିନ ପର୍ଯ୍ୟନ୍ତ ମିଶିଂମାନେ ଜୀବବଧ କରନ୍ତି ନାହିଁ, ବାଉଁଶ, କାଠ ଆଦି ଫଟାନ୍ତି ନାହିଁ କିମ୍ବା ମାଟି ଖୋଳନ୍ତି ନାହିଁ ଏବଂ ରାଗ ତଥା ଖଟା ଜାତୀୟ ଦ୍ରବ୍ୟ ଖାଆନ୍ତି ନାହିଁ । ଏଭଳି ଖାଦ୍ୟ ଖାଇଲେ ଶସ୍ୟଗୁଡିକୁ

ପୋକ ତଥା ପିମ୍ପୁଡି ନଷ୍ଟ କରିଦିଅନ୍ତି ବୋଲି ମିଶିଂମାନେ ଭାବିଥାଆନ୍ତି । ମିଶିଂମାନେ ବିହୁ ପରିବେଷଣ ବେଳେ ଢୋଲ, ତାଳ, ପେଁପା, ଟକା, ଗଗନା ଆଦି ବାଦ୍ୟଯନ୍ତ୍ର ବ୍ୟବହାର କରିଥାଆନ୍ତି ।

ମିଶିଂମାନଙ୍କ ଭଳି ଦେଉରୀମାନେ ମୁଖ୍ୟତଃ ଲକ୍ଷ୍ମୀପୁର, ଢେମାଜି, ଦିବ୍ରୁଗଡ଼ ଏବଂ ଶିବସାଗର ଜିଲ୍ଲାର ନଦୀର ଆଖପାଖ ଅଞ୍ଚଳରେ ବସବାସ କରିଥାଆନ୍ତି । ଆସାମର ଅନ୍ୟାନ୍ୟ ଜନଗୋଷ୍ଠୀମାନଙ୍କ ଭଳି କୃଷିଜୀବି ଦେଉରୀମାନଙ୍କର ରଂଗାଲି ବିହୁ ହିଁ ପ୍ରଧାନ ଉତ୍ସବ । ଦେଉରୀମାନେ ବିହୁକୁ 'ବିଷୁ' ବୋଲି କହିଥାଆନ୍ତି । ଦେଉରୀମାନଙ୍କର ବିହୁ ସହିତ ଧର୍ମୀୟ ଆଚାର-ବ୍ୟବହାରର ରୀତିନୀତି ଓତଃପ୍ରୋତ ଭାବେ ଜଡ଼ିତ । ଏମାନେ ଦେବାଳୟରେ ବଳିବିଧାନ ପ୍ରଥାରେ ବିହୁର ଶୁଭାରମ୍ଭ କରନ୍ତି । ବିହୁ ଉତ୍ସବରେ ଦେଉରୀମାନେ 'ବିଷୁ' ନୃତ୍ୟ ପରିବେଷଣ କରନ୍ତି । ସେମାନଙ୍କର ବିଷୁ ନୃତ୍ୟ ସହିତ ଆସାମର ଦେଓଧ୍ୱନୀ ନୃତ୍ୟର ସମ୍ବନ୍ଧ ଓତଃପ୍ରୋତ ଭାବେ ଜଡ଼ିତ । ଏହି ନୃତ୍ୟ ମାଧ୍ୟମରେ ଆଗାମୀ ବର୍ଷଟି ବିଷୟରେ ଆଗୁଆ ସଙ୍କେତ ଦିଆଯାଇଥାଏ ବୋଲି ଦେଉରୀ ଜନଜାତି ବିଶ୍ୱାସ କରିଥାଆନ୍ତି ।

ଆସାମର ଉତ୍ତରକାଚାର ପାର୍ବତ୍ୟ ଜିଲ୍ଲା ଏବଂ ତା'ର ଆଖପାଖରେ ବସବାସ କରୁଥିବା ଡିମାସାକଚାରୀମାନେ ନିଜର କୃଷି ସଂସ୍କୃତିରେ ସମୃଦ୍ଧିଶାଳୀ ଏକ ପାହାଡ଼ିଆ ଜନଜାତି ଅଟନ୍ତି । ଏମାନଙ୍କର ସବୁଠାରୁ ବଡ଼ ଏବଂ ଆନନ୍ଦଦାୟକ ତଥା ମନୋରଞ୍ଜକ ଉତ୍ସବ ହେଉଛି 'ବିଷୁ' । ଏହି ଉତ୍ସବ ପାଳନ କରିବାର କୌଣସି ନିର୍ଦ୍ଦିଷ୍ଟ ଦିନବାର ନଥିଲେ ହେଁ ସାଧାରଣତଃ ଫସଲ ଅମଳ ପରେ ନଭେମ୍ବର ମାସରୁ ମାର୍ଚ୍ଚର ବସନ୍ତକାଳର ଆଗମନର ଆଗାମୀ ପାଗ ଆସିବାର ସମୟ ମଧ୍ୟରେ ଗାଁର ଲୋକମାନେ ଏହି ଉତ୍ସବ ପାଳନ କରିଥାଆନ୍ତି ।

ରାଭା ଜନଜାତିମାନଙ୍କ ମଧ୍ୟରେ ପାଳନ କରାଯାଉଥିବା 'ଖକ୍‌ଚି' ପୂଜା ମୁଖ୍ୟତଃ କୃଷିଭିତ୍ତିକ ଉତ୍ସବ ଅଟେ । ସେଥିପାଇଁ ଶସ୍ୟର ଅଧିଷ୍ଠାତ୍ରୀ ଦେବୀ ଖକ୍‌ଚିଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଏହି ପୂଜାରେ ଦେବୀଙ୍କ ସମ୍ମୁଖରେ ବଡ଼ ଘୁଷୁରି ବଳି ଦିଆଯାଇଥାଏ । ରାଭାମାନଙ୍କର ବିଶ୍ୱାସ ଯେ ଏଭଳି ଘୁଷୁରି ବଳି ଦେଲେ ଚାଷ ଜମିରେ ପ୍ରଚୁର ପରିମାଣରେ ଶସ୍ୟ ଉତ୍ପାଦିତ ହୁଏ । ଖକ୍‌ଚି ପୂଜା ସମୟରେ ଯୁବକଯୁବତୀମାନଙ୍କୁ ମିଳିତ ହେବାର ସୁଯୋଗ ଦିଆଯାଇଥାଏ । ଏହି ପୂଜା ସମୟରେ ଯୁବକଯୁବତୀମାନେ ଗୀତଗାଇ ପରସ୍ପର ପ୍ରତି ପ୍ରଣୟାସକ୍ତ ହୋଇଥାଆନ୍ତି । ଏହି ସମୟରେ ରାଭାମାନେ ନିଜର ପାରମ୍ପରିକ ରୀତିନୀତି ମଧ୍ୟରେ ହୋଲିଖେଳ ପାଳନ କରନ୍ତି । ଏହି ହୋଲି ଉତ୍ସବକୁ 'ଦେଉଳଉତ୍ସବ' ବୋଲି କହିଥାଆନ୍ତି । ଦେଉଳ ଉତ୍ସବରେ କୃଷିଜୀବି ରାଭାମାନେ ବିଶ୍ୱାସ କରନ୍ତି ଯେ ଦୌଲ

ଉତ୍ସବରେ ଦେବଦେବୀଙ୍କୁ ସନ୍ତୁଷ୍ଟ କରିପାରିଲେ ଫସଲ ଜମି ଶସ୍ୟରେ ଭରପୂର ହୁଏ । (୨୦)

ଅରୁଣାଚଳ ପ୍ରଦେଶର କାମେଙ୍ଗ ଜିଲ୍ଲାର ଚେରଦୁକପେନ ଏବଂ ମନପାମାନଙ୍କ ମଧ୍ୟରେ ପାଳିତ ହେଉଥିବା 'ଲୋସେ' ନାମକ କୃଷି ଉତ୍ସବ ସହିତ 'ବିହୁ' ଉତ୍ସବର ସାମଞ୍ଜସ୍ୟ ରହିଛି । ସେହିଭଳି ଆପାଟାନିମାନଙ୍କ (ଅରୁଣାଚଳ ପ୍ରଦେଶର ଜନଜାତି) ମଧ୍ୟରେ 'ମଲକୋ', 'ଡଫ୍‌ଲା' ଜନଜାତିମାନଙ୍କ ମଧ୍ୟରେ 'ଚିରମ-ମାଲ୍ୟୋସ୍ୱମ', ଗାଲଙ୍ଗ ଜନଜାତି ମଧ୍ୟରେ 'ମାପିନ' ନାମକ କୃଷି ଉତ୍ସବ ପାଳନ କରାଯାଇଥାଏ, ଯାହା ସହିତ ବିହୁ ଉତ୍ସବର ବହୁ ସାମଞ୍ଜସ୍ୟ ରହିଛି । ସେହିଭଳି ମିଜୋରାମର ଲାଖେର ଜନଜାତି ମାନଙ୍କ ମଧ୍ୟରେ 'ପଖୁପିଲା' ଏବଂ ମେଘାଳୟର ଗାରୋଜନଜାତିମାନଙ୍କ ମଧ୍ୟରେ 'ରଂସୁଗାଲା' ଏବଂ 'ଓହ୍ୱାଗାଲା' ଆଦି ବିଭିନ୍ନ କୃଷି ଉତ୍ସବ ପାଳନ କରାଯାଇଥାଏ ।

ମିଜୋରାମର କୁକି ଜନଜାତିମାନେ ଚାଷପୂର୍ବରୁ ଚାରିଦିନ ଧରି ଆରେମ୍ (Arem) ଉତ୍ସବ ପାଳନ କରନ୍ତି ଏବଂ ଭଲଚାଷ ପାଇଁ ସେମାନେ 'ଚାପ-ଚାରକୁଟ' (Chap-Charkut) ଉତ୍ସବ ପାଳନ କରିଥାଆନ୍ତି । ମଣିପୁରର ପୁରୁମମାନେ (Purum ଜନଜାତି) ଫସଲ ଅମଳ ପରେ ଏବଂ ଚାଷ ଆରମ୍ଭ ପୂର୍ବରୁ ସେମାନଙ୍କର ପ୍ରଧାନ ଦେବତା 'ନଂସୁଙ୍ଗ୍‌ବା' (Nung Chungba)ଙ୍କୁ ନୃତ୍ୟଗୀତ ମାଧ୍ୟମରେ ଭୋଜିଭାତ ଆଦି ଦେଇ ସାତଦିନ ଧରି ପୂଜା କରିଥାଆନ୍ତି ।

ଭାରତ ତଥା ଭାରତର ଉତ୍ତର ପୂର୍ବାଞ୍ଚଳର ଅନେକ ଉତ୍ସବ ସହିତ ବିହୁ ଉତ୍ସବର ଯେ ସାମଞ୍ଜସ୍ୟ ରହିଛି ଏବଂ ବିହୁ ଉତ୍ସବର ମୁଖ୍ୟ ଉପାଦାନ କୃଷି ଏଥିରେ ସନ୍ଦେହର ଅବକାଶ ନାହିଁ । ସେହି ଦୃଷ୍ଟିରୁ ଏହାକୁ କୃଷି ଉତ୍ସବ କହିବା ଅଧିକ ସମିଚୀନ ଅଟେ ।

**ବିହୁ-ଯୌନଭିତ୍ତିକ କୃଷି ଉତ୍ସବ ଓ ଯାଦୁ ସହିତ ସମନ୍ୱିତ**— ବିହୁ ଉତ୍ସବର ମୁଖ୍ୟ ଉଦ୍ଦେଶ୍ୟ କୃଷି ଉତ୍ପାଦନ । ସେଥିପାଇଁ ଏହାକୁ କୃଷିଭିତ୍ତିକ ଉତ୍ସବ କୁହାଯାଇଥାଏ । ବର୍ଷର ପ୍ରଧାନ ଚାଷବାସ ପାଗର ସୂଚନା ବୈଶାଖ ବିହୁ ଦେଇଥାଏ । ଭଲ କୃଷିପାଇଁ ଉର୍ବରତାର ପ୍ରୟୋଜନ । ଆଦିମ ମଣିଷ ସମାଜରେ ବିଶ୍ୱାସ କରାଯାଉଥିଲା, ନାରୀ ଏବଂ ପୃଥିବୀର ଜରାୟୁ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ସନ୍ତାନ ଜନ୍ମଦେବା ପାଇଁ ଯେଭଳି ନାରୀର ଉର୍ବରତାର ପ୍ରୟୋଜନ, ସେହିଭଳି ଧରିତ୍ରୀ ମାତା ଶସ୍ୟସମ୍ଭବା ହେବାପାଇଁ ଉର୍ବରତାର ପ୍ରୟୋଜନ । ଯୁବକଯୁବତୀମାନଙ୍କର ନୃତ୍ୟଗୀତ ମାଧ୍ୟମରେ ଧରିତ୍ରୀର ଉର୍ବରତା ବୃଦ୍ଧି ପାଇଥାଏ ବୋଲି ବିଶ୍ୱାସ କରାଯାଇଥାଏ । ସେଥିପାଇଁ ଆଦିମ କାଳରେ ଚାଷଜମିରେ ନୃତ୍ୟଗୀତର ଆୟୋଜନ କରାଯାଉଥିଲା । ଏପରିକି ଧରିତ୍ରୀ ଉପରେ ଯୌନ ଆଚାର

ଆଦି ବସୁମତୀ ମାତାର ଉର୍ବରତା ବୃଦ୍ଧି କରିଥାଏ ବୋଲି ଆଦିମ କାଳରୁ ମାନବମାଙ୍କ ବିଶ୍ୱାସ କରିଆସିଛି । ଛୋଟନାଗପୁରରେ 'ହୋ' ନାମକ ଜନଜାତି ମଧ୍ୟରେ ପ୍ରଚଳିତ କୃଷି ଉତ୍ସବରେ ଯୁବତୀମାନଙ୍କୁ ସଂପୂର୍ଣ୍ଣଭାବେ ଯୌନ ସ୍ୱାଧିନତା ଦେବାର ପ୍ରଥା ବିଦ୍ୟମାନ ଅଟେ । ଓଡିଶାର 'ଭୂୟାଁ' ଜନଜାତି ମଧ୍ୟରେ 'ମାଘପୋରାଇ' ଉତ୍ସବରେ ଯୁବତୀମାନଙ୍କୁ ଯୌନସ୍ୱାଧିନତା ଦେବାର ଦେଖାଯାଇଥାଏ । ଆସାମରେ 'ମା' ବସୁମତୀର ଉର୍ବରତା ବୃଦ୍ଧି କାମନା କରି ଯୁବକଯୁବତୀମାନଙ୍କୁ ଯୌବନର ନିର୍ଦ୍ଦୋଷ ନାଚ ନାଚିବା ପାଇଁ ସ୍ୱାଧିନତା ଦିଆଯାଇଥାଏ । ଋଷିଆର କେତେକ ସ୍ଥାନରେ ସ୍ୱୟଂ ପୁରୋହିତ ଯୁବତୀମାନଙ୍କ ସହିତ ଚାଷଜମିକୁ କ୍ଷିପ୍ରଗତିରେ ଯାଇ ଗଡିଥିବା ପ୍ରଥାର ପ୍ରଚଳନ ଦେଖାଯାଇଥାଏ । ନୀଳଗିରି ପର୍ବତରେ ବାସ କରୁଥିବା 'କୋଟ' ସମାଜରେ ଯୁବତୀମାନଙ୍କୁ ଯୌନ ସ୍ୱାଧିନତା ଦେବାର ପ୍ରଥା ବିଦ୍ୟମାନ । ଯୌନ ଆଚାର ପୃଥିବୀମାତାର ଉର୍ବରତା ବୃଦ୍ଧି କରେ ବୋଲି ବିଶ୍ୱାସ କରି ମି. Briffault ଏହିଭଳି ଭାବେ କହିଛନ୍ତି- "The belief that sexual act assists the promotion of abundant harvest of the earth's fruits and is indeed indispensable to secure it, universal in the lower phases of culture". ସେଥିପାଇଁ ବିହୁ ଉତ୍ସବ ସମତା, ସମାହରଣ ଏବଂ ସଂପ୍ରୀତିର ପ୍ରତୀକ ଅଟେ । (୨୧)

ଆଦିମ କୃଷିଜୀବି ସମାଜର ଲୋକବିଶ୍ୱାସ ଆଜି ବୈଜ୍ଞାନିକ ସତ୍ୟରେ ପରିଣତ ହୋଇଛି । ସଂଗୀତର ପ୍ରଭାବରେ ଧାନ କ୍ଷେତର ଉତ୍ପାଦନ ବୃଦ୍ଧି ପାଇଥାଏ । ଏହା ବିଂଶ ଶତାବ୍ଦୀର ପରୀକ୍ଷାଲବ୍ଧ ବୈଜ୍ଞାନିକ ସତ୍ୟ ଅଟେ । ଆଦିମ କୃଷିଜୀବି ସମାଜ ଏହି ତଥ୍ୟ ପ୍ରକୃତିଠାରୁ ପାଇଥିଲେ ଏବଂ ଧାନର ଉତ୍ପାଦନ ବଢ଼ାଇଥିଲେ । ବସନ୍ତର ପରଶ ଲାଗି ଉନ୍ମତ୍ତ ହୋଇଥିବା ପ୍ରାକୃତିକ ପରିବେଶ ସହିତ ସୁର ମିଳାଇ ପ୍ରାଣ ଖୋଲି ମାନବ ସମାଜର ଆନନ୍ଦ ପ୍ରକାଶ ପାଉଥିଲା । ଯୁବକଯୁବତୀର ନାଚରେ ଗିରିପଥ, ପୃଥିବୀ ଶସ୍ୟସମ୍ଭବା ହୋଇଥିଲା ଏବଂ ଚାଷୀର ଆଶା-ଆକାଙ୍‌କ୍ଷାର ସଫଳ ଧାନ ମୁଠିକ ସୁବର୍ଣ୍ଣଭଳି କ୍ଷେତରେ ପାଚି ଝଲସି ଉଠୁଥିଲା । ଆଦିମ ଚାଷୀଙ୍କ ଗୋଟିଏ ଧାରଣା ଥିଲା ଯେ ଯୌନପ୍ରବୃତ୍ତିମୂଳକ ଗୀତ ଗାଇଲେ ପୃଥିବୀର ଦେହରେ ଯୌନ ଉତ୍ତେଜନା ଦେଖାଦେବ ଏବଂ ପୃଥିବୀ ଶସ୍ୟ ସମ୍ଭବା ହୋଇଉଠିବ । ସେଥିପାଇଁ ରାତିବିହୁର ଗୀତଗୁଡିକ ସ୍ୱାଭାବିକତା ଦୃଷ୍ଟିରୁ ଯୌନଉଦ୍ଦୀପକ ଅଟେ । (୨୨)

ମଧ୍ୟପ୍ରଦେଶର ଗଣ୍ଡ ଏବଂ ଭରିୟା ଜନଜାତିମାନେ ଏହି ଯୌନକ୍ଷୁଧାକୁ ଅଧିକ ସିଧାସଳଖ ଭାବେ ପ୍ରକାଶ କରିଥାଆନ୍ତି । ରକ୍ତ ଏବଂ ସଂସ୍କୃତି କ୍ଷେତ୍ରରେ ଅସମୀୟ ଲୋକ ସହିତ ଏହି ଲୋକମାନଙ୍କର କେତେଗୁଡିଏ ମେଳ ରହିଛି । ବିହୁ ସମୟରେ ବର୍ଷାପଡ଼ି ଚାଷଜମି କୋମଳ ହୁଏ, ମାଟି କର୍ଷଣ କରି ବୀଜ ସିଞ୍ଚିବାର ଉପଯୁକ୍ତ ସମୟ ଆସିଥାଏ ।

ଏହି ସମୟରେ ପୃଥିବୀ ଶସ୍ୟଗର୍ଭା ନ ହେଲେ ଲୋକମାନଙ୍କର ଆଗାମୀ ବର୍ଷ ଅନ୍ଧକାରମୟ ହୋଇଉଠେ । ଆଦିମ ଲୋକମାନେ ପୃଥିବୀକୁ ନାରୀ ସହିତ ତୁଳନା କରିଥିବାରୁ ଆଧୁନିକ ଭାରତର ସମସ୍ତ ଦେଶରେ ଧରିତ୍ରୀ ମା ବା ମା-ବସୁନ୍ଧରାର ପୂଜା କରାଯାଇଥାଏ । ମଣିଷର ବିଶ୍ୱାସ ଯେ, ଆଷାଢ଼ ମାସରେ ଆଈ ବସୁମତୀ ଋତୁମତୀ ହୁଏ । ଋକ୍‌ବେଦରେ ମା ବସୁମତୀର ଉଲ୍ଲେଖ ମିଳିଥାଏ, ଅଥର୍ବବେଦରେ ପୃଥିବୀମାତାକୁ ସନ୍ତୁଷ୍ଟ କରିବା ପାଇଁ ଏକ ସୁନ୍ଦର ପ୍ରାର୍ଥନା ଅଛି । ମିରିମାନେ ବର୍ତ୍ତମାନ ମଧ୍ୟ ବସୁମତୀ ମାତାର ପୂଜା କରନ୍ତି । ଅସମୀୟା ବିବାହରେ ଅଧିବାସ ପରେ ବସୁନ୍ଧରା ପୂଜା ହୁଏ । 'ମା' ବସୁମତୀକୁ ଶସ୍ୟଶାଳୀ କରିବା ପାଇଁ ବହୁପ୍ରକାର ଅନୁଷ୍ଠାନର ଆୟୋଜନ କରାଯାଇଥାଏ । ଏପ୍ରିଲ-ମେ ମାସଗୁଡିକରେ ପୃଥିବୀର ଭିନ୍ନ ଭିନ୍ନ ସ୍ଥାନରେ ସ୍ତ୍ରୀ-ପୁରୁଷ ମିଶି ଏବଂ କେତେବେଳେ ବା ଅଲଗା ଅଲଗା ଭାବେ ନାଚିଥାଆନ୍ତି । ବସୁମତୀକୁ ଉର୍ବରାକରିବା ପାଇଁ ଏହାହିଁ ମନ୍ତ୍ରମୂଳକ ନାଚ ଅଟେ । ମିରିମାନଙ୍କର ବିଶ୍ୱାସ ଲିଙ୍ଗାବିହୁରେ ନ ନାଚିଲେ ଧାନ ଫୁଲ ଉଡାଇବା ପୂର୍ବରୁ ଝଡ଼ିପଡେ । ଏହି ନୃତ୍ୟଗୁଡିକରେ ସ୍ତ୍ରୀ-ପୁରୁଷ ଯଥେଷ୍ଟ ସ୍ୱାଧିନତା ପାଇଥାଆନ୍ତି ଏବଂ ସ୍ତ୍ରୀ ଲୋକମାନେ ଏଗୁଡିକରେ ସାଧାରଣତଃ ଆଗୁଆ ଭାଗ ନିଅନ୍ତି । ଆଦିମ ଲୋକଙ୍କର ବିଶ୍ୱାସ ଥିଲା ଯେ ସ୍ତ୍ରୀ ଲୋକମାନଙ୍କୁ ସନ୍ତାନ ସମ୍ଭବା କରିଲେ ବସୁମତୀ ମଧ୍ୟ ଶସ୍ୟଗର୍ଭା ହୁଏ ।

ବିହୁ କେତେବେଳେ ଏବଂ କିପରି ଜନ୍ମ ହୋଇଥିଲା ଏହାର ପ୍ରକୃତ ଅର୍ଥ ବିଚାର କରାଯାଇ ନ ପାରିଲେ ମଧ୍ୟ ବସନ୍ତକାଳରେ କୋଇଲିର କୁହୁକୁହୁ ପଞ୍ଚମସ୍ୱର ସହିତ ଗଛର ଡାଳଗୁଡ଼ିକରେ ଯେତେବେଳେ କୋମଳପତ୍ର କଅଁଳି ଥାଏ, ସେତେବେଳେ ଧରଣୀ ରାଣୀ ସବୁଜ ରଂଗରେ ରଞ୍ଜିତା ହେବା ସଂଗେ ସଂଗେ ତରୁଲତା-ବନଜଙ୍ଗଲ ଆଦି ବିଭିନ୍ନ ରଂଗର ଫୁଲଫଳରେ ଭରିଉଠେ । ଏହି ସମୟରେ ପୁରୁଷ ନାରୀର ଯୌନଜୀବନ ସହିତ ଯେ ସବୁଜ କିଆରୀର ଶସ୍ୟର୍ ନିଗୂଢ଼ ସମ୍ବନ୍ଧ ଅଛି ଏକଥା ଆଦିମ ଅସମୀୟା ସହଜରେ ବୁଝିପାରିଥିଲା । ସେହି ସମ୍ବନ୍ଧର ପ୍ରେରଣାର ଗୁଣରେ ଆଦିମ ଅସମୀୟାର ପ୍ରାଣରେ ଗୋଟିଏ ସୂକ୍ଷ୍ମ ଅନୁଭୂତି ଜାଗି ଉଠିଲା । ସେହି ଅନୁଭୂତିର ଫଳରେ ନାରୀ ପୁରୁଷର ମିଳନକୁ କେନ୍ଦ୍ରକରି ଯୌନ ପ୍ରାଚୀନ ନୃତ୍ୟର ଉତ୍ସବ ଆରମ୍ଭ ହେଲା ।

ବିହୁନାଚ ପ୍ରତି ଲକ୍ଷ୍ୟ କଲେ ଦେଖାଯାଏ ଯେ ନାଚୁଣୀ ମାଟିରେ ନିଜ ପାଦକୁ ଘୋଷାରି ଘୋଷାରି ଏବଂ ବାଡ଼େଇ ବାଡ଼େଇ ନାଚିଥାଏ । ନାଚିବା ରୀତିରୁ ବିହୁନାଚ ନୂତନ ପ୍ରଜନନ ଉତ୍ସବ ମାଧମରେ ପ୍ରାଚୀନ ରୀତିର ସନ୍ଧାନ ଦେଇଥାଏ ବୋଲି ଜଣାଯାଇଥାଏ । ତେଣୁ ବିହୁନାଚ ପ୍ରଜନନ ଉତ୍ସବ ହିସାବରେ ଆରମ୍ଭ ହୋଇଥିଲା । ଯେଉଁଠି ଜମିର ମାଟିକୁ ନାଚୁଣୀ ନିଜ ପାଦରେ ମୃଦୁ ସ୍ପର୍ଶ ଦେଇଥାଏ ସେହି ମାଟି ଅଧିକ ଶସ୍ୟସମ୍ଭବା ହୋଇଉଠେ ବୋଲି ବିଶ୍ୱାସ କରାଯାଇଥାଏ ।

ଯୌନତା ହିଁ ହେଉଛି ବିହୁ ଉତ୍ସବର ପ୍ରକୃତ ସ୍ୱରୂପ । ଯୌନମାଦକତା ଜନିତ ମଧୁରତା ଯୋଗୁ ବିହୁର ଗୀତ ନୃତ୍ୟଗୁଡିକ ସତରେ ସୁନ୍ଦର ଏବଂ ଜୀବନ୍ତ । ବିହୁ ଗୀତଗୁଡିକର ପ୍ରକୃତ ସ୍ୱର ହେଉଛି ଯୌନତାର ସୁର । ବିହୁର ଅନ୍ତର ସହିତ ଯୌନତା ଏଭଳି ଭାବେ ମିଳିଯାଇଛି ଯେ ଏହାକୁ ବିହୁଠାରୁ ପୃଥକ କରିବା ଉଚିତ ନୁହେଁ । (୨୩)

ଚାଷ ପଡିଆରେ ନାଚଗାନ କରିଲେ ଶସ୍ୟର ଉତ୍ପାଦନ ବଢେ ବୋଲି ଆଦିମ କାଳରୁ ଲୋକସମାଜ ବିଶ୍ୱାସ କରିଆସିଛି । ଆସାମର ଲୋକମାନେ ଅତି ପ୍ରାଚୀନ କାଳରୁ ଏହି ବିଶ୍ୱାସକୁ ଆଧାର କରି ଚାଷ ପଡିଆରେ ନାଚି ଗୀତଗାଇ ବିହୁ ପାଳନ କରି ଆସିଛନ୍ତି ଏବଂ ଯୌନମୂଳକ ଗୀତନାଚରେ ପୃଥିବୀକୁ ଉତ୍ତେଜିତ କରି ଶସ୍ୟସମ୍ଭବା କରିବାପାଇଁ ଚେଷ୍ଟା କରିଆସିଛନ୍ତି । ସେଥିପାଇଁ ରଂଗାଲୀବିହୁର ନୃତ୍ୟଗୀତରେ ଯେଉଁ ଯୌନତା ବା ଅଶ୍ଳୀଳତାର ଆଭାସ ରହିଛି ତାହା ହେଲା ପୃଥିବୀମାତାର ଉର୍ବରତା ବୃଦ୍ଧି ଏବଂ ଉତ୍ପାଦନ ବୃଦ୍ଧିର କାମନା ସହିତ ଜଡ଼ିତ । ତେଣୁ ଯୁବକଯୁବତୀମାନେ ବିହୁ ନାଚିଲାବେଳେ ନରନାରୀର ଯୌନକାର୍ଯ୍ୟର ଅନୁକୃତି କରି ଦେଖାଇ ଥାଆନ୍ତି । ସେଥିପାଇଁ ଯୁବକମାନେ ଅଣ୍ଟାର ତଳଭାଗ ଏବଂ ଯୁବତୀମାନେ ଅଣ୍ଟାର ଉପରଭାଗ ସଞ୍ଚାଳନ କରି ନାଚିଥାଆନ୍ତି । ଆଦିମଯୁଗରେ ଏହା ଥିଲା ମନ୍ତ୍ରମୂଳକ ଏବଂ ଦ୍ୱିତୀୟରେ ଏହା ଯୌନମିଳନର ସହାୟକ ଥିଲା । (୨୪)

ତେଣୁ ଆସାମ ତଥା ଉତ୍ତରପୂର୍ବ ଭାରତର ବିଭିନ୍ନ ଜନଗୋଷ୍ଠୀ ମଧ୍ୟରେ ଏହିଭଳି ଅନେକ କୃଷିକୈନ୍ଦ୍ରିକ ଉତ୍ସବମାନ ବିଭିନ୍ନ ପର୍ବ ନାମରେ ପାଳନ କରାଯାଇଥାଏ । ଏହି ଉତ୍ସବ ଏବଂ ରୀତିନୀତି ଗୁଡିକ କେଉଁ ଜନଗୋଷ୍ଠୀ ମଧ୍ୟରେ ପ୍ରଥମେ ଆରମ୍ଭ ହୋଇଥିଲା, କେଉଁ ଜନଗୋଷ୍ଠୀ କାହାଠାରୁ ସେହି ଆଚାର ଅନୁଷ୍ଠାନ ଗୁଡିକ ଗ୍ରହଣ କରିଥିଲେ ସେ ପ୍ରଶ୍ନର ପ୍ରାସଙ୍ଗିକତାଠାରୁ ଆଦିମ ସମାଜରେ ଶସ୍ୟ ଏବଂ ସନ୍ତାନର କାମନା କରି ସମଧର୍ମୀ ଆଶା-ଆକାଙ୍କ୍ଷାର ଫଳସ୍ୱରୂପ ହିଁ ଏଭଳି ଐନ୍ଦ୍ରଜାଲିକ ଆଚାର-ଅନୁଷ୍ଠାନ, ଗୀତନୃତ୍ୟର ପ୍ରଚଳନ ହୋଇଥିଲା, ତାହାହିଁ ତାତ୍ପର୍ଯ୍ୟପୂର୍ଣ୍ଣ । ସମୟ ସମୟରେ ଭୌଗୋଳିକ ଏବଂ ସାମାଜିକ-ସାଂସ୍କୃତିକ ଯୋଗସୂତ୍ର ସହିତ କୌଣସି ବୃହତ୍ ପରମ୍ପରା ଏବଂ ଶକ୍ତିଶାଳୀ ଗ୍ରହଣଶୀଳ ଶାସକର ପୃଷ୍ଠପୋଷକତାରେ ଏହିଭଳି ସମଧର୍ମୀ ଉଦ୍ଦେଶ୍ୟର ଆଚାର ଅନୁଷ୍ଠାନର କେତେଗୁଡିଏ ଆଞ୍ଚଳିକ ରୂପ ମ୍ଲାନ ପଡିଯାଏ ଏବଂ ବୃହତ ପରମ୍ପରାର ଉପାଦାନ ଏବଂ ଆଚାର ଅନୁଷ୍ଠାନ ସହିତ ବୈଦିକ ଏବଂ ପରବର୍ତ୍ତୀ କାଳରେ ନବବୈଷ୍ଣବ ଧର୍ମର ଆଚାର-ଅନୁଷ୍ଠାନ ଯୋଗ ହୋଇଥିବା ଦେଖାଯାଏ । ଏପ୍ରକାରେ ସାଂସ୍କୃତିକ ସମାହାରର ଫଳସ୍ୱରୂପ ଲୋକଉତ୍ସବ ଗୁଡ଼ିକ ସମରୂପ ଗ୍ରହଣ କରିବାର ପ୍ରକ୍ରିୟା ଆରମ୍ଭ ହୋଇଥାଏ । ସେଥିପାଇଁ ଆସାମ ମାଟିକୁ ଆସିବା ସମୟରେ ଆହୋମମାନେ ସେମାନଙ୍କ ପରମ୍ପରାଗତ ସଂପଦରୂପେ ସାଙ୍ଗରେ ନେଇ ଆସିଥିବା ବହାଗବିହୁର ଅଧିକାଂଶ ଉପାଦାନଗୁଡିକୁ ଏହି ମାଟିରେ ପ୍ରବର୍ତ୍ତନ

କରିଥିଲେ । ଆହୋମ ଶାସକମାନଙ୍କର ପ୍ରଭାବ ଏବଂ ପୃଷ୍ଟପୋଷକତାରେ ଆସାମର ଶସ୍ୟକ୍ଷେତ୍ରରୁ ବିହୁ ଘରର ଅଗଣାକୁ ଆସିଲା ଏବଂ ଶସ୍ୟକ୍ଷେତ୍ରରୁ ଘର ଅଗଣାକୁ ଆସିବା ଫଳରେ ଏହା କୃଷିକୈନ୍ଦ୍ରିକ ପରିବର୍ତ୍ତେ ଉତ୍ସବକୈନ୍ଦ୍ରିକ ହୋଇପଡିଲା ଏବଂ ଏହାର ଫଳସ୍ୱରୂପ ସମଗ୍ର ଉତ୍ତର ପୂର୍ବାଞ୍ଚଳରେ କୃଷିଭିତ୍ତିକ ବସନ୍ତୋତ୍ସବର ସୁବାସ ବିଚ୍ଛୁରିତ ହୋଇପଡ଼ିଲା । (୨୫)

**ବିହୁ ଓ ଯାଦୁ-** ପ୍ରାଚୀନ ଯୁଗରେ କୃଷକ ସମାଜ ମୁଖ୍ୟତଃ ଯାଦୁ ଉପରେ ବିଶ୍ୱାସ କରୁଥିଲେ । ଆଦିବାସୀ ସମାଜ ଗୁଡିକରେ ଯୌନତାର ସହିତ ସଂଗତି ରଖି କୃଷିସଂପର୍କରେ ଯାଦୁର ଉଦାହରଣର ବହୁତ ଉଲ୍ଲେଖ ଅଛି । ତା'ର ଦୁଇଟି ଉଦାହରଣ ଉଲ୍ଲେଖ କରାଯାଇପାରେ ।

କ) ମଧ୍ୟଭାରତର କୌଣସି କୌଣସି ଅଧିବାସୀ ସମାଜରେ ଆଉଥିଲେ ଚାଷ କରିବା ପୂର୍ବରୁ ଗୋଟିଏ ପାତ୍ରରେ ଜଣେ ବଳିଷ୍ଠ ଯୁବକର ବୀର୍ଯ୍ୟ ନେଇ ସେହି ବୀର୍ଯ୍ୟକୁ ଚାଷଜମିର ଗୋଟିଏ କୋଣରେ ପୋତି ଥୋଇ ଦେଉଥିଲେ ।

ଖ) ନିକୋବର ଦ୍ୱୀପପୁଞ୍ଜରେ ଦକ୍ଷିଣ ଇଟାଲୀ ଆଦି ସ୍ଥାନରେ ଗର୍ଭଧାରଣର କ୍ଷମତା ଥିବା ନାରୀକୁ ତଳି ରୋଇବା ପାଇଁ ଦିଆଯାଇଥାଏ । ବାନ୍ଧ୍ୟ ନାରୀ ତଳି ରୋଇଲେ ଶସ୍ୟର ପତନ ହେବ ବୋଲି ସେହି ସ୍ଥାନର ଲୋକମାନେ ବିଶ୍ୱାସ କରିଥାଆନ୍ତି । ବିହୁ ଉତ୍ସବର ମୁଖ୍ୟ କାରଣ ଥିଲା ପୃଥିବୀକୁ ଶସ୍ୟଗର୍ଭା କରି ଗଢ଼ି ତୋଳିବା । ଯୁବକଯୁବତୀମାନଙ୍କର ଯୌନାଚାରକୁ କେନ୍ଦ୍ରକରି ହିଁ ଏହି ଉତ୍ସବ ଆରମ୍ଭ ହୋଇଥିଲା । ସେଥିପାଇଁ ବିହୁ ହେଉଛି ଗାଉଁଲୀଆ କୃଷିଜୀବିର ସାମୂହିକ ଉତ୍ସବ । (୨୬)

ବିହୁ ନୃତ୍ୟଗୀତ ସହିତ ପରିବେଷଣ କରାଯାଉଥିବା ବାଦ୍ୟଗୁଡିକର ଯାଦୁକରୀ ସଂପର୍କ ଅଛି ବୋଲି ବିଶ୍ୱାସ କରାଯାଇଥାଏ । ଢୋଲର ଶବ୍ଦ ଯେପରି ମେଘର ଗର୍ଜନ, ପେଁପାର ଶବ୍ଦ ମେଘର ରିମ୍‌ଝିମ୍ ଏବଂ 'ଟକା'ର ଶବ୍ଦ ବଜ୍ରପାତର ଶବ୍ଦର ଅନୁରୂପ ଅଟେ । ତେଣୁ ବିହୁ ଉତ୍ସବରେ ନାଚର ତାଳେ ତାଳେ ବ୍ୟବହୃତ ଢୋଲ, ପେଁପା, ଟକା ଆଦି ବାଦ୍ୟ ବୈଶାଖର ମେଘର ଗର୍ଜନ ଏବଂ ବର୍ଷାର ପ୍ରତିଧ୍ୱନି ମାତ୍ର । ଯୁବକଯୁବତୀର ନୃତ୍ୟରେ ଚାଷଜମିରେ ଯୌନମିଳନର ଅନୁକୃତିର ନୃତ୍ୟ କଲେ ପୃଥିବୀ ବା ଜମିର ବକ୍ଷରେ ଜନ୍ମଦାନର ଅନୁଭୂତି ହୁଏ ବୋଲି ବିଶ୍ୱାସ କଲାଭଳି ଏହି ବାଦ୍ୟଯନ୍ତ୍ରସମୂହ ଶସ୍ୟସୃଷ୍ଟିର ସହାୟକ ବର୍ଷାର ଆଗମନ ପାଇଁ ନିଜର ବାଦ୍ୟର ମୂର୍ଚ୍ଛନାରେ ଯାଦୁକରୀ ପ୍ରଭାବ ପକାଇ ବର୍ଷା ଆଣୁଥିଲେ ବୋଲି ବିଶ୍ୱାସ କରାଯାଉଥିଲା । ତେଣୁ ବିହୁ ଉତ୍ସବ ମାଧ୍ୟମରେ ଉତ୍ପାଦନ ବୃଦ୍ଧିଜନିତ ପ୍ରାଚୁର୍ଯ୍ୟ ଏବଂ ସମୃଦ୍ଧିର କାମନା କରାଯାଉଥିଲା । (୨୭)

ପୃଥିବୀର ବିଭିନ୍ନ ଜନଗୋଷ୍ଠୀ ଆଦିମ କାଳରୁ ପାଳନ କରି ଆସୁଥିବା ଉତ୍ସବ ଅନୁଷ୍ଠାନ ସମୂହ ଅର୍ଥନୈତିକ ସମୃଦ୍ଧି ଲାଭ ଉଦ୍ଦେଶ୍ୟରେ ପାଳନ କରୁଥିଲେ ବୋଲି ଆଦିମ ଧର୍ମ ଏବଂ ଆଚାର ଅନୁଷ୍ଠାନ ଉପରେ ଗବେଷଣା କରୁଥିବା ପଣ୍ଡିତମାନେ ମତ ଦେଇଥାଆନ୍ତି । ଆସାମରେ ଅତି ପ୍ରାଚୀନ କାଳରୁ ଏହାର ଆଦି ଅଧିବାସୀମାନେ କୃଷିଭୂମିର ଉର୍ବରତା ଏବଂ ଶସ୍ୟର ଉତ୍ପାଦନ ବୃଦ୍ଧିପାଇଁ ବସନ୍ତକାଳର ବିହୁ ଏବଂ ଅନ୍ୟାନ୍ୟ ଦେଶରେ ଭିନ୍ନ ଭିନ୍ନ ନାମରେ ବସନ୍ତ ଉତ୍ସବ ପାଳନ କରିଥାଆନ୍ତି । ଲୋକମାନେ ଉତ୍ସବଗୁଡ଼ିକୁ ମୁଖ୍ୟତଃ ଖରାବର୍ଷା ତଥା କାକର ବେଶୀଭାବେ ବିରକ୍ତି ନ ଦେବା ସମୟରେ ପାଳନ କରି ଆସିଛନ୍ତି । ବସନ୍ତ ଏବଂ ଶରତଋତୁ ହିଁ ହେଉଛି ଏହିଭଳି ଉତ୍ସବ ପାଳନର ଉତ୍କୃଷ୍ଟ ସମୟ । ଆସାମରେ ପାଳନ କରାଯାଉଥିବା ବିହୁ ଏବଂ ଶାରଦୀୟ ଦୁର୍ଗାପୂଜା ହିଁ ଏହାର ସୁନ୍ଦର ଉଦାହରଣ ଅଟେ ।

ଆସାମରେ ବିଭିନ୍ନ ଜନଗୋଷ୍ଠୀମାନେ ପାଳନ କରୁଥିବା ମୁଖ୍ୟ ଉତ୍ସବସମୂହ ମୁଖ୍ୟତଃ ଚାଷଜମି ସହିତ ତଥା ଚାଷ ସହିତ ଜଡ଼ିତ । ଆହୁ ଧାନ (ସୁବାସଯୁକ୍ତ ଏକପ୍ରକାର ଛୋଟ ଛୋଟ ଧାନ) ଚାଷ ବସନ୍ତ କାଳରେ ହିଁ ଆରମ୍ଭ ହୁଏ । ଏହି ଧାନଚାଷ ପାଇଁ ପାହାଡ଼ିଆ ଲୋକମାନେ ଝୁମ (ପୋଡୁଚାଷ) ପ୍ରଣାଳୀରେ ବୀଜ ସିଞ୍ଚି ଚାଷ ଆରମ୍ଭ କରୁଥିଲେ । ଏହା ଏକ ଅନୁନ୍ନତ ଏବଂ ପ୍ରାଥମିକ ପର୍ଯ୍ୟାୟର ଚାଷ । ଏହି ସ୍ତରର ଚାଷକୁ ଆଦିମ ମାନସିକତାର ଲୋକମାନେ ପ୍ରାର୍ଥନା ଏବଂ ଯାଦୁବିନା ଶସ୍ୟ ଉତ୍ପାଦନ ଅସମ୍ଭବ ବୋଲି ଭାବୁଥିଲେ । ସେଥିପାଇଁ କୃଷି ସହିତ ପାଳନ କରାଯାଉଥିବା ବସନ୍ତ ଉତ୍ସବ ସମୂହର ସହିତ ଯାଦୁର ଅବିଚ୍ଛେଦ୍ୟ ସମ୍ବନ୍ଧ ଲକ୍ଷ୍ୟ କରାଯାଇଥାଏ ।

ମାତ୍ର ଆସାମରେ ବନ୍ଧବାନ୍ଧି ପାଣି ଜମାକରି କାଦୁଅ କରି ଚାଷ କରାଯାଉଥିବା ଶାଳିଧାନ ସହିତ ଐନ୍ଦ୍ରଜାଲିକ ଆଚାର ଅନୁଷ୍ଠାନର ବିଶେଷ ସଂପର୍କ ନାହିଁ କିନ୍ତୁ ବସନ୍ତକାଳରେ କରୁଥିବା ଅନୁନ୍ନତ ଚାଷର ଉର୍ବରତା ଏବଂ ଉତ୍ପାଦନ ବୃଦ୍ଧିର କାମନାରେ ଆସାମରେ ଲୋକମାନେ ଅତି ପ୍ରାଚୀନ କାଳରୁ ଅନୁକୂଳ ପାଗରେ ବିହୁ ଉତ୍ସବ ପାଳନ କରି ଆସିଛନ୍ତି । ବିହୁ ଉତ୍ସବରେ ଐନ୍ଦ୍ରଜାଲିକ ଆଚାରରେ ଭୂମିର ଉର୍ବରତା ଏବଂ ଶସ୍ୟର ଉତ୍ପାଦନ ବୃଦ୍ଧି କରିବା ପାଇଁ ଚେଷ୍ଟା କରିବା ଯୋଗୁ ଆହୋମ ସାମନ୍ତରାଷ୍ଟ୍ର ବିହୁକୁ ରଂ ଘର ବା ଅଗଣାକୁ ଆଣିବା ପୂର୍ବରୁ ବା ତା'ପରେ କୃଷକ ସମାଜ ବିହୁକୁ ମୁଖ୍ୟତଃ ଚାଷଜମି ବା ପଡିଆରେ ହିଁ ପାଳନ କରୁଥିଲେ । ଆସାମର ମରାଣ ଜନଜାତିମାନେ ବର୍ତ୍ତମାନ ସୁଦ୍ଧା ବିହୁକୁ ଚାଷ ପଡିଆରେ ହିଁ ପାଳନ କରୁଛନ୍ତି । (୨୮)

**ବିହୁର ବିଭାଗୀକରଣ—** ବିହୁ ମୁଖ୍ୟତଃ କୃଷିଭିତ୍ତିକ ଉତ୍ସବ । ଋତୁଚକ୍ରର ପରିବର୍ତ୍ତନ ସହିତ ପ୍ରକୃତିର ପରିବର୍ତ୍ତନ ଘଟେ । କେତେବେଳେ ପ୍ରକୃତି ନୀଳ ସବୁଜିମାରେ ଶସ୍ୟଶାଳିନୀ ହୋଇଉଠେ ତ ପୁଣି କେତେବେଳେ ଧୂଳିଝଡ଼ରେ ପୃଥିବୀ ଶୁଷ୍କ ଓ ଧୂସରା

ରଂଗରେ ମଇଳା ଦେଖାଯାଏ । ପ୍ରକୃତିର ରଂଗ ଓ ପରିବର୍ତ୍ତନ ସହିତ ମଣିଷର ମନ ଓ ପ୍ରାଣରେ ବହୁତ ବଡ଼ ପରିବର୍ତ୍ତନ ଆଣିଥାଏ । ସେ ପ୍ରକୃତି ସହିତ ତାଳ ମିଳାଇ ନିଜକୁ ସାମିଲ କରିଦିଏ ।

ଗୋଟିଏ ସମୟରେ ଅସମୀୟା ଲୋକମାନେ ଚାଷବାସ ଅର୍ଥରେ ହେଉ ବା ବସନ୍ତଋତୁର ପ୍ରେରଣାରେ ହେଉ, ଆନନ୍ଦରେ ନାଚୁଥିଲେ, ଗାଉଥିଲେ । ପେଟ ଭର୍ତ୍ତିକରି ଖାଇ ସତେଜମନ ଏବଂ ସବଳ ଶରୀରରେ ଯୁଦ୍ଧ ପାଇଁ ଆଗକୁ ବାହାରୁଥିଲେ । ମନରେ ବୋଧ କରୁଥିବା ଆନନ୍ଦ, ଶରୀରର ସ୍ୱାସ୍ଥ୍ୟ, କର୍ମ ପ୍ରତି ଥିବା ଉଦ୍ୟମର ଆଭାସ ବିହୁ ନାମରେ ସୁସ୍ପଷ୍ଟ । ପ୍ରକୃତିର ପରିବେଶର ପରିବର୍ତ୍ତନରେ ମନରେ କିଭଳି ଆନନ୍ଦ ଏବଂ ଉତ୍ସାହ ଦେଖାଦେଇଥାଏ, ତା'ର ଉଦାହରଣ ନିମ୍ନଗୀତରୁ ସ୍ପଷ୍ଟ ହୁଏ ।

ଏହି ସମୟର ବିହୁରେ ରମକ ହୁଏ ଜମକ ହୁଏ
ନାହର ଫୁଲ ଫୁଲିବର ବତର;
ନାହର ଫୁଲର ଗନ୍ଧ ପାଇ ପ୍ରେମିକାର ଚେତନା ନାହିଁ
ଦଲି ଭାଙ୍ଗିଲା ଯଁତର । (୨୯)

ବିହୁଶବ୍ଦର ଅର୍ଥ ଆନନ୍ଦ ଏବଂ ଉତ୍ସବର ଅର୍ଥ ହେଉଛି ଆନନ୍ଦର ଦିନ । (୩୦) କୃଷି ସଂସ୍କୃତି ଉପରେ ନିର୍ଭର କରି ଆସୁଥିବା ଅସମୀୟାର ଆନନ୍ଦର ଦିନ ହେଉଛି ତା'ର ପ୍ରିୟ ବିହୁ । ସମୟକ୍ରମେ ବହାଗବିହୁ, କାତିବିହୁ ଏବଂ ମାଘବିହୁ ବିଭିନ୍ନ ଋତୁରେ ଆସିଥାଏ ।

**ବହାଗବିହୁ—** ଚୈତ୍ରସଂକ୍ରାନ୍ତି ଦିନଠାରୁ ବୈଶାଖର ପ୍ରଥମ ଛଅଦିନ ପର୍ଯ୍ୟନ୍ତ ପାଳନ କରାଯାଉଥିବା ବିହୁକୁ 'ବହାଗବିହୁ' କୁହାଯାଇଥାଏ । 'ବହାଗବିହୁ' ସାତଦିନ ଧରି ପାଳନ କରାଯାଉଥିବାରୁ ଏହାକୁ 'ସାତବିହୁ' କୁହାଯାଇଥାଏ । ପୂର୍ବକାଳରେ ମୁକଳିବିହୁ, ଗାଭରୁ ବିହୁ, ରାତିବିହୁ, ହୁଁଚରି ବିହୁ ଆଦି ନାମରେ ବହାଗବିହୁକୁ ନାମିତ କରାଯାଇଥିଲେ ହେଁ ବିହୁର ସାଂପ୍ରତିକ ରୂପ ଦ୍ରୁତଗତିରେ ପରିବର୍ତ୍ତନ ହେବାରୁ ଏହାର ନାମକରଣରେ ମଧ୍ୟ ପରିବର୍ତ୍ତିତ ହୋଇଛି । ବର୍ତ୍ତମାନର ଅସମୀୟା ସମାଜରେ ସାତବିହୁ କହିଲେ ୧- ଚ'ତ ବିହୁ (ଚୈତ୍ର ବିହୁ), ୨- ଗରୁ ବିହୁ (ଗୋରୁବିହୁ), ୩- ମାନୁହ (ମଣିଷ) ବିହୁ, ୪- ସେନେହୀ ବିହୁ (ସ୍ନେହର ବିହୁ), ୫- କୁଟୁମ୍ବ ବିହୁ (ଜ୍ଞାତି କୁଟୁମ୍ବର ବିହୁ), ୬- ମେଳାବିହୁ, ୭- ହାଟବିହୁ ଆଦିକୁ ବୁଝାଇଥାଏ । (୩୧)

ବିହୁର ଆଗଦିନକୁ ଉରୁକା କୁହାଯାଇଥାଏ । ଉରୁକାଦିନ ଲୋକମାନେ ଘରଦ୍ୱାର ସଫାସଫି କରି ଆଗାମୀ ସାତଦିନ ପାଇଁ ଘରେ ସବୁପ୍ରକାର ଖାଇବା ଜିନିଷ ଯୋଗାଡ଼ କରି ବିହୁ ପାଳନ କରିବା ପାଇଁ ଆନନ୍ଦରେ ସମସ୍ତେ ଅନେଇ ଥାଆନ୍ତି । ବହାଗବିହୁକୁ ଆସାମବାସୀ

ସବୁଠାରୁ ଶ୍ରେଷ୍ଠ ଓ ଅତି ଆଦରର ବିହୁ ଭାବେ ଗ୍ରହଣ କରିଥାଆନ୍ତି । ଏହି ଉତ୍ସବରେ ନୂତନ ବସ୍ତ୍ର ପିନ୍ଧି ଭଲ ଭଲ ଖାଦ୍ୟ ଖାଇ ସନ୍ଧ୍ୟା ସମୟରୁ ବିହୁ ନୃତ୍ୟରେ ଆବାଳବୃଦ୍ଧବନିତା ଯୋଗ ଦେଇଥାଆନ୍ତି । ବହାଗର ବିହୁ ଆସାମର ଲୋକସମାଜରେ ଏଭଳି ପ୍ରିୟ ଯେ ବିହୁକଥା ଥରେ କହିବାକୁ ଆରମ୍ଭ କଲେ ଶେଷହୁଏ ନାହିଁ ବୋଲି ସମସ୍ତେ କହିଥାଆନ୍ତି । କେହି ପ୍ରିୟଲୋକ ବହାଗବିହୁରେ ଘରଠୁ ଦୂରରେ ରହିଲେ ତା'ର ଅତି ଆପଣାର ଲୋକଟି ଏହିଭଳି ଗାଇଥାଏ-

ଚ'ତେ ଗୈ ଗୈ ବହାଗେ ପାଲେହି
ଫୁଲିଲେ ଭେରେଲି ଲତା;
କେନେକୈ ଥାକିଲେ ଓରକେ ନ ପରେ
ବହାଗର ବିହୁର କଥା ।

ଅର୍ଥାତ୍ ଚୈତ୍ର ମାସ ପାର ହୋଇ ବୈଶାଖ ଆସି ପହଞ୍ଚିଲା । ସବୁଆଡ଼େ ଭେରେଲି ଫୁଲ ଫୁଟିଲା କିନ୍ତୁ ପ୍ରିୟତମଟି ବହୁଦୂରରେ ବିହୁକଥା ଭୁଲି ରହିଲା । ଯେଉଁ ବିହୁ କଥା ଥରେ କହିଲେ ଆଉ ଶେଷ ହୁଏନି, ଏହି ବିହୁ ପ୍ରତିଟି ଅସମୀୟାର ଅତି ନିଜର, ସ୍ନେହର ଉତ୍ସବ । ବିହୁ ଆସିଲେ ଆସାମର ଘରେ ଘରେ ଯେପରି ଆନନ୍ଦର ଜୁଆର ଛୁଟିଯାଏ । ଉତ୍ସବଟି ପାଖେଇ ଆସିଲେ ନାରୀମାନଙ୍କର କଣ୍ଠରେ ଶୁଣାଯାଇଥାଏ-

ପର୍ବତର ଢେକୀୟା ଲିହିରି ଲିହିରି
ଦେଖିଲେ ଲବର ମନ ଯାୟ;
ଅତି ସେନେହର ବହାଗର ବିହୁଟି
ହାତତେ ମଲଙ୍ଗି ପାୟ ।

ଅସମୀୟା ଜାତୀୟ ଜୀବନକୁ ଆଲୋକିତ କରି ରଂଗର ପ୍ରୀତି ଓ ଶୁଭେଚ୍ଛା ଆଣି ପ୍ରତିବର୍ଷ ବହାଗ ବିହୁ ଅସମୀୟା ଜୀବନରେ ଆସିଥାଏ । କେଉଁ ଏକ ପରିବେଶରେ, କେଉଁ ମୁହୂର୍ତ୍ତରେ ଏହି ଉତ୍ସବ ଆରମ୍ଭ ହେଲା, ତାହା ବର୍ତ୍ତମାନ ଏକ ବିସ୍ମୟ ଅଟେ । ସମୟକ୍ରମେ ଏହି ବିହୁ ଅସମୀୟା ଜୀବନର, ଅସମୀୟା ସଭ୍ୟତାର ଏକ ବାହକ, ଧାରକ ହୋଇ ରହିଛି । ଯୁଗେ ଯୁଗେ ଏହି ବିହୁ ଅସମୀୟା ପ୍ରାଣକୁ ଆଲୋଡିତ କରି ଅତୁଳ ପ୍ରେରଣା ଯୋଗାଇ ଆସିଛି । ବିହୁବିନା ଅସମୀୟା ଜାତିର ପରିଚୟ ଅସଂପୂର୍ଣ୍ଣ । ପରିବର୍ତ୍ତିତ ପରିବେଶ ତଥା ସମୟ ବିହୁର ସହଜାତ ଚରିତ୍ରର ଗରିମା ମ୍ଳାନ କରି ପାରିନାହିଁ । ଅସମୀୟା ଗାଉଁଲୀଆ

---

**ଶବ୍ଦାର୍ଥ-** ବତର-ପାଗ, ଫୁଲିବା-ଫୁଟିବା, ଝାଁତର- ତନ୍ତଶାଳର ତନ୍ତ, ଗାଭରୁ- ଯୌବନପ୍ରାପ୍ତି ହୋଇଥିବା ନାରୀ, ଢେକୀୟା- ଏକ ପ୍ରକାରର ଶାଗ, ଲିହିରି-ପତଳା, ଲବ-ନେବା, ମଲଙ୍ଗି- ବାସି ।

ଜୀବନର ସରଳ ପ୍ରେମାନୁଭୂତିରଆବେଗରେ ପୁଷ୍ଟ ଏହି ବିହୁ ବହୁସ୍ତର ଅତିକ୍ରମ କରି ଆଜି ନୂତନ ସ୍ୱରୂପ ପରିଗ୍ରହ କରିଛି । (୩୨) ବହାଗ ବିହୁର ପ୍ରଥମଦିନ ଚ'ତ ବିହୁରେ ଅସମୀୟା ଲୋକମାନେ ସକାଳୁ ଉଠି ନୂତନ ବସ୍ତ୍ର ପିନ୍ଧି ଠାକୁରପୂଜା କରି ବିଭିନ୍ନ ପ୍ରକାରର ପିଠାପଣା ଖାଇ ଦିନଟିକୁ ଆନନ୍ଦରେ କଟାଇଦିଅନ୍ତି । ଅତିଥି ସତ୍କାରରେ ଅସମୀୟା ସଂସ୍କୃତିର ଚରମ ନିଦର୍ଶନ ଏହି ସମୟରେ ମିଳିଥାଏ । ଦ୍ୱିତୀୟଦିନ ଗୋ ମାତାର ପୂଜା କରାଯାଇଥାଏ । ତୃତୀୟ ଦିନ ବନ୍ଧୁ ଅଭ୍ୟର୍ଥନା ଓ ବନ୍ଧୁଘରକୁ ବୁଲିଯିବା ଭଳି ପରଂପରାକୁ ଆଜି ମଧ ଅସମୀୟା ବଜାୟ ରଖିଛନ୍ତି । ସେହିଭଳି ସେନେହୀ ବିହୁଦିନ ପରସ୍ପରକୁ ବିଭିନ୍ନ ପ୍ରକାର ଉପହାର ଦେଇ ନିଜର ସ୍ନେହ ମମତା ଓ ଆନ୍ତରିକତାର ପରିଚୟ ଦିଆଯାଇଥାଏ । ପଞ୍ଚମ ଦିନ ଆପଣାର ଜ୍ଞାତି କୁଟୁମ୍ବମାନଙ୍କ ସହିତ ମିଳି ଏକାଠି ଖାଇ, ନାଚି ଗାଇ ଆନନ୍ଦରେ ସମସ୍ତେ ସମୟ କଟାଇ ଦିଅନ୍ତି । ଷଷ୍ଠ ବିହୁଦିନ ଗାଁର ତଥା ଆଖପାଖ ଗାଁର ଲୋକମାନେ ମିଳିତ ହୋଇ ବିହୁ ପରିବେଷଣ କରନ୍ତି । ଶେଷଦିନ ମଧ ଏକାଠି ବିହୁ ନାଚ ପରିବେଶଣ କରାଯାଇଥାଏ । ଶେଷଦିନକୁ ବିଦାୟୀ ବିହୁ ବୋଲି କୁହାଯାଇଥାଏ । ବିହୁର ପ୍ରତ୍ୟେକ ଦିନକୁ ବିଭିନ୍ନ/ନାମରେ ନାମିତ କରାଗଲେ ହେଁ ପ୍ରଥମ ଦିନରୁ ସମସ୍ତେ ସମସ୍ତଙ୍କୁ ବିଭିନ୍ନ ପ୍ରକାର ଉପହାର ଯେପରି ହାତବୁଣା ଗାମୁଛା, ସରାଇ ଆଦି ଦେଇଥାଆନ୍ତି । ଦିନସାରା ଆନନ୍ଦରେ ଖାଇପିଇ କଟାଇଦିଅନ୍ତି । ସନ୍ଧ୍ୟା ସମୟଠୁ ବିହୁତଳୀରେ ବିହୁନାଚରେ ସମସ୍ତେ ଭାଗନେଇ ଥାଆନ୍ତି । ବହାଗ ବିହୁର ମୁଖ୍ୟ ଆକର୍ଷଣ ମଧ୍ୟରେ ଗୋପୂଜା, ହୁଁଚରି ଗାନ ଏବଂ ମୁକ୍ତ ପ୍ରାଙ୍ଗଣରେ ଯୁବକ ଯୁବତୀମାନଙ୍କର ବିହୁନାଚ ପରିବେଶଣ ପ୍ରଧାନ ଅଟେ । (୩୩)

ବିହୁର ଶେଷଦିନ ଅର୍ଥାତ୍ ସାତବିହୁଦିନ ଅସମୀୟାମାନେ ସାତ ପ୍ରକାରର ଶାଗପତ୍ର ମିଶାଇ ଶାଗଭାଜି ଖାଇବା ନିୟମ ପାଳନ କରିଥାଆନ୍ତି । ପ୍ରଥମ ବର୍ଷାପରେ କଅଁଳିଥିବା ପତ୍ରଗୁଡିକୁ ମିଶାଇ ଅସମୀୟା ନାରୀ ଶାଗ ଭାଜି ଥାଆନ୍ତି । ଏହି ଶାଗପତ୍ର ଉଠାଇଲା ବେଳେ ନାରୀମାନେ ନାଚି ନାଚି ଗୀତ ଗାଇଥାଆନ୍ତି । ପୁରୁଷମାନଙ୍କୁ ସେହି ସମୟରେ ସେମାନଙ୍କ ପାଖକୁ ଯିବାପାଇଁ ନିଷେଧ କରାଯାଇଛି ।(୩୪)

ତେଣୁ 'ବହାଗବିହୁ'ର ମୂଲ୍ୟ ସବୁଠାରୁ ବେଶୀ । ଧାନ ଫସଲ ଆରମ୍ଭ କରିବା ପୂର୍ବରୁ କୃଷକ ଏହି ସମୟରେ ଚାଷଜମି ଉପରେ ନାଚି ଗାଇ ଜମିକୁ ଉର୍ବରା କରିବା ସଂଗେ ସଂଗେ ନିଜର ମନକୁ ମଧ ଆନନ୍ଦିତ କରିଥାଏ । ଧାନ, ପ୍ରାଣ ଏବଂ ଗୀତ ଏହି ତିନିଟା କଥା ବହାଗବିହୁ ସହିତ ମିଳିତ ହୋଇଛି । ପ୍ରାଣରକ୍ଷା କରିବାକୁ ହେଲେ ଧାନର ପ୍ରୟୋଜନ, ପ୍ରାଣ ରହିଲେ ଲୋକ ଗୀତ ଗାଇବ । ଗୀତ ଗାଇଲେ ପ୍ରାଣ ଆନନ୍ଦମୁଖର ହେବ ଆଦି ଧାରଣା ରହି ଆସିଛି । ଏହା ହିଁ ବହାଗ ବିହୁର ପରିଚୟ ଅଟେ । (୩୫)

**କାର୍ତ୍ତିକ ବିହୁ—** କାର୍ତ୍ତିକ ମାସର ପ୍ରଥମ ଦିନକୁ ଅସମୀୟା ବାସୀ 'କାତିବିହୁ' ଭାବେ ପାଳନ କରିଥାଆନ୍ତି । ଏହାର ପୂର୍ବଦିନକୁ ଉରୁକା ଭାବେ ପାଳନ କରିଥାଆନ୍ତି । ଉରୁକାଦିନ ଘରଦ୍ୱାର ସଫାସଫି କରିବା ସଂଗେ ସଂଗେ ନିଜର ଲୁଗାପଟା ସଫାକରି ପରଂପରାନୁଯାୟୀ ନିଜକୁ କାତିବିହୁ ପାଳନ କରିବା ପାଇଁ ପ୍ରସ୍ତୁତ କରିଥାଆନ୍ତି । କାତିବିହୁକୁ ସାଧାରଣତଃ ଗୋସାଇଁ ବିହୁ (ଠାକୁର ବିହୁ) ବୋଲି କୁହାଯାଇଥାଏ ।

କାର୍ତ୍ତିକ ବିହୁକୁ କାଙ୍ଗାଲୀ ବିହୁ (Poor Bihu) ମଧ୍ୟ କୁହାଯାଇଥାଏ । ଏହି ବିହୁରେ ଲୋକମାନେ ଅଧିକ ଆନନ୍ଦିତ ହୋଇ ନଥାନ୍ତି କାରଣ ଧାନ ଅମାର ପ୍ରାୟ ଖାଲି ହୋଇ ଆସିଥାଏ । ସନ୍ଧ୍ୟା ସମୟରେ ତୁଳସୀଗଛ ପାଖରେ ଗୃହିଣୀମାନେ ଆକାଶଦୀପ ଜଳାଇବା ସଂଗେ ସଂଗେ କଦଳୀଗଛ ପୁଆକୁ ତୁଳସୀ ଗଛର ଦୁଇପଟେ ପୋତି ଦେଇଥାଆନ୍ତି । ଏହି ସମୟରେ ଧାନକ୍ଷେତରେ ନୂଆକରି ଫୁଲ ଉଡାଉଥିବା କ୍ଷେତକୁ ପ୍ରକୃତିର ଦୁର୍ଯୋଗ ଯେପରି ନଷ୍ଟ ନ କରେ, ସେଥିପାଇଁ କାର୍ତ୍ତିକ ମାସରେ ଅଗଣା କିମ୍ବା ପିଣ୍ଡାରେ ସଞ୍ଜଦୀପ ଦେଇ ଗୃହିଣୀମାନେ ଭଗବାନଙ୍କର ଆଶୀର୍ବାଦ ଭିକ୍ଷା କରିଥାଆନ୍ତି । ସଞ୍ଜଦୀପ ଦେଇ ଗୃହିଣୀମାନେ ଏହିଭଳି ଭାବେ ଗୀତ ଗାଇଥାଆନ୍ତି ।

> ''ଆମର ଧାନ ଆଉଲ୍ ବାଉଲ୍
> ଅନ୍ୟର ଧାନ ମଲୁଖା ଚାଉଳ'' ।

ବାଡ଼ିର ଫସଲ ଓ ଫୁଲଫଳ ଭଲହେବା ଆଶାରେ କୃଷକର ଗୃହିଣୀ ଘରର ଅନ୍ୟାନ୍ୟ ସଦସ୍ୟ ତଥା ଛୋଟଛୋଟ ପିଲାମାନଙ୍କ ସହିତ ରାତିପୁହା ଗାଧୋଇ ସାରି ବାଡିକୁ ଯାଇ ଗାଆନ୍ତି-

> ଆମ୍ବ ପଣସ, ଲେଟେକୁ ପନିୟଲ,
> ଲାଗ ଲାଗି ଏଇ
> ଜାଗ ଜାଗ ଏଇ ।

ଫଳ ନ ଲାଗିଥିବା ନଡିଆ ଗଛରେ ଏହିଦିନ କୃଷକ ଗୋଟିଏ କୁରାଢୀରେ ଗାଗରେ ଗୋଟିଏ ଚୋଟ ଦେଇଥାଏ । ଅନ୍ୟଜଣେ କୃଷକ ତା'କୁ ଗଛ ନ କାଟିବା ପାଇଁ କହି କୁରାଢୀକୁ ଛଡାଇ ଆଣିଥାଏ । ଗଛରେ କୁରାଢ଼ୀ ମାରିଲେ ଭଲଫଳ ହୁଏ ବୋଲି ବିଶ୍ୱାସ କରାଯାଇଥାଏ ।(୩୬) ଚାଷୀ ଚାଷ ଜମିରେ ଗୋଟିଏ କୋଣରେ ସଞ୍ଜଦୀପ ଜଳାଇ ବାଉଁଶଟିଏ ପୋତି ଦେଇଥାଏ । ଫଳରେ ପଶୁପକ୍ଷୀ, କୀଟପତଙ୍ଗ ଦାଉରୁ ଜମିକୁ ରକ୍ଷା କରିବା ପାଇଁ ଏହା ଦୂରରୁ ମଣିଷଟିଏ ଛିଡ଼ା ହେବାର ଭ୍ରମ ସୃଷ୍ଟି କରିଥାଏ ।

---

ଶବ୍ଦାର୍ଥ : ମଲୁଖା-ଖୁଦ, ଲେଟେକୁ, ପନିୟଲ - ଫଳ

ତୁଳସୀଗଛକୁ ବୃନ୍ଦାବତୀଙ୍କର ପ୍ରତୀକ ହିସାବରେ ପୂଜା କରାଯାଇଥାଏ । ଭଗବାନ୍ ଶ୍ରୀକୃଷ୍ଣଙ୍କର ପ୍ରିୟ ଭକ୍ତାରୂପେ ବୃନ୍ଦାବତୀଙ୍କୁ ସ୍ମରଣ କରିବା ପାଇଁ କାର୍ତ୍ତିକ ମାସରେ ତୁଳସୀଗଛକୁ ପୂଜାକଲେ ପୂଣ୍ୟ ମିଳିଥାଏ ବୋଲି ସମସ୍ତେ ବିଶ୍ୱାସ କରିଥାଆନ୍ତି । କେତେକ ଜନଗୋଷ୍ଠୀରେ କୃଷକମାନେ ଜମିରେ ବାଉଁଶ ପୋତି ସଞ୍ଜାଦୀପ ଜଳାଇଲାବେଳେ ଭଲ ଫସଲ ପାଇବା ପାଇଁ ଏବଂ ଫସଲକୁ ଦୈବଦୁର୍ବିପାକରୁ ରକ୍ଷା କରିବା ପାଇଁ କେତେଗୁଡିଏ ମନ୍ତ୍ରପାଠ କରିଥାଆନ୍ତି । କଚାରୀ ଜନଜାତିର ଲୋକମାନେ ସଞ୍ଜବତୀ ଦେଇ ସେମାନଙ୍କର ମୁଖ୍ୟ ଦେବତା 'ବାଥୌ' ବା 'ଶିବ'ଙ୍କର ପ୍ରତୀକ ହିସାବରେ ସିଜୁଗଛକୁ ପୂଜା କରିଥାଆନ୍ତି । ଏହା ସହିତ ଧାନ ଭଣ୍ଡାର ଘରେ, ବଗିଚା ଆଦିରେ କଚାରୀମାନେ ଦୀପ ଜଳାଇ ପୂଜାପାଠ କରିଥାଆନ୍ତି । ଅସମୀୟା ନାରୀମାନେ ତୁଳସୀଗଛ ପାଖରେ ସଞ୍ଜଦୀପ ଦେଇ ପିଲାମାନଙ୍କ ସହିତ ଭକ୍ତିଭାବାପୂର୍ଣ୍ଣ ଗୀତଗାଇ 'ମା ବୃନ୍ଦାବତୀଙ୍କୁ' ନିଜର ଭକ୍ତିଜଣାଇ ଏହିଭଳିଭାବେ ଗାଇଥାଆନ୍ତି ।

ତୁଳସୀ-'ମା-ଗୋ' ତୁଳସୀ ମା'
ତୁ ଗୋବିନ୍ଦର ସବୁଠୁ ପ୍ରିୟ;
କେଉଁପଟେ କୃଷ୍ଣ କହ୍ନେୟା ଗଲେ
ଆମକୁ 'ମା' ତୁ ଶୀଘ୍ର କହ ।

କାର୍ତ୍ତିକ ବିହୁ ସଂପୂର୍ଣ୍ଣଭାବେ ଭକ୍ତିଭାବ ସହକାରେ ନିରାଡମ୍ବର ମଧ୍ୟରେ ପାଳନ କରାଯାଇଥାଏ । ଏଥିରେ ସର୍ବସାଧାରଣଙ୍କ ପାଇଁ କୌଣସି ପ୍ରକାର ଉତ୍ସବ ବା ଆଡମ୍ବର ହୁଏ ନାହିଁ । ଭଗବାନ୍‌ଙ୍କ ଉପରେ ବିଶ୍ୱାସ ରଖିଥିବା କୃଷକ ସମାଜ ନିଜର କର୍ତ୍ତବ୍ୟବୋଧ ପ୍ରତି ଏହିଦିନ ଅଧିକ ସଜାଗ ରହିବା ପାଇଁ ପୂଜାପାର୍ବଣରେ ଆୟୋଜନ କରି ନିଜର ଚାଷରେ ମନଯୋଗ ଦେଇଥାଏ । ନୂତନବସ୍ତ୍ର ବା ଭଲ ଭଲ ଖାଦ୍ୟ ଖାଇବା ଭଳି ଆଡମ୍ବରତା ଏହି ସମୟରେ ହୁଏ ନାହିଁ । ପାରମ୍ପରିକ ଭାବେ ଭଣ୍ଡାରଘରେ ଦୀପ ଦେଇ କେବଳ ଗଜାମୁଗ, ଗଜାବୁଟ, ନଡିଆ, ଆଖୁ ଓ କଦଳୀ ଆଦି ଭୋଗରାଗ କରାଯାଇ କାର୍ତ୍ତିକବିହୁ ପାଳନ କରାଯାଇଥାଏ । ଏହା ଏକ ପ୍ରକାର ନିରାଡମ୍ବରପୂର୍ଣ୍ଣ ଉତ୍ସବ ଅଟେ । (୩୭)

**ମାଘବିହୁ**— ମାଘମାସର ପ୍ରଥମ ଦିନରେ ପାଳନ କରାଯାଉଥିବା ବିହୁକୁ ମାଘବିହୁ ବା 'ଭୋଗାଲିବିହୁ' କୁହାଯାଇଥାଏ । ଭୋଗାଲି ଶବ୍ଦଟି 'ଭୋଗ' ଶବ୍ଦରୁ ଆସିଛି । ଏହା ଏକ ଫସଲ ଅମଳର ଉତ୍ସବ । ପୌଷମାସର ଶେଷଦିନକୁ ଲୋକମାନେ ମାଘବିହୁର 'ଉରୁକା' ଆକାରରେ ପାଳନ କରିଥାଆନ୍ତି । ମାଘବିହୁର ମୁଖ୍ୟ ଆକର୍ଷଣ ହେଉଛି 'ଉରୁକା', 'ମେଜି' ଅଥବା 'ଭେଲାଘର' । ବର୍ଷର ବିଭିନ୍ନ ସମୟରେ ପାଳନ କରାଯାଉଥିବା ତିନୋଟି ବିହୁ ଉତ୍ସବଗୁଡିକର ଆଗଦିନକୁ 'ଉରୁକା' ଭାବେ ପାଳନ କରି ଅସମୀୟାମାନେ ବିହୁ ଉତ୍ସବ

ପାଇଁ ନିଜକୁ ପ୍ରସ୍ତୁତ କରିଲେ ହେଁ ମାଘବିହୁର 'ଉରୁକା' ସବୁଠାରୁ ଆକର୍ଷଣୀୟ ଅଟେ । ମାଘବିହୁକୁ 'ଉପଭୋଗର ବିହୁ' ଭାବେ ନାମିତ କରାଯାଇଛି । ଏହି ବିହୁରେ ଧନୀଠୁ ଆରମ୍ଭ କରି ଗରୀବ ପର୍ଯ୍ୟନ୍ତ ସମସ୍ତେ ଆନନ୍ଦରେ ଖାଇପିଇ ବିହୁଦିନଟିକୁ ଖୁସୀରେ ଉପଭୋଗ କରିଥାଆନ୍ତି । କୃଷକର ଫସଲ ଅମଳ ସରିଯାଇଥାଏ, ଧାନଭଣ୍ଡାର ଫସଲରେ ଭର୍ତ୍ତି ହୋଇଥାଏ । ନୂତନ ବର୍ଷର ଚାଷ ପାଇଁ ଚାଷୀ ବର୍ଷାକୁ ଅପେକ୍ଷା ରଖିଥାଏ । ବର୍ଷକର ପରିଶ୍ରମର ଫଳ ପାଇଲା ପରେ ଚାଷୀ ତା'ର ସମସ୍ତ କଷ୍ଟକୁ ମାଘ ବିହୁର ଆନନ୍ଦ ଉଲ୍ଲାସ ଭିତରେ ପାଶୋରି ଦେଇଥାଏ । ଚାଷୀ ଭୋଗାଲିବିହୁ ସମୟରେ କିଛିଦିନ ପାଇଁ ଚାଷ କାର୍ଯ୍ୟଠୁ ଦୂରରେ ରହି ନିଜ ପରିବାର ସହିତ ଆନନ୍ଦରେ ଦିନ କେତୋଟି କଟାଇଥାଏ । ଗୃହିଣୀମାନେ ଉରୁକାଦିନ ରାତିରେ ବିଭିନ୍ନ ପ୍ରକାର ସୁସ୍ୱାଦୁଯୁକ୍ତ ଖାଦ୍ୟ ତିଆରି କରି ନିଜର ପରିବାରମାନଙ୍କୁ ଖୁଆଇବା ସଂଗେ ସଂଗେ ବନ୍ଧୁବାନ୍ଧବଙ୍କୁ ମଧ ଖୁଆଇଥାଆନ୍ତି । ଉରୁକାଦିନ ରାତିରେ ଧନୀ ବା ଗରୀବ ହେଉ, ସମସ୍ତେ ମିଶି ମାଛ ମାଂସ ଆଦି ରାନ୍ଧି ଭୋଜିଭାତ କରି ଖାଇଥାଆନ୍ତି । ମାହ-ପିଠା, ଟେକେଲି ପିଠା, ସୁଙ୍ଗା-ପିଠା ଏବଂ ତିଳ ପିଠା ଆଦି ଗୃହିଣୀମାନେ ଉରୁକା ଦିନ ରାତିରେ ତିଆରି କରିଥିବାରୁ ସମସ୍ତ ପରିବାର ବିହୁଦିନ ମଧ ସେହି ପିଠା ଖାଇଥାଆନ୍ତି । ମାହକରାଇ ପିଠା ମୁଖ୍ୟତଃ ଭଜା ଚାଉଳ, ବିରିଅଦା ଏବଂ ତେଲରେ ତିଆରି ହୋଇଥାଏ । ଚାଉଳ ସିଝା ହୋଇ ଟେକେଲୀ ପିଠା ତିଆରି କରାହୁଏ । ଏହା ଛୋଟ ଖୋବା ବା ଠେକି ଭିତରେ ତିଆରି କରାହେବାରୁ ଏହାର ନାମ ଟେକେଲୀ ପିଠା ରଖା ହୋଇଛି । ସୁଙ୍ଗା ପିଠା ଗୋଟିଏ ବାଉଁଶନଳୀ ଭିତରେ ଚାଉଳଚୂନାକୁ ରଖାଯାଇ ନିଆଁରେ ପୋଡ଼ି ତିଆରି କରାଯାଇଥାଏ । ସୁଙ୍ଗାପିଠା 'ବରା' ନାମକ ଧାନର ଚାଉଳରେ ତିଆରି ହୋଇଥାଏ । ପିଠାଗୁଡ଼ିକ ସରୁ ସରୁ ବାଉଁଶନଳୀ ଭିତରେ ରଖି ତିଆରି କରାଯାଇଥାଏ । ସୁଙ୍ଗା ପିଠାକୁ ସାଧରଣତଃ କ୍ଷୀର ଓ ଗୁଡ଼ ସହିତ ଖାଇଥାଆନ୍ତି । ଉରୁକା ଦିନ ରାତିରେ ସମସ୍ତେ ମାଛମାଂସ ଖାଇ ରାତିଟି ଆନନ୍ଦରେ କଟାଇ ଦିଅନ୍ତି । ତା' ପରଦିନ ଅର୍ଥାତ୍ ମାଘବିହୁ ଦିନ ଅତି ସକାଳୁ ଘରର ସମସ୍ତ ସଦସ୍ୟ ଗାଧୋଇ ଆସି ଗାଁମୁଣ୍ଡର ଗୋଟିଏ ଜାଗାରେ ଏକତ୍ରିତ ହୁଅନ୍ତି । ତା' ଆଗଦିନ ରାତିରେ ଅଗ୍ନି ଉତ୍ସବ ପାଇଁ ଗାଁର ଲୋକମାନେ 'ମେଜି' ତିଆରି କରିଥାଆନ୍ତି । ଏହାପରେ ଛୋଟପିଲାଠୁ ବୁଢାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ଅଗ୍ନି ଦେବତାଙ୍କୁ ପ୍ରଣାମ କରି ମେଜି ପାଖରେ ବସି ନିଆଁ ପୁହାଇଥାଆନ୍ତି । ନିଆଁ ଲିଭିଗଲା ପରେ ପୂଜକ ସେହି ପାଉଁଶକୁ ଲୋକମାନଙ୍କ ମଥାରେ ଲଗାଇଥାଆନ୍ତି । କୃଷକମାନେ ଅଧାପୋଡ଼ା କାଠକୁ ଘେନି ନିଜର ବାଡ଼ି ବଗିଚାରେ ତଥା ଚାଷ ଜମିରେ ପୋତିଦିଅନ୍ତି ଏବଂ ପାଉଁଶକୁ ଜମିରେ ଛାଟିଦିଅନ୍ତି । ନିଆଁ ଭିତରେ ଲୋକମାନେ ଆଳୁ, ବାଇଗଣ, କନ୍ଦମୂଳ ତଥା ଅନ୍ୟାନ୍ୟ ପରିବା ପୋଡ଼ି ଘରକୁ ନେଇ ଖାଇଥାଆନ୍ତି । ଘରକୁ ଫେରି ଲୋକମାନେ ଦହି, ଚୂଡ଼ା, ଗୁଡ଼ ଆଦି ଖାଇବାର ଏକ ନିୟମ ରହିଛି । ଏହିଦିନ ଘରେ ଘରେ ଚୁଲି ଜଳାହୁଏ ନାହିଁ । ଆଗଦିନ ତିଆରି କରି ରଖିଥିବା ପିଠା ଆଦି ସମସ୍ତେ

ଖାଇଥାଆନ୍ତି । ଦିନସାରା ପିଠାପଣା ଖାଇ ସମସ୍ତେ ଆନନ୍ଦ ଭିତରେ ସମୟ କଟାଇ ଦିଅନ୍ତି । ରାତିକୁ ନୂଆଧାନର ଭାତ ଏବଂ ବିରି ତରକାରୀ ତଥା କନ୍ଦମୂଳ ଭଜା ଆଦି ସମସ୍ତେ ରୋଷେଇ କରି ଖାଆନ୍ତି । ତା' ପରଦିନ ଉପରବେଳା ପ୍ରତ୍ୟେକ ଲୋକ ଅଳ୍ପଟିକିଏ ବାସି ପଖାଳ ଏବଂ ଆଗଦିନ ରାତିରେ ରନ୍ଧାଯାଇଥିବା ବାସି ଡାଲି ମିଶେଇ ଖାଇବାର ନିୟମ ଏବେ ମଧ୍ୟ ଅଛି । ଏଥିରୁ ବହୁପୂର୍ବରୁ ଜନଜାତିମାନଙ୍କ ମଧ୍ୟରେ ପ୍ରଚଳିତ ହୋଇ ଆସୁଥିବା ପଖାଳ ଭାତରୁ ତିଆରି 'ମଦ' ଖାଇବାର ଅଭ୍ୟାସକୁ ସ୍ମରଣ କରାଯାଇଥାଏ ।

ଆସାମର କଚାରୀ ଜନଜାତିମାନଙ୍କ ମଧ୍ୟରେ ସମଧିରଣର 'ମାଘବିହୁ' ପାଳନ କରାଯାଇଥାଏ ଯଦିବା କେତୋଟି କ୍ଷେତ୍ରରେ କିଛିଟା ପାର୍ଥକ୍ୟ ରହିଛି । ସେମାନେ ଫଳପ୍ରସୂ ଗଛର ଚାରିପଟେ ଫିତାବାନ୍ଧି ପୂଜା କରିଥାଆନ୍ତି । ଏହାପରେ ଚାଉଳ ପ୍ରସାଦ ଗଛ ପାଖରେ ଲଗାଇଥାଆନ୍ତି । ଏହିଦିନ ବିଭିନ୍ନ ପ୍ରକାର ପକ୍ଷୀ ତଥା କୁକୁର ଓ ଘୁଷୁରୀମାନଙ୍କ ଉଦ୍ଦେଶ୍ୟରେ ଚାଉଳ ଖାଇବାକୁ ଦେଇଥାଆନ୍ତି । ଭଣ୍ଡାରଘରେ ମାଘବିହୁର ପରଦିନ ଗୋବର ପାଣି ଛାଟିଥାଆନ୍ତି ।

ମାଘବିହୁ ସମୟରେ ଯୁବକମାନେ ଦୌଡ଼ ପ୍ରତିଯୋଗୀତା, ମଇଁଷୀ ଯୁଦ୍ଧ, ଅଣ୍ଡା, ତେଣ୍ଟା ଫୋପଡ଼ା ପ୍ରତିଯୋଗୀତା ଆଦି ଖେଳର ଆୟୋଜନ କରିଥାଆନ୍ତି । ଆଗକାଳରେ ଖଣ୍ଡାଖେଳ ଏବଂ ତେଣ୍ଟା ଖେଳ ଭଳି ପ୍ରତିଯୋଗୀତାର ଆୟୋଜନ କରିବା ପ୍ରଥା ପ୍ରଚଳିତ ଥିଲା । ପ୍ରତିଯୋଗୀତାରେ ମାଘବିହୁ ଦିନ ଯୁବକମାନେ ପ୍ରାୟତଃ ଭାଗ ନେଇଥାଆନ୍ତି । ସେଥିପାଇଁ ଶୁଖିଯାଇଥିବା ନଦୀକୂଳରେ ବିହୁର କେତେଦିନ ପୂର୍ବରୁ ଯୁବକମାନେ କୁଡିଆ ତିଆରି କରି ବିଭିନ୍ନ ପ୍ରକାର ଖେଳର କସରତ ଆରମ୍ଭ କରିଥାଆନ୍ତି । (୩୮)

**ମେଜି** - ବହାଗବିହୁ ଦିନ ସକାଳୁ ଅଗ୍ନି ଉତ୍ସବ ପାଇଁ କୁଟା ଓ କାଠରେ ନିର୍ମାଣ କରାଯାଇ ଉଚ୍ଚ ମନ୍ଦିର ଭଳି ସଜ୍ଜା ଯାଇଥିବା ଜିନିଷକୁ ମେଜି କୁହାଯାଇଥାଏ । ମେଜି ତିଆରି ପାଇଁ ଚାରିକୋଣରେ ବାଉଁଶର ଚାରିଟା ଖୁଣ୍ଟ ପୋତା ଯାଇଥାଏ । ସେହି ଖୁଣ୍ଟ ଉପରେ କାଠରେ ଭାଡ଼ିଭଳି କରି ତା' ଉପରେ ଜାଳେଣି କାଠ ଓ କୁଟାଦେଇ ମନ୍ଦିର ଭଳି ସଜ୍ଜା ଯାଇଥାଏ । ବିହୁଦିନ ସକାଳୁ ସମସ୍ତେ ଗାଧୋଇ ଆସିଲା ପରେ ପୁରୋହିତ ବା ବୟୋଜ୍ୟେଷ୍ଠ ଲୋକ ମେଜିରେ ଅଗ୍ନି ସଂଯୋଗ କରନ୍ତି । ସମସ୍ତ ଲୋକମାନେ ଅଗ୍ନିଦେବତାଙ୍କୁ ପ୍ରଣାମ କରି ନିଜର ତଥା ପରିବାରର ମଂଗଳ କାମନା କରି ଅଗ୍ନି ଉତ୍ସବ ପାଳନ କରିଥାଆନ୍ତି । (୩୯)

ବିହୁ ଉତ୍ସବରେ ବିଭିନ୍ନ ସଂସ୍କୃତିର ପ୍ରଭାବ ପଡିଛି । ଉଦାହରଣ ସ୍ୱରୂପ ମାଘବିହୁରେ ସଚରାଚର ପାଳନ କରାଯାଉଥିବା 'ଅଗ୍ନିଉତ୍ସବ'ର ମେଜି ଶବ୍ଦଟି ସଂସ୍କୃତ 'ମେଧ୍ୟ' ଶବ୍ଦରୁ ଆସିଛି ବୋଲି ଅନୁମିତ ହୁଏ । ମାଘବିହୁର ମଇଁଷୀ ଲଢେଇ ପ୍ରଥା ଦ୍ରାବିଡୀୟ ସଂସ୍କୃତିରୁ

ଆସିଛି । ପଣ୍ଡିତମାନଙ୍କ ମତରେ ଆସାମର 'ମେଜିପୋରା' ବା 'ମେଜିପୋଡ଼ା' ରୀତି ମଧ୍ୟରେ ଆର୍ଯ୍ୟମାନଙ୍କର ଅଗ୍ନିପୂଜାର ଇଙ୍ଗିତ ରହିଛି । ଉଇରୋପରେ ମଧ୍ୟ ଏହିଭଳି ଭାବେ ଅଗ୍ନିଉତ୍ସବ ପାଳନ କରାଯାଇଥାଏ । ବର୍ଷର ଏକ ନିର୍ଦ୍ଦିଷ୍ଟ ଦିନରେ ଅଧାରାତିର ଲୋକମାନେ ନିଆଁ ଜଳାଇଥାଆନ୍ତି । ଏହିଦିନ ମଧ୍ୟ ଲୋକମାନେ ଘର ଭିତରେ ଲଣ୍ଠନ ଜଳାଇବାର ନିୟମ ରହିଛି । ତା' ପରଦିନ ନିଆଁର ପାଉଁଶକୁ ଫସଲର ଉର୍ବରତା ପାଇଁ ଚାଷ ଜମିରେ ଛାଟି ଦେଇଥାଆନ୍ତି । ତେଣୁ ଏହି ଅଗ୍ନିଉତ୍ସବ ପ୍ରଥା ଇଣ୍ଡୋ ୟୁରୋପୀୟାନ୍‌ଙ୍କଠାରୁ ଆସିଛି ବୋଲି ଡଃ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ ମତ ପ୍ରକାଶ କରିଛନ୍ତି । 'ମେଜିପୋଡ଼ା' ସମୟରେ ଲୋକମାନେ ଏହାର ଚାରିପଟେ ବସି ନାମଗାନ (ଭଜନ) କରିଥାଆନ୍ତି । ଏହି ନାମଗାନ ମଧ୍ୟରେ ବୈଷ୍ଣବବାଦର ପ୍ରଭାବ ସ୍ପଷ୍ଟ ହୋଇଉଠିଛି ।

**ଭେଲାଘର—** 'ଭେଲାଘର' ଶବ୍ଦଟି ସଂସ୍କୃତ 'ମେଷଗୃହ'ର ପ୍ରଭାବ ବୋଲି ଅନୁମିତ ହୁଏ । ସାଧାରଣତଃ ନଦୀ କୂଳରେ କୃଷକମାନେ ଉରୁକାଦିନ ରାତିରେ ତିଆରି କରିଥାଆନ୍ତି । ଚାରିପଟେ କାଠ ଓ କଦଳୀପାଟୁଙ୍ଗା ଦେଇ କୃଷକମାନେ ଗୋଟିଏ ଛୋଟିଆ କୁଡିଆ ତିଆରି କରିଥାଆନ୍ତି । ଏହା ଉପରେ କୁଟାଦେଇ ସଜେଇ ଥାଆନ୍ତି । ଉରୁକାଦିନ ରାତିରେ ଯୁବକମାନେ ଗାଁରୁ ଚୋରି କରି ଆଣିଥିବା ବିଭିନ୍ନ ପ୍ରକାର ପରିବାପତ୍ର ଏବଂ ମାଛମାଂସ ଆଦି ଏହି ଘରେ ତିଆରି କରି ଖାଆନ୍ତି ଏବଂ ରାତିରେ ସେହିଠାରେ ହିଁ ବିଶ୍ରାମ ନେଇଥାଆନ୍ତି । ତା' ପରଦିନ କାଉ 'କା' କହିବା ପୂର୍ବରୁ ଯୁବକମାନେ ଭେଲାଘରେ ଅଗ୍ନିସଂଯୋଗ କରିଥାଆନ୍ତି । ଉଭୟ ମେଜି ବା ଭେଲାଘରେ ଅଗ୍ନିସଂଯୋଗ କରାଯାଇ ଅଗ୍ନିଉତ୍ସବ ପାଳନ କରାଯାଇଥାଏ । କେବଳ ଗଢଣର ଆକୃତି ଯୋଗୁ ମେଜି ଓ ଭେଲାଘର ମଧ୍ୟରେ ପାର୍ଥକ୍ୟ ଦେଖାଯାଇଥାଏ । ଭେଲାଘର ସାଧାରଣତଃ ନଦୀ କୂଳରେ ନିର୍ମାଣ କରି ରାତିରେ କୃଷକମାନେ ଯେ ଫସଲ ଜଗୁଥିଲେ ତା'ର ନିଦର୍ଶନ ଏହି ଭେଲାଘରରୁ ମିଳିଥାଏ ।

ଉଜନି ଆସାମରେ (Upper Assam) ବହାଗ ବିହୁ ଉତ୍ସବ ଅଧିକ ଆକର୍ଷଣୀୟ ହେଲାଭଳି ନାମନି ଆସାମରେ (Lower) ମାଘବିହୁ ଅଧିକ ଜାକଜମକ ସହକାରେ ପାଳିତ ହୋଇ ଆସୁଛି । ତେଣୁ ମାଘ ବିହୁର ଅଗ୍ନି ଉତ୍ସବ ଅଧିକ ଆକର୍ଷଣୀୟ ହୋଇଥାଏ । ଜନଜାତିର ନାରୀମାନେ ମାଘବିହୁ ପାଇଁ ଆଗରୁ ଚାଉଳର ମଦ (Rice beer) ତିଆରି କରି ରଖିଥାନ୍ତି । ଏହି ମଦ ତିଆରି ପାଇଁ ପାଞ୍ଚଦିନ ଆଗରୁ ନାରୀମାନେ ମଦ ପ୍ରସ୍ତୁତି ଆରମ୍ଭ କରିଥାଆନ୍ତି । ଅନ୍ୟ ଏକ ଆକର୍ଷଣୀୟ କଥା ହେଉଛି ଯେ କଚାରୀମାନେ ବିଶ୍ୱାସ କରନ୍ତି ଯେ ଭେଲା ଘର ଗାଈ ରଖୁଆଳ ପିଲାଙ୍କ ଦ୍ୱାରା ନିର୍ମିତ ହେବା ଉଚିତ । ସେମାନେ ହିଁ ପ୍ରଥମେ ଭେଲାଘରେ ଅଗ୍ନି ସଂଯୋଗ କରିବା ଉଚିତ । ଭେଲାଘରେ ଅଗ୍ନି ସଂଯୋଗ କଲାବେଳେ 'କଚାରୀ ଜନଜାତିର ଲୋକମାନେ ଏକ ସଂଗରେ କେତେଗୁଡ଼ିଏ ଧର୍ମୀୟ ଗୀତ ଗାଇ ଭଗବାନଙ୍କ

ନିକଟରେ ପ୍ରାର୍ଥନା କରିଥାନ୍ତି । ଗୀତର ତାତ୍ପର୍ଯ୍ୟ ହେଉଛି ଭଗବାନ୍ ଗ୍ରାମର ସମସ୍ତ ଲୋକଙ୍କୁ ରୋଗମୁକ୍ତ କରିବା ସଂଗେ ସଂଗେ ଉନ୍ନତ ଧରଣର ଚାଷବାସର କାମନା କରାଯାଇଥାଏ । ଏହା ସହିତ ଗାଈବଳଦ ତଥା ମଇଁଷୀ ଏବଂ ହାତୀମାନଙ୍କୁ ସୁସ୍ଥସବଳ ରଖିବା ପାଇଁ ମଧ୍ୟ ଗୁହାରି କରାଯାଇଥାଏ । କେହି କୃଷକ ଗାଈଗୋରୁଙ୍କୁ ପିଟିଲେ ତା'ର ଫସଲ ନଷ୍ଟ ହେବା ସହିତ ପରିବାରର ଅମଙ୍ଗଳ ହେବ ବୋଲି ଲୋକମାନେ ଗୀତ ଗାଇଥାନ୍ତି ।

୧୮୪୧ ଖ୍ରୀ: ରେ ଉଇଲିୟମ ରବିନ୍‌ସନ ବିହୁ ଉତ୍ସବ ସଂପର୍କରେ ମତ ଦେଇ କୁହନ୍ତି– ଆସାମବାସୀଙ୍କର ଦୁଇଟି ପ୍ରଧାନ ବିହୁ ଉତ୍ସବ ରହିଛି । ପ୍ରଥମ ବିହୁଟି ବୈଶାଖର ପ୍ରଥମ ତିନିଦିନରେ ପାଳିତ ହୁଏ । ଅନ୍ୟ ଏକ ବିହୁ ପୌଷ ମାସର ଶେଷ ଦିନ ଏବଂ ମାଘର ପ୍ରଥମ ଦିନ ପାଳନ କରାଯାଇଥାଏ, ତାହା ମାଘ ବିହୁ ନାମରେ ନାମିତ । ଶୀତଦିନର ଫସଲ ଅମଳ ପରେ ଏହି ଉତ୍ସବ ପାଳିତ ହୁଏ । ଏହି ଦିନ ମୁଖ୍ୟତଃ ଭୋଜି କରି ଆନନ୍ଦରେ ଖାଇପିଇ ଅସମବାସୀ ଭରୁକାଦିନ ରାତି ଓ ମାଘର ପ୍ରଥମ ଦିନକୁ କଟାଇଥାନ୍ତି । (୪୦)

ତେଣୁ ବହାଗ ବିହୁ ସମୟରେ ମୁଖ୍ୟତଃ ନୃତ୍ୟ ଓ ଗୀତ ମଧ୍ୟରେ ଲୋକମାନେ ନିଜକୁ ବ୍ୟସ୍ତ ରଖିଥାନ୍ତି । ମନ ଓ ପ୍ରାଣରେ ଏକ ମଧୁର ଆବେଗ ଦେଖା ଦେଇଥାଏ । କାର୍ତ୍ତିକ ବିହୁରେ ଭଗବାନଙ୍କର ପୂଜାପାଠ ମାଧ୍ୟମରେ ନିଜର ଭକ୍ତି ତଥା କର୍ତ୍ତବ୍ୟ ସଚେତନତା ପ୍ରତି ଲୋକମାନେ ଅଧିକ ତତ୍ପର ହୋଇଉଠନ୍ତି । ମାଘ ବିହୁରେ ଆନନ୍ଦରେ ଖାଇପିଇ ଲୋକମାନେ ସୁଖଦୁଃଖ ମଧ୍ୟରେ ନିଜର କଷ୍ଟକୁ ଭୁଲି ନିଜେ ହସି ଅନ୍ୟକୁ ହସାଇବାର, ନିଜେ କଷ୍ଟ କରି ଅନ୍ୟକୁ କର୍ମର ପ୍ରେରଣା ଦେଇଥାନ୍ତି । ତା ସହିତ ଉତ୍କୃଷ୍ଟ ଧରଣର ଖାଦ୍ୟ ଖାଇ କୃଷକ ନିଜକୁ ମଜଭୁତ କରିଥାଏ । ମାଘ ବିହୁରେ ଖାଦ୍ୟ ଉପରେ ଅଧିକ ଜୋର ଦିଆଯାଇଥାଏ । ସେଥିପାଇଁ ଆଲୋଚକ ଡଃ ଲୀଳାଗଗୈ କୁହନ୍ତି– ବକୁଳବରା ଧାନର ଖଇ, ମାଲଭୋଗ ଧାନର ତେନ୍ତୁଲି ପତରିଆ ଚୂଡ଼ା, ବକନା ମଇଁଷୀର ଦୁଧରେ ତିଆରି ଖଣ୍ଡଖଣ୍ଡ ଦହି ଆଦିକୁ ମିଶାଇ ଅସମୀୟା ଅତୀତରେ ଦିନେ ପେଟପୂରା ମୁଠାଏ ଖାଉଥିଲା ଏବଂ ଅନ୍ୟକୁ ଖୁଆଉଥିଲା ତାହା ହିଁ ବିହୁର ଜଳପାନ ଅଟେ ।

ମାଘ ବିହୁ ପୂର୍ବରୁ କୃଷକ ଘରଦ୍ୱାର ଠିକ୍ ଠାକ୍ କରିଥାଏ । ଏହି ସମୟରେ ଚାଷ କାମରୁ ଅବ୍ୟାହତି ଯୋଗୁ କୃଷକ ତା'ର ଗୃହିଣୀକୁ ଘରକାମରେ ସହଯୋଗ କରିଥାଏ । ନାରୀମାନେ ମୁଖ୍ୟତଃ ବହାଗ ବିହୁ ସମୟରେ ବସ୍ତ୍ରବୟନ କାମ ଆରମ୍ଭ କରିଥାନ୍ତି । ସେଥିପାଇଁ କୃଷକ ଓ ତା' ସ୍ତ୍ରୀ ତଥା ପିଲାମାନେ ଘରକାମଠୁ ଆରମ୍ଭ କରି ତନ୍ତଶାଳ ପର୍ଯ୍ୟନ୍ତ ଏହି ସମୟରେ ଠିକ୍ ଠାକ୍ କରିଥାନ୍ତି । (୪୧)

ତେଣୁ ମୋଟା ମୋଟି ଭାବେ କହିବାକୁ ଗଲେ ବିହୁ ଉତ୍ସବ ଗୁଡ଼ିକ ମୁଖ୍ୟତଃ କୃଷି ଉତ୍ସବ । ବର୍ଷର ଚାଷବାସ ପାଗର ସୂଚନା ବହାଗ ବିହୁରେ ଏବଂ ଚାଷ ଅମଳର ପୂର୍ବ ଇଙ୍ଗିତକୁ କାତି ବିହୁରେ ପାଳନ କରାଯାଇଥାଏ ଏବଂ ଚାଷ ଅମଳର ଆନନ୍ଦ 'ମାଘ ବିହୂ'ର ଉଦ୍‌ଯାପନ ଉତ୍ସବରେ ପ୍ରକାଶ ପାଇଥାଏ । ଆସାମ ଏକ କୃଷି ପ୍ରଧାନ ଦେଶ ହୋଇଥିବାରୁ କୃଷି ସଂପର୍କୀୟ ଉତ୍ସବ ଯେ ଆସାମରେ ବିଶେଷଭାବେ ସମାଦୃତ ହେବ ଏଥିରେ ସନ୍ଦେହ ନାହିଁ ।

## ପ୍ରଥମ ପରିଚ୍ଛେଦ

ସଙ୍କେତ୍ ସୂଚୀ— (୧) 'ଡିମାସା ସକଳର ଗୀତ ମାତ'- ପୃ-୯, ନଗେନ୍ଦ୍ର ନାଥ ବରୁଆ । (୨) 'ଅସମୀୟା ଲୋକ ସଂସ୍କୃତିର ଆଭାସ'- ପୃ-୨୬୭, ନବୀନ ଚନ୍ଦ୍ର ଶର୍ମା । (୩) 'ଅସମୀୟା ଜନ ସାହିତ୍ୟ' - ପୃ-୧୫, ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ । (୪) 'ଆଜିର ଅସମ' - ୧୯୯୭-୧୩-ଏପ୍ରିଲ-ନଗେନଦତ୍ତ । (୫) Folklore of Assam- P-83-84, Jogesh Das । (୬) 'ଅସମୀୟା ଲୋକସାହିତ୍ୟର ରୂପରେଖା' ପୃ-୧୬୩-ଲୀଲାଗଗେଁ । (୭) Folklore of Assam- P-84-Jogesh Das । (୮) ପ୍ରାଚୀନ ଅସମର ବସନ୍ତ ଉତ୍ସବ-ଦୈନିକ ପତ୍ରିକା- 'ଆଜିର ଅସମ'- ୧୯୯୭-୧୩-ଏପ୍ରିଲ୍- ସୂର୍ଯ୍ୟ ଦାସ । (୯) 'ଅସମୀୟା ଜନସାହିତ୍ୟ' - ପୃ-୧୭-୧୮, ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ । (୧୦) 'ବିହୁ ଆମର ଜାତୀୟ ଉତ୍ସବ' ସାପ୍ତାହିକ ପତ୍ରିକା- 'ସାଦିନ'- ପୃ-୭, ଶରତଚନ୍ଦ୍ର ସିଂହ । (୧୧) 'ବିହୁ ଗୀତ ଓ ଅସମର ପ୍ରାକୃତିକ ଚିତ୍ର' - ଦୈନିକ ପତ୍ରିକା ଆଜିର ବାତରି- ୧୯୯୮-୧୧-ଏପ୍ରିଲ୍-ଜଗଦୀଶ ନାଥ୍ । (୧୨),(୧୩), ଅସମର ଲୋକ ସାହିତ୍ୟ-ପୃ-୧୪୮-ଶଶୀଶର୍ମା, (୧୪) ଅସମୀୟା ଲୋକସାହିତ୍ୟର ରୂପରେଖା-ପୃ-୧୬୩-ଲୀଲା ଗଗେଁ । (୧୫) 'ବିହୁ କୃଷି ଭିତ୍ତିକ ଲୋକ ଉତ୍ସବ'-ସାପ୍ତାହିକ ପତ୍ରିକା- 'ସାଦିନ'-୧୯୯୬-୧୨-ଏପ୍ରିଲ-ଭୃଗୁମଣି କାଗୟୁଂ । (୧୬) Folklore of Assam-P-79-80, Jogesh Das । (୧୭) 'ଅସମୀୟା ଲୋକ ସାହିତ୍ୟର ରୂପରେଖା'-ପୃ-୧୬୬-ଲୀଲାଗଗେଁ । (୧୮) 'ସମନ୍ୱୟର ଉତ୍ସବ-ବହାଗ ବିହୁ'-ଦୈନିକ ପତ୍ରିକା-'ଆଜିର ବାତରି'- ୧୯୯୮-୧୩-ଏପ୍ରିଲ୍-ଡଃ ପ୍ରବୀନ ଚନ୍ଦ୍ର ଦାସ । (୧୯) ତତ୍ରୈବ । (୨୦) 'ବସନ୍ତୋତ୍ସବ'- ଦୈ: ପତ୍ରିକା 'ଆଜିର ବାତରି' - ୧୯୯୮-୧୩-ଏପ୍ରିଲ-'ଜିତୁ କୁମାର ଲେଖାରୁ' । (୨୧) ଅସମୀୟା ଲୋକ ସଂସ୍କୃତିର ଆଭାସ- ପୃ-୨୭୦-ନବୀନଚନ୍ଦ୍ର ଶର୍ମା । (୨୨) 'ଅସମୀୟା ଜନ ସାହିତ୍ୟ'-'ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ'-ପୃ-୨୦ । (୨୩) 'ପ୍ରେମ ଆରୁ ଯୌନାଚାରର

ରଂଗାଲି ବିହୁ'-'ଦୈନିକ ପତ୍ରିକା'-'ରଂପୁର' ୧୯୯୮-୧୯-ଏପ୍ରିଲ୍'-'ସୀମାନ୍ତ କୁମାର ଲେଖାରୁ'। (୨୪) 'ପ୍ରାଚୀନ ଅସମର ବସନ୍ତ ଉତ୍ସବ'-'ଆଜିର ଅସମ'-୧୯୯୭-୧୩-ଏପ୍ରିଲ-ସୂର୍ଯ୍ୟଦାସ । (୨୫) 'ସମନ୍ୱୟର ଉତ୍ସବ-ବହାଗ ବିହୁ' ଦୈ: ପତ୍ରିକା- 'ଆଜିର ବାତରି' - ୧୯୯୮-୧୩-ଏପ୍ରିଲ-ପ୍ରବୀନ ଚନ୍ଦ୍ର ଦାସ । (୨୬) ପ୍ରେମ ଆରୁ ଯୌନାଚାରର ଉତ୍ସବ ରଂଗାଲି ବିହୁ-ଦୈ: ପତ୍ରିକା-'ରଂପୁର'-୧୯୯୮-୧୯-ଏପ୍ରିଲ୍-'ସୀମାନ୍ତ କୁମାର ଲେଖାରୁ'। (୨୭) 'ପ୍ରାଚୀନ ଅସମର ବସନ୍ତ ଉତ୍ସବ'-ଦୈ: ପତ୍ରିକା-'ଆଜିର ଅସମ'-୧୯୯୭-୧୩-ଏପ୍ରିଲ୍-ସୂର୍ଯ୍ୟ ଦାସ । (୨୮) ତତ୍ରୈବ । (୨୯) 'ଅସମୀୟା ଜନସାହିତ୍ୟ-ପୃ-୧୭-ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ । (୩୦) ଜନଗୋଷ୍ଠୀର ସମନ୍ୱୟର ପ୍ରତୀକ-'ସାଦିନ' 'ଦୈନିକ ପତ୍ରିକା' -୧୯୯୬-୧୨-ଏପ୍ରିଲ-ରାଜେନ୍ଦ୍ରନାଥ ବରଦଲୈ । (୩୧) ଆଜିର ବିହୁୟେ ପରଂପରା ଏରିଛେ-'ଆଜିର ଅସମ'-'ଦୈନିକ ପତ୍ରିକା'-୧୯୯୭-୧୩-ଏପ୍ରିଲ୍-ଲୀଳାଧର ହାଜରିକା । (୩୨) 'ରଂଗାଲିର୍ ''-ଦୈ: ପତ୍ରିକା- 'ଆଜିର ବାତରି' -୧୯୯୬-୧୩-ଏପ୍ରିଲ୍ -ମିହିର ଦେଉରୀ । (୩୩) 'ସଂସ୍କୃତି ଆରୁ ଲୋକସଂସ୍କୃତି-ପୃ-୬୩-୬୪, 'ଭୃଗୁମୋହନ ଗୋସ୍ୱାମୀ' । ୩୪- Festivals of Assam-Prafulla Datta Goswami-P-15 । (୩୫) 'ସଂସ୍କୃତି ଆରୁ ଲୋକସଂସ୍କୃତି'-ପୃ-୬୪-ଭୃଗୁମୋହନ ଗୋସ୍ୱାମୀ । (୩୬) ତତ୍ରୈବ । (୩୭) Festivals of Assam-P-21,P.d. Goswami-P. । (୩୮) Festivals of Assam-P-19-20, Prafulla Datta Goswami । (୩୯) Festivals of Assam-P-83-84, Jogesh Das । (୪୦) Festivals of Assam-P-19-20, P. D. Goswami । (୪୧) ଅସମୀୟା ଲୋକ ସାହିତ୍ୟର ରୂପରେଖା-ଲୀଳାଗଗୈ-ପୃ-୧୬୩ ।



# ଦ୍ୱିତୀୟ ପରିଚ୍ଛେଦ

**ବସନ୍ତ ଉତ୍ସବ-ବିହୁ** — ବହାଗ ବିହୁ ମୁଖ୍ୟତଃ ବସନ୍ତକାଳୀନ ଉତ୍ସବ । ଆଦିମ ଯୁଗରେ ଶୀତ ବା ବର୍ଷାର ପ୍ରାଦୁର୍ଭାବକୁ ଘଉଡାଇଦେବା ପାଇଁ ଏବଂ ବସନ୍ତ ବା ବର୍ଷାର ନବଜୀବନକୁ ଆଦରିବା ପାଇଁ ଯେଉଁ ଅନୁଷ୍ଠାନର ସୂଚନା ହୋଇଥିଲା, ତା'ର ଚିହ୍ନ ବର୍ତ୍ତମାନ ସଭ୍ୟତାର ସ୍ପର୍ଶ ଲାଗି ନଥିବା ଜଙ୍ଗଲ ତଳର ଖେଳ ବା ଜାତି ମଧ୍ୟରେ ଦେଖିବାକୁ ମିଳିଥାଏ । ଶୀତକାଳ ପରେ ବର୍ଷାର ପରଶ ପାଇ ଏବଂ ଖରାର ଉତ୍ତାପରେ ନୈସର୍ଗିକ ଜଗତ ଯେଉଁ ଏକ ଅଭିନବ ରୂପରେ ସଜାଗ ହୋଇଉଠେ, ତା'ର ପ୍ରତିଧ୍ୱନୀ ବହାଗ ବିହୁର ଆନନ୍ଦରେ ଗୁଞ୍ଜରିତ ହୋଇଉଠେ । ବସନ୍ତର ସମାଗତରେ ପୃଥିବୀ ନୂତନ ଜୀବନ ପାଇଁ ସଜାଗ ହୋଇଉଠେ । ସେହିପରି ନରନାରୀ ନୂତନ ଉତ୍ତେଜନା ପାଇ ଭୟଭୀତ ହୋଇଯାଆନ୍ତି । ଏହି ସମୟରେ ବନ୍ୟ ପଶୁପକ୍ଷୀ ଆଦି ନିଜର ସାଥି ଖୋଜି ନିଅନ୍ତି, ମଣିଷର ଯୌନକ୍ଷୁଧା ସଜାଗ ହୋଇଉଠେ । ତା'ର ଆଭାସ ବିହୁ ଗୀତ ଗୁଡ଼ିକରେ ମିଳିଥାଏ । ବହାଗ ବିହୁ ସମସ୍ତଙ୍କ ମନରେ ନୂତନ ଆଶା ଓ ରଂଗ ଭରିଦିଏ । ଅସମୀୟା ଯୁବତୀ ବହାଗ ବିହୁର ଆନନ୍ଦରେ ଅଧିର ହୋଇ ଗାଏ—

ଲୁଇତର ବାଲି ବଗୀ ଧକେ ଧକି
କାଛଇ କନି ପାରେ ଲେଖି;
ଗାତେ ଜୁଇ ଜ୍ୱଲେ ସରିୟହ ବାଗରେ
ଧନକ ପାନିଘାଟତ ଦେଖି ।

ଲୋହିତ ନଦୀର ଧଳା ବାଲିରେ କଇଁଚ ଗଣିଗଣି ଅଣ୍ଡା ଦେଇଯାଏ, ଏହା ସତ କଥା ମାତ୍ର ନିଜର ପ୍ରିୟାକୁ ପାଣିଘାଟରେ ଦେଖି ଦେହରେ ସୋରିଷ ଫୁଟିଲା ଭଳି ତାତି ଆସିଲା । ଏହା ବସନ୍ତର ସ୍ପର୍ଶରେ ଭୟମିଶ୍ରିତ ମଧୁର ଅନୁଭୂତ ମାତ୍ର ।

କୋଇଲିର କୁହୁକୁହୁ ତାନରେ ବସନ୍ତ ଋତୁକୁ ପ୍ରକୃତି ଆହ୍ୱାନ କରିଥାଏ । ଏହି ତାନ ଅସମୀୟା ଯୁବକ ଯୁବତୀର ମନ ଭିତରେ କୌଣସି ଏକ ଅଦେଖା ଶକ୍ତିକୁ ଜଗାଇଥାଏ । ବସନ୍ତରେ କୋଇଲି କୁହୁକୁହୁ କରି ଡାକେ ନାଁ କୋଇଲି ଡାକରେ ବସନ୍ତ ଋତୁ ଆସିଥାଏ, ଏହା ଏକ ବିବଦମାନ ପ୍ରଶ୍ନ ହେଲେ ହେଁ ଏକଥା ସତ ଯେ ଆସାମର ଲୋକମନରେ ବସନ୍ତ

---

ଶବ୍ଦାର୍ଥ : ଲୁଇତ - ବ୍ରହ୍ମପୁତ୍ର, ବଗୀ - ଧଳା, ଧକ ୨ - ଚକ ୨, କାଛ- କଇଁଚ, କନି- ଅଣ୍ଡା, ଗା - ଦେହ, ଜୁଇ-ନିଆଁ, ସରିୟହ-ସୋରିଷ, ପାନି- ପାଣି

ଋତୁ ଏକ ସ୍ୱତନ୍ତ୍ର ଧରଣର ଋତୁ ହୋଇ ଆସିଥାଏ । ବସନ୍ତର ଆଗମନରେ ପ୍ରତ୍ୟେକର ମନରେ ଉଦ୍ଦୀପନା ଭରିଯାଏ । ବସନ୍ତର ପରଶରେ ପ୍ରକୃତି ସତେଜ କୋମଳ ହେବା ସଂଗେ ସଂଗେ ଅସମୀୟା ଯୁବକ ଯୁବତୀର ମନ ଓ ପ୍ରାଣ ଚଞ୍ଚଳ ହୋଇଉଠେ । ସେମାନେ ଜୀବନକୁ କିଛିଟା ଅଲଗା ତଥା ସ୍ୱତନ୍ତ୍ର ଭାବେ ଉପଲବ୍ଧି କରିବା ପାଇଁ ଇଚ୍ଛା କରିଥାନ୍ତି । ତା'ର ପ୍ରତିଫଳନ ବିହୁ ଗୀତ ଗୁଡ଼ିକରେ ସ୍ପଷ୍ଟଭାବେ ଫୁଟିଉଠିଛି ।

୧ - ଘରେ ନ ଲାଗଇ ମନ ପ୍ରିୟତମ
ବାହାରେ ନ ଲାଗେ ମନ;
ଶିମୂଳି ତୁଳା ଗୁଡ଼ା ଯେମିତି ଉଡନ୍ତି
ସେମିତି ଉଡିବାକୁ ମନ ।

୨ - କାହିଁକି ଚଇତମାସିଆ କୋଇଲି କାନ୍ଦିଲା
ଶୁଣିବାକୁ ଅଦିନିଆର ଡାକ;
ଧନର ଡାକଶୁଣି ମୁଁ ରହି ପାରିଲିନି
ଭୁଲିଲି ପେଟର ଭୋକ ।

ବସନ୍ତର ସ୍ପର୍ଶରେ ଯୁବକ ଯୁବତୀମାନେ ପରସ୍ପର ପ୍ରତି ଆସକ୍ତ ହୋଇପଡନ୍ତି । ସେଥିପାଇଁ ବହାଗ ବିହୁରେ ସମସ୍ତଙ୍କର ମନ ଓ ପ୍ରାଣରେ ଏକ ଅକୁହା ଆନନ୍ଦ ଦେଖାଦେଇଥାଏ । ଆବାଳ ବୃଦ୍ଧ ବନିତା ସମସ୍ତେ ନୂଆ ନୂଆ ବସ୍ତ୍ର ପିନ୍ଧି, ଭଲ ଭଲ ଖାଦ୍ୟ ଖାଇ ଦିନସାରା ଆନନ୍ଦରେ କଟାଇବା ସଂଗେ ସଂଗେ ରାତିରେ ବିହୁତଳିର ବିହୁନାଚରେ ଯୋଗ ଦେଇଥାନ୍ତି । ସାରା ରାତି ବିହୁ ଗୀତ ଗାଇ ନାଚି ନାଚି କଟାଇଦିଅନ୍ତି । ଏହାହିଁ ବସନ୍ତକାଳୀନ ଉତ୍ସବ, ବହାଗ ବିହୁ । ଏହି ଉତ୍ସବରେ ବିହୁଗାନ ଛଳରେ କେହି କେହି ଯୁବତୀମାନେ ମନର ଭାବକୁ ଆପଣାର ବୋଲି ଭାବିଥିବା ପୁରୁଷଟିକୁ କହିବା ପାଇଁ ସୁଯୋଗ ପାଇଥାନ୍ତି । ଏହି ସୁଯୋଗ ଆଧୁନିକା ନାରୀ ମଧ୍ୟ ନେବାପାଇଁ ଇଚ୍ଛା କରିଥାନ୍ତି । ବସନ୍ତ ଋତୁରେ ବିହୁର ଗୀତ, ଢୋଲ ଓ ପେଁପାର ଡାକ ତଥା କୋଇଲିର ସ୍ୱର ଶୁଣିଲେ ବାରଣ୍ଡାରେ ପାଞ୍ଚଘେରା ଦେଇ ଘୂରିଘୂରି ନାଚିବା ପାଇଁ ଆଜିର ଆଧୁନିକା ଯୁବତୀ ମଧ୍ୟ ଉତ୍କଣ୍ଠା ପ୍ରକାଶ କରିଥାଏ । ଏହି ପ୍ରବୃତ୍ତିକୁ କେହି ବାଦ୍ ପଡିନାହାନ୍ତି ।

ବସନ୍ତର ପରଶ ନେଇ ଧୂମାଳର ପରେ ପରେ ରଂଗାଲି ବିହୁକୁ କୋଇଲିର ସ୍ୱର, କେତେକୀ ଚଢେଇ, କେପୌ ତଥା କେତକୀ ଫୁଲ ଏବଂ ଢୋଲ ସହିତ ମଇଁଷୀ ଶିଙ୍ଗର ପେଁପା ଆଦରି ଆଣିଥାନ୍ତି । ପ୍ରତିବର୍ଷ ସମଗ୍ର ପୃଥିବୀରେ ଋତୁ ପରିବର୍ତ୍ତନ ଭଳି ଆସାମରେ ମଧ୍ୟ ପ୍ରକୃତିର ପରିବେଶ ବଦଳିଥାଏ । ଯୁଗ ପରିବର୍ତ୍ତନ ହେଲେ ହେଁ ପ୍ରକୃତିର ପ୍ରାକୃତିକ ଋତୁ ପରିବର୍ତ୍ତନର ପରିବେଶକୁ ସମୟ ବଦଳାଇ ପାରିନାହିଁ । (୧)

ବସନ୍ତର ପରଶ ପାଇଁ ସମଗ୍ର ଆସାମବାସୀ ଆନନ୍ଦରେ ଖାଇପିଇ ନୃତ୍ୟଗୀତ ମାଧ୍ୟମରେ ଗାଁ ଜମିର ପଡିଆକୁ କମ୍ପାଇ ଦେଉଥିଲେ । ତାହା ହିଁ ବସନ୍ତ ଉତ୍ସବର ପ୍ରକୃତ ସ୍ୱରୂପ ଅଟେ । ଏହି ବସନ୍ତ ଋତୁ ହେଉଛି ଯୁବକ ଯୁବତୀମାନଙ୍କ ପାଇଁ ପ୍ରୀତିର ସମୟ । ମନ ଭିତରେ ଖୋଜୁଥିବା ମଣିଷଟିକୁ ପସନ୍ଦ କରିନେବାର ଉତ୍କୃଷ୍ଟ ସମୟ । ବିଭିନ୍ନପ୍ରକାର ଫୁଲରେ ପ୍ରକୃତି ଏହି ସମୟରେ ସଜ୍ଜିତା ହୋଇଥାଏ । ପ୍ରକୃତିର ପରିବର୍ତ୍ତନରେ, ବସନ୍ତର ସ୍ପର୍ଶରେ ମନର ଭାବ ଆପେ ଆପେ ବିହୁ ଗୀତରେ ପ୍ରକାଶ ପାଇଥାଏ । (୨)

ବସନ୍ତକାଳୀନ ବିହୁ ହେଉଛି ଅସମୀୟା ଜାତିର ସମନ୍ୱୟର ଉତ୍ସବ । ଏହି ଉତ୍ସବ ଯଥାମତେ ଆସାମର ଉଜନି (Upper) ଏବଂ ନାମନି (Lower) ଅଞ୍ଚଳ ଗୁଡ଼ିକରେ ବିଭିନ୍ନ ଜାତି-ଉପଜାତିମାନଙ୍କ ମଧ୍ୟରେ ବିଭିନ୍ନ ନାମରେ ବହୁ ପ୍ରାଚୀନ କାଳରୁ ଭିନ୍ନ ଭିନ୍ନ ରୀତିରେ ପାଳିତ ହୋଇଆସୁଥିବା କଥା ଜଣାଯାଇଥାଏ । ଏହା ଏକ ବୃହତ୍ତର କୃଷିକୈନ୍ଦ୍ରିକ ବସନ୍ତକାଳୀନ ସମନ୍ୱୟର ଉତ୍ସବ । (୩)

**ବସନ୍ତ ଉତ୍ସବ ଓ ବାସନ୍ତୀ ପୂଜା—** ଭୂମିର ଉର୍ବରତା ବୃଦ୍ଧି ଏବଂ ଶସ୍ୟ ଉତ୍ପାଦନ ବୃଦ୍ଧି ପାଇଁ ଆୟୋଜନ କରାଯାଉଥିବା ସମସ୍ତ ଉତ୍ସବ ବା ପୂଜା, ଶସ୍ୟ ବୁଣିବାର ପାଗ ବା ଋତୁ ବସନ୍ତକାଳରେ ହିଁ ଆୟୋଜନ କରାହୁଏ । ତା'ପରେ ଅଧିକ ଥଣ୍ଡା ବା ଅଧିକ ବର୍ଷା ବା ଖରା ଏହି ସମୟରେ ନଥାଏ । ତେଣୁ ଏହି ବସନ୍ତ ଋତୁରେ ହିଁ ଉତ୍ସବ ପାଳନର ଉତ୍ତମ ସମୟ ଅଟେ । ଆସାମରେ ବର୍ତ୍ତମାନ ପର୍ଯ୍ୟନ୍ତ ଚଳି ଆସୁଥିବା ବାସନ୍ତୀପୂଜା ହେଉଛି ବସନ୍ତକାଳର ଶସ୍ୟର ଦେବୀ ହିସାବରେ ଦେବୀକୁ ପୂଜା କରିବାର ପ୍ରମାଣ । କାଳିକା ପୁରାଣରେ ଦେବୀଙ୍କୁ ପୂଜା କରିବା ପାଇଁ ସମସ୍ତ ଋତୁ ମଧ୍ୟରେ ବସନ୍ତ ହିଁ ଋତୁକୁ ଉପଯୁକ୍ତ ଋତୁ । ସପ୍ତାହର ସମସ୍ତ ଦିନ ମଧ୍ୟରେ ମଙ୍ଗଳବାର ଏବଂ ସପ୍ତସ୍ୱର ମଧ୍ୟରେ ପଞ୍ଚମସ୍ୱର ଦେବୀର ପ୍ରିୟବୋଲି କୁହାଯାଇଛି ।

ଆସାମରେ ପ୍ରାଚୀନକାଳରୁ ପ୍ରଚଳିତ ହୋଇ ଆସୁଥିବା ବସନ୍ତ ଉତ୍ସବ ସମୂହ ମଧ୍ୟରେ ବାସନ୍ତୀପୂଜା ଅନ୍ୟତମ । ପ୍ରଥମେ ଦୁର୍ଗାପୂଜା ବସନ୍ତକାଳରେ ପାଳନ କରାଯାଉଥିବାରୁ ଦେବୀର ନାମ ବାସନ୍ତୀ ଏବଂ ଏହି ପୂଜାକୁ ବାସନ୍ତୀପୂଜା ବୋଲି କୁହାଯାଇଥାଏ । ଆସାମର ବିଭିନ୍ନ ସ୍ଥାନରେ ବର୍ତ୍ତମାନ ବାସନ୍ତୀ ପୂଜା ଅତ୍ୟନ୍ତ ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳନ କରାଯାଇଥାଏ । ତନ୍ମଧ୍ୟରେ ଆସାମ-ଅରୁଣାଚଳ ପ୍ରଦେଶର ସୀମାନ୍ତରେ ଲିକାବାଳିର ମାଲିନୀ ସ୍ଥାନର ବାସନ୍ତୀ ପୂଜା ଏବଂ ନଗାଓଁର କାଣ୍ଡିରଙ୍ଗାଣ ବାସନ୍ତୀଥାନର ପୂଜା ବିଖ୍ୟାତ ଅଟେ ।

**ଦେଶ ବିଦେଶର ବିହୁ ବା ବସନ୍ତ ଉତ୍ସବ—** ଆସାମରେ ବିହୁମାନଙ୍କ ମଧ୍ୟରେ ବହାଗ ବିହୁ ଯେପରି ଶ୍ରେଷ୍ଠ ତଥା ବସନ୍ତକାଳୀନ ଉତ୍ସବଭାବେ ଅତି ଆଡମ୍ବର ଭିତରେ

ପାଳନ କରାଯାଇଥାଏ, ସେହିଭଳି ଅନ୍ୟ ଦେଶରେ ମଧ୍ୟ ବସନ୍ତ ଉତ୍ସବ ପାଳନ କରାହୁଏ । ସମଗ୍ର ପୃଥିବୀରେ ପ୍ରଚଳିତ ଅଧିକାଂଶ ଉତ୍ସବଗୁଡ଼ିକ ଚାଷବାସ ସହିତ ଜଡ଼ିତ ଅଟନ୍ତି ।

ପ୍ରଥମତଃ ବସନ୍ତକାଳର ପୃଷ୍ଠଭୂମିରେ ଯେଉଁସବୁ ଉତ୍ସବ ପାଳିତ ହୁଏ, ସେହିଗୁଡ଼ିକରେ ଲୋକର ଯୌନଜୀବନ ଏବଂ ଚାଷବାସର ଉନ୍ନତିର ସମ୍ବନ୍ଧ ଲକ୍ଷ୍ୟ କରାଯାଇଥାଏ । ଦ୍ୱିତୀୟତଃ ନୂତନ ବର୍ଷର ଆଗମନରେ ପୁରାତନକୁ ବିଦାୟ ଦେବାଭଳି ଧର୍ମ ବିଶ୍ୱାସ ମଧ୍ୟ ଲୋକ ସମାଜରେ ରହି ଆସିଛି । ସେଥିପାଇଁ ଏହି ସମୟରେ ନାନାପ୍ରକାର ପୂଜାପାର୍ବଣ ଏବଂ ନୃତ୍ୟଗୀତର ଆୟୋଜନ କରାଯାଇଥାଏ । କେତେଗୁଡ଼ିଏ ଦେଶରେ ପୁରୁଣାବର୍ଷର ଗୋଟିଏ ମୂର୍ତ୍ତି ଗଢ଼ି ତା'କୁ ଲୋକମାନେ କବର ଦେଇଥାନ୍ତି ବା ପାଣିରେ ଫୋପାଡ଼ି ଦେଇଥାନ୍ତି । ଏହି ଉତ୍ସବ ଗୁଡ଼ିକ ମୁଖ୍ୟତଃ ବସନ୍ତ କାଳର ଆରମ୍ଭରେ ପାଳନ କରାଗଲେ ହେଁ ପାଣି-ପବନ ତଥା ପାଗ ସହିତ ସମ୍ବନ୍ଧ ରଖି ଏହି ଉତ୍ସବ ପାଳନ କରାଯାଇଥାଏ । ତେବେ ବର୍ଷ ଆରମ୍ଭରୁ ଏହି ଉତ୍ସବ ପାଳନ କରାଗଲେ ହେଁ ବିଭିନ୍ନ ଦେଶରେ ପାଳନ ମଧ୍ୟରେ ସମୟର କିଛିଟା ବ୍ୟବଧାନ ରହିଥାଏ । ବିହାରର ଓରାଂ ମାନଙ୍କର ଜୀବନରୁ ଏହାର ପରିଚୟ ମିଳିଥାଏ ।

ଓରାଂମାନେ ଚୈତ୍ରମାସରେ ଫାଗୁଆ ବା ଫଗୁ ଉତ୍ସବ ପାଳନ କରିଥାନ୍ତି । ଏହି ଉତ୍ସବରେ ନୂତନ ବର୍ଷର ଆଗମନକୁ ସ୍ୱାଗତ କରାଯାଇଥାଏ । ଚାଷକାମ ଶେଷ ହେବା ପରେ ଲୋକମାନେ ଯେଉଁ ଅବକାଶ ପାଆନ୍ତି କିମ୍ବା ବିବାହ ବ୍ରତ ସମୟରେ ଯେଉଁ ପ୍ରକାର ଆନନ୍ଦମୁଖର ପରିବେଶ ସୃଷ୍ଟି ହୁଏ ତା'ର ଉଦ୍‌ଯାପନ ଫାଗୁଆ ଉତ୍ସବରେ ହୁଏ । ଏହି ଉତ୍ସବରେ କପାଗଛର କେତେଗୁଡିଏ ଡାଳ ସିଧା କରି ପୋତାଯାଇଥାଏ, ଡାଳରେ କୁଟା ଆଦି ଦେଇ ଝୁଣା ଦିଆଯାଇଥାଏ । ପିଠା ତଥା ଗୁଆ ଆଦି ଭୋଗ କରାଯାଇ ଅର୍ପଣ କରାଯାଇଥାଏ । ତା'ପରେ ନୃତ୍ୟଗୀତ ଏବଂ ମଦ୍ୟପାନ ଆଦି ବହୁ ସମୟ ପର୍ଯ୍ୟନ୍ତ ଚାଲେ । ଫଗୁ ଉତ୍ସବର ଗୋଟିଏ ମାସ ପରେ 'ଚାହିଲ ଉତ୍ସବ' ଆସେ । ଏହି ଉତ୍ସବ ମୁଖ୍ୟତଃ ପ୍ରକୃତିର ପୃଷ୍ଠଭୂମିରେ ଗଛରେ ନୂଆପତ୍ର କଅଁଳିବାର ଆନନ୍ଦରେ ତଥା ପ୍ରକୃତିର ଉର୍ବରା ଶକ୍ତି ବଢ଼ାଇବା ଉଦ୍ଦେଶ୍ୟରେ ପାଳନ କରାଯାଇଥାଏ । ଏହି ଉତ୍ସବରେ ଫଗୁ ଉତ୍ସବ ଭଳି ନୃତ୍ୟଗୀତ ଏବଂ ଖାଦ୍ୟ ଉପରେ ଗୁରୁତ୍ୱ ଦିଆଯାଇଥାଏ । ଓରାଂମାନେ ବିଶ୍ୱାସ କରନ୍ତି ଯେ ଏହି ସମୟରେ ସୂର୍ଯ୍ୟଦେବ ଏବଂ ବସୁମତୀର ମିଳନ ହୁଏ ଏବଂ ଏହି ମିଳନ ଉତ୍ସବ ଚାଷ ଜମିର ଉର୍ବରା ଶକ୍ତି ବଢ଼ାଇଥାଏ । ଲୋକମାନେ ଆନନ୍ଦରେ ସୂର୍ଯ୍ୟଦେବ ଏବଂ ମାତା ବସୁନ୍ଧରାର ବିବାହ ଉତ୍ସବ ପାଳନ କରି ଅଧିକ ଖୁସି ହୋଇଥାନ୍ତି । ଗୋଟିଏ ମାସ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କର କିରଣ ଜମି ଉପରେ ପଡିଲେ ଶସ୍ୟର ବୀଜ ସିଞ୍ଚା ଯାଇଥାଏ । ଏହି ଉତ୍ସବରେ ସୂର୍ଯ୍ୟଦେବଙ୍କର ଆଶୀଷ କାମନା କରି ସୁରା ଏବଂ ନୃତ୍ୟ ଗୀତ ମାଧ୍ୟମରେ ଆନନ୍ଦ ଉତ୍ସବର

ଅନ୍ତ ପଡିଥାଏ । ଚାହିଲ ଉତ୍ସବର ପ୍ରକୃତି ପୂଜା ସହିତ ଅସମୀୟା ବିହୁର ପ୍ରକୃତି ପୂଜାର ବହୁ ସାମଞ୍ଜସ୍ୟ ରହିଛି କାରଣ ବିହୁରେ ଋତୁ ପରିବର୍ତ୍ତନର ପରିବେଶରେ ସ୍ୱଷ୍ଟ ଆନନ୍ଦର ସ୍ଫୁରଣ ଏବଂ ଅନ୍ୟପଟେ ଲୋକସମାଜ ଏବଂ ଚାଷଜମିର ମଙ୍ଗଳ କାମନାରେ ପାଳନ କରାଯାଉଥିବା ଉତ୍ସବ । କେବଳ ପାର୍ଥକ୍ୟ ଏତିକି ଯେ ଚାହିଲ ପର୍ବରେ ଯୁବକ ଯୁବତୀମାନେ ମିଳି ନାଚିଲେ ମଧ୍ୟ ସେହି ନାଚରେ ଯୌନ ଆକର୍ଷଣ ବା ବିବାହ ପାଇଁ ସାଥି ବାଛିବାର ଗୁରୁତ୍ୱ କମ୍ ଅଟେ । ବିହୁର ନୃତ୍ୟଗୀତ ମାଧ୍ୟମରେ ଗୋଟିଏ ସମୟରେ ଯୁବକ ଯୁବତୀମାନେ ବିବାହ ପାଇଁ ନିଜର ସାଥି ବାଛୁଥିଲେ । ଓରାଂ ସମାଜରେ ପିତାମାତା ବିବାହ ପାଇଁ ପାତ୍ର-ପାତ୍ରୀ ବାଛୁଥିବାରୁ ଚାହିଲ ପର୍ବରେ ପ୍ରେମଗୀତ ନାହିଁ ବୋଲି କୁହାଯାଇପାରେ ।

ମାଲାବାରର ମାଲାୟାଲୀମାନେ 'ବିଷୁ' ଉତ୍ସବ ପାଳନ କରିଥାନ୍ତି । ଏହା 'ବିହୁ'ର ସମଧର୍ମୀ ଉତ୍ସବ । ଏହି ସମୟରେ ଜମିରେ କାମ କରୁଥିବା ଗୋତି ଶ୍ରମିକମାନଙ୍କୁ ଉପହାର ଦିଆଯାଉଥାଏ । ପ୍ରଥମେ ଜମି ହଳ କଲାବେଳେ ବିଭିନ୍ନ ପ୍ରକାର ପୂଜାପାର୍ବଣ କରାଯାଇ ଆନନ୍ଦମୁଖର ପରିବେଶ ସୃଷ୍ଟି କରାଯାଇଥାଏ । ଗଣ୍ଡମାନଙ୍କର ଚୈତ୍ର ପର୍ବ (ଆସାମର ଚୈତ୍ର ବିହୁ)ରେ ଲୋକମାନେ ମିଶି ଶିକାର ଏବଂ ନୃତ୍ୟଗୀତ ଆଦିରେ ସମୟ କଟାଇଥାନ୍ତି । ଥାଇମାନଙ୍କର ସଂକ୍ରାନ ଉତ୍ସବରେ ମୁଖ୍ୟତଃ ସମସ୍ତେ ଅନ୍ୟର ଦେହରେ ପାଣି ଛାଟି ଛାଟି ଆନନ୍ଦ ଉପଭୋଗ କରନ୍ତି । ଏହି ସଂକ୍ରାନ ଶବ୍ଦ ସଂସ୍କୃତ 'ସଂକ୍ରାନ୍ତି' ଶବ୍ଦରୁ ଆସିଛି । ଏହି ଉତ୍ସବ ମୁଖ୍ୟତଃ ତିନିଦିନ ପାଇଁ ପାଳନ କରାଯାଉଥିଲେ ହେଁ ଯୁବକ ଯୁବତୀମାନେ କେତେଗୁଡ଼ିଏ ଦିନ ଧରି ନାଚିଗାଇ ନୂତନ ବର୍ଷର ସ୍ୱାଗତ କରିଥାନ୍ତି । ବ୍ରହ୍ମଦେଶ ଏବଂ ଥାଇଲାଣ୍ଡରେ ମଧ୍ୟ ପାଣି ଛାଟିବାର ଉଦ୍ଦେଶ୍ୟ ମୂଳରେ ଯାଦୁ ନିହିତ ଅଛି । ପୂର୍ବ ଆସାମର ଖାମଟିମାନେ ଏହିଭଳି ଭାବେ ପାଣି ଛିଟାଇବା ପର୍ବ ପାଳନ କରିଥାନ୍ତି ।

ଚୀନ୍ ଦେଶରେ ବହାଗ ବିହୁର ସମଧର୍ମୀ ଉତ୍ସବ ପାଳନ କରାଯାଇଥାଏ । ଚୀନ୍ ଦେଶରେ ମାସକୁ 'ଚନ୍ଦ୍ର' କୁହାଯାଇଥାଏ । ବର୍ଷ ଆରମ୍ଭରେ ପ୍ରଥମ ଚନ୍ଦ୍ରରେ ସମଗ୍ର ଦେଶରେ ବିଭିନ୍ନ ଉତ୍ସବ ପାଳନ କରାଯାଇଥାଏ । ଅବଶ୍ୟ ଅଞ୍ଚଳ ଭେଦରେ ଉତ୍ସବଗୁଡ଼ିକ ମଧ୍ୟରେ ତାରତମ୍ୟ ଦେଖାଯାଇଥାଏ । ବସନ୍ତ କାଳର ଆରମ୍ଭରେ ଏହି ମାସରେ ପ୍ରଥମ କେତେଦିନ ପାଇଁ ଘର ତଥା ଚାଷବାସ କାମ ବନ୍ଦ କରି ଲୋକମାନେ ଆନନ୍ଦରେ ଦିନ କେତୋଟି କଟାଇଥାନ୍ତି । ପୂର୍ବପୁରୁଷଙ୍କୁ ସ୍ମରଣ କରି ଏବଂ ଆତ୍ମୀୟ କୁଟୁମ୍ବଙ୍କ ମଧ୍ୟରେ ସମସ୍ତେ ସମସ୍ତଙ୍କର ପରାମର୍ଶ ନେଇଥାନ୍ତି । ଆବାଳ-ବୃଦ୍ଧ-ବନିତା ସମସ୍ତେ ଏହି ଉତ୍ସବରେ ବିଭୋର ହୋଇ ନାଚିଥାନ୍ତି । ଲୋକମାନେ ଏହି ସମୟରେ ବର୍ଷକର ଧାର କରଜ ପରିଶୋଧ କରନ୍ତି । ସମସ୍ତେ ଦଳଦଳ ହୋଇ ଭୋଜିଭାତ କରି ଫୋଟକା ମାରି ନାଚନ୍ତି । ଘରର ଗୃହିଣୀମାନେ ଘରଦ୍ୱାର ସଫା କରି ପରିବାରର ମଙ୍ଗଳ କାମନା କରି ପୂଜା ଅର୍ଚ୍ଚନା ଆଦି କରନ୍ତି । ଲୋକମାନେ ବର୍ଷକ ପାଇଁ ନୂଆ ନୂଆ ପ୍ରତିଜ୍ଞା ରଖନ୍ତି ।

ଚୀନା ବିହୁର ପ୍ରଥମ ଦଶଦିନରେ ପ୍ରତ୍ୟେକ ଦିନ ସ୍ୱତନ୍ତ୍ର ନାମ ଏବଂ ସ୍ୱତନ୍ତ୍ର କାମ କରାଯାଇଥାଏ । ପ୍ରଥମଦିନ କୁକୁଡାଙ୍କ ଜନ୍ମଦିନ ହିସାବରେ, ଦ୍ୱିତୀୟଦିନ କୁକୁରମାନଙ୍କର, ତୃତୀୟଦିନ ଘୁଷୁରୀମାନଙ୍କର ଜନ୍ମଦିନ ଭାବେ ପାଳନ କରାଯାଇଥାଏ । ତୃତୀୟଦିନ ଧନର ଦେବତାଙ୍କୁ ପୂଜା ଦିଆଯାଇଥାଏ । ଚତୁର୍ଥଦିନ ବତକର ଜନ୍ମଦିନ, ଏହିଭଳି ଭାବେ ପ୍ରତିଦିନ ବିଭିନ୍ନ ପ୍ରକାର ଉତ୍ସବ ପାଳନ କରାଯାଇଥାଏ । ଷଷ୍ଠଦିନ ଘୋଡ଼ାମାନଙ୍କର 'ବିହୁ' ଅଟେ । ଲୋକମାନେ ଏହି ଦିନ ପରସ୍ପରର ବନ୍ଧୁ ଘରକୁ ଖାଇବାକୁ ଯାଇଥାନ୍ତି । ସପ୍ତମଦିନ ମଣିଷମାନଙ୍କର ଜନ୍ମଦିନ ପାଳନ କରାଯାଇଥାଏ । ଏହିଦିନ ଘରର ଲୋକମାନେ ବାହାରକୁ ବାହାରିବା ନିଷେଧ ଏବଂ ଲାଲ୍ ରଂଗର ଶିମ୍ବ ଖାଇବା ବିଧି ପ୍ରଚଳିତ । ପ୍ରଥମଚନ୍ଦ୍ରର ସପ୍ତମ ଦିନରୁ ଦଶମ ଦିନ ମଧରେ ମୁଖ୍ୟ ଭୋଜିଭାତ ହୁଏ । ଏହାପରେ କେତେଗୁଡ଼ିଏ ଦିନ ଧରି ଉତ୍ସବ ଚାଲିଥାଏ । ଏହାହିଁ ଚୀନ୍ ଦେଶର ବିହୁ; କିନ୍ତୁ ପ୍ରକୃତ ବସନ୍ତ ଉତ୍ସବ ତୃତୀୟ ଚନ୍ଦ୍ରର ଆରମ୍ଭରୁ ଅନୁଷ୍ଠିତ ହୁଏ । ଏହି ସମୟରେ ପୂର୍ବ ପୁରୁଷଙ୍କୁ ପୂଜାପଣା ଦିଆ ହୁଏ । ବର୍ତ୍ତମାନ ସମୟରେ ବସନ୍ତ ଉତ୍ସବ ସହିତ ଜଡ଼ିତ ଲୌକିକ ନୃତ୍ୟ ଆଦି ଲୋପପାଇଛି । ପ୍ରାଚୀନ କାଳରେ ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ଯୁବକ ଯୁବତୀମାନେ ବିଭିନ୍ନ ଉତ୍ସବରେ ମିଳି ନଈକୂଳକୁ ଯାଇ ନୃତ୍ୟଗୀତ କରି ଖୋଲା ମନରେ ପରସ୍ପରକୁ କପୌଫୁଲ (One type of orchid) ପ୍ରଦାନ କରୁଥିଲେ । ଉତ୍ତର-ପ୍ରତ୍ୟୁତ୍ତର ମାଧମରେ ଯୁବକ ଯୁବତୀମାନେ ବିଭିନ୍ନ ପ୍ରକାର ପ୍ରେମମୂଳକ ଗୀତ ଗାଉଥିଲେ । ଶାନଜାତିର ଲୋକମାନେ ବହୁପୂର୍ବେ ଚୀନଦେଶର ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ବାସ କରୁଥିଲେ । ସେମାନେ ଦୁଇହଜାର ବର୍ଷ ପୂର୍ବରୁ ବିଶେଷ କରି ଅଷ୍ଟମ ନବମ ଶତାବ୍ଦୀରେ ଦଳଦଳ ହୋଇ ଆସି ବ୍ରହ୍ମ, ଆସାମ ଏବଂ ଇଣ୍ଡୋନେସିଆର ବିଭିନ୍ନ ଅଞ୍ଚଳରେ ବିଛୁରିତ ହୋଇ ରହିଲେ । ବ୍ରହ୍ମଦେଶ, ମାଳୟ ଆଦି ଦେଶରେ ଶାନ ଜନଗୀତରେ ପ୍ରାଚୀନ ଚୀନର ପ୍ରଭାବ କଥା ପଣ୍ଡିତମାନେ ଲକ୍ଷ୍ୟ କରିଛନ୍ତି । ଅସମୀୟା ଲୌକିକ ନୃତ୍ୟ ଏବଂ ଗୀତରେ ଶାନମାନଙ୍କ ଜରିଆରେ ପ୍ରାଚୀନ ଚୀନା ସଂସ୍କୃତିର ପ୍ରଭାବର ଛାଞ୍ଚ ପଡ଼ିଥାଏ ।

ଏଠାରେ ଚୀନାବିହୁର କେତୋଟି କଥା ଲକ୍ଷ୍ୟ କରାଯାଇପାରେ । ଆସାମରେ ଯେପରି ଗୋରୁ ବିହୁ, ମଣିଷ ବିହୁ, ଠାକୁର ବିହୁ ଆଦି ଭାଗ ଭାଗ କରାଯାଇଛି । ଚୀନ୍ ଦେଶରେ ସେହିପରି ନିୟମ ଅଛି । ଆସାମରେ ବିହୁ ସମୟରେ ଘରଦ୍ୱାର ସଫାସଫି କରି ଅମଙ୍ଗଳର ଦୂରୀକରଣ ନିମନ୍ତେ ବ୍ରାହ୍ମଣଙ୍କୁ ଭୋଜନ ଦିଆଯାଏ । ଘର ଭିତରେ ଦେବତାଙ୍କୁ ବିଭିନ୍ନ ପୂଜା ଦିଆଯାଇଥାଏ, ଚୀନ ଦେଶରେ ସେହିଭଳି ଘରଦ୍ୱାର ସଫାକରି ପରିବାରର ମଂଗଳ କାମନା କରି ପୂଜା ପାତଳ ଦିଆଯାଇଥାଏ । ଆସାମରେ ବିହୁରେ ଧାର କରଜ ପରିଶୋଧ କରାହେଲା ଭଳି ଏବଂ ବନ୍ଧୁଘରକୁ ବୁଲିଗଲା ଭଳି ଚୀନ ଦେଶରେ ଧାରକରଜ

ପରିଶୋଧ କରାଯାଇ ବନ୍ଧୁ ଘରକୁ ବୁଲିଯିବାର ପ୍ରଥା ରହିଛି । ଚୀନ ଦେଶରେ ଲାଲ୍ ଶିମ୍ବ ଖାଇଲା ଭଳି ଆସାମରେ ଲିମ୍ବ ପତ୍ର ଆଦି ପିଠା ଜାତୀୟ ଦ୍ରବ୍ୟ ଲୋକମାନେ ଖାଇଥାନ୍ତି ।

ଭାରତୀୟ ସଂସ୍କୃତିର ପ୍ରଭାବ ଦକ୍ଷିଣ ପୂର୍ବ ଏସିଆର ବହୁତ ଲୋକ ସମାଜରେ ଲକ୍ଷ୍ୟ କରାଯାଇପାରେ । ଏପରିକି ପ୍ରଶାନ୍ତ ମହାସାଗରର ଦ୍ୱୀପରେ ଭାରତୀୟ ନୃତ୍ୟ, ହାତ କାମ ଏବଂ ମୁଦ୍ରାର ପ୍ରଭାବ ଲକ୍ଷ୍ୟ କରାଯାଇଛି । ଅନ୍ୟପଟେ ଦକ୍ଷିଣ-ପଶ୍ଚିମ ଚୀନରୁ ଆସିଥିବା ଲୋକମାନଙ୍କର ସ୍ରୋତର ସେହି ସେହି ସ୍ଥାନର ଆଚାର ବ୍ୟବହାର ଆସି ଦକ୍ଷିଣ ପୂର୍ବ ଏସିଆରେ ପ୍ରବେଶ କରିବା ଆଶ୍ଚର୍ଯ୍ୟକର କଥା ନୁହେଁ । ଗୋଟିଏ ଛୋଟ ଉଦାହରଣରୁ ସାମଞ୍ଜସ୍ୟର କଥା ଜଣାଯାଇଥାଏ । ଚୀନ ଦେଶରେ 'ବାଢ଼ନୀ ଦେବୀ'ଙ୍କୁ ବହୁତ ପୂଜା ଅର୍ଚ୍ଚନା କରାଯାଇଥାଏ । ବାଢ଼ନୀ ଦେବୀଙ୍କୁ ପୂଜା କଲେ ପାଗ ଭଲ ହୁଏ ବୋଲି ବିଶ୍ୱାସ କରାଯାଇଥାଏ । ବଙ୍ଗ ଦେଶରେ ବେଶୀ ବର୍ଷା ହେଲେ ପାଗ ଭଲ କରିଦେବା ପାଇଁ ଉପରକୁ ବା ଆକାଶକୁ ଝାଡୁ ଦେଖେଇ ଲୋକମାନେ ଝାଡ଼ିଥାନ୍ତି । ହିମାଳୟର ଏପଟେ ସେପଟେ ଏହି ଦୁଇଦେଶରେ ଝାଡୁ ସହିତ ପାଗର କିପରି ସମ୍ବନ୍ଧ ସ୍ଥାପନ କରାହେଲା, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଅସମୀୟା ଲୋକବିଶ୍ୱାସରେ କୁଜି ବୁଢ଼ୀର କୁଜରେ ଆକାଶ ଲାଗିଯିବାରୁ ସେ ଝାଡୁରେ ଆକାଶକୁ ଖେଞ୍ଚି ଦେଲା, ଫଳରେ ଆକାଶ ଉପରକୁ ଗଲା ବୋଲି ଲୋକମାନେ କହିଥାନ୍ତି । ଆସାମର ଖାଦ୍ୟପେୟର କେତେଗୁଡିଏ ସମ୍ବନ୍ଧ ଦକ୍ଷିଣ ପୂର୍ବ ଏସିଆରେ ଏକଧରଣର ବ୍ୟବହାର କରାହୁଏ । ଏହିସବୁ କାରଣରୁ ଅସମୀୟା ବିହୁ ସହିତ ଚୀନାବିହୁର ଦୂର ସଂପର୍କ ଥିବା କଥା ଜଣାଯାଇଥାଏ । (୫)

**ବିହୁରେ ବିଭିନ୍ନ ଜନଜାତି**— ଆସାମର ତିନୋଟି ବିହୁ ଉତ୍ସବ ମଧ୍ୟରେ ରଂଗାଲି ବିହୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉତ୍ସବ । ରଙ୍ଗାଲି ବିହୁର ସମୟ ଚାଷ ଅମଳର ସମୟ ନୁହେଁ । ଏହା ଚାଷ ଆରମ୍ଭର ସମୟ ଅଟେ । ଆସାମର ଜନଜାତି ସଂପ୍ରଦାୟ ଗୁଡିକ ମଧ୍ୟରେ ଦେଖାଯାଏ ଯେ ସେମାନଙ୍କ ମଧ୍ୟରେ ଚାଷ ଅମଳଠାରୁ ଚାଷକାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ବିଭିନ୍ନ ଉତ୍ସବ ସମୂହ ପାଳନ କରାଯାଇଥାଏ । (୬)

ଆସାମର ବଡ଼ୋ ଜନଜାତିର ଏକ ଶାଖା ପରିବାର ଠାଲ ସୋନୋୱାଲ କଚାରୀମାନେ ସାତଦିନ ଧରି ବିହୁ ପାଳନ କରିଥାନ୍ତି । ପ୍ରଥମ ଦିନଟିକୁ ସେମାନେ ଗୋରୁ ବିହୁ ହିସାବରେ ପାଳନ କରନ୍ତି । ତେବେ ବୈଶାଖର ପ୍ରଥମ ସାତଦିନ ମାନୁହ ବା ମଣିଷ ବିହୁ ଭାବେ ପାଳନ କରାଯାଇଥାଏ । ଏହି କେତେଦିନ ପ୍ରଥମେ ନାମ ଘରେ ବା କୌଣସି ଏକ ସର୍ବସାଧାରଣ ସ୍ଥାନରେ ଲୋକମାନେ ମିଶି ହୁଁଚରି ପରିବେଶଣ କରନ୍ତି । ତା'ପରେ ଘରେ ଘରେ ବୁଲି ହୁଁଚରି ଗାଆନ୍ତି ।

ଟିଓ୍ୱା ନାମକ ଜନଜାତିମାନଙ୍କ ମଧ୍ୟରେ ଚୈତ୍ର-ବୈଶାଖର ସଂକ୍ରାନ୍ତିର ପରେ ପ୍ରଥମ ବୁଧବାର ଦିନ ବିହୁପାଳନ କରାଯାଇଥାଏ । ପ୍ରାଚୀନ ଆସାମର କେତେକ ପାହାଡିଆ ସ୍ଥାନରେ ଏବଂ ଆଜିର ଉତ୍ତର ପୂର୍ବ ଭାରତର ପ୍ରାୟ ସମସ୍ତ ପାହାଡିଆ ଜାତିର ଲୋକମାନଙ୍କ ମଧ୍ୟରେ ବିହୁର ସମଧର୍ମୀ ଉତ୍ସବ ଅନୁଷ୍ଠାନ ଏବଂ ନୃତ୍ୟଗୀତର ପ୍ରଚଳନ ଅଛି । ଅରୁଣାଚଳ ପ୍ରଦେଶର ଆଦି ଜନଜାତିମାନଙ୍କ ମଧ୍ୟରେ ଉକ୍ରିଂ ବା ଆରାନ ବହାଗର ବିହୁର ସମଧର୍ମୀ ଉତ୍ସବ । ଏହି ସମୟରେ ମେଥୋନ ପୂଜା, ନୃତ୍ୟଗୀତ ସହିତ ସମସ୍ତେ ମିଳି ଶିକାର କରିବାକୁ ଯିବା ଆଦି ଉକ୍ରିଂ ଉତ୍ସବର ପ୍ରଧାନ ନିୟମ । ଏହିଭଳି ଅରୁଣାଚଳର ନକ୍ଟେମାନଙ୍କର 'ଲକୁ' ଏକ କୃଷିଭିତ୍ତିକ ଉତ୍ସବ । ଲକୁ ଉତ୍ସବ ବର୍ଷକୁ ପାଞ୍ଚଥର ପାଳନ କରାଯାଇଥାଏ । ଏହି ଉତ୍ସବରେ ଯୁବକ ଯୁବତୀମାନେ ମିଶି ନକ୍ଟେ ଭାଷାରେ ଗୀତ ଗାଇ ନାଚିଥାନ୍ତି । ବୈଶାଖ ମାସରେ ଆହୁଧାନ ଚାଷ କରିବା ପୂର୍ବରୁ 'କାମଖୁଟ ଲକୁ ଉତ୍ସବ' ପାଳନ କରାଯାଇଥାଏ । ସମତଳ ଅଞ୍ଚଳ, ପାହାଡର ନକ୍ଟେ ଜନଜାତିମାନଙ୍କ ମଧ୍ୟରେ ନକ୍ଟେ ଭାଷାରେ ବିହୁ ଗୀତର ପ୍ରଚଳନ ଥିଲା ।

ଟବାସା ଜନଜାତିମାନଙ୍କ ମଧ୍ୟରେ ପ୍ରଚଳିତ 'ସାମମନୁବୋର' ଉତ୍ସବ ବିହୁର ସମଧର୍ମୀୟ ଉତ୍ସବ । ଏହି ଉତ୍ସବରେ ବିହୁ ଗୀତ ଭଳି ସମସ୍ତେ 'ବିହୁଉସି ଗୀତ' ଗାଆନ୍ତି । ନାଗାମାନେ ମଧ୍ୟ ଏହିଭଳି ଭାବେ ଦୁଇତିନି ଦିନ ଧରି ବସନ୍ତୋତ୍ସବ ପାଳନ କରନ୍ତି । ଭୋଜିଭାତ ସହିତ ଯୁବକ ଯୁବତୀମାନଙ୍କର ନୃତ୍ୟଗୀତ ପରିବେଶଣ ଏହି ଉତ୍ସବର ପ୍ରଧାନ ଆକର୍ଷଣ ଅଟେ ।

ମିଜୋମାନଙ୍କର 'ଚାପଚାର କୁଟ' ବୈଶାଖ ବିହୁର ସମଧର୍ମୀ ଉତ୍ସବ । ସେମାନେ ଭୋଜିଭାତ କରି ଆନନ୍ଦରେ ଖାଇ, ଗୀତ ଗାଇ ନାଚି ଥାଆନ୍ତି । ପୂର୍ବପୁରୁଷମାନଙ୍କ ପ୍ରତି ଏହି ସମୟରେ ତର୍ପଣ କରିବା ସମୟରେ ବନ୍ଧୁମାନଙ୍କୁ ଆଦର ଅଭ୍ୟର୍ଥନା କରନ୍ତି । ମିଜୋମାନଙ୍କର ଏହି ପର୍ବକୁ 'ଚାପଚାରକୁଟ' ଉତ୍ସବ କୁହାଯାଇଥାଏ । (୭)

**ବିହୁ ଓ ବିଷୁବ ସଂକ୍ରାନ୍ତି** - ପ୍ରାଚୀନ କାଳରେ ଯେ କୌଣସି ମାସର ସଂକ୍ରାନ୍ତି ଦିନଟିକୁ ଅତି ପବିତ୍ର ଦିନବୋଲି ଗଣନା କରାଯାଉଥିଲା । ସେଥିପାଇଁ ପୂର୍ବକାଳରେ ରାଜାମହାରାଜାମାନେ ଦାନପୂଣ୍ୟ ଆଦି ଅର୍ଥରେ ସଂକ୍ରାନ୍ତି ଦିନଟିକୁ ବାଛିଥିଲେ । ତେବେ ବର୍ଷର ଚୈତ୍ରସଂକ୍ରାନ୍ତି ଦିନଟି ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଅଟେ । ଆସାମରେ ବଳବର୍ମାର ନଗାଓଁ ଶାସନରେ ବିଷୁବନ୍ ତିଥିର ଉଲ୍ଲେଖ ଅଛି । କାମରୂପ ଶାସନାବଳୀରେ ବିଡୁବତ୍‌ତିଥିକୁ 'ଚୈତ୍ରସଂକ୍ରାନ୍ତି' କୁହଯାଏ । ରତ୍ନପାଳର ବରଗାଓଁ ଲିପିରେ 'ବିଷୁପଦୀସଂକ୍ରାନ୍ତି' ଦିନ ଦାନ ଆଦି କରାଯାଉଥିଲା, ଉଲ୍ଲେଖ ଅଛି । ବିଷୁପଦୀ ସଂକ୍ରାନ୍ତି ହିଁ ଚୈତ୍ରସଂକ୍ରାନ୍ତି ବୋଲି ପଣ୍ଡିତମାନେ ମତ ପୋଷଣ କରିଛନ୍ତି । ବୈଦ୍ୟଦେବର କମୌଲି ଶାସନରେ ବୈଶାଖର

ଏକାଦଶୀ, ଚୈତ୍ରର ସଂକ୍ରାନ୍ତି ଏବଂ ବୈଶାଖର ପ୍ରଥମଦିନର କଥା ଉଲ୍ଲେଖ କରାହୋଇଛି । ସେହି କେତୋଟି ଫଳକ ବ୍ୟତିତ ଚତୁର୍ଦ୍ଦଶ-ପଞ୍ଚଦଶ ଶତିକାର ସଧୟାପୁରୀ ର ସତ୍ୟନାରାୟଣ ରାଜାର ପୁତ୍ର ଲକ୍ଷ୍ମୀନାରାୟଣ ରାଜାଙ୍କ ଗୋଟିଏ ତାମ୍ର ଫଳକରେ ବିହୁ କଥା ଉଲ୍ଲେଖ କରାଯାଇଥିବାର ପ୍ରମାଣ ମିଳିଛି । ଏହି ଫଳକରେ ରାଜା ଶାଣ୍ଡିଲ୍ୟ ଗୋତ୍ରର ହରିର ପୁତ୍ର ରବିଦେବଙ୍କୁ ପୁଣ୍ୟ ବିହୁ ଦିନ ଦୁଇଶହ ଦୁଇଟି ମାଟି ବଖନା (ବାଛୁରୀ) କେତେଗୁଡ଼ିଏ ଗାଆଁ ସହିତ ଉତ୍ସର୍ଗ ଦେବା କଥା ବର୍ଣ୍ଣିତ ହୋଇଛି । ବର୍ତ୍ତମାନର 'ସଦିୟା'କୁ ସଧୟାପୁରୀ ବର୍ଣ୍ଣନା କରା ହୋଇଥିବା କଥା ଡ଼ଃ ମହେଶ୍ୱର ନେଓଗ କହିଛନ୍ତି । (୮୦)

ବିଭିନ୍ନ ଜାତି ତଥା ଜନଜାତିମାନଙ୍କ ମଧ୍ୟରେ ବସନ୍ତକାଳୀନ ଉତ୍ସବ ଗୁଡ଼ିକ ମୁଖ୍ୟତଃ ସଂକ୍ରାନ୍ତି ଦିନମାନଙ୍କରେ ପାଳନ କରାଯାଇଥାଏ । ସଂକ୍ରାନ୍ତି ଦିନ ମଧ୍ୟରେ ଚୈତ୍ରସଂକ୍ରାନ୍ତି ଅତି ପବିତ୍ର ହୋଇଥିବାରୁ ବିଭିନ୍ନ ଦେଶରେ ଏହା ବିଭିନ୍ନ ନାମରେ ପାଳନ କରାଗଲା ଭଳି ଆସାମର ବିଭିନ୍ନ ଜନଜାତିମାନଙ୍କ ମଧ୍ୟରେ ଏହା ବିଷୁଉତ୍ସବ ଭାବେ ପାଳନ କରାଯାଇଥାଏ । ସଂକ୍ରାନ୍ତି ଦିନ ମଧ୍ୟରେ ଚୈତ୍ରସଂକ୍ରାନ୍ତି ଅତି ପବିତ୍ର ହୋଇଥିବାରୁ ବିଭିନ୍ନ ଦେଶରେ ଏହା ବିଭିନ୍ନ ନାମରେ ପାଳନ କରାଗଲା ଭଳି ଆସାମର ବିଭିନ୍ନ ଜନଜାତିମାନଙ୍କ ମଧ୍ୟରେ ଏହା ବିଷୁଉତ୍ସବ ଭାବେ ପାଳନ କରାଯାଇଥାଏ । ତେଣୁ ଜନଜାତିମାନଙ୍କର ବସନ୍ତ ଉତ୍ସବ ଗୁଡ଼ିକ ବିହୁ ବା ବିହୁପର୍ବ ନାମରେ ଜଣାଯାଇଥାଏ ।

**ଡ଼ିମାସାମାନଙ୍କର ବିଷୁଉତ୍ସବ** - ଆସାମର ଉତ୍ତରକାଚାର ପାର୍ବତ୍ୟ ବସବାସ କରୁଥିବା ଡ଼ିମାସାକଚାରୀମାନଙ୍କର ସବୁଠାରୁ ଶ୍ରେଷ୍ଠ ଏବଂ ଆନନ୍ଦଦାୟକ ତଥା ମନୋରଞ୍ଜକ ପ୍ରାଚୀନ ଉତ୍ସବ ହେଉଛି 'ବିଷୁ' ପର୍ବ । ବିଷୁ ଉତ୍ସବ ସାଧାରଣତଃ ଫସଲ ଅମଳ ପରେ ନଭେମ୍ବର ମାସରୁ ମାର୍ଚ୍ଚର ବସନ୍ତ କାଳର ଆଗମନର ଆଗାମୀ ପାଗ ଆସିବାର ସମୟ ମଧ୍ୟରେ ଗାଁର ଲୋକମାନେ ମିଶି ପାଳନ କରିଥାଆନ୍ତି ମାତ୍ର ଏହି ଉତ୍ସବ ଏକ ସମୟରେ ବା ଗୋଟିଏ ଦିନରେ ଆଖପାଖ କୌଣସି ଗାଁରେ ଯେପରି ପାଳନ କରାନହୁଏ ତା'ପ୍ରତି ଲକ୍ଷ୍ୟ ରଖି ବିଭିନ୍ନ ଗାଁର ଲୋକମାନେ ନଦୀକୂଳ ବା କୌଣସି ଯୁବକସଂଘ ଘରେ ମିଳିତ ହୋଇ ଉପଯୁକ୍ତ ଦିନବାର ଠିକ୍ କରିଥାଆନ୍ତି

ବିଷୁ ଉତ୍ସବକୁ ଡ଼ିମାସାମାନେ ଦୁଇଧରଣର ପାଳନ କରିଥାଆନ୍ତି । 'ଚୁରେମବିଷୁ' ଏବଂ 'ହଂଚେଉସାନାଓୱାବିଷୁ' । ସାଧାରଣତଃ ତିନିଦିନ ବା ପାଞ୍ଚଦିନ ପାଇଁ ବିଷୁଉତ୍ସବ ପାଳନ କରାହେଲେ ତାହା ଚୁରେମ ଏବଂ ସାତଦିନ ପର୍ଯ୍ୟନ୍ତ ପାଳିଲେ ତାହାକୁ ହଂଚେଉସାନାଓୱା ବିଷୁ ଉତ୍ସବ କୁହାଯାଏ ।

କୃଷିଜୀବି ଡ଼ିମାସାମାନଙ୍କ ମଧ୍ୟରେ ପ୍ରଚଳିତ ବିଷୁଉତ୍ସବ ମୂଳତ କୃଷିଭିତ୍ତିକ ଅଟେ । ଏବି ଉତ୍ସବର ଦିନବାର ସ୍ଥିର କରିବା ଦିନଠାରୁ ଗାଁର ଯୁବକ ଯୁବତୀମାନେ ବିଭିନ୍ନ ପ୍ରକାର

କାମରେ ଲାଗିଯାଆନ୍ତି କାରଣ ବିଷୁ ପର୍ବରେ ଆବଶ୍ୟକୀୟ ବିଭିନ୍ନ ଦ୍ରବ୍ୟ ତିଆରି କରିବାର ଦାୟିତ୍ୱ ଯୁବକ ଯୁବତୀ ମାନଙ୍କର ଉପରେ ନ୍ୟସ୍ତ କରାଯାଇଥାଏ । ଏହି ଉତ୍ସବଦିନ ଗୁଡ଼ିକରେ ସବୁଠାରୁ ଅଧିକ ପ୍ରୟୋଜନୀୟ ବସ୍ତୁ ଜୌ ବା ଚାଉଳର ମଦ, ଘୁଷୁରି, କୁକୁଡ଼ା, ଗୋଟିଏ ମଇଁଷୀ ଛୁଆ ତଥା ବିଭିନ୍ନ ପ୍ରକାରର ପନିପରିବା ଆଦି ଜିନିଷ ଯୋଗାଡ଼ କରିବା ପାଇଁ ଯୁବକଯୁବତୀମାନେ ବହୁଦିନ ଆଗରୁ ପଇସା ସଞ୍ଚୟ କରି ରଖିଥାଆନ୍ତି । ଭୋଜିଭାତ ପାଇଁ କେବଳ ପ୍ରୟୋଜନୀୟ ଚାଉଳ ପ୍ରତ୍ୟେକ ପରିବାରରୁ ଚାନ୍ଦାରୂପେ ଅଣାଯାଇଥାଏ । ଏହି ଭଳି ଭାବେ ଡ଼ିମାସାମାନଙ୍କ ମଧରେ ମିଳାମିଶା ଭାବ ପ୍ରୀତି ତଥା ଐକ୍ୟବଦ୍ଧତା ଅଧିକ ଘନିଷ୍ଠ ହେବାରେ ଏହି ପର୍ବ ସହାୟ କରିଥାଏ ।

ଡ଼ିମାସାମାନେ ବିହୁନାଚ ପରିବେଷଣ କରିବାପାଇଁ ବିହୁତଳି ହିସାବରେ ଗାଁର କୌଣସି ଜଣେ ଲୋକର ଘରର ଓସାରିଆ ବଡ଼ ଅଗଣାକୁ ବାଛି ଥାଆନ୍ତି ଯେଉଁଠାରେ କି ବିହୁ ଦିନ ଗୁଡ଼ିକରେ ଲୋକମାନେ ସୁବିଧାମାତେ ସେହି ବିହୁତଳିରେ ଗୀତଗାଇ ନାଚି ପାରିବେ । ଯେଉଁଘରେ ଲୋକମାନେ ବିହୁ ପରିବେଷଣ କରିବା ପାଇଁ ସ୍ଥିର କରିଥାଆନ୍ତି ସେ ଘରର ଗୃହିଣୀ ଅତ୍ୟନ୍ତ ସରଳ ଏବଂ ସହିଷ୍ଣୁ ହେବା ନିହାତି ବାଞ୍ଛନୀୟ ।

ବିଷୁ ଉତ୍ସବ ଉପଲକ୍ଷେ ଗାଁ ମୁଣ୍ଡର ମୁଖ୍ୟରାସ୍ତାରେ ସବୁଠାରୁ ଆକର୍ଷଣୀୟ କରି ଗୋଟିଏ ସୁନ୍ଦର ତୋରଣ ସଜାଇବା ନିୟମ ଅଟେ । ପନ୍ଦର ଦିନ ଆଗରୁ ଭଲଭାବେ ଖାଇବା ପିଇବାକୁ ଦେଇ ରଖାଯାଇଥିବା ମଇଁଷୀ ଛୁଆକୁ ଏହି ତୋରଣପଟେ ଅଣାଯାଇଥାଏ । ଉତ୍ସବର ପ୍ରଥମ ଦିନ ମଇଁଷୀଛୁଆ, କେତୋଟି ଘୁଷୁରି ତଥା କୁକୁଡ଼ାକୁ ବଳି ଦିଆଯାଇ ଆନୁଷ୍ଠାନିକ ଭାବେ ବିଷୁ ଉତ୍ସବ ପାଳନ ଆରମ୍ଭ ହୁଏ । ଏହା ପରେ ଭୋଜନପର୍ବ ଆରମ୍ଭ ହୁଏ । ଭୋଜିଭାତ ଗାଁର ଯୁବକ ଯୁବତୀମାନେ ମିଳିମିଶି ରାନ୍ଧିଥାଆନ୍ତି । ଭୋଜି ପୂର୍ବରୁ ଯୁବକ ଯୁବତୀମାନେ ମିଳି ଗାଁର ମୁଖିଆ ଘରକୁ ଯାଇ 'ବିଷୁଉତ୍ସବ' ଆରମ୍ଭ ହେଲା ବୋଲି ଆନୁଷ୍ଠାନିକଭାବେ ଘୋଷଣା କରନ୍ତି । ଏହି ଆନୁଷ୍ଠାନିକ ଘୋଷଣା ପରେ ନାନା ଥଟ୍ଟା-ପରିହାସ ତଥା ଆନନ୍ଦ ଭିତରେ ଭୋଜନପର୍ବ ଆରମ୍ଭ ହୁଏ । ଭୋଜନ ପର୍ବ ଶେଷହେବା ପରେ ନୃତ୍ୟଗୀତ ଆରମ୍ଭ ହୁଏ । ଗୀତ ସହିତ ଢ଼ୋଲ, ପେଁପା ଆଦି ବିଭିନ୍ନ ପ୍ରକାରର ବାଦ୍ୟ ପରିବେଷଣ କରାଯାଇଥାଏ । ବାଦ୍ୟର ତାଳେତାଳେ ନୃତ୍ୟ ଗୀତରେ ବିଭୋର ହୋଇ ଯୁବକଯୁବତୀମାନେ ସାରାରାତି ଆନନ୍ଦରେ କଟାଇ ଦେଇଥାଆନ୍ତି । ସେମାନେ କେତୋଟି ଦଳରେ ବିଭକ୍ତ ହୋଇ ଗୋଟିକ ପରେ ଗୋଟିଏ ଦଳ ସାରା ରାତି ନୃତ୍ୟ ପରିବେଷଣ କରିଥାଆନ୍ତି । ଦ୍ୱିତୀୟ ଦିନ ବିହୁରେ ଛୋଟମାନେ ବଡ଼ମାନଙ୍କୁ ନୂଆବସ୍ତ୍ର ଉପହାର ଦେଇ ସମ୍ମାନ ଜଣାଇଥାଆନ୍ତି । ସମ୍ମାନ ଜଣାଇବା ପ୍ରଥାକୁ ଡ଼ିମାସାମାନେ 'ବିଷୁୱା' କହିଥାଆନ୍ତି ଏବଂ ଏହି ଦିନଟକୁ 'ବିଷୁମା' କୁହାଯାଏ । ଏହି ଦିନ ପୂର୍ବବର୍ଷରେ ମୃତ୍ୟୁ

ହୋଇଥିବା ଗାଁର କୌଣସି ବ୍ୟକ୍ତି ପ୍ରତି ଥିବା ସମ୍ବନ୍ଧକୁ ଚିରଦିନ ପାଇଁ ଛିନ୍ନ କରାଯାଇଥାଏ । ସେହିଦିନ ଗାଁର ଯୁବକଯୁବତୀମାନେ କେତେ ଗୁଡ଼ିଏ ଦଳରେ ବିଭକ୍ତ ହୋଇ ଗାଁର ତୋରଣ ସାମ୍ନାରେ ତଥା ଗାଁ ମୁଖିଆର ଘରସାମ୍ନାରେ ହୌ, ହୌ ଶବ୍ଦ ଉଚ୍ଚାରଣ କରି ବିହୁର ଆଗମନ ବିଷୟରେ ଜଣାଇଥାନ୍ତି । ଏହି ଦିନ ଗାଁର ଯୁବକଯୁବତୀମାନେ ନାନା ପ୍ରକାର ଖେଳ ପ୍ରତିଯୋଗିତାର ଆୟୋଜନ କରିଥାଆନ୍ତି । ଖେଳରେ ବିଜୟୀମାନେ ଗାଁ ମୁଖିଆର ଘରକୁ ଯାଇ ପୁରସ୍କାର ଅଣିଥାଆନ୍ତି । ସନ୍ଧ୍ୟା ସମୟରେ ପୁନର୍ବାର ବିଭିନ୍ନ ବାଦ୍ୟଯନ୍ତ୍ର ବଜାଇବା ତଥା ଗୀତ କଥା ପ୍ରତିଯୋଗିତା ଆରମ୍ଭ ହୁଏ । ଏହି ଦିନ 'ବାଗାଓଆ' ପର୍ବ ଆରମ୍ଭ ହୁଏ । 'ବାଗାଓଆ' ପର୍ବର ଅର୍ଥ ଗାଁ ଲୋକମାନେ ଏକତ୍ରିତ ହୋଇ ଗାଁର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଦଳଦଳ ହୋଇ ଯିବା ଆସିବା କରନ୍ତି । ଏହା ଅତ୍ୟନ୍ତ ମନୋମୁଗ୍ଧକର ହୋଇଥାଏ । ଏହି ପର୍ବର ଶେଷଦିନଟିକୁ 'ଗରମା' କୁହାଯାଏ । ଏହି ଦିନ ବିହୁନାଚ ପରିବେଶଣ କରାଯାଇଥିବା ସ୍ଥାନକୁ ଖୋଳି ସେଠି ପାଣି ଢ଼ାଳି ଯୁବକଯୁବତୀମାନେ ନାଚିନାଚି ଜଣକଦେହରେ ଅନ୍ୟ ଜଣେ କାଦୁଅ ବୋଳିଥାଏ । ଶେଷରେ ସମସ୍ତେ ନଦୀକୁ ଗାଧୋଇବାକୁ ଯାଆନ୍ତି । ଏହାପରେ ସାତଦିନ ଧରି ପାଳନ କରି ଆସୁଥିବା ଉତ୍ସବର ସମାପ୍ତି ହୁଏ । ଏହି ଉତ୍ସବରେ ଲୋକମାନଙ୍କର ମିଳାମିଶା, ଜାତୀୟଜୀବନର ଏବଂ କୃଷିସଂସ୍କୃତିକୁ ବଜାୟ ରଖିବାର ଦୃଢ଼ ସଂକଳ୍ପକୁ ଗ୍ରାମବାସୀଙ୍କ ଆଗରେ ରଖି ବର୍ଷକ ପାଇଁ ବିଷୁ ଉତ୍ସବ ବିଦାୟ ନେଇଥାଏ ।

**ରାଭାମାନଙ୍କର ବିଷୁ ଉତ୍ସବ** - ରାଭାମାନେ ମୁଖ୍ୟତଃ ଆସାମର କାମରୂପ, ଗୋଆଲପରା, ଦରଂ, ଧୁବୁରୀ ଆଦି ଜିଲ୍ଲାରେ ବସବାସ କରଥିବାର ଦେଖାଯାଇଥାଏ । ରାଭାମାନେ 'ବିହୁ' ସଦୃଶ ବସନ୍ତ ଉତ୍ସବ ଅତି ଆନନ୍ଦ ଉଲ୍ଲାସ ମଧ୍ୟରେ ପାଳନ କରିଥାଆନ୍ତି । ଏହି ଉତ୍ସବରେ ରାଭାମାନଙ୍କର 'ଖକ୍ଶପୂଜା' ପ୍ରଧାନ ତଥା ଅନ୍ୟତମ ଅଟେ । ରାଭାମାନଙ୍କର ଶ୍ରେଷ୍ଠାଦେବୀ ହେଉଛନ୍ତି 'ବାୟଖୁ' । ଏହାର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ହେରା ବା ଖାଚାତଦେବୀ । ଏହି ବାୟଖୁ ଉତ୍ସବରେ ରାଭାମାନଙ୍କର ଅନ୍ୟତମ ଶ୍ରେଷ୍ଠାଦେବୀ 'ଖକ୍ଚି' ଙ୍କ ପୂଜା ପାଳନ କରାଯାଇଥାଏ । ସାଧାରଣତଃ ବୈଶାଖ ମାସଠାରୁ ଜ୍ୟେଷ୍ଠମାସ ପର୍ଯ୍ୟନ୍ତ ବସନ୍ତକାଳୀନ ପରିବେଶରେ ଏହି ପୂଜାପାଳନ କରାଯାଇଥାଏ । ବିଭିନ୍ନ ଗ୍ରାମରେ ରାଭାମାନେ ବିଭିନ୍ନ ପ୍ରକାର ରୀତିରେ 'ଖକ୍ଚି' ପୂଜା ପାଳନ କରିଥାଆନ୍ତି । କେତେକ ରାଭାଲୋକମାନେ ଖକ୍ଚି କୁ ଯୋନି ପୂଜାର୍ ରୂପାନ୍ତର ବୋଲି ଭାବିଥାଆନ୍ତି । ଖକ୍ଚିଦେବୀ ଚାରିଜଣ ବିଭିନ୍ନ ଦେବୀରଙ୍କର ପ୍ରତିନିଧିତ୍ୱ କରିଥାଆନ୍ତି ଯଥା ଦାଦୁରୀ, ସୁଚାରୀ, ନାକାଟି ଏବଂ ତାମାଇ ଦେବୀ । ଦାଦୁରୀ ଦେବୀଙ୍କ ପୂଜା ଅଗ୍ନିପୂଜାର ରୂପାନ୍ତର ଅଟେ । ସୁଚାରୀଦେବୀଙ୍କ ପୂଜାକୁ ଲତାପୂଜା ବା ଲେଓରାଟେନା ପୂଜା କୁହାଯାଇଥାଏ । ନାଟକୀଦେବୀଙ୍କ

ପୂଜାକୁ ଚକ୍ରପୂଜା ବା ବ୍ୟୁତ୍‌ପୂଜା କୁହାଯାଏ । ତାମାଇ ଦେବୀର ପୂଜାକୁ ଦେବ୍‌ଧ୍ୱନି ବା ଦେଓଧ୍ୱନି ବୋଲି ଅଭିହିତ କରାଯାଇଛି ।

ଖସ୍ୟର ଅଧିଷ୍ଠାତ୍ରୀ ଦେବୀ ରୂପେ ଖକ୍‌ଚି ଦେବୀଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ରାଭାମାନେ ଘୁଷୁଡ଼ି ଆଦି ବଳି ଦେଇ ଆନନ୍ଦରେ ଭୋଜିଭାତ କରି ଖାଇବା ସଂଗେ ସଂଗେ ଯୁବକଯୁବତୀମାନେ ଏକ୍‌ତ୍ରିତ ହୋଇ ନାଚିଥାଆନ୍ତି । ଏହି ସମୟରେ ବିଭିନ୍ନ ପ୍ରକାର ଶୃଙ୍ଗାର ରସଯୁକ୍ତ ଗୀତ ଗାଇ ଯୁବକ ଯୁବତୀମାନେ ପରସ୍ପର ପ୍ରତି ପ୍ରଣୟାସକ୍ତ ହୋଇଥାଆନ୍ତି । ନିଜର ପାରଂପରିକ ରୀତି ନୀତି ମଧ୍ୟରେ ରାଭାମାନେ ହୋଲିଖେଳକୁ 'ଦେଉଳ ଉତ୍ସବ' ପର୍ବଭାବେ ପାଳନ କରନ୍ତି । ଦେଉଳ ଉତ୍ସବ ପର୍ବ ସମୟେ ଘରେ ଘରେ ମଦଖାଇ ଆନନ୍ଦରେ ପାଳନ କରନ୍ତି । ଦୁଇତିନିଦିନ ଧରି ରଂଗଖେଳି, ମାଟି ବା କାଦୁଅରେ ଖେଳି ବସନ୍ତ ଆଗମନର ଆନନ୍ଦକୁ ପରସ୍ପର ମଧ୍ୟରେ ବାଣ୍ଟିଥାଆନ୍ତି । ବିଭିନ୍ନ ଧରଣର ରୋଗର ପ୍ରତିବିଧାନ ଏବଂ ଆରୋଗ୍ୟପାଇଁ ପରମ ଆରାଧ ଦେବତା ଏବଂ ଗୃହଦେବତାଙ୍କ ନିକଟରେ ଲୋକମାନେ ପ୍ରାର୍ଥନା ଜଣାଇଥାଆନ୍ତି । (୯)

**ଦେଉରୀମାନଙ୍କର ବିହୁ ଓ ପୂଜାପାଠ** - ଆସାମର ଅନ୍ୟାନ୍ୟ ଜନଜାତିମାନଙ୍କ ଭଳି ଦେଉରୀମାନଙ୍କ ପ୍ରଧାନ ବସନ୍ତ ଉତ୍ସବ ରଂଗାଲି ବିହୁ । ଏହି ଉତ୍ସବକୁ ସେମାନେ 'ବିଷୁ' ଉତ୍ସବ ନାମରେ ପାଳନ କରିଥାଆନ୍ତି । ଏମାନେ ମୁଖ୍ୟତଃ ଲକ୍ଷ୍ମୀପୁର, ଢେ଼ମାଜି, ଡ୍ରିବ୍ରୁଗଡ଼ ଏବଂ ଶିବସାଗର ଜିଲ୍ଲାର ନଦୀର ଆଖାପାଖ ଅଞ୍ଚଳରେ ବସବାସ କରିଥାଆନ୍ତି । ଏହି ବିଷୁ ଉତ୍ସବ ସହିତ ଦେଉରୀମାନଙ୍କର ଧର୍ମୀୟ ରୀତିନୀତି ଓତଃପ୍ରୋତ ଭାବେ ଜଡ଼ିତ ଅଟେ । ଦେଉରୀମାନେ ଦେବାଳୟରେ ବଳି ବିଧାନ ପ୍ରଥା ସହିତ ବିଷୁ ଉତ୍ସବର ଶୁଭାରମ୍ଭ କରିଥାଆନ୍ତି । ସାଧାରଣତଃ ଚୈତ୍ରମାସର ସଂକ୍ରାନ୍ତି ଦିନ ଯଦି ବୁଧବାର ହୁଏ ନ ହେଲେ ବୈଶାଖର ପ୍ରଥମ ବୁଧବାର ଦିନ ଏମାନେ ବିହୁପାଳନ କରି ଥାଆନ୍ତି । ଆସାମର ଅନ୍ୟାନ୍ୟ ଜନଜାତି ସଦୃଶ ଦେଉରୀମାନଙ୍କ ବିଶ୍ୱାସରେ ବୁଧବାର ଦିନଟି ହିଁ ସବୁଠୁ ପବିତ୍ରଦିନ ଭାବେ ଗଣନା କରାଯାଇଥାଏ । ତେଣୁ ମଂଗଳବାର ଦିନ ଦେଉରୀମାନେ 'ଉରୁକା' ପାଳନ କରିଥାଆନ୍ତି । ଏହିଦିନ ପରେ ଘରେ ବିଭିନ୍ନ ପ୍ରକାରର ପିଠାପଣା ତଥା ଖାଦ୍ୟ ସାମଗ୍ରୀ ସହିତ ମଦମାସର ବାସ୍ନାରେ ପ୍ରତିଟି ଘର ଉଛୁଳି ଉଠେ । ବିହୁର ପ୍ରଥମ ଦିନ 'ଗୋପୂଜା' ଆକାରରେ ଗୋରୁମାନଙ୍କର ଅଧିକ ଯତ୍ନ ନିଆଯାଇଥାଏ । ଦ୍ୱିତୀୟଦିନଠୁ 'ମଣିଷବିହୁ' ପର୍ବ ପାଳନ ଆରମ୍ଭ ହୋଇଥାଏ ।

**ପୂଜାପାଠ** - ବିହୁ ଉପଲକ୍ଷେ ଦେଉରୀମାନେ ପ୍ରଥମ ବିହୁ ଦିନ ପ୍ରତ୍ୟେକ ଘରେ 'ସୁବଚନୀ' ବା ଘରଦେବତାଙ୍କୁ ପୂଜା କରିଥାଆନ୍ତି । ଏହି ପୂଜାରେ ସେମାନେ ନିଜର ଉପାସ୍ୟଦେବତାଙ୍କୁ ଆହ୍ୱାନ କରି ପରିବାରର କଲ୍ୟାଣ ଅର୍ଥରେ ପ୍ରାର୍ଥନା ଜଣାଇ ଥାଆନ୍ତି ।

ଉପରବେଳା ସମସ୍ତ ଲୋକମାନେ ମିଳି ଗ୍ରାମର ଦେଓଶାଳ ବା ଦେବମନ୍ଦିରକୁ ଯାଇଥାଆନ୍ତି । ସେଠାରେ ବଡଦେଉରୀ ଯିଏ କି ସବୁଠୁ ବୟସ୍କ ଓ ମୁଖ୍ୟ ସେ ଜନସାଧାରଣଙ୍କ ମଙ୍ଗଳ କାମନା କରି ବତକ ଓ କୁକୁଡ଼ା ବଳିଦେଇ ଥାଆନ୍ତି । ଯୁବକ ଯୁବତୀମାନେ ସେଠାରେ ମିଳିତ ହୋଇ ଖୁସୀରେ ପରସ୍ପରକୁ ଥଟ୍ଟା ପରିହାସ କରିଥାଆନ୍ତି । ପୂଜା ଶେଷରେ ପୁରୁଷ ଲୋକମାନେ ଆମିଷ ଭୋଜନ କରି ପୂଜା କାମ ଶେଷ କରି ଘରକୁ ଫେରନ୍ତି । ଆସାମର ଅନ୍ୟାନ୍ୟ ଜନଗୋଷ୍ଠୀ ସଦୃଶ ଦେଉରୀମାନଙ୍କ ଭିତରେ ବହାଗବିହୁରେ ହୁଁଚରି ପ୍ରଥା ଯଦିଓ ଅଛି ସେମାନଙ୍କର ହୁଁଚରିଗାର୍ନରେ କେତେକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି । ଦେଉରୀମାନେ ପ୍ରତି ତିନିବର୍ଷରେ ଥରେ ହୁଁଚରି ଗାଇଥାଆନ୍ତି । ମଝିରେ ଦୁଇବର୍ଷ ସାତବିହୁ ଗୀତ ଗାଇ ବିହୁଉତ୍ସବ ପାଳନ କରିଥାଆନ୍ତି । ବିହୁନାଚଶେଷରେ ପରବର୍ତ୍ତୀ ବୁଧବାର ଦିନ ବିଭିନ୍ନ ପ୍ରକାର ବାଦ୍ୟ ବଜାଇ ପୂଜା ଅର୍ଚ୍ଚନା ସହିତ ବର୍ଷକ ପାଇଁ ବିହୁ ଉତ୍ସବକୁ ବିଦାୟ ଦିଆଯାଇଥାଏ । ଏହି ସମୟରେ ଜଣେ ବିବାହିତ ପୁରୁଷ ବା ବିବାହିତା ନାରୀ ଦେଓଉଠା ଅନୁଷ୍ଠାନରେ ଦେଓଧ୍ୱନୀ ନୃତ୍ୟ ପରିବେଶଣ କରିଥାଆନ୍ତି । ଏହି ନୃତ୍ୟ ଅଧିକ ଲୋମହର୍ଷକ ଅଟେ । ଦେଓଧ୍ୱନୀ ନୃତ୍ୟ ପରିବେଶଣ କରୁଥିବା ପୁରୁଷ ବା ନାରୀର ଦେହରେ ଦେବତା ଆସନ୍ତି ବୋଲି ଦେଉରୀମାନେ ବିଶ୍ୱାସ କରନ୍ତି ।(୧୦)

**ବଡ଼ୋମାନଙ୍କର ବୈଶାଗୁ** - ଆସାମର ଜନଜାତିମାନଙ୍କ ଭିତରେ ସର୍ବବୃହତ୍ ଜନଗୋଷ୍ଠୀ ହେଉଛନ୍ତି ବଡ଼ୋ । ବଡ଼ୋମାନେ ମଙ୍ଗୋଲୀୟଜନଗୋଷ୍ଠୀର ତିବ୍ବତବର୍ମନ ଭାଷାର ଲୋକ । ସେମାନେ ଆସାମର କୋକରାଝର, ବଙ୍ଗାଇ ଗାଓଁ, ଦରଂ, ଶୋନିତପୁର, ଗୋଆଲପରା, ଧୁବୁରୀ, ନଲବାରୀ, କାମରୂପ, କର୍ବିଆଙ୍ଗ୍‌ଲଙ୍ଗ ଏବଂ ଲକ୍ଷ୍ମୀପୁର ଜିଲ୍ଲାର ବିସ୍ତୃତ ଅଞ୍ଚଳରେ ବିକ୍ଷିପ୍ତ ଭାବେ ବସବାସ କରନ୍ତି । ବଡ଼ୋମାନେ ଆଦିମ କାଳରୁ ବୈଶାଗୁ (ବୈଶାଖ ବା ବହାଗବିହୁ) ଖାମ୍ଫ୍ରିଦମାଂମୀ (କାର୍ତ୍ତିକବିହୁ) ଏବଂ ମାଗୀ ଦମାଂମୀ (ମାଘବିହୁ) ପାଳନ କରି ଆସିଛନ୍ତି । ଏହି ତିନୋଟି ବିହୁ ମୁଖ୍ୟତଃ ବଡ଼ୋମାନଙ୍କର ପ୍ରାଣର ଉତ୍ସବ । ଏହି ପର୍ବକୁ ସେମାନେ ହୃଦୟର ସ୍ନେହଢ଼ାଳି ପାଳନ କରନ୍ତି । ତିନୋଟି ବିହୁ ମଧ୍ୟରେ 'ବୈଶାଗୁ' ସର୍ବଶ୍ରେଷ୍ଠ ଅଟେ । ଚୈତ୍ରମାସ ସଂକ୍ରାନ୍ତି ଦିନଠାରୁ ଆରମ୍ଭ କରି ସାତଦିନ ଧରି ଉଦ୍‌ଯାପନ କରୁ ଥିବା ଏହି ବୈଶାଗୁ ବିହୁ ଦୁଇଧରଣରେ ଭାଗ କରାଯାଇଥାଏ । ଯଥା ମୀମୌସାନ (ଗୋରୁବିହୁ) ଏବଂ ମାନସିମାନ (ମଣିଷବିହୁ) । ୧୧

ବୈଶାଖମାସର ପ୍ରଥମଦିନଟି 'ମଣିଷବିହୁ' ଭାବେ ପାଳନ କରାଯାଇଥାଏ । ଏହି ଦିନ ବଡ଼ୋମାନେ ଛତ୍ରାଜଳୀର ଚିଫୁଙ୍ଗର ସ୍ୱରରେ ବଇଁଶୀ ବଜାଇ ଥାଆନ୍ତି । ବଇଁଶୀର ଏହି ସ୍ୱର ଶୁଣିଲେ ମଣିଷ ତଥା ଅନ୍ୟାନ୍ୟ ଜୀବଜନ୍ତୁର ପରମଶତ୍ରୁ ବୋଲି ଜ୍ଞାନ କରାଯାଉଥିବା ସାପରେ ଅଣ୍ଡାପଡ଼ି ଯାଏ ବୋଲି ବଡ଼ୋମାନେ ବିଶ୍ୱାସ କରିଥାଆନ୍ତି । ଏହିଦିନ

ସକାଳୁ ଲୋକମାନେ ଗାଧୋଇ ଆସି ଘରଦ୍ୱାର ଭଲଭାବେ ଲିପାପୋଛା କରି ପିଣ୍ଡାରେ ସେମାନଙ୍କର ଦେବତା 'ବାଥୌ'ଙ୍କୁ ପୂଜା କରିଥାଆନ୍ତି । ଏହାପରେ ସେହି ପୂଜା ସ୍ଥାନର ଦକ୍ଷିଣପଟେ ପୂର୍ବପୁରୁଷମାନଙ୍କ ଉଦ୍ଦେଶ୍ୟରେ ପୂଜା ଦିଆଯାଇଥାଏ । ଏହି ପୂଜାରେ ମୃତକମାନଙ୍କୁ ମଦ, ମାଂସ, ପାନ,ଗୁଆ ଆଦି ଜିନିଷ ଦିଆଯାଇ ସେମାନଙ୍କର ତର୍ପଣ କରାଯାଏ । ସ୍ୱର୍ଗଗାମୀ ପୂର୍ବ ପୁରୁଷଙ୍କୁ ସ୍ମରଣ କରି ସେମାନଙ୍କର ଆତ୍ମାର ସଦ୍‌ଗତି ପାଇଁ ପୂଜା କରିବା ସଂଗେ ସଂଗେ ଘରର ସମସ୍ତ ସଦସ୍ୟଙ୍କ ପାଇଁ ସେମାନଙ୍କର ଆଶୀର୍ବାଦ ଭିକ୍ଷା କରି ପୂଜା କରାଯାଇଥାଏ । ଏହି ଦିନ ଛୋଟମାନେ ଗୁରୁଜନମାନଙ୍କୁ ସମ୍ମାନ ଜଣାଇବା ସହିତ ସେମାନଙ୍କର ଆଶୀର୍ବାଦ କାମନା କରିଥାଆନ୍ତି । ଘରର ପ୍ରତ୍ୟେକ ସଦସ୍ୟ ନୂତନବସ୍ତ୍ର ପରିଧାନ କରିଭଲ ଭଲ ଖାଦ୍ୟ ଖାଇ ଆନନ୍ଦମୁଖର ଉତ୍ସବ ଅଟେ ।

**ମିଶିଂମାନଙ୍କର ବିହୁ** - ବଡ଼ୋମାନଙ୍କ ସଦୃଶ ମିଶିଂମାନେ ବୃହତ୍ ମଙ୍ଗୋଲୀୟ ପ୍ରଜାତିର ଗୋଟିଏ ଶାଖା ଅଟନ୍ତି । ଆସାମର ବିଭିନ୍ନ ଜିଲ୍ଲାରନଦୀର ପାର୍ଶ୍ୱବର୍ତ୍ତୀ ସ୍ଥାନରେଏମାନଙ୍କର ଘନବସତି ଦେଖାଯାଇଥାଏ । ମିଶିଂମାନେ ଆସାମର ଅନ୍ୟାନ୍ୟ ସଂପ୍ରଦାୟ ଭଳି ତିନୋଟିବିହୁକୁ ଆନନ୍ଦ ସହକାରେ ପାଳନ କରିଲେ ହେଁ ବହାଗବିହୁକୁ ଅଧିକ ଆନନ୍ଦ ଓ ଉଦ୍ଦୀପନା ଭିତରେ ପାଳନ କରିଥାଆନ୍ତି । ସେମାନେ ବହାଗବିହୁର ନଅଦିନ ପର୍ଯ୍ୟନ୍ତ ବିହୁ ଉତ୍ସବ ପାଳନ କରିଥାଆନ୍ତି । ମଣିଷ ବିହୁଦିନ ସମସ୍ତେ ଗୁରୁଜନଙ୍କୁ ସମ୍ମାନ ଜଣାଇ ଥାଆନ୍ତି । ପ୍ରତ୍ୟେକଲୋକ ନୂତନବସ୍ତ୍ର ପିନ୍ଧି ମାଛମାଂସ ତଥା ମଦଖାଇ ଆନନ୍ଦ ଉତ୍ସବରେ ଦିନ କଟାଇ ଦିଅନ୍ତି । ସନ୍ଧ୍ୟା ସମୟରେ ଗୃହିଣୀମାନେ ଘରେ ଘରେ ସଞ୍ଜବତୀ ଜଳାଇ ପୂର୍ବପୁରୁଷ ତଥା ଦେବଦେବୀଙ୍କର ପୂଜା କରିବା ସଂଗେ ସଂଗେ ଆଶୀର୍ବାଦ ଭିକ୍ଷା କରିଥାଆନ୍ତି । ଅନ୍ୟାନ୍ୟ ସଂପ୍ରଦାୟ ଭଳି ବିହୁରେ ମିଶିଂମାନେ ହୁଚରି ପରିବେଶଣ କରନ୍ତି । ମିଶିଂମାନଙ୍କର ବିହୁ ପର୍ବରେ ଅନ୍ୟାନ୍ୟ ପର୍ବ ଭଳି 'ଆପଙ୍' ବା ମଦ ଏକ ଅପରିହାର୍ଯ୍ୟ ଦ୍ରବ୍ୟ ଅଟେ । ସନ୍ଧ୍ୟା ସମୟରେ ଯୁବକଯୁବତୀମାନେ ଏକତ୍ରିତ ହୋଇ ମନଫୁଲାଣିଆ ଗୀତ ଗାଇଥାଆନ୍ତି ମାତ୍ର ମିଶିଂମାନଙ୍କର ବିହୁଗୀତଗୁଡ଼ିକରେ ଯୌନତାର ଗନ୍ଧ ଆଦୌ ନଥାଏ । ସେମାନେ ପ୍ରେମମୂଳକ ଗୀତ ଗାଇଲେ ହେଁ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ଅଟେ । ନୃତ୍ୟ ପରିବେଶଣ ବେଳେ ଢ଼ୋଲ, ତାଳ, ପେଁପା, ଟକା ଗମନା ଆଦି ବାଦ୍ୟଯନ୍ତ୍ରଗୁଡ଼ିକ ବଜାଯାଇଥାଏ । ନୃତ୍ୟଗୀତ ଗୁଡ଼ିକରେ ଗାଆଁର ପ୍ରାୟ ସମସ୍ତ ସଦସ୍ୟ ଭାଗ ନେଇଥାଆନ୍ତି । (୧୨)

**ବିହୁ ସଂପର୍କୀୟ ନାମ ଏବଂ ଗୀତ** - ବିହୁ ସମୟରେ ଗାଉଥିବା ବିହୁନାମ ଗୁଡ଼ିକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଛି । ଗୋଟିଏ ଭାଗ ହେଉଛି ବୈଶାଖ ବିହୁର ହୁଁଚରି ପରିବେଶଣ ସମୟରେ ଘୋଷାପଦ ଲଗାଇ ଗାନ କରାଯାଉଥିବା ବିହୁନାମ

ଏବଂ ଅନ୍ୟ ଭାଗଟି ହେଉଛି ଯୁବକଯୁବତୀମାନେ ଖୋଲା ପଡ଼ିଆରେ ଗାଉଥିବା ବି ୍ନାମ, ଯାହାକୁ ବିହୁଗୀତ-ବନଘୋଷା ଭାବେ ନାମିତ କରାଯାଇଛି । ଖୋଲା ପଡ଼ିଆରେ ଯୁବକ ଯୁବତୀମାନେ ନାଚି ନାଚି ଗାଉଥିବା ବିହୁଗୀତ ଗୁଡ଼ିକ ମୁଖ୍ୟତଃ ଶୃଙ୍ଗାରରସ ସମ୍ବଳିତ ଅଟେ । ତେଣୁ ଦୁଇଟି ଭାଗ ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ ରହିଛି । ହୁଁଚରି ବିହୁରେ ଦେଶର ମଙ୍ଗଳ କାମନା ସହ ଗୃହସ୍ଥର ମଙ୍ଗଳ କାମନା କରି ହୁଁଚରି ଦଳ ବିହୁ ଗୀତ ପରିବେଶଣ କରନ୍ତି । ଏହି ଗୀତ ଗୁଡ଼ିକରେ ସଂସାରର ସୁଖଦୁଃଖ ଆଦି ଚିତ୍ରିତ ହୋଇଥାଏ । ଏଥିରେ ଯୌନଗନ୍ଧର ଆଭାସ ନଥାଏ । ମାତ୍ର ପଡିଆରେ ପରିବେଶଣ କରାଯାଉଥିବା 'ମୁକଲିବିହୁ' ର ଗୀତଗୁଡ଼ିକରେ ସାଧାରଣତଃ ସମାଜର ଚିତ୍ର, ପ୍ରକୃତି ଓ ପରିବେଶର ଚିତ୍ର ଅଧିକ ବିସ୍ତୃତ ଭାବେ ବର୍ଣ୍ଣନା କରାଯାଇଥାଏ । ବିହୁଗୀତର 'ବନଘୋଷା' ଭାଗରେ ଯୁବକଯୁବତୀମାନେ ସଂପୂର୍ଣ୍ଣରୂପେ ପ୍ରଣୟମୂଳକ ଗୀତ ଗାଇଥାଆନ୍ତି । (୧୨) ତେଣୁ ବହାଗବିହୁରେ 'ହୁଁଚରି ବିହୁନାମ' ଘର ଭିତରେ ଗୃହସ୍ଥକୁ ଆଶୀର୍ବାଦ ଦେବାବେଳେ ପରିବେଶଣ କରାଯିବା ବେଳେ 'ବିହୁଗୀତ' ମୁକ୍ତପ୍ରାଙ୍ଗଣରେ ଯୁବକ ଯୁବତୀମାନଙ୍କ ଦ୍ୱାରା ପରିବେଶଣ କରାଯାଇଥିଏ ।

**ଗୋରୁବିହୁ** - ବିହୁ ମୁଖ୍ୟତଃ କୃଷିଭିତ୍ତିକ ଉତ୍ସବ ଅଟେ । କୃଷକପାଇଁ ତା'ର ବଳଦହଳକ ସର୍ବସ୍ୱ ଅଟେ । ବିଭିନ୍ନ ଉତ୍ସବ, ପର୍ବପର୍ବାଣୀ ସହିତ ବିହୁଧୀରେ ଧୀରେ ନଗରକୈନ୍ଦ୍ରିକ ହୋଇପଡ଼ିଛି ତଥାପି ବିହୁ ମୁଖ୍ୟତଃ ଗ୍ରାମୀୟ ଉତ୍ସବ, କୃଷିଜୀବିର ଉତ୍ସବ । ଏହାକୁ କେହି ଅସ୍ୱୀକାର କରି ପାରିବେନି । ବିହୁର ପ୍ରତିଟି ବୈଶିଷ୍ଟ୍ୟରେ ଗ୍ରାମୀୟ ସମାଜ, ଜୀବନର ଭାବ-ଭଙ୍ଗୀ ଲୁଚି ରହିଥାଏ । ତେଣୁ ବିହୁ କହିଲେ ଆଖି ଆଗରେ ଗାଁର ଏକ ନିଖୁଣ ଛବି ଭାସି ଉଠେ । ସମୟର ପରିବର୍ତ୍ତନ ସହିତ ମଣିଷର ଅର୍ଥନୈତିକ ଜୀବନର ଅନେକ ପରିବର୍ତ୍ତନ ଘଟିଛି । ଏହା ସହିତ ମଣିଷର ମାନସିକତାର ଦ୍ରୁତ ପରିବର୍ତ୍ତନ ତଥା ବିଳାସ ବ୍ୟସନ ମନୋବୃତ୍ତି ବୃଦ୍ଧି ପାଇବା ସଂଗେ ସଂଗେ ବିହୁର ଅସଲ ଉଦ୍ଦେଶ୍ୟ ଲୋପ ପାଇବାକୁ ବସିଲାଣି ଯଦିଓ ତଥାପି ବିହୁର ଐତିହ୍ୟ ସ୍ମରଣ କଲେ ଆମେ ଗ୍ରାମୀୟ ପଟ୍ଟଭୂମିର କଥାକୁ ସ୍ମରଣ କରିବାକୁ ହେବ । ବିହୁର ଅବିକଳ ରୂପ ପାଇବାକୁ ହେଲେ ଗ୍ରାମୀୟ ସମାଜ ଭିତରକୁ ଯାଇ ତା'କୁ ଆପଣାର ଭାବେ ଦେଖିବାକୁ ହେବ ।

ସରଳ ମଧୁର ସମାଜ ଭିତରେ ଗୋରୁବିହୁର ସ୍ଥାନ ବହୁ ଉଚ୍ଚରେ । ସମୟର ପ୍ରଭାବରେ ଗାଁ ଗୁଡ଼ିକରୁ ବିହୁର ପ୍ରଭାବ କମି ଆସିଲେ ବି ଗୋରୁବିହୁ ଗ୍ରାମୀୟ ସମାଜରେ ନିଶ୍ଚିନ୍ତ ରୂପେ ଚିରକାଳ ପାଇଁ ବଞ୍ଚି ରହିବ କାରଣ ଗ୍ରାମୀୟ କୃଷକ ସମାଜ ଭିତରେ ଗୋରୁଗାଈ ଯେତେଦିନ ପର୍ଯ୍ୟନ୍ତ ଆବଶ୍ୟକୀୟ ହୋଇ ରହିବ, ସେତେଦିନ ପର୍ଯ୍ୟନ୍ତ ଗୋରୁବିହୁ ଅକୃତ୍ରିମ ଆନ୍ତରିକତା ସହକାରେ ସରଳ ଗାଉଁଲିଆ କୃଷକ ପାଳନ କରିବ । ହୁଏତ ଏହ

ପାଳନରେ କିଛିଟା ବ୍ୟତିକ୍ରମ ହୋଇପାରେ । ସହରରେ ଗୋରୁବିହୁର କାହାଣୀ ମଧ୍ୟ ପ୍ରାଧାନ୍ୟ ଲାଭ କରି ପାରିବ ନାହିଁ । ଗୋରୁବିହୁ ସହିତ ଯେଉଁ କେତୋଟି ଲୋକାଚାର ଜଡ଼ିତ ହୋଇ ରହି ଆସିଛି, ତାହା ସହରୀ ସଭ୍ୟତା ଭିତରେ ମିଳି ନଥାଏ ବା ସେଭଳି ଲୋକାଚାର ସହରର ତଥାକଥିତ ଶିକ୍ଷିତ ସମାଜ ଆଦରିନେବା ପାଇଁ ରାଜି ନୁହେଁ, ତାହା ସ୍ୱାଭିବିକ ଅଟେ ।

ବହାଗବିହୁର ପ୍ରଥମ ଦିନଟିକୁ ଗୋରୁବିହୁ ହିସାବରେ ପାଳନ କରାଯାଇଥାଏ । ତା'ପରଦିନଠୁ ମାନୁହବିହୁ ବା ମଣିଷ ବିହୁପାଳନ କରାଯାଇଥାଏ । ଆସାମର ବିଭିନ୍ନ ସ୍ଥାନରେ ଗୋରୁବିହୁର ଲୋକାଚାରରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହେଲେ ହେଁ ମୂଳ ଲୋକାଚାର ଗୁଡ଼ିକ ପ୍ରାୟତଃ ଏକାଧରଣର । ଚୈତ୍ର ଏବଂ ବୈଶାଖ ମାସର ସଂକ୍ରାନ୍ତି ଦିନଟି ଗୋରୁବିହୁ ହିସାବରେ ପାଳନ କରାଯାଇଥାଏ । ସେହିଦିନ ରାତିପୁହା ଗୃହସ୍ଥ ଗୋରୁଁଶିଙ୍ଗରେ ଭଲ ଭାବେ ତେଲ ଘସି ଥାଆନ୍ତି । ଏହାପରେ ବଟାବିରି, ହଳଦୀ ଆଦିଗୋରୁ ଦେହରେ ଭଲଭାବେ ଘସି ପାଖରେ ଥିବା ନଈ ଅଥବା ଖାଲର ପାଣିରେ ଗାଧୋଇ ଦେଇଥାଆନ୍ତି । ବିଭିନ୍ନ ଘରର ଗୋରୁମାନଙ୍କୁ ଏକା ସାଙ୍ଗରେ ନଈ ବା ଖାଲରେ ଉତ୍ସାହ ଓ ଉଦ୍ଦୀପନା ସହକାରେ ଗାଧୋଇଦେବାର ଦୃଶ୍ୟ ପ୍ରକୃତରେ ମନୋମୁଗ୍ଧକର । ଏହି ସମୟରେ ଲାଉ, ବାଇଗଣ, ହଳଦୀର ଛୋଟଛୋଟ ଗୁଣ୍ଡଗୁଡ଼ିକୁ ଗୋଟିଏ ଛୋଟନଳୀ ଭିତରେ ରଖି ଗାଈ ବଳଦଙ୍କର ଦେହରେ ଛାଟି ଦେଇଥାଆନ୍ତି । ଗାଈଗୋରୁଙ୍କୁ ଗାଧୋଇଦେବାପରେ ସେମାନଙ୍କୁ ଲାଉ, କଖାରୁ, ବାଇଗଣ ତଥା ଅନ୍ୟାନ୍ୟ ପନିପରିବା ଖୁଆଇବା ସଙ୍ଗେ ସଙ୍ଗେ ଗୃହସ୍ଥ ଗାଈମାନଙ୍କର ମଙ୍ଗଳ କାମନା କରି ଗାଇଥାଆନ୍ତି -

" ଲାଉ ଖା, ବେଙ୍ଗେନା ଖା,
ବଛରେ ବଛରେ ବାଢ଼ି ଯା"
ଅର୍ଥାତ୍ " ଲାଉ ଖା, ବାଇଗଣ ଖା,
ବର୍ଷକୁ ବର୍ଷ ବଢ଼ି ଯା"

ମାଟିର ଗନ୍ଧଥିବା, ଯାଦୁର ସମ୍ମୋହନ ଥିବା ଗୋରୁବିହୁ ସହିତ କେତୋଟି ମନ୍ତ୍ର ଜଡ଼ିତ ଅଛି । ଗାଆଁଲିଆ କୃଷିଜୀବି ସମାଜ ଭିତରେ ଗୋରୁର ପ୍ରାଧାନ୍ୟ ଅଧିକ ହେତୁ ଗୋରୁମାନଙ୍କର ମଙ୍ଗଳ କାମନା କରିବା କୃଷକର ଏକ ମହତ୍ ଉଦ୍ଦେଶ୍ୟ । ସେଥିପାଇଁ କୃଷକ ଏହିଦିନ ଗୋରୁର ମଙ୍ଗଳ କମନା କରିବା ସହିତ ଗୋରୁ ଜାତିର ଐତିହ୍ୟକୁ ମନେ ପକାଇ ଥାଏ । ଦୀଘଲତୀ ଗଛର ଲମ୍ବାଲମ୍ବା ପତ୍ର ଗୁଡ଼ିକ ଧୂଆଁ ଦିଆଯାଇ ବିଭିନ୍ନ ପ୍ରକାରର କୀଟପତଙ୍ଗ ଆଦି ନାଶ କରାଯାଇଥାଏ । ତେଣୁ ଦୀଘଲତୀ ପତ୍ର ଗାଈଗୋରୁଙ୍କର

ଉପକାରରେ ଆସେ । ଏହାରି ମାଧ୍ୟମରେ ଗୋରୁ ଗାଈମାନଙ୍କର ମା' ବାପ ଛୋଟ ଥିଲେ ସେମାନେ ଆହୁରି ବଡ଼ ବଡ଼ ଗୋରୁହେବା ପାଇଁ କୃଷକ କାମନା କରିକହେ-

''ଦୀଘଲତୀ ଦୀଘଲ ପାତ
ମାଖି ମାରେ ଜାତ ଜାତ
ବାପେକ ସରୁ, ମା'କ ସରୁ
ତଇ ହ'ବି ଡାଙ୍ଗର ଗରୁ''

ଗୋରୁଜାତି ପ୍ରତି ଥିବା ସ୍ନେହର ନିଦର୍ଶନ ସ୍ୱରୂପ ଉପରୋକ୍ତ ଗୀତକେଇଧାଡ଼ି କୃଷକ ଗୋରୁବିହୁଦିନ ଗୋ ପୂଜା ସମୟରେ ଗାଇଥାଏ । ଏହା କୃଷକ ସମାଜର ଏକ ଅମୋଘ ଅସ୍ତ୍ର ଅଟେ । ଏହି ମନ୍ତ୍ରପାଠ କରି ଗ୍ରାମୀୟ ସହଜ ସରଳ କୃଷକ ସମାଜ ଜମିଚାଷ ଭଳି ମହାଯଜ୍ଞରରେ ଯୋଗଦେବା ପାଇଁ ପ୍ରସ୍ତୁତି ଆରମ୍ଭ କରିଥାଏ । ଗୋରୁମାନଙ୍କୁ ପରିବା ଆଦି ଖୁଆଇବା ପରେ ବଳିଥିବା ଛୋଟ ଛୋଟ ପରିବା ଖଣ୍ଡ ଗୁଡ଼ିକୁ ଗୁହାଳର ଚାଳରେ କୃଷକମାନେ ଗୁଞ୍ଜି ହୋଇଥାଆନ୍ତି । ସେଦିନ ଗାଈଗୋରୁମାନଙ୍କୁ ବାହାରେ ଖୋଲାପଡ଼ିଆରେ ଛାଡ଼ିଦିଆଯାଏ । ଗୋରୁବିହୁଦିନ ଗଡ଼େଇ ପତ୍ର, କଞ୍ଚାଘାସ ଆଦି ମିଳେଇ ଗୁହାଳରେ ଧୂଆଁ ଦିଆଯାଏ । ଯାହାକୁ ଅସମୀୟା ଭାଷାରେ 'ଜାଗ' କୁହାଯାଏ । 'ଜାଗ' ଦେଲେ ଗାଈଗୋରୁ ଆଦି ମଶା ଡାଆଁସଙ୍କ କବଳରୁ ରକ୍ଷା ପାଇବା ସହିତ ବସନ୍ତରୋଗରେ ଆକ୍ରାନ୍ତ ହୁଅନ୍ତି ନାହିଁ ବୋଲି ବିଶ୍ୱାସ କରାଯାଇଥାଏ । ସନ୍ଧ୍ୟା ବେଳକୁ ଗାଈଗୋରୁ ମାନଙ୍କୁ ଗୁହାଳରେ ନୂଆ ପଘାରେ ବନ୍ଧାଯାଏ । କେତେକ କୃଷକ ଏହି ଦିନ, ଗୋରୁମାନଙ୍କର ପାଦକୁ ହଳଦୀପାଣିରେ ଧୋଇଦେଇ ମଥାରେ ଚନ୍ଦନ ଟିପା ଦେବା ସଂଗେ ସଂଗେ ଗୋରୁମାନଙ୍କ ଦେହରେ ଚନ୍ଦନ ଛିଟା ଦେଇଥାଆନ୍ତି । ବେକରେ ଦୀଘଲତୀ ଗଛର ଛେଲିକୁ ପଘା ସହିତ ମିଳାଇ ସେଦିନ ବାନ୍ଧି ଦିଆଯାଇଥାଏ ।

୧୮୪୧ ଖ୍ରୀ.ରେ ଉଇଲିୟମ୍ ରବିନ୍‌ସନ ବିହୁ ଉତ୍ସବ ସଂପର୍କରେ ଆଲୋଚନା କଲାବେଳେ ଗୋରୁବିହୁ ସଂପର୍କରେ କେତୋଟି କଥା ଉଲ୍ଲେଖ୍ୟ କରିଛନ୍ତି । ତାଙ୍କ ମତରେ ଇଉରୋପରେ ନୂତନବର୍ଷର ପ୍ରଥମ ଦିନଟିକୁ ଲୋକମାନେ ଆନନ୍ଦରେ କଟାଇଲା ଭଳି ଅସମୀୟାମାନେ ନୂତନବର୍ଷର ପ୍ରଥମ କେତୋଟି ଦିନକୁ ଖୁବ୍ ଉତ୍ସାହର ସହିତ ଉପଭୋଗ କରନ୍ତି । ନୂତନବର୍ଷର ପ୍ରଥମଦିନ ଗୋରୁମାନଙ୍କୁ ଆନ୍ତରିକତାର ସହ ପୂଜା କରାଯାଇଥାଏ । ପ୍ରଥମେ ସେମାନଙ୍କ ଦେହରେ ପବିତ୍ର ଜଳଛିଟାଯାଇଥାଏ, ଯେପରି ସର୍କସର ଖେଳପୂର୍ବରୁ ଘୋଡ଼ାମାନଙ୍କ ଦେହରେ ପବିତ୍ର ଜଳ ଛିଟା ଯାଇଥାଏ । କେହି କେହି ବ୍ରହ୍ମପୁତ୍ରର ପବିତ୍ରଜଳକୁ

ଶବ୍ଦାର୍ଥ : ଦୀଘଲତୀ-ଏକ ପ୍ରକାର ଗଛର ଡାଳ, ଦୀଘଲ - ଲମ୍ବା, ମାଖି-ମାଛି, ସରୁ-ଛୋଟ, ଡାଙ୍ଗର - ବଡ଼ ।

ଗୋରୁମାନଙ୍କ ଦେହରେ ଛିଟାଇ ଦେଇ ଗାଧୋଇ ଦିଅନ୍ତି । ଏହାପରେ ବହୁସଂଖ୍ୟାର ଲୋକମାନେ ମିଳି ଗୋରୁମାନଙ୍କୁ ଗାଁ ଭିତରକୁ ଆଣିଥାଆନ୍ତି । ଏହି ସମୟରେ ଗ୍ରାମବାସୀମାନେ ବିଭିନ୍ନ ପ୍ରକାର ବାଦ୍ୟ ବଜାଇଥାଆନ୍ତି ଏବଂ ବଡ଼ପାଟିରେ ବିଭିନ୍ନ ପ୍ରକାରର ସ୍ୱର ଉଚ୍ଚାରଣ କରିଥାଆନ୍ତି । ଏହିଦିନ ଗୋରୁମାନଙ୍କୁ ସେମାନଙ୍କର ପସନ୍ଦସ୍ଥାନରେ ରହିବାକୁ ଦିଆଯାଇଥାଏ । ସନ୍ଧ୍ୟା ସମୟରେ ସେମାନଙ୍କୁ ନୂଆ ପଘାରେ ବାନ୍ଧି, ପିଠା, କଖାରୁ ବାଇଗଣ ଏବଂ ଅନ୍ୟାନ୍ୟ ପରିବା ଖାଇବାକୁ ଦିଆଯାଏ । ବହୁ ସଂଖ୍ୟାରେ ଯୁବତୀମାନେ ଏହି ସମୟରେ ଆନନ୍ଦରେ ନୃତ୍ୟ କରିଥାଆନ୍ତି । (୧୪)

ଗୋରୁବିହୁ ସହିତ ଜଡ଼ିତ ମନ୍ତ୍ର କେତୋଟି ସଂପର୍କରେ ବିଶିଷ୍ଟ ସମାଲୋଚକ ନଳିନୀଧର ଭଟ୍ଟାଚାର୍ଯ୍ୟ ଗୋଟିଏ ପ୍ରବନ୍ଧରେ ଏହିଭଳି ଭାବେ କହିଛନ୍ତି- ''ମନ୍ତ୍ର ଭିତରେ ଯାଦୁର ଗନ୍ଧ ଅଛି । ଏହା ହିନ୍ଦୁ ଗୋପୂଜା ସହିତ ତୁଳନା କରାଯାଇ ପାରିବନି'' । ଆଲୋଚକ ବିରଞ୍ଚି କୁମାର ବରୁଆ ଗୋଟିଏ ପ୍ରବନ୍ଧରେ ଲେଖିଛନ୍ତି ଯେ ଧାନ କରିବା ସହିତ ଅଷ୍ଟ୍ରିକ୍‌ମାନେ କଦଳୀ, ବାଇଗଣ, ଲାଉ, ପାନ, ନଡିଆ, ହଳଦୀ, ଅଦା ଆଦି ଚାଷ କରୁଥିଲେ କାରଣ ଏଗୁଡିକ ଅଷ୍ଟ୍ରିକ୍‌ମାନଙ୍କର ଶବ୍ଦ ବୋଲି ଜଣାଯାଇଥାଏ । ଅଷ୍ଟ୍ରିକ୍‌ମାନେ ମୁଖ୍ୟତଃ ଗଙ୍ଗା ଏବଂ ବ୍ରହ୍ମପୁତ୍ର କୂଳରେ ବାସ କରୁଥିଲେ ବୋଲି ପଣ୍ଡିତମାନେ କହିଛନ୍ତି । ଏମାନେ ସମ୍ଭବତଃ ପ୍ରାଚୀନତମ ଅଟନ୍ତି । ଗୋରୁଙ୍କୁ ଗାଧୋଇବା ପୂର୍ବରୁ ଛୋଟ ନଳୀ ଭିତରେ ପରିବାଗୁଣ୍ଡ ରଖି ସେମାନଙ୍କ ଦେହରେ ଛାଟିବା ପ୍ରଥା ଏବଂ ଗୋରୁମାନଙ୍କୁ ଗାଧୋଇ ଦେଲାବେଳେ ଗାଉଥିବା ମନ୍ତ୍ର ସହିତ ଅଷ୍ଟ୍ରିକ୍‌ମାନଙ୍କର ଆଚାର ଏବଂ ନୀତିନିୟମର ସଂପର୍କ ରହିଛି । ଅନ୍ୟପଟେ ଅଷ୍ଟ୍ରିକ୍‌ମାନଙ୍କର ଏକ ମୁଖ୍ୟ ଶାଖା ବଡ଼ୋ ଜାତିର 'ଲାଓଜା ପାନଥାଓ୍ୱଜା' ଗୀତ ସହିତ ଏହି ମନ୍ତ୍ରର ସାଦୃଶ୍ୟ ଥିବାର ଦେଖାଯାଇଥାଏ । ତେଣୁ ଗୋରୁବିହୁର ପୂଜା ପ୍ରଥା ଅଷ୍ଟ୍ରିକ୍‌ମାନଙ୍କଠୁ ଆସିଛି ବୋଲି ଅନୁମିତ ହୋଇଥାଏ ।

**ବଡ଼ୋ ଜନଜାତିରେ ଗୋରୁବିହୁ ବା ଗୋପୂଜା—**

କୃଷିଜୀବି ବଡ଼ୋମାନଙ୍କର ଚାଷର ଜମି ଏବଂ ଗୋରୁହଳକ ହିଁ ଜୀବିକାର ପ୍ରଧାନ ସମ୍ବଳ । ଗୋ ଜାତିର ଶ୍ରୀ ବୃଦ୍ଧି ଉପରେ ନିର୍ଭର କରି ସେମାନଙ୍କର ସମସ୍ତ ପ୍ରକାରର ମଂଗଳ ହୋଇଥାଏ । ସେଥିପାଇଁ ଚୈତ୍ରମାସର ସଂକ୍ରାନ୍ତି ଦିନରେ ବଡ଼ୋମାନେ ବହୁକାଳରୁ ଗୋରୁବିହୁ ପାଳନ କରିଆସୁଛନ୍ତି । ସେହିଦିନ ବଡ଼ୋମାନେ ଅତି ସକାଳୁ ଉଠି ଗୋରୁ ଶିଙ୍ଗ ଏବଂ ଖୁରାରେ ସୋରିଷ ତେଲ ଭଲଭାବେ ଘଷି ଥାଆନ୍ତି । ଏହାପରେ ଭାତର ପେଜ ଏବଂ ସୋରିଷ ତେଲ ମିଶେଇ ଖଣ୍ଡେ ବାଉଁଶ ଛାଟିଆରେ ଗୋରୁଗାଈମାନଙ୍କର ଦେହରେ ଚନ୍ଦନ ଭଳି ଛାଟି ଦେଇଥାଆନ୍ତି । କେହିକେହି ହଳଦୀ, ବଟାବିରି, ଲାଉ, ବାଇଗଣ ଆଦିକୁ

ଛୋଟ ଛୋଟ ଖଣ୍ଡ କରି କାଟି ବାଉଁଶନଳୀ ଭିତରେ ପଶେଇ ଗୋରୁଗାଈଙ୍କ ଦେହରେ ଛାଟି ଛାଟି ଗାଧୋଇବାକୁ ନିଅନ୍ତି । ସେମାନଙ୍କୁ ପାଖ ବିଲର ପାଣିଥିବା ଖାଲୁଆ ଜାଗା ବା ନଈରେ ଭଲଭାବେ ଗାଧୋଇ ଦିଅନ୍ତି । ଗାଧୋଇଦେଲା ବେଳେ ବଡ଼ୋମାନେ ଏହିଭଳି ଭାବେ ଗୋରୁଜାତିର ମଂଗଳ କାମନା କରି ଗୀତ ଗାଇଥାଆନ୍ତି-

''ଲାଓ ଜାଫାନ ଥାଓ ଜା
ବୀସୀର ବୀସୀର ଏର ହାନଜା ହାନଜା
ବିମାନି ଖିଥେଇ ବିଫାନି ଖିବେର
ନୀଂନ୍ଥୀର ଇାଗୀନ ହାଲୁଆ ଗୋଛର'' ।

ଅର୍ଥାତ୍-

''ଲାଉ ଖା, ବାଇଗଣ ଖା
ବର୍ଷକୁ ବର୍ଷ ବଢ଼ି ଯା,
ମା' ଛୋଟ, ବାପ ଛୋଟ
ତୁ ହେବୁ ବଡ଼ ଜାତିର ଗୋରୁ'' ।

ଏଭଳି ଗାଇଲେ ଛୋଟ ଜାତିର ଗୋରୁଥିଲେ ତାହା ବଡ଼ଜାତିର ଗୋରୁ ହୋଇ ଜନ୍ମହୁଏ ବୋଲି ବଡ଼ୋମାନେ ବିଶ୍ୱାସ କରିଥାଆନ୍ତି । ଏହାପରେ ଅସମୀୟା ସମାଜରେ ଗୋରୁମାନଙ୍କୁ ଭଲଭାବେ ଖାଇବା ପିଇବାକୁ ଦେଇ ସେଦିନ ପୂଜା କଲାଭଳି ବଡ଼ୋମାନେ ମଧ୍ୟ ଗୋରୁମାନଙ୍କର ଯତ୍ନ ନେଇଥାଆନ୍ତି । ଏହିଦିନ କୃଷକର ଗୃହିଣୀ ଗୁହାଳର ଗୋବର, ପାଉଁଶ ତଥା ଅନ୍ୟାନ୍ୟ ମଇଳା ଆବର୍ଜନା ଆଦି ସଫା କରି ଗୁହାଳକୁ ପରିଷ୍କାର କରିଥାଆନ୍ତି । ବଡ଼ୋମାନଙ୍କର ବିଶ୍ୱାସ ଯେ ଗୁହାଳର ଗୋବର ପାଉଁଶ ଆଦି ଗୋରୁବିହୁଦିନ ସକାଳୁ ଭଲଭାବେ ସଫା ନକଲେ ବର୍ଷସାରା ଗୋରୁମାନେ ପେଟପୂରା ଖାଇବାକୁ ପାଆନ୍ତି ନାହିଁ । ସେଥିପାଇଁ ଦିନସାରା ଗୋରୁମାନଙ୍କୁ ଭଲଭାବେ ଖାଇବାକୁ ଦେଇ ନୂଆ ପଘାରେ ବାନ୍ଧିଥାଆନ୍ତି ।

**ଦେଉରୀମାନଙ୍କର ଗୋରୁବିହୁ-** ଦେଉରୀ ସମାଜରେ ଗୋରୁବିହୁ ଦିନ ସକାଳୁ ଗୋରୁ ରଖୁଆଳ ପିଲା ତଥା କୃଷକମାନେ ଉଠି ନିଜେ ଗାଧୋଇ ସାରି ଗାଈଗୋରୁମାନଙ୍କ ଦେହରେ ବଟାବିରି ଓ ହଳଦୀ ଲଗାଇ ଗାଧୋଇ ଦିଅନ୍ତି । ତା'ପରେ ଲାଉ, କଖାରୁ, ବାଇଗଣ ଆଦି ପରିବା ଛୋଟ ଛୋଟ ଖଣ୍ଡକରି ବାଉଁଶନଳୀ ଭିତରେ ରଖି ଗୋରୁମାନଙ୍କ ଦେହରେ ଛାଟି ଥାଆନ୍ତି । ତା'ପରେ ଗୋରୁମାନଙ୍କୁ ଗାଧୋଇ ଦେଇ ସେମାନଙ୍କ ଗଳାରେ କଳାସୂତାରେ 'ଟଂଲତି' ନାମକ ଲତାର ପତ୍ରକୁ ବାନ୍ଧି ମାଳା ପିନ୍ଧାଇ ଦିଅନ୍ତି । ଦିନସାରା ଭଲଭାବେ ଖାଇବାକୁ ଦେଇ ଗୋରୁମାନଙ୍କୁ ପୂଜା କରନ୍ତି । ସନ୍ଧ୍ୟା ସମୟରେ ତରା ନାମକ

ଗଛର ଛେଲିକୁ ଛୋଟ ଛୋଟ ଖଣ୍ଡ କରି ଗୋରୁ ବେକରେ ମାଳା କରି ପିନ୍ଧାଇ ଦିଅନ୍ତି । କୃଷକମାନେ ଗୋରୁମାନଙ୍କ ଦେହରେ ଛାଟିଥିବା ପରିବାନଳୀ ଗୁଡିକୁ ପରସ୍ପର ମଧ୍ୟରେ ବଦଳାଇ ଥାଆନ୍ତି । ଏଭଳି କରିଲେ ବତାସ, ବଜ୍ରପାତ ଆଦି ହୁଏନାହିଁ ବୋଲି ଦେଉରୀମାନେ ବିଶ୍ୱାସ କରିଥାଆନ୍ତି । ସନ୍ଧ୍ୟା ସମୟରେ ଗୁହାଳରେ ଧୂଆଁଦେଇ ଗୋରୁମାନଙ୍କୁ ପିଠା ଆଦି ଖାଇବାକୁ ଦେଇ ନୂଆ ପଘାରେ ଗୁହାଳରେ ବାନ୍ଧିଥାଆନ୍ତି । ତେଣୁ ଦେଉରୀ ସମାଜରେ ଗୋପୂଜା ଭଳି ପବିତ୍ର କାମକୁ ସେମାନେ ଅତି ଆନନ୍ଦରେ ପାଳନ କରନ୍ତି ।

**ରାଭାମାନଙ୍କର ଗୋପୂଜା-** ଆସାମର ଅନ୍ୟତମ ବିଶିଷ୍ଟ ଜନଜାତି ରାଭାମାନେ ଶ୍ରଦ୍ଧାରେ ଗୋପୂଜା ପର୍ବ ପାଳନ କରିଥାଆନ୍ତି । ଚୈତ୍ର ସଂକ୍ରାନ୍ତି ଦିନ ଗୋରୁବିହୁକୁ ରାଭାମାନେ 'ଗୋହାଳିବିହୁ' ବା 'ଗୁହାଳବିହୁ' ପୂଜାରୂପେ ପାଳନ କରିଥାଆନ୍ତି । ଗୋରୁ କୃଷିଜୀବି ରାଭାମାନଙ୍କର ଜୀବିକାର ପ୍ରଧାନ ଆଶ୍ରୟ ହେତୁ ଗୋରୁବିହୁଦିନ ସକାଳୁ ଆବାଳ ବୃଦ୍ଧ ବନିତା ସମସ୍ତେ ରାତିପୁହା ଉଠି ଗାଈଗୋରୁଙ୍କୁ ଦୀଘଲତୀ ଏବଂ ମାଖିୟାତି ଗଛ (ଏକପ୍ରକାର ଔଷଧଗୁଣଯୁକ୍ତ ଗଛ)ର ଡାଳରେ ଆସ୍ତେ ଆସ୍ତେ ପିଟି ପିଟି ପାଖରେ ଥିବା ନଈ, ନାଳ ଅଥବା ପୋଖରୀ କିମ୍ବା ଖାଲକୁ ଗାଧୋଇବାକୁ ନିଅନ୍ତି । ସେଠାରେ ଲାଉ, ବାଇଗଣ, କଖାରୁ ଆଦି ଛୋଟ ଛୋଟ ଗୁଣ୍ଡ, କରି ଗୋରୁ ଦେହରେ ଛାଟି ଛାଟି ଗାଧୋଇ ଦିଅନ୍ତି । ଗୋରୁମାନଙ୍କୁ ନୂଆ ପଘାରେ ବାନ୍ଧି ଘରକୁ ଆଣନ୍ତି । ଭଲ ଭଲ ଜିନିଷ ଯେପରି ପିଠା ତଥା ପରିବା ଆଦି ଖାଇବାକୁ ଦେଇ ଗୋପୂଜା କରନ୍ତି । ଗୁହାଳର ସମ୍ମୁଖରେ ରାଭାମାନେ 'ଦେଓପୂଜା' (ଦେବପୂଜା) ଅନୁଷ୍ଠାନ ଅତି ଯତ୍ନର ସହିତ ପାଳନ କରିଥାଆନ୍ତି ।(୧୫)

**ସୋନୋୱାଲ କଚାରୀମାନଙ୍କର ଗୋରୁବିହୁ-** ବଡ଼ୋ ପରିବାରଭୁକ୍ତ କଚାରୀ ଜନଜାତିର ଲୋକମାନେ ସାତଦିନ ପର୍ଯ୍ୟନ୍ତ ବିହୁପାଳନ କରିଥାଆନ୍ତି । ଏମାନଙ୍କର ବିହୁରେ ଗୋରୁଗାଈମାନଙ୍କର ମଂଗଳ ଏବଂ ମଣିଷ ତଥା ଶସ୍ୟର ଉନ୍ନତି କାମନା କରି ଏହି ବିହୁ ଉତ୍ସବ ପାଳନ କରାଯାଇଥାଏ । ବିହୁର ପ୍ରଥମ ଦିନଟିକୁ ସୋନୋୱାଲମାନେ ଗୋରୁବିହୁଭାବେ ପାଳନ କରନ୍ତି । ସେଦିନ ଗାଈଗୋରୁମାନଙ୍କୁ ଭଲଭାବେ ତେଲ ଘଷି ଗାଧୋଇଦେଇ ନୂଆ ପଘାରେ ବାନ୍ଧିଥାଆନ୍ତି । ବିଭିନ୍ନ ପ୍ରକାରର ପରିବା ଓ ପିଠା ଆଦି ଖାଇବାକୁ ଦେଇଥାଆନ୍ତି । ଉପର ବେଳା ଭଣ୍ଡାରର ଲକ୍ଷ୍ମୀଦେବୀ ତଥା ତାଙ୍କ ସାତ ଭଉଣୀଙ୍କୁ ପୂଜା କରିବା ସଂଗେ ସଂଗେ ଗୋ-କାଳିକାଙ୍କୁ ମଧ ପୂଜା କରିଥାଆନ୍ତି ।

**ଟିୱାମାନଙ୍କର ଗୋରୁବିହୁ-** ଆସାମର ଟିୱା ଜନଜାତିର ଲୋକମାନେ ଚୈତ୍ର ଏବଂ ବୈଶାଖ ସଂକ୍ରାନ୍ତିର ପ୍ରଥମ ବୁଧବାର ଦିନ ବିହୁପାଳନ କରିଥାଆନ୍ତି । ଏହି ପର୍ବର ପ୍ରଥମ ଦିନକୁ ଗୋରୁବିହୁ ଭାବେ ପାଳନ କରାଯାଇଥାଏ । ଟିୱା ସମାଜରେ ଗୋରୁ ବିହୁଦିନ

ସକାଳୁ ଟିଓ୍ୱାମାନେ ଗୋରୁମାନଙ୍କୁ ବଟାବିରି ଓ ହଳଦୀ ଦେଇ ଭଲଭାବେ ଗାଧୋଇ ଦିଅନ୍ତି । ଗାଧୋଇଦେବା ପୂର୍ବରୁ ସୋରିଷତେଲ ଏବଂ ଘରର ଅଳନ୍ଧୁକୁ ମିଶେଇ ଗାଈଗୋରୁଙ୍କ ଦେହରେ ଭଲଭାବେ ଘଷିଥାଆନ୍ତି । ଗାଈଗୋରୁ ଆଦିଙ୍କୁ ଗାଧୋଇଦେବା ପରେ ନୂଆ ପଘାରେ ବାନ୍ଧିଥାଆନ୍ତି । ସେମାନଙ୍କ ବେକରେ ଲାଉ ଏବଂ ବାଇଗଣ ତଥା ଅନ୍ୟାନ୍ୟ ପନିପରିବା ମିଶାଇ ଛୋଟଛୋଟ ଖଣ୍ଡକରି ସେଗୁଡିକୁ ମାଳକରି ଗାଈଗୋରୁଙ୍କ ଦେହରେ ଘଷିଥାଆନ୍ତି ଏବଂ ତା'ପରେ ସେମାନଙ୍କୁ ପରିବା ଓ ପିଠା ଖାଇବାକୁ ଦେଇ ଖୋଲା ଜାଗାରେ ଦିନସାରା ଛାଡିଦିଅନ୍ତି । ଗୋରୁମାନଙ୍କର ଅନିଷ୍ଟ ନ ହେବା ପାଇଁ ବାଘରକ୍ଷା, କୁବେର ରକ୍ଷା ନାମରେ ଟିଓ୍ୱାମାନେ କୁକୁଡ଼ା କାଟି ବଳିଦେଇ ଥାଆନ୍ତି ।

କାମରୂପର ମଂଗଳଦୈ ଏବଂ ଗୋଆଲପାରାର ଜନଜାତୀୟ ଲୋକ ସମାଜ ଭିତରେ ବହାଗ ବା ବୈଶାଖ ବିହୁ ସମୟରେ ସାଧାରଣତଃ ବୈଦିକ ରୀତିରେ ଗୋପୂଜା କରାଯିବାର ଦେଖାଯାଇଥାଏ । (୧୬) ଆଲୋଚକ ଡଃ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ ତାଙ୍କର 'Festivals of Assam' ପୁସ୍ତକରେ ଏହିଭଳି ଭାବେ କହିଛନ୍ତି - On garubihu day, early in the morning. Children prepare pieces of bottle gourd, aubergine, turmeric and bittergourd and keep them fixed on three pronged bamboo sticks. They rub black gram or Matikalai paste and turmeric on the foreheads and horns of the cattle. They also rub mustard oil on the horns and what remains of it they rub on their own bodies. The cattle are taken to a neighbouring pond or stream for a bathe. On the way the pieces of gourd, aubergine, etc are thrown on the cattle. The boys also strike the cattle with sprins of dighlati and makhiyati plants and recite. xxx

New ropes are prepared for the cattle and red threads are wound on them. They are also Sanctified with a sprinkle of tulasi soaked water, when the cattle return in the evening, their feet are washed. given chira and pitha to eat and tied up in the cattleshed.

ଆସାମର ନଲବାରୀ ତଥା ନିମ୍ନ ଆସାମରେ ଗୋରୁପୂଜା ଉପରେ ଅଧିକ ପ୍ରାଧାନ୍ୟ ଦିଆଯାଇଥାଏ । "In the Nalbari area in lower Assam, Brahmins and other people offer Puja to cows in the conception of Go-lakshmi or cow lakshmi- Sudras employ Brahmins and the Puja is performed in the cattleshed. The pieces of gourd, turmeric etc. that were broughtback in the morning are kept fixed on the walls or roof of the cattleshed.

ଗୋରୁବିହୁଦିନ ସକାଳୁ ଲୋକମାନେ ପାରମ୍ପରିକ ପ୍ରଥାନୁଯାୟୀ କଞ୍ଚାଆମ୍ବ ଏବଂ ଲଳିତାପତ୍ର ସହିତ ସୋରିଷତେଲ ଏବଂ ଲୁଣ ମିଶାଇ ଖାଇଥାଆନ୍ତି । ଏ କଥା ଡଃ ଗୋସ୍ୱାମୀ 'Festivals of Assam' ପୁସ୍ତକରେ ଏହିଭଳି ଭାବେ କହିଛନ୍ତି This morning it is customary for people to take a little of green mango and Jute leaves mixed with mustard oil and salt. Eating of tender mango on the New year day was an old Indian custom known as Navamrakhadika. (୧୭)

ଆଲୋଚକ ଯୋଗେଶ ଦାଶ ତାଙ୍କର 'Folklore of Assam' ପୁସ୍ତକରେ ଗୋରୁମାନଙ୍କୁ ଗାଧୋଇ ଆଣିଲା ପରେ ସେମାନଙ୍କ ଶିଙ୍ଗରେ ଏବଂ କପାଳରେ ଲୋକମାନେ ଚନ୍ଦନର ପ୍ରଲେପ ଦେବା କଥା ଆଲୋଚନା କରିଛନ୍ତି । sometimes sandal paste are smeared on their horns and foreheads. (୧୮)

ବିହୁ ଜାତୀୟ ଜୀବନର ଆଶା-ଆକାଙ୍‌କ୍ଷା, ରଂଗ-ଆନନ୍ଦ, ଆବେଗ-ଅନୁଭୂତିର ଉତ୍ସବ । ବର୍ଷକ ପରେ ବିହୁ ଆସେ । ବିହୁଦିନ ନିଜର ପ୍ରତ୍ୟହିକ ଜୀବନର ଦୁଃଖ ବେଦନାକୁ ଭୁଲିଯାଇ ଆନନ୍ଦ ପ୍ରକାଶ କରିଲେହେଁ ସାମୂହିକ ଜୀବନର କର୍ତ୍ତବ୍ୟବୋଧ ବିଷୟରେ ଅସମୀୟା ଲୋକ ଅଧିକ ସଚେତନ ହୋଇଥାଏ । ଗୁରୁଜନଙ୍କୁ ଭକ୍ତି କରିବା ସଂଗେ ସଂଗେ ଗୋ ଦେବତାର ପୂଜା କରିବା ଭଳି ପୁଣ୍ୟ କାମକୁ ମଧ୍ୟ ସେ ଅତି ଯତ୍ନର ସହିତ ପାଳନ କରି ଗାଇଥାଏ-

ଚ'ତରେ ଚକରୀ ବହାଗର ବଗରୀ
ଜେଠତ ଆମନା ଧାନ ;
ଗରୁ ବିହୁର ଦିନାଖନ ସତ୍କାର କରିବା
ତେହେ ପାବା ବୈକୁଣ୍ଠତ ଥାନ ।

ଚୈତ୍ରମାସରେ କରାଣ୍ଡିମାଛ, ବୈଶାଖରେ ବରକୋଳି ଏବଂ ଜ୍ୟେଷ୍ଠମାସରେ ଆମନା ଧାନ ଖାଇବାକୁ ଭଲଲାଗେ । ଏହି ସମୟରେ ଆସାମରେ ମାଛ, କୋଳି ଏବଂ ଜ୍ୟେଷ୍ଠ ମାସରେ ଆମନା ଧାନ ଖାଇଥାଆନ୍ତି । ତା ସହିତ ଗୋରୁବିହୁଦିନ ଗୋରୁମାନଙ୍କର ଯିଏ ଭକ୍ତିପୂର୍ବକ ସତ୍କାର କରିବ, ତା'ର ବୈକୁଣ୍ଠପ୍ରାପ୍ତି ହେବ ବୋଲି ବହୁକାଳରୁ ଲୋକବିଶ୍ୱାସ ରହିଆସିଛି । (୧୯)

**ପଞ୍ଜିକା ପଠନ-** ଗୋରୁ ବିହୁଦିନ ଲୋକମାନେ ଆଗାମୀ ବର୍ଷର ଫସଲ ଏବଂ ଫଳାଫଳ ସମ୍ବନ୍ଧରେ ଜାଣିବାପାଇଁ ପଞ୍ଜିକା ଦେଖିଥାଆନ୍ତି । ଆଗାମୀ ବର୍ଷର ରାଶିଫଳ,

ଆୟବ୍ୟୟ ବିଷୟରେ ଜାଣିବା ପାଇଁ ଯିଏ ନିଜେ ପଞ୍ଜିକା ଦେଖି ଜାଣି ନଥାନ୍ତି, ସେମାନେ ପୁରୋହିତଙ୍କୁ ଡାକି ପଞ୍ଜିକା ଦେଖାଇ ଥାଆନ୍ତି । ଗୋରୁବିହୁଦିନ ନାହର ଗଛର ପତ୍ରରେ କୃଷକମାନେ 'ଗୋରୁ ବିହୁମନ୍ତ୍ର' ଲେଖିଥାଆନ୍ତି । ନାହରଗଛ କେନ୍ଦୁଗଛ ସଦୃଶ ଅଟେ । ବୈଶାଖ ମାସରେ ଏହି ଗଛରେ ଧଳାରଂଗର ଫୁଲ ଫୁଟିଥାଏ ।

ଗୋରୁବିହୁ କୃଷିଜୀବିର ହୃଦୟର ଉତ୍ସବ କିନ୍ତୁ ଯାନ୍ତ୍ରିକ ଯୁଗ ଗ୍ରାମୀୟ ସମାଜ ଉପରେ ମଧ୍ୟ ନିଜର ପ୍ରଭାବ ପକାଇ ପାରିଛି । ମଣିଷର ସହରମୁଖିତା, କୃଷି କାର୍ଯ୍ୟର ଆଧୁନିକୀକରଣ, ଆଧୁନିକତାର ପ୍ରଭାବ ଆଦି ଗୋରୁବିହୁର ଆନନ୍ଦ କୌତୁହଳ ଭିତରେ କିଛିଟା ମନ୍ଥରତା ଆଣିଦେଇଛି କିନ୍ତୁ ଏକଥା ସତ ଯେ ଗ୍ରାମୀୟ କୃଷିଜୀବି ସମାଜ କେବେହେଲେ ସଂପୂର୍ଣ୍ଣରୂପେ ଲୋପ ପାଇବନି କି ଗାଆଁର ଚାଷଜମିର କାଦୁଅ ପାଣି ସବୁଦିନ ପାଇଁ ଶୁଖିବନି । ସେହି କାରଣରୁ ଗୋରୁଗାଈ ସବୁବେଳେ କୃଷିଜୀବି ସମାଜରେ ବଞ୍ଚି ରହିବେ ଏବଂ ଗୋରୁବିହୁ ମଧ୍ୟ ଗ୍ରାମୀୟ କୃଷକ ସମାଜରେ ପ୍ରଚଳିତ ହେବ । ତେଣୁ 'ଲାଉ ଖା, ବାଇଗଣ ଖା' ଭଳି ମନ୍ତ୍ର ମାଧ୍ୟମରେ ମଣିଷ ଯୁଗେ ଯୁଗେ ଗୋରୁଗାଈଙ୍କର ମଂଗଳ କାମନା କରିବ । (୨୦)



# ହୁଁଚରି

ବିହୁ କହିଲେ ମୁଖ୍ୟତଃ ବହାଗବିହୁର କଥା ମନକୁ ଆସିଥାଏ । ଏହି ବିହୁରେ ଅସମୀୟାର ମନ ଓ ପ୍ରାଣ ଏକ ହୋଇଯାଏ । ଭଲଖାଇ, ଭଲ ପିନ୍ଧି ନିଜେ ହସି ଅନ୍ୟର ମୁହଁରେ ହସ ଫୁଟେଇବାରେ ହିଁ ଅସମୀୟାଟି ଆତ୍ମସନ୍ତୋଷ ଲାଭ କରିଥାଏ । ସନ୍ଧ୍ୟାହେଲେ ବହାଗବିହୁର ବିହୁତଳିରେ ଯୁବକ ଯୁବତୀମାନଙ୍କ ନାଚ ଓ ଗୀତରେ ଆକାଶ କଂପି ଉଠେ । ଏହି ସମୟରେ କେତେଗୁଡ଼ିଏ ଲୋକ ମିଳି ହୁଁଚରି ପରିବେଶଣ କରନ୍ତି ଯାହାକୁ ବିହୁ ହୁଁଚରି କୁହାଯାଏ । ହୁଁଚରି ବିହୁ ପର୍ବର ଏକ ଅବିଚ୍ଛେଦ୍ୟ ଅଂଗ । ବହୁ ପ୍ରାଚୀନ କାଳରେ ରାଜା ମହାରାଜାଙ୍କ ରାଜତ୍ୱ ସମୟରେ ଘର ଘର ବୁଲି ଦଳେ ଲୋକ ବିହୁ ପର୍ବର ଆନନ୍ଦ ଦେବାପାଇଁ ହୁଁଚରି ଗୀତ ଗାଇ ରାଜା ମହାରାଜାମାନଙ୍କୁ ଆଶୀର୍ବାଦ କରୁଥିଲେ । ଅସଲ ଅର୍ଥରେ ନିଜର ମୁଠି ବଡ଼ କରିବା ପାଇଁ କିଛି ଅର୍ଥ ପାଇବା ଲୋଭରେ ସେମାନଙ୍କର ଗୁଣଗାନ କରିବା ସଂଗେ ସଂଗେ ତୋଷାମଦ ମଧ କରୁଥିଲେ । ମୁଖ୍ୟତଃ ଆହୋମ ରାଜାମାନଙ୍କର ରାଜତ୍ୱ ସମୟରେ ସେମାନଙ୍କୁ ଦେଓତା (ପିତା ବା ଦେବତା) କହି ତାଙ୍କର ଗୁଣଗାନ କରୁଥିଲେ । ଏପରିକି ସେମାନଙ୍କର ପାଦଧୂଳି ପଡୁଥିବା ରାସ୍ତା ବା ସେମାନଙ୍କର ଘରକୁ ଯିବା ଆସିବା ରାସ୍ତ ମଧ ମଧୁର ବାସ୍ନାରେ କଂପି ଉଠେ ବୋଲି ହୁଁଚରିଦଳ ଗାଇଥାଆନ୍ତି । ନିଜର ସ୍ୱାର୍ଥସିଦ୍ଧି ପାଇଁ ସଂପୂର୍ଣ୍ଣଭାବେ ରାଜା ମହାରାଜାମାନଙ୍କୁ ତୋଷାମଦ କରାଯାଇଥାଏ । ସେମାନଙ୍କର ଆଶୀର୍ବାଦ ନ ନେଲେ ବହୁ ପ୍ରକାର ଅମଙ୍ଗଳ ହୁଏ ବୋଲି ସେମାନେ ଗୀତ ମଧରେ ଗାଇଥାଆନ୍ତି ।

ଏଠାରେ ଆସାମର ହୁଁଚରିଦଳର ଗୀତ ଏବଂ ଓଡିଶାର ଚକୁଳିଆ ପଣ୍ଡାମାନଙ୍କର ଗୀତର ଉଦ୍ଦେଶ୍ୟ ବହୁ ପରିମାଣରେ ସମାନ ଧରଣର ।

**ହୁଁଚରି ଶବ୍ଦର ଉତ୍ପତ୍ତି-** ହୁଁଚରି ଶବ୍ଦର ଉତ୍ପତ୍ତିର ଉତ୍ସ କେଉଁଠି, ସେ କଥା ଠିକ୍ ଭାବେ କୁହାଯାଇ ପାରିବନି । ବଡ଼ୋ ଭାଷାରେ 'ହୁଚାରି' ଶବ୍ଦ ବା ହାଚାରି ଶବ୍ଦର ଅର୍ଥ ପୃଥିବୀକୁ ଉର୍ବରା କରିବା ବା ଶ୍ରୀବୃଦ୍ଧି କରିବାକୁ ବୁଝାଇଥାଏ । ଅନ୍ୟପଟେ ଡିମାସା-କଚାରୀମାନଙ୍କ ଭାଷାରେ 'ହାଚରି'ର ଅର୍ଥ ହେଉଛି 'ହା' ମାନେ ମାଟି ବା ପୃଥିବୀ ଏବଂ 'ଚାରି' ମାନେ ଚାରଣ କରିବା ବା ଘରେ ଘରେ ଗତି କରି ନୃତ୍ୟଗୀତ ଆଦି ପରିବେଶଣ

କରିବା । ବିହୁ ବିଶେଷଜ୍ଞ ଶ୍ରୀ ଜୟକାନ୍ତ ଗନ୍ଧିଆଙ୍କ ମତରେ 'ହୁ-ଚା-ରି' ଶବ୍ଦରୁ ହୁଚରି ଶବ୍ଦର ସୃଷ୍ଟି ହୋଇଛି । ତାଙ୍କ ମତରେ

'ହୁ'- ଅର୍ଥ- ଚିତ୍କାର
'ଚା'- ଅର୍ଥ- ଆଶୀର୍ବାଦ ବା ମଂଗଳ କୁଶଳ
'ରି'- ଅର୍ଥ ଉତ୍ତେଜିତ ଏବଂ ହୁଲହୁଲି ଯୁକ୍ତ ।

ତେଣୁ 'ହୁଁଚରି' ଶବ୍ଦର ଅର୍ଥ ଆନନ୍ଦରେ ଉତ୍ତେଜିତ ହୋଇ ଜୋର୍‌ରେ ପାଟିକରି ଆଶୀର୍ବାଦ କାମନା କରିବାକୁ ବୁଝାଇଥାଏ । (୨୧)

ତେବେ ଆଜିକାଲି ଘର ଘର ବୁଲି ବିହୁ ହୁଁଚରି ପରିବେଶଣ କରାଗଲେ ହେଁ ଆଗକାଳରେ ଲୋକମାନେ ରାଜରାସ୍ତାରେ ହୁଁଚରି ଗାଇ ଯାଉଥିବାର ଅନୁମିତ ହୁଏ । ପ୍ରଥମେ ଏହା ଏକ ଆଶୀର୍ବାଦ ସୂଚକ ମାଙ୍ଗଳିକ ଗାନ ରୂପେ ପ୍ରଚଳିତ ହୋଇ ଆସୁଥିଲା ମାତ୍ର ସମୟକ୍ରମେ ସାମନ୍ତ ବା ମଧ୍ୟଯୁଗର ରାଜା ମହାରାଜା ତଥା ଧନୀଲୋକମାନଙ୍କୁ ତୋଷାମଦ କରି ସନ୍ତୁଷ୍ଟ କରିବା ଅର୍ଥରେ ସେମାନଙ୍କ ପ୍ରାସାଦ ଭିତରେ ହୁଁଚରି ଗାଇ ଆଶୀର୍ବାଦ ଦେବାର ପ୍ରଥା ପ୍ରଚଳିତ ହେଲା । ଫଳରେ ସମୟକ୍ରମେ ରାଜରାସ୍ତାର ମାଙ୍ଗଳିକ ଗାନ ଘରର ଅଗଣାକୁ ଆସି ତୋଷାମଦ ରୂପକ ଗାନରେ ପରିଣତ ହୋଇ ଦୁଆରେ ଦୁଆରେ ହୁଁଚରି ଗାଇବା ପରଂପରାର ସୃଷ୍ଟି ହୋଇଛି । ତେଣୁ ବିହୁ ସମୟରେ ହୁଁଚରି ଗାଇବା ପ୍ରଥା ସମାଜରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଥିବାର ଦେଖାଯାଇଥାଏ । ବ୍ରହ୍ମଦେଶରେ ଆଜିକାଲି ବହାଗବିହୁ ସମୟରେ ହୁଁଚରି ଗାଇଲାବେଳେ ରାଜପଥ ଦେଇ ଗାୟକମାନେ ଯାଇଥାଆନ୍ତି । ପ୍ରତ୍ୟେକ ଗୃହସ୍ଥ ପରିବାରର ସମସ୍ତ ସଦସ୍ୟଙ୍କ ସହିତ ମିଶି ରାସ୍ତାକୁ ଆସି ଥାଆନ୍ତି । ଅସମୀୟାର ସଂସ୍କୃତିର ପ୍ରତୀକରୂପେ ଶରାଇରେ ପାନ ଏବଂ ଗୁଆ ତଥା ଗାମୁଛା ଓ କିଛି ଅର୍ଥ ରଖି ହୁଁଚରି ଗାୟକମାନଙ୍କୁ ଦେବା ସଂଗେ ସଂଗେ ସେମାନଙ୍କୁ ସମ୍ମାନ ଜଣାଇଥାଆନ୍ତି । ମୁଖ୍ୟ ଗାୟକ ସହିତ ଅନ୍ୟ ଗାୟକମାନେ ଗୃହସ୍ଥର ପରିବାରଙ୍କୁ ଆଶୀର୍ବାଦ କରିଥାଆନ୍ତି । ଡଃ ଲୀଳାଗଗୈ ସ୍ୱଲିଖିତ ଅସମୀୟା ଲୋକସାହିତ୍ୟର ରୂପରେଖା ପୁସ୍ତକରେ ଏହିଭଳି ଭାବେ କହିଛନ୍ତି- ''ବ୍ରହ୍ମଦେଶତ ଆଜିକାଲି ଓ ବହାଗର ବିହୁର ସମୟତ ହୁଁଚରି ଗାଉଁତେ ରାଜ-ଆଲିଯେଦି ଗୈ ଥାକେ, ଘରର ଗୃହସ୍ଥ ସପରିୟାଲେ ଓଲାଇ ଗୈ ମାନନି ଶରାଇ ଦି ଆଶୀର୍ବାଦ ଲୟ । ଆମର ଦେଶତୋ ଏକାଲତ ତେନେ କୈୟେ ହୁଁଚରି ଗାଇଛିଲ ଯେନ ଅନୁମାନ ହୟ'' । (୨୨)

**ହୁଁଚରିର ସୃଷ୍ଟି-** 'ହୁଁଚରି' ବିହୁନୃତ୍ୟର ଗୋଟିଏ ବିଶିଷ୍ଟ ଅଂଶରୂପେ ପରିଗଣିତ ହୋଇଥାଏ । ସାଧାରଣତଃ ରଙ୍ଗାଲି ବିହୁରେ ଆସାମର ଲୋକ ମାନଙ୍କର ଘରର ଅଗଣାରେ ଗୃହସ୍ଥର କୁଶଳ କାମନା କରି ହୁଁଚରି ଗାଇ ଗାଇ ଦକ୍ଷିଣା ସଂଗ୍ରହ କରାଯାଇଥାଏ । ଏହା ମାଧ୍ୟମରେ ସମାଜରେ ସଂପ୍ରୀତି ଗଢ଼ି ତୋଳା ହୁଏ । ଭଲଭାବେ ଚିନ୍ତାକରି ଦେଖିଲେ

ହୁଁଚରି ଗୋଟିଏ ବିଶେଷ ଶ୍ରେଣୀକୁ କେନ୍ଦ୍ରକରି ସୃଷ୍ଟି ହୋଇଥିବା ଏକ ଶିଳ୍ପ ସଂପଦ ବୋଲି ଅନୁମିତ ହୁଏ । ସମାଜରେ କେତେକ ସାମନ୍ତବାଦୀ ଶ୍ରେଣୀର ଲୋକମାନେ ତଥା ରାଜା ଏବଂ ରାଜକର୍ମଚାରୀ ଆଦି ସାଧାରଣ ଲୋକ ସହିତ ମୁକ୍ତ ପଡ଼ିଆରେ ବିହୁ ଉପଭୋଗ କରିବା ପାଇଁ ଉଚିତ ମନେ କଲେ ନାହିଁ । ସେମାନଙ୍କର ଶ୍ରେଣୀ ସ୍ୱାର୍ଥ ଏବଂ ପଦମର୍ଯ୍ୟାଦା ହାନି ହେବା ଭୟରେ ଏବଂ ନିଜର ଆମୋଦ ପ୍ରମୋଦ ତଥା ପ୍ରଶଂସା ଅର୍ଥରେ ନିଜର ଅଗଣାରେ ବିହୁର ସ୍ୱତନ୍ତ୍ର ବ୍ୟବସ୍ଥା କରିଲେ । ଏହା ଫଳରେ ମୁକ୍ତ ପ୍ରାଙ୍ଗଣର ବିହୁ ନୃତ୍ୟ ରାଜପ୍ରାସାଦର ପ୍ରାଙ୍ଗଣକୁ ଆସିଲା । ତା ସହିତ ଗଣମାନବର ପ୍ରାଣର ଶିଳ୍ପ ସଂପଦ 'ବିହୁ ହୁଁଚରି' ଭାବେ ସୀମାବଦ୍ଧ ହୋଇଗଲା । ତେଣୁ ରାଜା ମହାରାଜାଙ୍କୁ ଖୁସୀ କରିବା ପାଇଁ ଏକ ପ୍ରକାର ତୋଷାମଦରୂପୀ ଗୀତ 'ହୁଁଚରି'ରେ ସ୍ଥାନ ପାଇଲା । ଫଳରେ 'ଦେଓତାର ପଦୁଲିତ ଗୋନ୍ଧାଇଛେ ମଧୁରୀ' ଅଥବା 'ଦେଓତା ଓଲାଲେ ବାଟ ଚ'ରାର ମୁଖଲୈ' ଆଦି ପଦୁଲି ଗୀତ ହୁଁଚରିରେ ପରିବେଷଣ କରାଗଲା । ଏହିଭଳି ଗୀତରେ ସାମନ୍ତତନ୍ତ୍ରର ଜୟଧ୍ୱନୀ ଏବଂ ଗଣମାନବର ମୃତ୍ୟୁଧ୍ୱନୀ ଶୁଣିବାକୁ ମିଳିଲା । ମୁକ୍ତପ୍ରାଙ୍ଗଣର ଯୌବନର ଗୀତ ହୁଁଚରିରେ ଲୋପ ପାଇଗଲା । ନାରୀକୁ ପଣ୍ୟଦ୍ରବ୍ୟ ହିସାବରେ ଜ୍ଞାନ କରୁଥିବା ସାମନ୍ତବାଦୀ ସମାଜର ପରଶରେ ପୁରୁଷ ବ୍ୟତୀତ ନାରୀ ହୁଁଚରି ଗୀତ ବା ଏହା ସହିତ ଜଡ଼ିତ ବିହୁରେ ସ୍ଥାନ ପାଇଲେନି । (୨୩)

ଆହୋମ ରାଜା ରାଜେଶ୍ୱର ସିଂହଙ୍କ ସମୟରେ 'ବିହୁ' ରାଜାଙ୍କର ପୃଷ୍ଠପୋଷକତା ପାଇଥିଲା ଏବଂ ସେହି ସମୟରେ 'ହୁଁଚରି' ଏବଂ 'ହୁଁଚରିଗୀତ'ର ପ୍ରଚଳନ ହୋଇଆସିଛି । (୨୪) ତେବେ ବହୁ ପ୍ରାଚୀନ କାଳରୁ ନିଜର ସ୍ୱାର୍ଥ ସିଦ୍ଧି ଉଦ୍ଦେଶ୍ୟରେ ସାମନ୍ତ ବା ମଧ୍ୟଯୁଗର ରାଜା ତଥା ସମ୍ଭ୍ରାନ୍ତ ଲୋକମାନଙ୍କୁ ତୋଷାମଦ କରିବା ପାଇଁ ସେମାନଙ୍କ ଘରର ପ୍ରାଙ୍ଗଣରେ ଗୀତଗାଇ ସେମାନଙ୍କୁ ଆଶୀର୍ବାଦ କରାଯାଉଥିବା ଆଶୀର୍ବାଦସୂଚକ ଗୀତକୁ ହୁଁଚରି କୁହାଯାଇଥାଏ । ସମୟକ୍ରମେ କେତେକ୍ ଲୋକମିଶି 'ହୁଁଚରି ଦଳ' ହିସାବରେ ଢୋଲ, ମହୁରୀ, ଟକା, ଗଗନା ଆଦି ବାଦ୍ୟନେଇ ପ୍ରତ୍ୟେକ ଗୃହସ୍ଥର ମଂଗଳ କାମନା କରି ସେମାନଙ୍କ ଗୃହ ପ୍ରାଙ୍ଗଣରେ ଘୋଷା ଲଗାଇ ହୁଁଚରି ଗାଇଲେ ।

**ହୁଁଚରି ପରିବେଶଣର ନିୟମ-** ହୁଁଚରି ଏକ ପୁରୁଷପ୍ରଧାନ ନୃତ୍ୟ ଅଟେ । ନାରୀମାନେ ଏହି ନୃତ୍ୟରେ ଅଂଶ ଗ୍ରହଣ କରନ୍ତି ନାହିଁ । ହୁଁଚରି ପରିବେଶଣକାରୀ ଦଳଙ୍କୁ ଲୋକମାନେ ରାସ୍ତାରୁ ଆଦରି ଆଣିଥାଆନ୍ତି । ପଦ୍ମଗ୍ଲାନ ପୂର୍ବରୁ ହୁଁଚରିଦଳ ଲୋକମାନଙ୍କର ମଂଗଳ କାମନା କରି ତଥା ଗୃହସ୍ଥର ଶୁଭ ମନାସ୍ତି କୁଶଳ ଅର୍ଥରେ "ହରିବୋଲ, ସବାରେ ମଂଗଳାର୍ଥେ ହରି ବୋଲା", "ଜୟରାମ ବୋଲା, ଜୟହରି ବୋଲା", ଗୋହାଲିତ ଗରୁ ହୈଛେ, (ଗୁହାଳରେ ଗୋରୁ ଭର୍ତ୍ତି ହୋଇଛନ୍ତି), 'ପୁଖୁରୀତ ମାଛ ହୈଛେ,' (ପୋଖରୀରେ

ମାଛ ଭର୍ତ୍ତି ହୋଇଛନ୍ତି), ବାରୀତ ତାମୋଲପାନ ହୈଛେ (ବାଡ଼ିରେ ପାନଗୁଆ ବହୁତ ଫଳିଛି), ଭଁରାଲତ ଧାନ ହୈଛେ (ଭଣ୍ଡାରରେ ଧାନ ଭର୍ତ୍ତି ହୋଇଛି), ''ସବାରୋ କୁଶଳାର୍ଥେ ହରି ବୋଲା...'' ଆଦି ପ୍ରଥମେ ଆଶୀର୍ବାଦ ସୂଚକ ଗୀତ ଗାଇଥାଆନ୍ତି । ଏହାପରେ ସ୍ଥାନୀୟ ଭେଦରେ କେଉଁଠି କେଉଁଠି ପାଦକୁ ଛକି ପକେଇଲା ଭଳି ଆଗକୁ ପଛକୁ କରି ଚାଲିବା, କେଉଁଠି ଲହରୀ ଖେଳ ଦେଖାଇବା, ବାରଣ୍ଡାରେ ଗାମୁଛା ପାରିଦେବା, କେଉଁଠି ବିହୁ ଗାୟକ ମୁଣ୍ଡରେ ତେଲ ଏବଂ ପାଣିଦେବା ଆଦି ଅଞ୍ଚଳ ଭେଦରେ ବିଭିନ୍ନ ରୂପରେ ବିଭିନ୍ନ ନିୟମ ପ୍ରଚଳିତ ହୋଇଥାଏଁ ।

ହୁଁଚରି ଦଳରେ ପ୍ରାୟତଃ ଦଶ୍ଚବାର ଜଣରୁ ପନ୍ଦର କୋଡ଼ିଏ ଜଣ ପର୍ଯ୍ୟନ୍ତ ଯୁବକ ମିଳି ହୁଁଚରି ପରିବେଷଣ କରିଥାଆନ୍ତି । ହୁଁଚରି ନାଚିବା ସମୟରେ ଯୁବ ନର୍ତ୍ତକମାନେ ଚଢେଇ ଉଡିଲା ଭଳି ନାଚିଥାଆନ୍ତି । ନାଚ ମଝିରେ ଝଡ଼ ତୋଫାନରେ ଗଛପତ୍ରର ଅବସ୍ଥା ଯେପରି ହୁଏଁ, ସେହିପରି ନାଚିବାକୁ ହୋଇଥାଏ । ପୁଣି ମଝିରେ ମଝିରେ ଗଛ ଓଲଟି ପଡିଲା ଭଳି ନାଚିବାକୁ ହୁଏଁ । ପ୍ରଥମ ତାଳରେ ଦୁଇ ପରସ୍ତ ଢୋଲ ବଜାଯାଇଥାଏ । ଏହି ଦୁଇ ପରସ୍ତରେ ନର୍ତ୍ତକମାନେ ମଣ୍ଡଳାକାରରେ ବସି, ନହେଲେ ଆଣ୍ଠେଇ ଆଣ୍ଠେଇ ନାଚିଥାଆନ୍ତି । ଦ୍ୱିତୀୟ ଥର ଢୋଲ ବଜା ଆରମ୍ଭ ହେଲେ ନର୍ତ୍ତକମାନେ ଗୋଲାକାର ହୋଇ ଘୂରି ଘୂରି ନାଚିଥାଆନ୍ତି । ଏହି କ୍ଷେତ୍ରରେ ବସିବା ନାଚଠାରୁ ଛିଡ଼ାହୋଇ ଘୂରିଘୂରି ନାଚିବାର ଗତି ଅପେକ୍ଷାକୃତ କ୍ଷିପ୍ରତର ହୋଇଥାଏ । ବସିବସି ନାଚିବାବେଳେ ସାଧାରଣତଃ ପାଦ ଦୁଇଟା ଉପରେ ଶରୀରର ଭାରରଖି ଥରେ ବାମପଟକୁ ଏବଂ ଥରେ ଡାହାଣ ପଟକୁ ଦେହକୁ ହଲେଇ ହଲେଇ ନାଚିବାକୁ ହୁଏ କିନ୍ତୁ ଛିଡ଼ାହୋଇ ନାଚିଲାବେଳେ ଅଣ୍ଟା ଭାଙ୍ଗି ଭାଙ୍ଗି ନାଚିବାକୁ ହୁଏ । ଧୂମାଳିରେ ଗଛପତ୍ର ହଲିଲା ଭଳି ନର୍ତ୍ତକମାନେ ନିଜର ହାତଭଂଗୀକୁ ସେହିଭଳି କରିଥାଆନ୍ତି । ଅର୍ଥାତ୍ କୌଶଳରେ ବାମପଟ ଗୋଡକୁ ଡାହାଣଗୋଡ଼ର ଆଗେ ଆଗେ ନେଇ ଘୂରିଘୂରି ଆଗକୁ ଆଗକୁ ମଣ୍ଡଳାକାରରେ ନାଚିବାକୁ ହୁଏ । ଏହି ହୁଁଚରିରେ ଅତି କମ୍‌ରେ ଆଠ, ଦଶଜଣ ଯୁବକ ମିଳି ହୁଁଚରି ପରିବେଷଣ କରିଥାଆନ୍ତି । (୨୫)

**ବେଶ ପୋଷାକ-** ପରିବେଷଣକାରୀମାନେ ନିଜର ସାଂସ୍କୃତିକ ବୈଶିଷ୍ଟ୍ୟଯୁକ୍ତ ବେଶପୋଷାକ ପିନ୍ଧିଥାଆନ୍ତି । ଯୁବକମାନେ ''ମୁଣ୍ଡରେ ଫୁଲପକା ଗାମୁଛା'' ବାନ୍ଧିଥାଆନ୍ତି । ଦେହରେ 'ବିହୁସାର୍ଟ' ପିନ୍ଧିଥାଆନ୍ତି । ବିହୁସାର୍ଟ କହିଲେ ପଛପଟେ କଳାରଂଗର ସିଲ୍‌କ କପଡ଼ା ଏବଂ ଆଗପଟେ ମୁଗାପାଟ କପଡ଼ାରେ ତିଆରି ଛାତି ଖୋଲା ସାର୍ଟ ଥାଏ । ବୋତାମ ଲଗାଯିବା ପରିବର୍ତ୍ତେ ସେହି ସ୍ଥାନ୍‌ରେ ସାର୍ଟରେ ଜରିଫିତା ଲଗା ଯାଇଥାଏ । ଏହି ସାର୍ଟକୁ ଜରିଫିତାରେ ବାନ୍ଧି ଦିଆଯାଏ, ଏହା କୁର୍ତ୍ତା ଭଳି ଦେଖାଯାଏ । ସାର୍ଟଗୁଡିକ ସେଥିପାଇଁ ଅଧିକ ଆକର୍ଷଣୀୟ ମଧ ହୋଇଥାଏ । ତା ସହିତ ଧୋତି ପିନ୍ଧାଯାଏ । ଅଣ୍ଟାରେ ଲାଲ୍

ରଂଗର କପଡ଼ା ବାନ୍ଧିଥାଆନ୍ତି । ଏହାକୁ 'ରଂଗାଟଙ୍ଗାଲି' କୁହାଯାଇଥାଏ । ଲାଲ ଗୋଲାପ ଫୁଲ ବୁଣାଯାଇଥିବା କପଡ଼ାରେ ପାନଗୁଆ ରଖି ହାତରେ ବାନ୍ଧି ଦେଇଥାଆନ୍ତି । ଏହି କପଡ଼ାକୁ 'ହାଁଚଟି' କୁହାଯାଏ । ଏହାକୁ ହୁଁଚରି ପରିବେଶକର ବେଶପୋଷାକ ଭାବେ ଗ୍ରହଣ କରାଯାଇଥାଏ ।

**ବାଦ୍ୟ-** ହୁଁଚରି ଦଳରେ 'ଢୋଲ' ମୁଖ୍ୟ ବାଦ୍ୟରୂପେ ବଜାଯାଇଥାଏ । ଏହା ସହିତ ପେଁପା, ଗଗନା, ସୁତୁଲି, ଟକା ତଥା ସ୍ଥାନୀୟ ଭେଦରେ ଅନ୍ୟକେତେକ ଲୋକ ବାଦ୍ୟର ବ୍ୟବହାର କରାଯାଏ ମାତ୍ର ଭାରତୀୟ ସଂଗୀତ ମାର୍ଗର କୌଣସି ଶାସ୍ତ୍ରୀୟ ବାଦ୍ୟ ଓ ଅନ୍ୟବାଦ୍ୟର ବ୍ୟବହାର କରାଯାଇ ନଥାଏ । (୨୬)

**ହୁଁଚରି ଓ ବିହୁନାଚ-** ହୁଁଚରି ପରିବେଶଣ କ୍ଷେତ୍ରରେ ଏହା ଦୁଇଟା ଭାଗରେ ଯଥା 'ପଦ-ଗୋଆ' ଏବଂ 'ବିହୁ-ମରା' ଆଦି ଭାଗରେ ପରିବେଶଣ କରାଯାଇଥାଏ । ହୁଁଚରିଦଳଙ୍କୁ ପଦଗୋଆ ବା ପଦଗାନ ଏବଂ ବିହୁ ହୁଁଚରିଗାନ ଭାବେ ଦୁଇଟି ଅଂଶ ଦେଖାଇବାକୁ ହୋଇଥାଏ । ପଦ ଗାନରେ ଆଶୀର୍ବାଦ ସୂଚକ ମାଙ୍ଗଳିକ ଗୀତ ଗାଇବାକୁ ହୁଏ ଏବଂ ବିହୁ ହୁଁଚରିରେ ବିହୁପର୍ବ ସହିତ ସମ୍ବନ୍ଧିତ ବିଭିନ୍ନ ପ୍ରକାର ଗୀତ ଗାନ କରାଯାଇଥାଏ । ପଦଗାନ ସମୟରେ ଆଧ୍ୟାତ୍ମିକ ଭାବ ସଂପନ୍ନ ସୁଚିନ୍ତା ରକ୍ଷା କରିବା ନିତାନ୍ତ ବାଞ୍ଛନୀୟ ଅଟେ । ପଦଗାନ ପରେ ଗୃହସ୍ଥ ବିହୁଗାୟକମାନଙ୍କର ପଦସେବା କରିବା ନିୟମ ଅତ୍ୟନ୍ତ ବାଞ୍ଛନୀୟ । ପଦସେବାପରେ ହୁଁଚରିଦଳ ବିହୁହୁଁଚରି ଗୀତ ସହିତ ବିହୁନାଚ ପରିବେଶଣ କରିବା ପାଇଁ ଗୃହସ୍ଥର ଅନୁମତି ନେବା ମଧ୍ୟ ବାଞ୍ଛନୀୟ । ଏହା ବିହୁ ହୁଁଚରିର ଦ୍ୱିତୀୟ ଅଂଶ ଅଟେ ।

ପ୍ରଥମ ଅଂଶରେ ଲୋକଗହଳି ଭିତରେ ଛିଡ଼ାହୋଇ ଗାଉଥିବା ପଦଗୁଡିକ ମଧ୍ୟରେ କେବଳ ଧର୍ମସମ୍ବନ୍ଧୀୟ ଗୀତ ଗାଇଥାଆନ୍ତି । ଏହାକୁ ପଦଗାନ ଅଥବା କେବଳ ହୁଁଚରି କୁହାଯାଏ । ଦ୍ୱିତୀୟ ଅଂଶରେ 'ବିହୁହୁଁଚରି' ଅଥବା 'ବିହୁମରା' କିମ୍ବା 'ବିହୁନାଚ' କୁହାଯାଇଥାଏ । ଦ୍ୱିତୀୟ ଅଂଶର ଗୀତରେ ଅଶ୍ଳୀଳତା ଅଥବା ଯୌନ ଉଦ୍ଦୀପକ ଗୀତର ସ୍ଥାନ ନଥାଏ । ହୁଁଚରି ଗୀତଗୁଡିକରେ ବିହୁ ଉତ୍ସବ ପ୍ରତି ଥିବା ସ୍ନେହ ଓ ଆନ୍ତରିକତା ପ୍ରକାଶ ପାଇଥାଏ । ଏହା ସହିତ ଆନନ୍ଦ ପ୍ରକାଶର ଭାବ ଏବଂ ଗୃହସ୍ଥଙ୍କୁ କର୍ତ୍ତବ୍ୟ ପ୍ରତି ସଚେତନ କରାଇବାର ପ୍ରେରଣା ମିଳିଥାଏ ।

ହୁଁଚରିକୁ କେହି କେହି ବିହୁହୁଁଚରି କହିଲେ ହେଁ ଆଲୋଚକ ଜୟକାନ୍ତ ଗନ୍ଧୀୟାଙ୍କ ମତରେ ହୁଁଚରି ଏବଂ ବିହୁ ଗୋଟିଏ ଅର୍ଥରେ ବ୍ୟବହାର କରାଯାଇ ନଥାଏ । ବିହୁଗୀତ ଗାଇ ବିହୁନାଚ ନାଚିବାକୁ ହିଁ ବିହୁମରା କୁହାଯାଇଥାଏ । ବିହୁ ପରିବେଶଣ ଆଗରୁ

ହୁଁଚରିଦଳରେ ଥିବା ବୟସ୍କ ଲୋକମାନେ ଘୋଷାପଦ ଲଗାଇ ହରିନାମ ଗାଇଥାଆନ୍ତି ଏହାକୁ 'ହୁଁଚରି' କୁହାଯାଇଥାଏ । ପ୍ରଥମେ 'ହୁଁଚରିଗାନ', ଏହାପରେ ଗୃହସ୍ଥକୁ ଆଶୀର୍ବାଦ କରାଯାଇଥାଏ । ତା'ର ପରବର୍ତ୍ତୀ ଅଂଶରେ 'ବିହୁନୃତ୍ୟ' କରାଯାଇଥାଏ ଯାହାକୁ 'ହୁଁଚରି'ର ଅସଲରୂପ କୁହାଯାଏ । ଆସାମର କୌଣସି କୌଣସି ସ୍ଥାନରେ ଶଙ୍କର ଦେବଙ୍କ କୀର୍ତ୍ତନ ପଦନୁଯାୟୀ ହୁଁଚରି ଗୀତ ଗାନ କରାଯାଇଥାଏ । ଯେପରି-

''ଗ'....... ବିନ୍ଦ, ଙ୍ଗ'.... ବିନ୍ଦ, ଗ'... ଅ.... ବିନ୍‌ଦ......
ରାମ ହରି ଏ ହେ.... (ପଦ)
କୃଷ୍ଣରୂପ ଦୈବକୀତ ଭୈଲା ଅବତାର ;
ଶଙ୍ଖଚକ୍ର ଗଦାପଦ୍ମ କରତ ତୋମାର'' (୨୭)

ତେବେ 'ହୁଁଚରି' ପରିବେଶଣକାରୀ ଦଳ କେବଳ ହୁଁଚରିର ପଦରେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ତାଳ ବା ଛେଓ ଯେପରି ମିଶିଂ ଛେଓ । ଧେମେଲୀୟା ଛେଓ (କୌତୁହଳପୂର୍ଣ୍ଣ ତାଳ), କଚାରୀ ଛେଓରେ ବାଜା ବଜାଇଥାଆନ୍ତି । ହୁଁଚରିର 'ନାମଗୋଆ' ଭାଗରେ ବିହୁଗୀତ ପରିବେଷଣ କରାଯାଇନଥାଏ ମାତ୍ର ହୁଁଚରି ପରେ ହୁଁଚରି ଦଳଦ୍ୱାରା ପରିବେଶିତ ବିହୁ ଗୀତ ଓ ନାଚରେ କେତେଗୁଡିଏ କୌତୁହଳ ଉଦ୍ଦୀପକ ଗୀତ ପରିବେଶଣ କରାଯାଇଥାଏ ।

କୌଣସି ଜଣେ ଗୃହସ୍ଥର ଘରେ ଛିଡ଼ାହୋଇ କେତେଜଣ ମିଳି ଗଢିଥିବା ହୁଁଚରି ଦଳରେ ପ୍ରଥମେ ଜଣେ 'ହୈୟେଇ ହୁଁଚରି ଦଳେ' ବା 'ହେ ଧ୍ୱନି ଉସବ କରିୟେ' ଗୃହସ୍ଥର କୁଶଳର ଅର୍ଥେ ପଦେ ଆଶୀର୍ବାଦ ସୂଚକ ଗୀତଗାଇ ଢୋଲ ବଜାଇବାକୁ ଆରମ୍ଭ କରିଥାଆନ୍ତି । ତା'ପରେ ହୁଁଚରିର ଘୋଷା ଲଗେଇ ହୁଁଚରିଗୀତ ଆରମ୍ଭ କରାଯାଇଥାଏ । ହୁଁଚରିଗୀତ ପଦ ଲଗାଇ ଗାଉଥିବା ଗୀତ ବ୍ୟତୀତ ପଗଳା ପାର୍ବତୀର ଗୀତ, ଫୁଲ କୋଁଅରର ଗୀତ, ମଣିକୋଁଅରର ଗୀତ ଆଦି ଗାଇଥାଆନ୍ତି ।

ହୁଁଚରିଦଳ ଯଦି ଘରକୁ ଆସି ହୁଁଚରିଗାଇ ଆଶୀର୍ବାଦ ଦିଅନ୍ତି ତ ଅତି ଆନନ୍ଦର କଥା କିନ୍ତୁ ଯଦି ସେମାନେ ନ ଆସନ୍ତି ତେବେ ଗୃହସ୍ଥ ନିଜେ ଯାଇ ସେମାନଙ୍କୁ ପ୍ରଣାମ କରି ଘର ଭିତରକୁ ଆସିବା ପାଇଁ ନିମନ୍ତ୍ରଣ ଜଣାଇଥାଆନ୍ତି । ହୁଁଚରିଦଳ ହୁଁଚରି ଗାଇବା ପରେ ଗୃହସ୍ଥ ଶରାଇରେ ପାନଗୁଆ ଆଦି ରଖି ଭକ୍ତି ସହକାରେ ପରିବାର ସହିତ ଆଣ୍ଠୁମାଡ଼ି ହାତଯୋଡ଼ି ହୁଁଚରି ଗାୟକମାନଙ୍କର ଆଶୀର୍ବାଦକୁ ଅପେକ୍ଷା ରଖିଥାଏ । ହୁଁଚରି ଗାୟକ ଶରାଇକୁ ହାତରେ ନେଇ ପାନଗୁଆ ଏବଂ ପଇସା ଗ୍ରହଣ କରି ପରିବାରର ସମସ୍ତ ସଦସ୍ୟଙ୍କୁ ଆଶୀର୍ବାଦ ଦେଇଥାଆନ୍ତି । ଶରାଇକୁ ମଧ୍ୟ ଗାୟକ ଗ୍ରହଣ କରିଥାଆନ୍ତି । ଆଶୀର୍ବାଦ ଦେଲାବେଳେ ହୁଁଚରି ଗାୟକ ପରିବାରର କୁଶଳ କାମନା କରି ଅନେକ ଆଶୀର୍ବାଦ ସୂଚକ

ଗୀତ ଗାଇଥାଆନ୍ତି । ଏହାପରେ ହୁଁଚରିର ପରିସମାପ୍ତି ଘଟେ । ଗାୟକ ଦଳ ଏହାପରେ 'ବିହୁନାଚ' ପରିବେଷଣ କରି ଗୃହସ୍ଥର ଘରୁ ବିଦାୟନେଇ ଅନ୍ୟଜଣେ ଗୃହସ୍ଥର ଘରକୁ ଯାଇଥାଆନ୍ତି ।

ହୁଁଚରି ଗାୟକଙ୍କୁ ଗୃହସ୍ଥ ବହୁ ପରିମାଣରେ ଅର୍ଥଦେଇ ସନ୍ତୁଷ୍ଟ କରିଲେ ବି ସେମାନେ ଥଟ୍ଟା ପରିହାସ କରି ଗୃହସ୍ଥ ପ୍ରତି ଲକ୍ଷ୍ୟ କରି କେତେଗୁଡିଏ ଗୀତ ଗାଇଥାଆନ୍ତି ଯେଉଁଥିରେ କି ଗୃହସ୍ଥ ସେମାନଙ୍କୁ କିଛି ଦେଇନାହାନ୍ତି ବୋଲି କହିବା ସହିତ୍ ହୁଁଚରି ଗାୟକମାନଙ୍କ ପ୍ରତି ସ୍ନେହ ମମତା ନାହିଁ ବୋଲି କହିଥାଆନ୍ତି ।

''ଏଖନି ହାଁଚଟି ଭଲିୟାଇ ନିଦିଲେ
ଶରାଇଲୈ ନେମେଲୌଁ ହାତ''
ଅଥବା
''ଏଇଘର ମାନୁହକ କୋନେ ସରଜିଲେ
ମରମ୍ ନାଇକିୟା କରି'' (୨୮)

ବହାଗ ବିହୁରେ 'ହୁଁଚରି ଏ ହାଓ' ଗାଇ ହୁଁଚରିଦଳ ଆନନ୍ଦ ତଥା କୌତୁହଳରେ ଗୃହସ୍ଥର ଅଗଣାରେ ପହଞ୍ଚିଥାଆନ୍ତି । ହୁଁଚରିଦଳ ଆନନ୍ଦରେ ଅ-ରାମ କହି ଯେଉଁ କେତୋଟି ଗୀତ ହୁଁଚରିରେ ଗାଇଥାଆନ୍ତି । ତା ମଧ୍ୟରୁ ଅନେକ ପଦ ଅର୍ଥହୀନ । କେବଳ ପଦକୁ ପଦ ଯୋଡିବାପାଇଁ ଲଗେଇ ଦେଇଥାଆନ୍ତି ମାତ୍ର କେତେଗୁଡିଏ ପଦ ଅତ୍ୟନ୍ତ ଅର୍ଥପୂର୍ଣ୍ଣ ଅଟେ । ଯେପରି -

ଚତରେ ଚକରି ବହାଗତ ବଗରି
ଜେଠତେ ଆମ୍ଲନା ଧାନ ;
ବିହୁରେ ଦିନାଖନ ଆଶୀର୍ବାଦ ଲଲେହେ
ପୋଆଯାୟ ବୈକୁଣ୍ଠତ ଧାନ ।

ଚୈତ୍ରରେ କରାଣ୍ଡି ମାଛ, ବୈଶାଖରେ ବରକୋଳି ଏବଂ ଜ୍ୟେଷ୍ଠରେ ଆମ୍‌ନା ଧାନ ହୋଇଥାଏ । ଏହି ସମୟରେ ଏସବୁ ଖାଇଲେ ଅଧିକ ସ୍ୱାଦଯୁକ୍ତ ତଥା ହିତୋପକାରକ ଅଟେ । ସେହିଭଳି ବିହୁଦିନ ହୁଁଚରି ଗାୟକମାନଙ୍କର ଆଶୀର୍ବାଦ ନେଲେ ବୈକୁଣ୍ଠପ୍ରାପ୍ତି ହୁଏ ବୋଲି ହୁଁଚରି ଗାୟକମାନେ ପ୍ରଥମ ପଦ ସହିତ ଦ୍ୱିତୀୟ ପଦକୁ ଯୋଡ଼ି କହିଥାଆନ୍ତି ।

ବିହୁଗୀତଗୁଡ଼ିକ ତୁଳନାରେ ହୁଁଚରି ପରବର୍ତ୍ତୀ ଯୁଗର ସୃଷ୍ଟି । ରାଜା ମହାରାଜା ଅମଳରେ ଏହା ମୁଣ୍ଡଟେକି ଉଠିଥିଲା । ସେଥିପାଇଁ ଦେବତାର ଅଗଣାରେ ମଧୁର ବାସ୍ନା ଭରିରହିଛି'' ଆଦି ଗାୟକମାନେ ଗାଇଥାଆନ୍ତି । ଜନ୍ମଦାତା ବା ପିତାଙ୍କୁ ଆସାମରେ ଦେଓତା

କହିଲେ ହେଁ ଗୁରୁଜନ ସ୍ଥାନୀୟ ଲୋକ ତଥା ଧନୀ ଅଥବା ଉଚ୍ଚସ୍ତରୀୟ ଲୋକଙ୍କର ପ୍ରଶସ୍ତି ଗାନକରି ଦେଓତା' କୁହାଯାଇଥାଏ । ପ୍ରଶସ୍ତି ଗାନସଂପର୍କୀୟ ଅନେକ ଗୀତ ହୁଁଚରି ଦଳ ଗାଇଥାଆନ୍ତି । ତା'ର କେତୋଟି ଉଦାହରଣ-

୧- ଦେଓତାର ବରେଘର, ଦେଖା ତେଇ ଭୟଙ୍କର ।
(ଦେଓତାଙ୍କ ବଡ଼ଘର, ଦେଖିବାକୁ ଭୟଙ୍କର)
୨- ଦେଓତା ଓଲାଲେ ବାଟ ଚ'ରାର ମୁଖଲୈ
(ଦେଓତା ବାଟରେ ଥିବା ଘରପଟେ ସଜହୋଇ ବାହାରିଲେ)

ଆସାମର ଆଭିଜାତ୍ୟପୂର୍ଣ୍ଣ ସମାଜର ଏକ ଚିକିମିକିଆ ରୂପ ବିହୁ ହୁଁଚରିରେ ଦେଖାଯାଇଥାଏ । ବିହୁ ଉତ୍ସବରେ ବର୍ଷକ ପରେ ଆସିଥିବା ବିହୁର ଆନନ୍ଦ ଭିତରେ ଗୁରୁଜନମାନଙ୍କୁ ସମ୍ବର୍ଦ୍ଧନା ଜଣା ହେଉଥିଲା, ତା'ର ଚିତ୍ର ମଧ୍ୟ ପରିସ୍ଫୁଟିତ ହୋଇଛି । ପ୍ରାଚୀନ ପ୍ରଥା ଅନୁସାରେ ବର୍ତ୍ତମାନ ମଧ୍ୟ ଧନଧାନ୍ୟ, ଶକ୍ତି ତଥା କ୍ଷମତାରେ ଅଧିକ ଆଗୁଆ ଥିବା ଗାଁର ମୁଖିଆ ଘରେ ହୁଁଚରି ପ୍ରଥମେ ପରିବେଶଣ କରାଯାଇଥାଏ । ଏହି ସମୟରେ ପରିବେଶିତ ଘୋଷାଗୁଡିକ ଅଧିକ ଆକର୍ଷଣୀୟ ଅଟେ । ଯେପରି-

ରାଧାଇ ବୋଲେ କୃଷ୍ଣାଇ ମୋକେ ପାର କରା
ଏଇ ଯମୁନାରେ ଜଳ ଔ ଗୋବିନ୍ଦାଇ ରାମ
କିମ୍ବା
କୃଷ୍ଣାଇ ଗ'ଲ ଫୁଲେ ପାରିବଲୈ
ହାତତେ ହାଁକୁଟି (ଆଙ୍କୁଡ଼ା) ଲୈ ହେ'' ।

ବୈଷ୍ଣବ ଯୁଗ ପରେ ଧର୍ମୀୟ ଭାବପୂର୍ଣ୍ଣ ଗୀତ ସହିତ ତୋଷାମଦପୂର୍ଣ୍ଣ ଗୀତ ମଧ୍ୟ ଶୁଣିବାକୁ ମିଳିଥାଏ । ତା'ସହିତ କୌତୁହଳ ପୂର୍ଣ୍ଣ ଗୀତ ମଝିରେ ମଝିରେ ହୁଁଚରି ଗାୟକ ଦଳ ଗାଇଥାଆନ୍ତି ।

''ରଜାଲୈ ଏ ଟକା, ଦିୟା ମୋର ଦେଓତା,
ପ୍ରଜାଲୈ ଦୁଟକା ଦିୟା''

ଆଦି ବୈଷ୍ଣବ ଯୁଗର ପରବର୍ତ୍ତୀ ଯୁଗରେ କେହି କେହି ଗାଇଥାଆନ୍ତି ।

ହୁଁଚରି ପରିବେଶଣର ଦ୍ୱିତୀୟ ପର୍ଯ୍ୟାୟରେ 'ବିହୁନାଚ' ପର୍ଯ୍ୟାୟର ଆରମ୍ଭ ହୁଏ । ଏହାକୁ 'ବିହୁହୁଁଚରି ଗୀତ' ବା 'ହୁଁଚରି ଗୀତ' କୁହାଯାଇଥାଏ । ଏହି ପର୍ଯ୍ୟାୟରେ ସମାଜର ଦୈନନ୍ଦିନ ଜୀବନର ଛବି ଚିତ୍ରିତ ହୋଇଥାଏ । ହାସ୍ୟରସପୂର୍ଣ୍ଣ ଗୀତ ସହିତ ଭାବପ୍ରବଣତାମୂଳକ ଗୀତ ପ୍ରକାଶ ପାଇଥାଏ । ଦ୍ୱିତୀୟ ପର୍ଯ୍ୟାୟରେ ମହାଭାରତ, ରାମାୟଣ, ପୁରାଣ ତଥା ବିଭିନ୍ନ ପ୍ରକାରର କିମ୍ବଦନ୍ତୀର କଥା କୁହାଯାଇଥାଏ । ତେବେ ହାସ୍ୟରସର

ଉଦ୍ରେକ କରାଗଲେ ହେଁ ଭକ୍ତିଭାବର ଆଭାସ ସ୍ୱଷ୍ଟ ହୋଇଥାଏ । ବିହୁହୁଁଚରି ଗୀତରେ ବିହାଗବିହୁର ହାସ୍ୟରସପୂର୍ଣ୍ଣ ଆନନ୍ଦ ତଥା କୌତୁକର କଥା ଗାୟକମାନେ କହିଥାଆନ୍ତି ।

ରଙ୍ଗାଲି ଐ ଟଙ୍ଗାଲି ଐ
ବହାଗର ବିହୁରେ ଧେମାଲି ଐ ।

ଭକ୍ତିଭାବାପୂର୍ଣ୍ଣ ଗୀତ ମଝିରେ ବୁଢ଼ା ହନୁମନ୍ତ କିପରି କଳମଶାଗ ଖାଇ ନଗର ଭ୍ରମଣ କଲା, ତା'ର ଏକ ଉଦାହରଣ ଦିଆଯାଇ ହାସ୍ୟରସର ଅବତାରଣା କରାଯାଇଛି-

କଲମୌ ଖାଓଁତେ ବୁଢ଼ା ହନୁମନ୍ତର
ନଗରୀ କରିଲେ ଚନ ଐ ଗୋବିନ୍ଦାଇ ରାମ ।

ସାମାଜିକ ଜୀବନରେ 'ବସ୍ତ୍ର ବୟନ' ଅସମୀୟା ନାରୀର ଏକ ପ୍ରିୟ କାମ । ହୁଁଚରିରେ ଯୁବକମାନେ ଝିଅମାନଙ୍କୁ ଲକ୍ଷ୍ୟକରି ନିଜପାଇଁ ବିହୁକପଡ଼ା ବୁଣିଦେବା ପାଇଁ ଅନୁରୋଧ କରିଛନ୍ତି । ଏହା ମାଧ୍ୟମରେ ନିଜର ବିଦେଶୀ ଜିନିଷ, ବିଦେଶୀର ହୁକୁମ ପ୍ରତି ଥିବା ଘୃଣାଭାବ ପ୍ରକାଶ ପାଇଛି । ବିଦେଶୀ ଶାସକର ଶାସନ ବିରୁଦ୍ଧରେ ଅସମୀୟା ସବୁବେଳେ ମଥା ଉଠେଇ ପ୍ରତିରୋଧ କରିଛି । ତା'ର ପ୍ରତିଫଳନ ବିହୁହୁଁଚରିରେ ପଡିଛି ।

''ସରୁସୂତାର ଶେଲେଂଖନି, ବୈଦିୟା ସରୁ ଭନୀ,
ନଲଓଁ ମଇ ବିଦେଶୀ କାପୋର ଐ
ଗୋବିନ୍ଦାଇ ରାମ'' ।

ବହାଗବିହୁ ସମୟରେ ବକୁଳ ଫୁଲ ଫୁଟିଥାଏ । ସେହି ଫୁଲ ରାଧାଙ୍କ ମୁଣ୍ଡରେ ଶୋଭାପାଏ, ତାହା ହୁଁଚରି ଗୀତରେ କୁହାଯାଇଛି । ଏହି ଫୁଲ ସତେ ଅବା ବିହୁ ଖବର ପାଇ ପୃଥିବୀକୁ ଆସି ନିଜର ମୁହଁ ଦେଖାଇଛି । ଏହି କଥା ଅତିଭକ୍ତିର ସହିତ 'ଗୋବିନ୍ଦାଇ ରାମ' ଘୋଷା ଲଗେଇ ଗାୟକମାନେ ଗାଇଥାଆନ୍ତି ।

କୃଷ୍ଣାଇର ମୂରତେ ବକୁଳ ଫୁଲ ଏ ପାହି
ନିୟର ପାଇ ମୁକଲି ହଲ ଐ
ଗୋବିନ୍ଦାଇ ରାମ ।

ହୁଁଚରି ଗାୟକ ପରଂପରାର ବଂଶବର୍ତ୍ତୀ ହୋଇ ଗାଓଁ ବୁଢ଼ା ବା ଗାଁର ମୁଖିଆଘରେ ପ୍ରଥମେ ହୁଁଚରି ପରିବେଶଣ କରିଥାଆନ୍ତି । ଏହି ନିୟମରୁ ତୋଷାମଦର ଭାବ ସ୍ୱଷ୍ଟ ହୋଇଥାଏ ।

''ହୁଁଚରି ଏ ହାଓଁ
ଗାଓଁ ବୁଢ଼ାର ଘରତେ ଗାଓଁ'' ।

ବିହୁ ହୁଁଚରିରେ ସମାଜର ଚିତ୍ର ପଡିବା ସ୍ୱାଭାବିକ । ଗାଉଁଲୀଆ ଅନାକ୍ଷର ସରଳ ଲୋକ ପଦକୁ ପଦ ମିଳାଇ ଗୀତ ଗାଇବାକୁ ଭଲପାଆନ୍ତି । ଯେ କୌଣସି ପରିବେଶକୁ ନିଜର ଗୀତ ଭିତରକୁ ଟାଣି ଆଣିଥାଆନ୍ତି । ଏହା ମାଧ୍ୟମରେ ଘରର ବିଭିନ୍ନ ଜିନିଷଗୁଡିକର ଏକ ସୁନ୍ଦର ତାଲିକା ଦିଆଯାଇଥାଏ । ଅସମୀୟା ନାରୀ ହସ୍ତଶିଳ୍ପରେ ନିପୁଣ, ସେ କଥା କହିବା ପାଇଁ ହୁଁଚରି ଗାୟକ ଭୁଲିନାହିଁ । ବାଉଁଶପତ୍ରରେ ବିଞ୍ଚଣା ତିଆରି କରି ବ୍ୟବହାର କରିବା ପାଇଁ ପ୍ରତ୍ୟେକ ଅସମୀୟା ଭଲପାଏ ।

"ବାଁହାପାତ ଐ ବିଚନୀ ଦେି
କଟାରୀ ଖୁଲିଙ୍ଗାଇ ବାଢେନା ରୈ" । (୨୯)

**ସାମାଜିକ ଚିତ୍ର-** ଚାଉଳ ଚଲେଇବା ପାଇଁ ଚାଲୁଣୀ ଦରକାର କହିବା ପ୍ରସଙ୍ଗରେ ଘରକରଣା ଜିନିଷ ଗୁଡିକର ପ୍ରୟୋଜନୀୟତା ବିଷୟରେ କୁହାଯାଇଛି । ହୁଁଚରି ଅସମୀୟାର କେତେ ପ୍ରିୟ ତାହା ଭାଷାରେ କହିହୁଏ ନାହିଁ । ହୁଁଚରି ଯେପରି ମରୁଆ ଫୁଲ ବା ଲାଇଫୁଲ ଯାହାକୁ ସବୁ ଅସମୀୟା ଭଲ ପାଆନ୍ତି । ତେଣୁ ହୁଁଚରି ଏବଂ ମରୁଆ ବା ଲାଇଫୁଲ ଭିତରେ କୌଣସି ପାର୍ଥକ୍ୟ ନାହିଁ, ମରୁଆ ଫୁଲ ଭଳି ଏହା ସମସ୍ତଙ୍କର ଅତି ପ୍ରିୟ ଅଟେ ।

ହୁଁଚରିରେ ଫୁଲ ମରୁଆ, ଚଲ ଲା'ଇ
ଚାଉଳ ଚାଲିବଲୈ ଚାଲନୀ ନାଇ ।

**ପ୍ରକୃତି-** ହୁଁଚରିରେ ପ୍ରକୃତିର ବର୍ଣ୍ଣନା ଅତ୍ୟନ୍ତ ଆକର୍ଷଣୀୟ ଅଟେ । ବିଭିନ୍ନ ପ୍ରକାର ଫୁଲଫଳ, ନଦନଦୀ, ଋତୁ ତଥା ମାଛ ଧରିବା ଭଳି ଦୃଶ୍ୟ ସୁନ୍ଦର ଭାବରେ ହୁଁଚରିଦଳ ପଦକୁ ପଦ ମିଳାଇ ଗାଇଥାଆନ୍ତି । 'ଧନଶିରୀ ତଥା ଶୁକାନଶିରୀ' ଆଦି ନଦୀ ଗୁଡିକର କଥା ବିହୁଗୀତରେ ଶୁଣିବାକୁ ମିଳିଥାଏ । ଭେରେଲା ଲତା ବାହାଗ ବିହୁ ସମୟରେ ଫୁଲରେ ଭରପୂର ହୋଇ ପ୍ରକୃତିର ସୌନ୍ଦର୍ଯ୍ୟ ବଢ଼ାଇଥାଏ । ସେଥିପାଇଁ ବହାଗ ବିହୁର ହୁଁଚରି ଗୀତରେ ଭେରେଲି ଲତାର ବର୍ଣ୍ଣନା ଅଧିକାଂଶ ପଦରେ ଯୋଡି ଦିଆଯାଇଥାଏ ।

ଧନଶିରୀ ଐ ଶୁକାନଶିରୀ ଐ ;
ଆହଯାଉଁ ଲଗରୀ ଓମଲୌଁ ଗୈ ।
ପାଲେହି ବହାଗେ ଚ'ତେ ଗୈ ଗୈ ;
ଆହ ଯାଉଁ ଲଗରୀ ଓମ୍ଲୌଁ ଗୈ ।
ଫୁଲିଛେ ଭେଡେଲୀ ଲତା ନା ରୈ ;
ଆହ ଯାଉଁ ଲଗରୀ ଓମଲୌଁ ଗୈ ।

---

**ଶବ୍ଦାର୍ଥ -** ବାଁହପାତ୍- ବାଉଁଶ ପତ୍ର । ବିଚନି- ବିଞ୍ଚଣା । ଚଲ-ପ୍ରଭେଦ, ଲାଇ-ଏକପ୍ରକାର ଶାଗ, ଏହାର ଫୁଲ ଅତି ସୁନ୍ଦର ।

କି ମାଛ ମାରିବାର ଘୁଠି ନାଁ ରେ ;
ଆହ ଯାଉଁ ଲଗରୀ ଓମଲୋଁ ଗୈ ।
ଯୋଆ ଗୈ ଘରଲୈ ଗୁଛି ନା ରେ ;
ଆହ ଯାଉଁ ଲଗରୀ ଓମଲୋଁ ଗୈ ।

ଓଉକାଠରେ ଶରାଇ ତିଆରି କଲେ ତା'ର ଗିରିପ୍ ଗିରିପ୍ ଶବ୍ଦ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ, ଏହା କହିବା ଏକ ବାହୁଲ୍ୟ ମାତ୍ର । ପ୍ରକୃତରେ ଶରାଇ ପ୍ରତି ଥିବା ଆନ୍ତରିକତା ଓ ଭକ୍ତିକୁ ଉପସ୍ଥାପନା କରିବା ପାଇଁ କାଠର ଶରାଇ କଥା କୁହାଯାଇଛି । ତା' ଭିତରେ ହୁଁଚରି ଗାୟକର ''ଧଳାଲତାରେ କି ଫୁଲ ଫୁଟିଛି'' ପ୍ରସଂଗଟି ଆସିଯାଇଛି । ପ୍ରକୃତିର ସୌନ୍ଦର୍ଯ୍ୟ ଭଗବାନଙ୍କର ସୃଷ୍ଟିରେ ଅପୂର୍ବ । ବିଭିନ୍ନ ରଂଗର ଫୁଲଫଳ, ଗଛବୃକ୍ଷ ତଥା ଲତାପତ୍ର କେଉଁ ଆଦିମ ଯୁଗରୁ ଏ ପର୍ଯ୍ୟନ୍ତ ମଣିଷ ତଥା ପଶୁସମାଜର ଉପକାର କରି ଆସୁଛି ।

ଗିରିପ୍ ଗିରିପ୍ ଔ କାଠର ଶରାଇ;
କି ଫୁଲ ଫୁଲିଛେ ଲପ୍ ବଗାଇ ।

ଲୋକକବିର ସୃଷ୍ଟି ଅତ୍ୟନ୍ତ ହୃଦୟସ୍ପର୍ଶୀ ଏଇଥିପାଇଁ କାରଣ ପ୍ରକୃତିକୁ ସେ ଅତି ଆପଣାର କରିନେଇ ନିଜର ରଚନାକୁ ଜୀବନ୍ତ କରିଥାଆନ୍ତି । ସେ ନିଜର ଆବଶ୍ୟକୀୟ ଜିନିଷକୁ ସିଧାସଳଖ ଭାବେ ନ କହି ଗୃହସ୍ଥ ଆଗରେ ବୁଲେଇ ବଙ୍କେଇ କରି କହିଥାଆନ୍ତି । ସମାଜର ଚିତ୍ର ଉପସ୍ଥାପନ କରିବାରେ ତତ୍‌କାଳୀନ ଲୋକକବି ଅଧିକ ଆଗ୍ରହ ରଖିଥିଲେ ।

ସେଥିପାଇଁ ସେ ବାଡ଼ିବଗିଚାର କଥାକୁ ବନେଇ ଚୁନେଇ ଦର୍ଶକ ଆଗରେ ଗୀତ ଆକରରେ ଗାଇ ଗାଇ ନାଚୁଥିଲେ । ଏ ବାଡିର ବାଉଁଶ ସେ ବାଡିର ବାଉଁଶ ଯେତେବେଳେ ବଢି ବଢି ଲାଗିଯାଆନ୍ତି, ସେତେବେଳେ ଚୈତ୍ର ମାସ ବା ଯୋଡ଼ାମାସ ଆସିଥାଏ । କଥା ଭିତରେ ବାଡ଼ି ବଗିଚାର ଲାଉ ଏବଂ ଜହ୍ନି କଥା ବିହୁଗୀତ ଭିତରକୁ ଜବରଦସ୍ତି ପଶି ଆସିଛି । ଏହି ସମୟରେ ଦେଖୁ ଦେଖୁ ଚୈତ୍ରମାସ ଆସିଯାଇଛି । ଚୈତ୍ରମାସରେ ସମସ୍ତେ ବୁଲାବୁଲି କରିବା ନିୟମ । ସେତିକି ନୁହେଁ, ଗୋଟିଏ ବାଉଁଶ ଖଣ୍ଡରେ ତେରଟା କାମ ହୋଇପାରେ ଏ କଥା ଜଣେ ଅସମୀୟା ଗର୍ବର ସହିତ କହିପାରେ ।

ବହାଗବିହୁ ସମୟରେ ହୁଁଚରିଦଳ ହୁଁଚରି ପରିବେଶଣ କଲାବେଳେ ଠୋପାଏ ଦୁଇଠୋପା ମେଘ ଆକାଶରୁ ପଡିଥାଏ । ବେଳେବେଳେ ଧୂମାଳ ଆସି ଜୋର୍‌ରେ ବର୍ଷା ହୁଏ । ବିହୁ ହୁଁଚରିଦଳ ସେତିକିବେଳେ ପାଗକୁ ଦେଖି ଉପଯୁକ୍ତ ଗୀତ ଗାଇଥାଆନ୍ତି । ସେ ଅତି କୌତୁହଳ ଭାବରେ କୁହନ୍ତି ଆମେ ବହାଗବିହୁରେ ହୁଁଚରି ପରିବେଶଣ କରିବା ପାଇଁ ଆସିଛୁ । ଉପରେ ମେଘ ବର୍ଷୁଛି, ତଳେ କାଦୁଅ, ଏଣେଟେ ଚୀନାଜୋକ କାମୁଡ଼ି କାମୁଡ଼ି

ଆଣ୍ଟୁକୁ ଖଣ୍ଡିଆ କରିଦେଲେଣି । ତେଣୁ ସେମାନଙ୍କୁ ଗୃହସ୍ଥ ଯେତେ ଶୀଘ୍ର ବିଦା କରିବ, ସେତେ ଭଲ ହେବ ।

ଇବାରୀର ବାଁହ ଐ ସିବାରୀର ବାଁହ ।
ଦୁଇବାଁହ ଲଗଲାଗି ଯାୟ ଚ'ତ ମାହ ।। ,
ଲାଓ ଦିବର ହେଦାଲି ଜିକା ଦିବର ଢେଂ ।
ବଛରେ କର ଦୋମାହୀତ ଫୁରିବର ନିୟମ ।
ଏଟା ବାଁହରେ ତେରଟା କାମୀ ।
ବହାଗର ବିହୁତେ ଆହିଛୋ ଆମି ।।
ଓପ୍ପରେ ବରଷୁଣ ତଳେ ଓ ବୋକା ।
ଚୀନା ଢୋକେ ଖାଇ ମାରେ ଆଠୁର ଢୋଖା ।
ଦ ପଥାରତ ଚରିଛେ ବଗ ।
ମୂରର ପାଗୁରିୟେ ଖୁଜିଛେ ଲଗ ।।
ଦ ପଥାରର ନରା ।
ଆମାକୋ ଦକ୍ଷିଣା କରା ।।

ଏହି ସମୟରେ ଗାୟକର ଆଖି ଆଗକୁ ବହୁଦୂରରେ ପଡିଆରେ ଚରୁଥିବା ବଗବଗୁଲୀ ଆସିଥାଆନ୍ତି । ମନୋରମ ପ୍ରକୃତିର ସୁନ୍ଦରତାକୁ ଭଗବାନଙ୍କର ସୃଷ୍ଟ ଛୋଟ ଛୋଟ ଜୀବମାନଙ୍କର ଲୀଳାଖେଳା ଅଧିକ ସୁନ୍ଦର କରିଥାଏ । ଏହିକଥା ଭାବିଲା ବେଳକୁ ହୁଁଚରି ଗାୟକର ମୁଣ୍ଡର ପଗଡ଼ି ଅସ୍ତବ୍ୟସ୍ତ କରେ । ଶେଷରେ ହୁଁଚରିଦଳ ଧୈର୍ଯ୍ୟହରା ହୋଇ କୁହନ୍ତି ଚାଷଜମିରେ ଧାନର ନଡ଼ାଗୁଡିକ ଛିଡ଼ା ହୋଇଛନ୍ତି । ଆମେ ତୁମ ଦୁଆରେ ବହୁ ସମୟ ହେଲା ଛିଡ଼ାହୋଇ ହୁଁଚରି ଗାଇ ଗାଇ କଷ୍ଟ ପାଇଲୁଣି, ଆମକୁ ଦକ୍ଷିଣା ଦେଇ ବିଦାୟ ଦିଅ ।

**ଧର୍ମୀୟ ମନୋଭାବ ଓ ସାମାଜିକ ଚିତ୍ର-** ହୁଁଚରି ଦଳର ଗୀତରେ କୌଣସି କଥା ବାଦ୍‌ଯାଏ ନାହିଁ । ଘର କରଣା ଜିନିଷ ସାଂଗକୁ ଲୋକବିଶ୍ୱାସରେ ତୁଳସୀଗଛ ପୂଜା ପ୍ରଥା ମଧ୍ୟ ସେମାନେ ବର୍ଣ୍ଣନା କରିଥାଆନ୍ତି । ଧର୍ମ ଓ ପରମ୍ପରାରେ ବିଶ୍ୱାସ ରଖିଥିବା ଲୋକମନ କିପରି ପରସ୍ପରଠୁ ପୃଥକ୍, ତାହା ଗୀତ ଛଳରେ ବର୍ଣ୍ଣନା କରି ହୁଁଚରିଦଳ ସମାଜର ଅପ୍ରିୟ ସତ୍ୟକୁ ପ୍ରକାଶ କରିଛନ୍ତି । ପ୍ରକୃତିର ବର୍ଣ୍ଣନା ହୁଁଚରି ଗୀତରେ ସବୁଠାରୁ

**ଶବ୍ଦାର୍ଥ-** ବୋକା – କାଦୁଅ । ଦ ପଥାର – ଖୋଲା ପଡିଆ । ନରା – ଧାନ ନଡ଼ା, ଚୋତାଳ – ବାଟଣ୍ଡା, ଗାଚୋ–ଦେହଟା, ବେୟା–ଖରାପ, ଭଲୁକା ବାଁହ–ଏକପ୍ରକାର ବାଉଁଶ, କେୈଯାବନ– କାଶତଣ୍ଡୀ ଫୁଲର କିଆରୀ, ତାମୋଲ–ଗୁଆ ।

ମୁଖ୍ୟ ଆକର୍ଷଣ ହେଲେହେଁ ତା' ଭିତରେ ସାମାଜିକ ପରିବେଶ ଏବଂ ଘରସଂସାରର କଥା ଗୃହସ୍ଥ ତଥା ଗୃହସ୍ଥର ପରିବାରର ସମସ୍ତ ସଦସ୍ୟଙ୍କୁ ଶୁଣାଇ ଲୋକମନରେ ଏକପ୍ରକାର ସହାନୁଭୂତି ଭାବର ଉଦ୍ରେକ କରିଥାଆନ୍ତି ।

ଚୋତାଲର ଆଗରେ ତୁଳସୀ ।
ଗା'ଟୋ ଆହିଛେ ଉଲସି ।।
ଚୋତାଲର ଆଗରେ କେଁୟାବନ ।
ଏଇଘର ମାନୁହର ବେୟା ମନ ।।
ଭାଲୁକା ବାଁହରେ ଆଖି ।
ଆମାକୋ ନଥବା ରାଖି ।।
ମଦାର ଗଛରେ ପାନ ।
ଏଇଟୋ ମାନୁହର କଥା ଟାନ ।।
ତାମୋଲ ଗଛରେ ତାମୋଲ ।
ଖାବଲେ ଆମୋଲ ମୋଲ ।।
ଆମ ଗଛରେ ପାନ ଐ ତାମୋଲ ଗଛରେ ପାନ ।
ଦୁଖରୀୟା ସାନ୍ଧହ ଚୋବାବଲେ ଟାନ ।।
ଏଃ ଆମ ମୁଚି ମୁଚି ଐ କଠାଳ ମୁଚି ମୁଚି ।
ଏଃ ଧନ ବୋର ଆନିଛେ ପେରାଟୋ ଚୁଚି ।।

ଭାବପ୍ରବଣ କଳ୍ପନା ଯୋଗୁ କେତେଗୁଡ଼ିଏ 'ହୁଁଚରି ଗୀତ' ଗାୟକମାନଙ୍କ ମୁହଁରେ ଅପୂର୍ବ ସୌନ୍ଦର୍ଯ୍ୟମଣ୍ଡିତ ହୋଇଉଠିଛି ।

''କୃଷ୍ଣାଇର ମୂରରେ ବକୁଳ ଫୁଲ
ଏ ପାହି ନିୟର ପାଇ ମୁକଲି ହ'ଲ
ଐ ଗୋବିନ୍ଦାଇ ରାମ'' ।

**ଉପଦେଶମୂଳକ ହୁଁଚରି**— ଭକ୍ତିଭାବ ହିଁ ହୁଁଚରି ଗୀତର ମୂଳବସ୍ତୁ । ଏହା ସହିତ ହାସ୍ୟରସ ଏବଂ ସମାଜ ଓ ପ୍ରକୃତି ଚିତ୍ରିତ ହୋଇଥାଏ । ତେବେ କେତେଗୁଡ଼ିଏ ଉପଦେଶମୂଳକ ଗୀତ ଅଛି ଯାହା ମଧ୍ୟରେ ଗୁରୁଭକ୍ତିର ସଂପର୍କର କଥା କୁହାଯାଇଛି । ତା ସହିତ ଜୀବନ ଦର୍ଶନର ଭାବ ମଧ୍ୟ ସ୍ପଷ୍ଟ ହୋଇଉଠିଛି । ଯେପରି—

''ଗୁରୁକୋ କରିବା ବନ୍ଦନ ମୋର ଦେଓତା
ଭକତକ କରିବା ଦାନ'' ।

ଏକ ସଂଗେ ଗୁରୁ ଏବଂ ଭକ୍ତର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । ଅସମୀୟା ସମାଜରେ ଗୁରୁ ଏବଂ ଭକ୍ତର ସଂପର୍କ ଭିତରେ ଶଙ୍କର ଦେବଙ୍କ ବୈଷ୍ଣବ ବାଦର ପ୍ରଭାବ ସ୍ପଷ୍ଟ ହୋଇଉଠିଛି । ସେଥିପାଇଁ ଗୁରୁ ଏବଂ ଭକ୍ତକୁ ଦାନ କରିବା ଉଚିତ ବୋଲି କୁହାଯାଇଛି ।

**ଜୀବନ ଦର୍ଶନ**— ମଣିଷର କ୍ଷଣସ୍ଥାୟୀ ଜୀବନ ଭିତରେ କପଡ଼ା, ଧନ ସଞ୍ଚୟ କରି କ'ଣ ବା କରିବ ? ଲୋଭର ବଶବର୍ତ୍ତୀ ହୋଇ ମଣିଷ ବେଳେବେଳେ ନିଜର ମହତ୍ ଉଦ୍ଦେଶ୍ୟ ଧର୍ମ ଅର୍ଜନ ଏବଂ ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ପ୍ରଭୁର ପାଦପଦ୍ମ ସ୍ମରଣ କରିବା ପାଇଁ ଭୁଲିଯାଇଥାଏ । ସଞ୍ଚିତ କପଡ଼ା ବା ବସ୍ତ୍ରକୁ ଲୋକ ସାଇତି ରଖିଲେ ତାହା ସେମିତି ସାଇତା ହୋଇ ଫିମ୍ପି ମାରିବ, ମଣିଷ ମରି ତାଂର ଦେହ ପଚି ଗନ୍ଧ କରିବ, ଅଥବା ତା'ର ଶରୀରକୁ ପୋଡ଼ି ନଷ୍ଟ କରି ଦିଆଯିବ, ଏହା ହିଁ ସଂସାରର ଚିରନ୍ତନ ନିୟମ । ମଣିଷ ପୋଡ଼ା ହୋଇଥିବା ମଶାଣିରେ ତା' ହାଡ଼ ଉପରେ ଘାସ ମାଡ଼ିବ । ଏହି କଥା ନିମ୍ନ ଗୀତ ମାଧ୍ୟମରେ ଗାଉଁଲିଆ ଅନାକ୍ଷରୀ ଲୋକର ଜୀବନ ଦର୍ଶନର ଭାବ ଗୁରୁଗମ୍ଭୀର ସ୍ୱରରେ ପ୍ରତିଧ୍ୱନିତ ହୋଇଛି ।

କେଲେଇ ସାଁଚିଲା ଜପାର ବରେ କାପୋର
କେଲେଇ ସାଁଚିଲା ଧନ;
ଜପାର ବରେ କାପୋର ଜପାତେ ପଚିବ
ହାଡ଼ତୋ ଗଜିବ ବନ । (୩୦)

**ହାସ୍ୟରସ**— ହୁଁଚରି ଗୀତ ଗୁଡ଼ିକରେ ହାସ୍ୟରସ ଏକ ସ୍ୱତନ୍ତ୍ର ଆସନ ଗ୍ରହଣ କରିଛି । ଗାୟକମାନେ ଗୁରୁଗମ୍ଭୀର ତତ୍ତ୍ୱର ଅବତାରଣା କରିବା ସଂଗେ ସଂଗେ ସମୟ ସମୟରେ ହାସ୍ୟରସପୂର୍ଣ୍ଣ ଗୀତ ପରିବେଷଣ କରି ପରିବେଶକୁ ସାମାନ୍ୟ ଆନନ୍ଦ ପ୍ରଦାନ କରିଥାନ୍ତି ।

୧- ଲାଓ ଐ ଲାଓ କେଁକୋରା ଲାଓ
ଆଛେନେ ନାଇ ମଇ ବିଚାରି ଚାଓଁ;
ଜୋକାରୋତେ ଜୋକାରୋତେ ଲାଓ ପରି ଭାଗିଲ
ଘରର ବୁଢ଼ା-ବୁଢ଼ୀର କିଳା କିଳି ଲାଗିଲ ।

ସମୟ ସମୟରେ ପରିବେଶକୁ ବଦଳାଇ ଦର୍ଶକର ମନରେ ଆନନ୍ଦ ପ୍ରଦାନ କରିବା ସଂଗେ ସଂଗେ ଲୋକମାନଙ୍କର ବିହୁ ହୁଁଚରି ଗୀତ ପ୍ରତି ଆଦର ଭାବ ବଢ଼ାଇବା ଉଦ୍ଦେଶ୍ୟରେ

କେଲେଇ—କାହିଁକି ? ସାଁଚିଲା—ସଞ୍ଚୟ କଲା, ଜପାର—ଭଂଗା ହୋଇଥିବା, ବନ—ଘାସ ।

ହୁଁଚରି ଗାୟକ କେତେଗୁଡ଼ିଏ ହାସ୍ୟରସପୂର୍ଣ୍ଣ ଗୀତ ପରିବେଶଣ କରନ୍ତି । ଯେଉଁ ଗୀତଗୁଡ଼ିକରେ ପ୍ରଥମ ପାଦ ସହିତ ଦ୍ୱିତୀୟ ପାଦର ମେଳ ନଥାଏ । ଯେପରି—

୧ - ''ଗେଲା କୋମରାରେ ପାନୀ
ଚାରି ଅନା ପଇଚା କେଲେଇ ଲାଗିଛେ
ଶିୟାଳେ ଲୈ ଯାକ ଟାନି ।''

୨ - ''ନଈ ନାଚନୀର ନଈ କୁରୁତା
ନଈ ଗୁଦାମର ଐ ନଈ ଚାରିଟା ।''

୩- ''ନଈ ଚାରିକୋ ନଈ ଚାରିୟେ
ନଈ ଚାରିକୋ ନଈ ଚାରିୟେ ଚରେ
ଅ' ରାଧା ହାରିଲ,
ଯମୁନାଲୈ ନା ଯାବି, ବଳୋଭଦ୍ର ଗୋଁସାୟେ
ପିଲାନୋ ଖେଲ ପାତିଛେ
ଯମୁନା ଐ ନକରେ ପାର ।''

ସ୍ଥାନୀୟ ଭାବେ ପ୍ରଚଳିତ ହୁଁଚରି ବିହୁ ନାମରେ ଏହିଭଳି କେତେଗୁଡ଼ିଏ ଗୀତ ଗାୟକ ତଥା ହୁଁଚରି ଦଳ ଗାଇଥାଆନ୍ତି । କେହି ନୂଆ କରି ନାଚିଲାବେଳେ ତା'କୁ ନଈନାଚନୀ କହି ଥଟ୍ଟା କରିଥାନ୍ତି । ତା ସହିତ 'ଚାରି' ଲଗାଇ 'ଚାରିଟ୍ୟ ନଈ' ବୋଲି କହିଥାନ୍ତି । ଯମୁନା କୂଳକୁ ବଳଭଦ୍ର ନଯିବା ପାଇଁ ଥଟ୍ଟାରେ କୁହାଯାଇଛି କାରଣ ସେଠାରେ ରାଧା ଏବଂ କୃଷ୍ଣଙ୍କର ଖେଳ ଚାଲୁଛି ଆଦି କହି ଗାୟକମାନେ ଆନନ୍ଦମୁଖର ପରିବେଶ ସୃଷ୍ଟି କରିଥାନ୍ତି । (୩୧)

**ବିହୁଗୀତ ଏବଂ ହୁଁଚରି ମଧ୍ୟରେ ପାର୍ଥକ୍ୟ—** ବିହୁଗୀତ କହିଲେ ସାଧାରଣତଃ ବହାଗ ବିହୁ ସମୟରେ ଯୁବକ ଯୁବତୀମାନେ ଗାଁର ମୁକ୍ତ ପ୍ରାଙ୍ଗଣରେ ବିଭିନ୍ନ ଲୋକବାଦ୍ୟ ସହିତ ତାଳ ମିଳେଇ ନାଚି ନାଚି ଯେଉଁ ମନଫୁଲାଣିଆ ଯୌବନ ଉଦ୍ଦୀପକ ଗୀତ ଗାଇଥାନ୍ତି, ତାହା ହିଁ ବିହୁଗୀତ ଅଟେ । ଏହି ବିହୁଗୀତ ଗୁଡ଼ିକ ସାଧାରଣତଃ ରାତି ବିହୁ ନାଚରେ ପରିବେଶଣ କରାଯାଇଥାଏ । ଏଗୁଡ଼ିକ ଶୃଙ୍ଗାର ରସରେ ଭରପୂର ଅଟେ । ମାତ୍ର ହୁଁଚରି ବା ବିହୁ ହୁଁଚରିରେ ଆଧ୍ୟାତ୍ମିକ ଭାବ ସଂପନ୍ନ ଗୀତ୍ ଶୁଣିବାକୁ ମିଳିଥାଏ । ହୁଁଚରି ଗୀତରେ ମୁଖ୍ୟତଃ ବୈଷ୍ଣବ ଧର୍ମ ଓ ସାହିତ୍ୟର ପ୍ରଭାବ ସ୍ପଷ୍ଟ । ସେଥିପାଇଁ ହୁଁଚରିର ଦୁଇଟା ଭାଗ ଯଥା ଗାନ ଗୋଆ ଭାଗ ଯେଉଁଥିରେ କେବଳ ଧର୍ମ ସାହିତ୍ୟର ଆଲୋଚନା କରାଯାଇଥାଏ । ଦ୍ୱିତୀୟ ଭାଗରେ ବିହୁ ହୁଁଚରି ଗୀତ ଭାବେ ହାସ୍ୟରସପୂର୍ଣ୍ଣ ଅଥବା ପ୍ରକୃତି ଓ ସାମାଜିକ

ଜୀବନର କଥା ବର୍ଣ୍ଣନା କରାଯାଇଥାଏ । ସମୟ ସମୟରେ ଆନନ୍ଦ ପ୍ରକାଶକ ଗୀତ ହୁଁଚରି ଗୀତ ହିସାବରେ ଗାନ କରାଯାଇଥାଏ । ଯେପରି–

ହୁଁଚରି ଏ ହାଓ ହାଓ
ଦୁଘର ମାଜରେ ଗାଁଓ ଗାଁଓ ଇତ୍ୟାଦି ।

ମାତ୍ର ପଦର ବେଶୀ ଭାଗ ପୋଥିଗୁଡ଼ିକରୁ ନିଆଯାଇଛି । ଯେପରି-

କୃଷ୍ଣରୂପେ ଦେବକୀ ଗର୍ଭରୁ ହେଲ ଅବତାର
ଶଙ୍ଖଚକ୍ର ଗଦାପଦ୍ମ ହସ୍ତରେ ତୁମର ।

ହୁଁଚରି ଗୀତର ଅନ୍ୟ ଏକ ବିଶେଷତ୍ୱ ହେଉଛି ପଦର ଅସାମଞ୍ଜସ୍ୟତା ଏବଂ ତା' ସହିତ ଗୋଟିଏ ଧାଡ଼ି ସହିତ ଅନ୍ୟ ଧାଡ଼ିର ସମ୍ବନ୍ଧ କେବେ କେବେ ନଥାଏ । ଯେପରି–

୧ - ନ ଘର ଐ ପୁରଣି କାମି
ହୁଚରି ଗାବଲୈ ଆହିଛୋ ଆମି ।
୨ - ହୁରାଇଲ ଧାନ ଖେରର ଛାଇ;
ସେନେହର ବହାଗର ରଙ୍ଗାଲୀ ବିହୁଟି
ହାତତେ ମଲଙ୍ଗି ଯାଇ ।
୩- "ଆୟୈ ଜାଲିଢାପି,
ଜୁଇ ଚଲାପାତ ତେପର ପାତ ।"
୪ - ଲହଲହରୀୟା, ଅ, ଆଇଟି ରହିଲା ଐ । (୩୨)

ବିହୁଗୀତରେ ମୁକ୍ତ ପଡିଆର ଉନ୍ମାଦନା ହୁଁଚରି ଗୀତରେ ନାହିଁ । ଫାଲ୍‌ଗୁନର ନିଆଁ ଯେପରି ଦେହରେ ଲାଗି ଯୁବ ମନର ସୋରିଷ ଫୁଟା ଅବସ୍ଥାକୁ ଖୋଲାଖୋଲି ଭାବେ ବିହୁ ପଡିଆର ବିହୁଗୀତ ଗୁଡ଼ିକରେ ପ୍ରକାଶ କରାଯାଇଥାଏ ମାତ୍ର ହୁଁଚରିରେ ତା'ର ପ୍ରଭାବ ପଡି ନଥାଏ । ଘରୁଆ ପରିବେଶ ଭିତରେ ହୁଁଚରି ଗୀତଗୁଡିକ ଅତ୍ୟନ୍ତ ମାର୍ଜିତ ଅଟେ ।

"ହାଁଚତି ରଙ୍ଗେ ଟଂ
ଆଁଚତି ଆନିଛେ ଲୁକୁଆଇ ଥୈଛେ
ନାଚନୀ ସାବରେ ମନ ।"

ପୁରୁଷମାନେ ଦୂରବାଟକୁ ଗଲାବେଳେ ପାନଗୁଆ ବାନ୍ଧି ନେଉଥିବା କପଡ଼ାଟି ସାଧାରଣ କପଡ଼ା ନୁହେଁ, ତାହା 'ହାଁଚତି' ଅଟେ ଯେଉଁଟା କି କେବଳ ପାନଗୁଆ ରଖିବା ପାଇଁ ଅସମୀୟା ନାରୀମାନେ ତିଆରି କରିଥାନ୍ତି । ଏହା ଭିତରେ ପାନ ଗୁଆ ତଥା ଗୁଆ କଟା କଟୁରି ଏବଂ ମସଲା ଆଦି ରଖି ଯୁବକଟି ବିହୁନାଚ ଦେଖିବାକୁ ଯାଇ ହାଁଚତିଟିକୁ

---

ନ ଘର – ନୂଆଘର, ହୁରାଇଲ–କୁଟା ଶୁଖାଇଦେବା, ଖେର–କୁଟା, ମଲଙ୍ଗି–ଖସି ଖସି ଯିବା ।

ଲୁଚାଇ ଥୋଇ ଦେଇ ନାଚୁଣୀକୁ ଦେଖୁଛି ମାତ୍ର ପାନଗୁଆରେ ହାଁଚଟିଟି ରଟଂ ରଟଂ ଶବ୍ଦ କରୁଛି, ଏହା ଏକ କୌତୁହଳପୂର୍ଣ୍ଣ ଗୀତ ଅଟେ । ଏଥିରେ ସଂସାରର ଦୈନନ୍ଦିନ ଜୀବନର ଚିତ୍ର ଫୁଟି ଉଠିଛି ।

ନାଚ-ଗୀତ ତଥା ଆନନ୍ଦ ଭିତରେ ଯୁବକଟି ବେଳେବେଳେ ନାଚୁଣୀକୁ ଉଙ୍କି ମାରି ଦେଖୁଥାଏ । ଢୋଲ, ପେଁପା, ଗଗନାର ଧିନ୍‌ଧିନ୍ ତାଳରେ ଅଣ୍ଟା ଭାଙ୍ଗି ଭାଙ୍ଗି ନାଚୁଥିବା ନାଚୁଣୀକୁ ଅନେଇବା ପାଇଁ ସମସ୍ତଙ୍କର ଆଗ୍ରହ ଆସିଥାଏ । ସେଥିପାଇଁ ଯୁବକଟି କହେ ସେ ନାଚ ସହିତ ନାଚୁଣୀକୁ ମଧ ଦେଖିବା ପାଇଁ ଆସିଛି ।

ଯୁବକମାନେ ବେଳେବେଳେ ନିଜର ଆନନ୍ଦ ତଥା ମଧୁର ମୁହୂର୍ତ୍ତରେ କଥାକୁ ଅନ୍ୟ ଆଗରେ ବଖାଣିବାକୁ ଭଲ ପାଆନ୍ତି । ଥରେ ଯୁବକଟିଏ ବାଉଁଶ ଆଗରେ ବସି ବଇଁଶୀ ବଜାଇ ବେଶ୍ ଆନନ୍ଦ ପାଉଥିଲା, ଯଦିବା ସେ କେଉଁ ମୁହୂର୍ତ୍ତରେ ପଡିଯିବାର ସମ୍ଭାବନା ଥିଲା, ତଥାପି ସେ ଖୁସୀ ଥିଲା । ଏହାପରେ ବିହୁ ନାଚ ଦେଖିବାକୁ ଯିବା ମାତ୍ର ଯେଉଁ ନାଚୁଣୀ ନାଚିବ ବୋଲି ସମସ୍ତେ ଜାଣିଥିଲେ ସେ ହଠାତ୍ ଝାଡ଼ା ରୋଗରେ ପଡିଲା । ତା'ପରେ ସେ ଯେମିତି ମଲା ଭଳି ଦିଶିଲା । ବିହୁ ହୁଁଚରିରେ ଏହିଭଳି ସମାଜର ଚିତ୍ର ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି ।

''ବାଁହରେ ଆଗତ, ବାଁହୀ ବଜାଇଛିଲୋ
ପରେ ହେନ ପରେ ହେନ ଦେଖୋ;
ଇବେଲି ନାଚନୀ ନରୀୟା ପରିଲେ
ମରେ ହେନ ମରେ ହେନ ଦେଖୋ ।''

ବିହୁନାଚରେ ନାଚୁଣୀ ଥରେ ନାଚିବାକୁ ଆରମ୍ଭ କଲେ ଚକ୍ରିଭଳି ଘୂରି ଘୂରି ନାଚେ । ବିଭିନ୍ନ ରଂଗର କପଡ଼ା ଓ ଗହଣା ପତ୍ର ପିନ୍ଧିବା ସଂଗେ ସଂଗେ ମଥାରେ ଫୁଲଖୋଷି ପ୍ରଜାପତିଟିଏ ଭଳି ଦିଶେ ତା'କୁ ଲକ୍ଷ୍ୟ କରି ହୁଁଚରି ଗାୟକ ଗାଇଥାଏ–

''ଉଘାଙ୍କେ ଚେରେକୀ ଘୂରେ;
ଆମାରେ ନାଚନୀ ନାଚିବ ଲାଗିଲେ
ପକ୍ଷିଲା ଉରାଦି ଉରେ ।''

ସମୟ ସମୟରେ ନାଚୁଣୀ ପ୍ରତି ଲକ୍ଷ୍ୟକରି କେତେଗୁଡିଏ ଗୀତ ହୁଁଚରି ଗାୟକ ଗାଇଥାନ୍ତି । ବିହୁ ହୁଁଚରିରେ ନାରୀମାନଙ୍କର ସ୍ଥାନ ନଥିଲେ ହେଁ ବିହୁନାଚରେ ନାଚୁଣୀମାନଙ୍କର ସ୍ଥାନ ବହୁ ଉଚ୍ଚରେ ଥିବାରୁ ହୁଁଚରିରେ ମଧ୍ୟ ସେମାନଙ୍କର ବର୍ଣ୍ଣନା ଠାଏ ଠାଏ ଦେଖା ଯାଇଥାଏ । ଖାଦ୍ୟ ପଦାର୍ଥ ମଧରେ ଟକଲା ବା ଗୋଲିଆ ଲେମ୍ବୁଟି ଯେ ଝିଅମାନଙ୍କର ଅତି ପ୍ରିୟ ସେ କଥା କୁହାଯାଇଛି । ଗାୟକମାନେ ସେମାନଙ୍କୁ ଲକ୍ଷ୍ୟ କରି କହିଛନ୍ତି ହେ ନାଚୁଣୀ,

ସେ ଲେମ୍ବୁଟି ଏକୁଟିଆ ନ ଖାଇ ଆମକୁ ଚିରୁଲାଏ ଦେବା । ହେ ନାଚୁଣୀ, ଆମେ ହୁଁଚରି ନାଚି ନାଚି ଗାଇ ଗାଇ ବିରକ୍ତ ଲାଗିଲାଣି, ଆମ ପାଇଁ ଗୋଟିଏ ବିଞ୍ଚଣା ଆଣ ।

''ଟକଲା ଟେଙ୍ଗାଟି ଅକଲେ ନେ ଖାବା;
ଆମାକୋ ଏଟକଲ ଦିବା ହେରା;
ନାଚନୀ;
ଲାଗିଛେ ଆମନି, ଆନାଗୈ ବିଚନୀ
ଗରମେ ଲାଗିଛେ ଗାତ ।''

କଥା ପ୍ରସଙ୍ଗରେ ବିଭିନ୍ନ କଥାର ଅବତାରଣା କଲା ଭଳି କଥାକୁ ନଥା ଲଗେଇ ହୁଁଚରି ଗାୟକ ବହୁତ କଥା କହିଥାନ୍ତି । (୩୩)

ରାତିରେ ଯୁବକ ଯୁବତୀମାନେ ମିଳି ପରିବେଶଣ କରୁଥିବା ନୃତ୍ୟ ଓ ଗୀତକ 'ରାତି ବିହୁ' ବା 'ମୁକଳି ବିହୁ' କୁହାଯାଉଥିଲାବେଳେ ହୁଁଚରି ବିହୁକୁ କେବଳ ବିହୁ ହୁଁଚରି ବା ହୁଁଚରି ଗୀତ କୁହାଯାଇଥାଏ । ମୁକଳି ବିହୁରେ ଯୁବକ ଯୁବତୀମାନେ ସମୟ ସମୟରେ ପାଖାପାଖି, କେତେବେଳେ ବା ଏକ ସଂଗେ ମିଶି ବିହୁ ନୃତ୍ୟ ପରିବେଶଣ କଲାବେଳେ ହୁଁଚରି ବିହୁରେ ନାରୀମାନେ ଅଂଶଗ୍ରହଣ କରନ୍ତି ନାହିଁ । ଯେ କୌଣସି ବୟସର କେବଳ ପୁରୁଷ ତଥା ପିଲାମାନେ ଅଂଶଗ୍ରହଣ କରନ୍ତି । (୩୪)

**ଲହରୀ ଖେଳା–** ହୁଁଚରି ଗାଇଲାବେଳେ ଆସାମର କୌଣସି କୌଣସି ସ୍ଥାନରେ ଲୋକମାନେ ମେଳ ହୋଇ ଅଣ୍ଟାକୁ ଧରି ଘୁରି ଘୁରି ଗୀତ ଗାଇ ନାଚିଥାନ୍ତି । ସେହି ନାଚକୁ 'ଲହରୀ ଖେଳା' କୁହାଯାଇଥାଏ । 'ଲହରୀ ଖେଳା'ର ଅର୍ଥ 'ଲହଡି ଖେଳ' । ଲହଡି ବା ଢେଉଭଳି ହଲି ହଲି ହୁଁଚରି ଗାୟକମାନେ ଏହି ଗୀତ ଗାଉଥିବାରୁ ଏହି ନାଚକୁ 'ଲହରି ଖେଳା' କୁହାଯାଇଥାଏ । 'ଲହରି ଖେଳା' ନାଚ ନାଚିଲାବେଳେ ହୁଁଚରି ଦଳ କେତେଗୁଡିଏ ଗୀତ ଗାଇଥାନ୍ତି ।

''ହାତରେ ଚାପରି ଆହକ ଟାନେ କରି
ଭରିବ ଗିରିପନି, ଲହ ଐ ଲହରୀୟା ।''

ଲହରୀ ଖେଳରେ ଢୋଲ ଏବଂ ତାଳ ଆଦି ବାଦ୍ୟ ସହିତ ସମତା ରଖି ହାତରେ ତାଳି ମାରି ମାରି ଏବଂ ପାଦର ତାଳେ ତାଳେ ଛନ୍ଦ ମିଳାଇ, ନାଚିବା ହିଁ ଏହି ନାଚର ବୈଶିଷ୍ଟ୍ୟ । ଗୃହସ୍ଥର ଘରେ ପ୍ରବେଶ କରି ହୁଁଚରି ଗାୟକମାନେ ପ୍ରଥମେ ଲହରୀ ଖେଳ ଦେଖାଇଥାନ୍ତି । ତା'ପରେ ଗୃହସ୍ଥକୁ ଆଶୀର୍ବାଦ ଦେଇ କେତେଗୁଡିଏ ଗୀତ ଗାଇଥାନ୍ତି । ଏହା ପରେ ଗୀତର ଆରମ୍ଭ ହୁଏ । ଏହି ଗୀତରେ ବିହୁ ପର୍ବର ବର୍ଣ୍ଣନା, ପିତୃପିତା ତଥା

ଗୁରୁଜନମାନଙ୍କ ସମ୍ମାନ ଅର୍ଥରେ ସେମାନଙ୍କର ଗୁଣ ବର୍ଣ୍ଣନା ଆଦି ଗୀତ ମାଧ୍ୟମରେ ଗାଇଥାନ୍ତି । ଏହାପରେ ଧୀରେ ଧୀରେ ଛୋଟପିଲା, ଯୁବକ ତଥା ବୁଢ଼ାବୁଢ଼ା ଲୋକମାନେ ମେଳ ହୋଇ ଗୀତରେ ଭାଗ ନେଇଥାନ୍ତି, ମାତ୍ର ନାରୀମାନେ ଏଥିରେ ଅଂଶଗ୍ରହଣ କରନ୍ତି ନାହିଁ । ହୁଁଚରି କେବଳ ପୁରୁଷ ପ୍ରଧାନ ନାଚ ଅଟେ । ଏହି ସମୟରେ କେହି ଦର୍ଶକ ନ ନାଚିଲେ ହୁଁଚରି ଗାୟକ କୁହନ୍ତି–

ଢ଼ୋଲ ବଜାୟ ହେ ଯେନେକୈ;
ନେ ନାଚି ନୋ ଥାକୋଁ କେନେକୈ ।

ଅର୍ଥାତ୍ ଯେମିତି ଢ଼ୋଲ ବାଜୁଛି, ତମେ ସବୁ ନ ନାଚି କେମିତି ଛିଡ଼ା ହୋଇଛ ? ପ୍ରସଙ୍ଗକ୍ରମେ ଅନ୍ୟାନ୍ୟ ଯୁବକ ବା ବୃଦ୍ଧ ତଥା ଛୋଟ ଛୋଟ ପିଲାମାନଙ୍କୁ ତାଙ୍କ ସଂଗେ ନାଚିବା ପାଇଁ ହୁଁଚରି ଦଳ ଆହ୍ୱାନ କରିଥାନ୍ତି । ଏହି ସମୟରେ ଢ଼ୋଲର ତାଳ ଓ ପେଁପାର ସୁରରେ ଗୃହସ୍ଥର ଅଗଣା କମ୍ପିଉଠେ । ଅସମୀୟା ଲୋକ ଭାଷାରେ ହୁଁଚରି ଗୀତ ଶୁଣିଲେ ମଲା ଗୋରୁର ଚମଡ଼ା କମ୍ପି ଉଠେ, ହାତୀ ଶାଳରେ ବନ୍ଧା ହୋଇଥିବା ହାତୀ ଶାଳ ଭିତରୁ ବାହାରି ଆସେ, ଲୋକମାନଙ୍କର ଆନନ୍ଦର ସୀମା ରହେ ନାହିଁ । (୩୫)

**ହୁଁଚରିରେ ବିହୁ ପ୍ରତି ଆନ୍ତରିକତା–** ବହାଗ ବିହୁକୁ କେହି ବିଦାୟ ଦେବାକୁ ଇଚ୍ଛା କରନ୍ତି ନାହିଁ ମାତ୍ର ବହାଗ ବିହୁ ବର୍ଷକୁ ଥରେ ଆସି ଅଧିକ ଆଦର ପାଇବାକୁ ହିଁ ଅଧିକ ପସନ୍ଦ କରେ । ସେ କେବେ ସମୟ ଅସମୟରେ ଆସେ ନାହିଁ । ସମୟରେ ଆସି ସମୟରେ ଯିବାରେ ହିଁ ତା'ର ଅଧିକ ଆନନ୍ଦ । ଅତି ସ୍ନେହର ବିହୁ ଯେତେବେଳେ ବିଦାୟ ନେଉଛି, ଯୁବକଟି ଜୀବନର ସୁଖଦୁଃଖର କଥା କହି ପେଟ ଭରଣପୋଷଣର କଥା କହିଛି । ଧାନକୁଟାର ପାଉଁଶ ବହୁଦୂର ଯାଏ ହଜିଗଲା କହିବା ମାଧ୍ୟମରେ ସମାଜ ଜୀବନର କଥା ସ୍ପଷ୍ଟ ହୋଇଛି । ତା' ସହିତ ଅତିପ୍ରିୟ ବହାଗ ବିହୁଟି ହାତରୁ ଖସି ଖସି ଯାଉଛି କହି ହୁଁଚରି ଗାୟକ ବିହୁ ପ୍ରତି ଥିବା ଆନ୍ତରିକତାକୁ ପ୍ରକାଶ କରିଥାନ୍ତି ।

ଚୈତ୍ର ପରେ ପରେ ବୈଶାଖ ମାସ ଆସିଥାଏ । ମନରେ ଆନନ୍ଦର ସୀମା ରହେ ନାହିଁ । ବିହୁର ସ୍ପର୍ଶ ପୁରୁଣା ବର୍ଷର ଦୁଃଖକୁ ଭୁଲାଇ ଦିଏ । ଅସମୀୟା ଚୈତ୍ରମାସକୁ ବିଦାୟ ଦେଲାବେଳେ ବର୍ଷକର ଅବସାଦ, କ୍ଳାନ୍ତି ଓ ଦୁଃଖକୁ ବିଦାୟ ଦେଇ ଖୁସୀ ମନରେ ନୂଆବର୍ଷକୁ ଆଦର କରିଥାଏ । ଯୁବତୀମାନଙ୍କର ମାନସିକ ଅବସ୍ଥା ନ କହିଲେ ଭଲ । ସେମାନେ ବହାଗ ବିହୁର ନୃତ୍ୟ ଭିତରେ ସଂପୂର୍ଣ୍ଣ ସ୍ୱାଧୀନତା ପାଇଥାନ୍ତି ।

ଚ'ତ ଗଲ, ଜ୍ଜୀୟରୀ ମୁକଲି ହଲ ।

---

**ଶବ୍ଦାର୍ଥ–** ଖେର– କୁଟା, ସାଇ– ପାଉଁଶ ।

କେବଳ ସେତିକି ନୁହେଁ. ଝିଅମାନେ ଯେଉଁଠି ବିହୁନାଚି ଖେଳକୁଦ ଆଦି କରନ୍ତି, ସେଠାରେ ମରୁଆ ଫୁଲ ତ ଦୂରର କଥା, ଦୁବଘାସ ମଧ୍ୟ ଗଜେ ନାହିଁ । ଏହି ଉକ୍ତି ପ୍ରସଙ୍ଗରେ ଆସାମରେ ଝିଅମାନଙ୍କର ଖେଳପ୍ରତି ଥିବା ଆଗ୍ରହର କଥା କୁହାଯାଇଛି ।

ଜୀୟରୀ ଓମଲେ ଯ'ତ
ମରୁଆ ଦୁବରି ନ ଗଜେ ତ'ତ ।

ହୁଁଚରି ଗାୟକ ନିଜସ୍ବ ଗୀତ ମାଧ୍ୟମରେ ପ୍ରକୃତିର ବର୍ଣ୍ଣନା ତଥା ସମାଜର ବର୍ଣ୍ଣନା କରିବା ସଂଗେ ସଂଗେ ନିଜର ଅସଲ ଉଦ୍ଦେଶ୍ୟକୁ କଥା ପ୍ରସଙ୍ଗରେ କହିଥାନ୍ତି । ନିଜର ଅନେକ ପ୍ରଶଂସା ମଧ୍ୟ କରିଥାନ୍ତି । ହୁଁଚରି ଗାଇ ଗାଇ ସେମାନେ ଯେତେବେଳେ ହାଲିଆ ହୋଇଯାଆନ୍ତି, ସେତେବେଳେ ଗୃହସ୍ଥ ଠାରୁ ନିଜର ପାଉଣା ନେବାପାଇଁ ଗୀତ ମାଧ୍ୟମରେ କହିଥାନ୍ତି । ସିଧାସଳଖ ଭାବେ ପାଉଣା ମାଗି ହୀନମନ୍ୟତାର ପରିଚୟ ଦେବାପାଇଁ ସେମାନେ ଚାହାନ୍ତିନି, ସେଥିପାଇଁ ଆମକୁ ଦକ୍ଷିଣା ଦେଇ ବିଦାକର ବୋଲି କହିଥାନ୍ତି ।

''ହୁଁଚରି ବାଇ ଐ ଦଲୌ ଚରାଇ
ଆମି ଯେ ଆହିଛୋଁ ହୁଁଚରି ଗାଇ;
ତାମୋଲ ଥୋକା ପାନଗୁଛି ରୂପର ଶରାଇ ।''

ପେଛାଏ ଗୁଆ ସହିତ ପୁଳାଏ ପାନ ଦେଇ ରୂପାର ଶରାଇ ସହିତ ଆମକୁ ବିଦାୟ ଦିଅ କହିଥାନ୍ତି ।

ହୁଁଚରି ଗାୟକମାନେ ସମାଜର ବିଭିନ୍ନ କଥା ଉପସ୍ଥାପନ କଲାପରେ ମଧ୍ୟ କେହି କେହି ଗୃହସ୍ଥ ସେମାନଙ୍କୁ ବିଦା କରି ନଥାନ୍ତି । ଓଡ଼ିଶାର ଚକୁଳିଆ ପଣ୍ଡା ସଦୃଶ ଏମାନେ ସିଧାସଳଖ ନ ମାଗି ବୁଲେଇବଙ୍କେଇ କରି ନିଜର ଆଶାନୁରୂପ ପାରିଶ୍ରମିକ ପାଇବାର ଆଶା ରଖି ଘଣ୍ଟାଘଣ୍ଟା ଧରି ହୁଁଚରି ପରିବେଶଣ କରନ୍ତି । ଶେଷରେ ସେମାନେ କୁହନ୍ତି ଆମକୁ ଉପଯୁକ୍ତ ସମ୍ମାନ ସହକାରେ ବିଦାକର । ଆମେ ଗୃହସ୍ଥର ମଙ୍ଗଳ କାମନା କରି ତାଙ୍କ ପରିବାରର ଉନ୍ନତି ନିମନ୍ତେ ଆଶୀର୍ବାଦ କରୁଛୁ । ବହୁତ ସମୟ ଜଣେ ଲୋକର ଘରେ ହୁଁଚରି ପରିବେଶଣ କରି ସେମାନେ ହାଲିଆ ହୋଇ ଯାଇଥିବାରୁ ଅଭିମାନରେ କୁହନ୍ତି ଆମେ ତୁମ ଘରେ ହୁଁଚରି ଗାଉ ଗାଉ ରାତି ପାହିଲା ତଥାପି ଆମକୁ ବିଦା କରୁନ !

ଦ' ପଥାରର ନରା;
ଆମାକୋ ଶୁଶ୍ରୂଷା କରା
ଦ ପଥାରରେ ଘେରା;
ଗିରିହଁତକ ଆଶୀର୍ବାଦ କରା ।
ଧରଐ ଲରାହଁତ ଚୋତାଲତେ ରାତି ପୁଆଓଁ,
ଚୋତାଲତ ମରୁଆ ଚୋତାଲତେ ଶୁକାଲ;
ହୁଁଚରି ଗାଉଁତେ ରାତି ପୁଆଲ ।

ବହାଗ ବିହୁକୁ ବିଦାୟ ଦେବାର ସମୟ ଆସିଥାଏ । ହୁଁଚରି ଦଳ ଘର ଘର ବୁଲି ହୁଁଚରି ପରିବେଶଣ କରି ପଇସା ନେଇ ଭୋଜିଭାତ କରି ଖାଇଥାନ୍ତି । ରାତି ବେଶୀ ହେଲେ ସମସ୍ତଙ୍କ ଘରକୁ ଯାଇ ପାରିବେନି ଭାବି ତରତରରେ ବିହୁ ହୁଁଚରି ଗାଇ ଜଣକ ଘରୁ ଅନ୍ୟ ଜଣକ ଘରକୁ ଯାଇଥାନ୍ତି । ହୁଁଚରି ଦଳମାନେ ତରବରିଆ କରି ବିହୁ ପରିବେଶଣ କରୁଥିବା ଯୋଗୁ ସେମାନେ ବିଭିନ୍ନ ପ୍ରକାରର ବାହାନା କରିଥାନ୍ତି । ସେଥିପାଇଁ ପ୍ରଥମେ ଭଗବାନଙ୍କୁ ସାକ୍ଷୀ ରଖି କୁହନ୍ତି ହେ ଭଗବାନ୍, ତମେ କାନ୍‌ଡେରି ଶୁଣ । ଆମେ ହୁଁଚରି ଗାଉଛୁ, ତା ସହିତ ବିହୁ ଉଦ୍‌ଯାପନ ଜନିତ ଆନନ୍ଦ ଆମେ ଭୋଜିଭାତ କରି ଉପଭୋଗ କରିବୁ ବୋଲି ପାଞ୍ଚୁଛୁ । ସେଥିପାଇଁ ସେମାନେ କ୍ଷମା ମାଗି କୁହନ୍ତି ହେ ଭଗବାନ୍, ଆମେ ବାରମାସ ତଳେ ହୁଁଚରି ଗାଇଥିଲୁ । ସେଥିପାଇଁ ଆମର ଗଳାଟା ଟିକିଏ ବସିଯାଇଛି, ଢୋଲରେ ବି ଠିକ୍ ତାଳରେ ଚାପୁଡ଼ା ମାରି ପାରୁନୁ, ତେଣୁ ଭଗବାନ ଆମର ଦୋଷ ଧରିବନି । କେବଳ ସେତିକି ନୁହେଁ ହେ ଭଗବାନ୍, ହାତ ମେଲି ମନଖୁସୀରେ ନାଚିବାକୁ ଆମେ ଇଚ୍ଛା କଲାବେଳକୁ ଅଣ୍ଟା ବି ହଲୁନି କାରଣ ବର୍ଷକ ତଳେ ଆମେ ନାଚିଥିଲୁ । ହେ ଭଗବାନ୍, ଏତେ କଷ୍ଟ ଭିତରେ ବି ଆମେ ଗଳା ଫଟେଇ, ଅଣ୍ଟାକୁ ଭାଙ୍ଗି ଭାଙ୍ଗି ନାଚୁଛୁ, କାହିଁକି ନାଁ ଦଶଟଙ୍କା ପାଇବୁ । ତେଣୁ ଭଗବାନ୍, ତମେ ଆମର କଷ୍ଟ ନିଶ୍ଚୟ ବୁଝି ପାରୁଥିବ । ଏହି କଥା ଭିତରେ ହୁଁଚରିଦଳ ଲୋକମାନଙ୍କର ମନକୁ ଛିତି ଥାଆନ୍ତି । କଥା ମଝିରେ ପ୍ରକୃତିର ପରିବେଶକୁ ଟାଣିଆଣି ବିଦାୟ ମାଗିଥାଆନ୍ତି । ତେଣୁ ଲତା ଗୁଡ଼ିକରେ ବିଭିନ୍ନ ପ୍ରକାରର ଫୁଲ ଜାଈ, ଯୂଈ, ମାଧବୀ, ମାଳତୀ, ଗୋଲାପ, ବକୁଳ, ଟଗର ଆଦି ଫୁଲଫୁଟି ପ୍ରକୃତିର ଶୋଭାବର୍ଦ୍ଧନ କରୁଛନ୍ତି, ଏକଥା ସେମାନେ ଗାଇ ଗାଇ ଶେଷରେ ବିଦାୟ ନେଇଥାନ୍ତି ।

ବକୁଳ ବନ୍ଧୁଲି ଆଛେ ଫୁଲି ଫୁଲି
ଫୁଲିଛେ ମାଧେ ମାଳତୀ;
ଜାତି ଯୁତି ଜାଁଇ ଟଗର ଗୋଲାପ
ଫୁଲିଛେ ରଙ୍ଗାଲ ସେଂଟ୍ରତୀ ।
ମୋଲାନ ଦେ ଐ ଆହ ଯାଓଁ ଓମଲୋଁ ଗୈ ।

ଏହିଭଳି ଭାବେ ହୁଁଚରି ଗାୟକମାନେ ବିହୁ ହୁଁଚରି ଗାନ ଶେଷରେ ଗୃହସ୍ଥର କୁଶଳ ଅର୍ଥରେ ଜୟହରି ବୋଲା, ଜୟରାମ ବୋଲା କହି ଆଶୀର୍ବାଦ ଦେଇ ବିଦାୟ ନେଇଥାନ୍ତି । ଗୃହସ୍ଥକୁ ଆମୋଦ ଦେଇ ବିହୁର ଆନନ୍ଦ ଉପଭୋଗ କରିବା ସହିତ ହୁଁଚରିର ଆଢୁଆଳରେ ଏକତା ଓ ତ୍ୟାଗର ପ୍ରଚେଷ୍ଟା ଛପି ରହିଥାଏ ।

---

ତାମୋଲ ଥୋକା– ଗୁଆ ପେଛାଏ, ପାନଗୁଛି– ପାନଗୁଛ, ରୂପର ଶରାଇ– ରୂପାର ଶରାଇ

ନିର୍ଦ୍ଦୋଷ ଆମୋଦ ପ୍ରମୋଦ, ପବିତ୍ର ଶୁଭ କାମନା ଏବଂ ନୂତନ ପ୍ରଚେଷ୍ଟାର ମଧୁର ରସରେ ଜୁଡୁପୁଡୁ ହୋଇ ପ୍ରତିବର୍ଷ ବିହୁ ସହିତ ଆସୁଥିବା ହୁଁଚରି ଅସମୀୟାର ବ୍ୟାପକ ସଂପତ୍ତି ଅଟେ । ମୌଖିକ ଗୀତକଥା ଗୁଡିକର ଲୁପ୍ତ ପ୍ରାୟ ହେବା ଫଳରେ ବର୍ତ୍ତମାନର ହୁଁଚରି ଗୀତ ଏବଂ ହୁଁଚରି ଅନୁଷ୍ଠାନର ଅବସ୍ଥା ମଧ ଧୀରେ ଧୀରେ କର୍ମ ଆସିଲାଣି । (୩୬)

ଯାହା ହେଉନା କାହିଁକି, ବର୍ତ୍ତମାନ ହୁଁଚରି ହେଉଛି ଅସମୀୟା ସମାଜର ଏକ ଅମୂଲ୍ୟ ସଂପଦ, ଏହାକୁ ବାଦ୍ ଦେଇ ଅସମୀୟା ସଂସ୍କୃତିର କଥା କେହି ଭାବି ପାରିବେ ନାହିଁ । ଅଧ୍ୟାପକ ହେମ ବରୁଆଙ୍କ ମତରେ ବିହୁର ନୃତ୍ୟ ହେଉ ବା ହୁଁଚରି ହେଉ, କୌଣସି ଗୋଟିଏ ସମାଜକୁ ଅସ୍ୱୀକାର କରି ଉଦ୍‌ଭବ ହୋଇନାହିଁ । ପ୍ରଥମଟି ଜନଯୁଗର, ମୁକ୍ତ ପ୍ରାଙ୍ଗଣର ସଂପଦ, ଦ୍ୱିତୀୟଟି ରାଜ ପ୍ରାସାଦର - ଶ୍ରେଣୀ ସମାଜର ସଂପଦ । ଘରେ ଘରେ ହୁଁଚରି ଗାଇ ଗୃହସ୍ଥର ମଂଗଳ କାମନା କରିବା କଥା ହୁଁଚରିର ଐତିହାସିକ ସ୍ୱରୂପ ପ୍ରକାଶ କରେ ନାହିଁ । ସମାଜ ବିବର୍ତ୍ତନର ଇତିହାସ ସହିତ ଏହା ମିଶି ଏକତ୍ରିତ ହୋଇଯାଇଛି । (୩୭)

## ଦ୍ୱିତୀୟ ପରିଚ୍ଛେଦ

**ସଙ୍କେତ ସୂଚୀ—**

(୧) 'ସାତ ପୁରୁଷୀୟା ବିହୁଟି ଆମାର ଆଧୁନିକା ହଲ' — ଦୈନିକ ପତ୍ରିକା- 'ଆଜିର ଅସମ' - ୧୯୯୭-୧୩-ଏପ୍ରିଲ୍-ନଗେନ ଦତ୍ତ ।

(୨) 'ପ୍ରେମ ଆରୁ ଯୌନାଚାରର ଉତ୍ସବ ରଂଗାଲି ବିହୁ' - 'ରଂପୁର' ଦୈନିକ ପତ୍ରିକା - ୧୯୯୮-୧୯-ଏପ୍ରିଲ, ଦୀପକ ଗୋସ୍ୱାମୀ ।

(୩) ପ୍ରେମ ଆରୁ ଯୌନାଚାରର ଉତ୍ସବ - ରଂଗାଲି ବିହୁ - 'ସୀମାନ୍ତ କୁମାର ଲେଖାରୁ' - ୧୯୯୮-୧୯-ଏପ୍ରିଲ୍ ।

(୪) ପ୍ରାଚୀନ ଅସମର ବସନ୍ତ ଉତ୍ସବ - 'ଆଜିର ଅସମ' - ଦୈ: ପତ୍ରିକା-୧୯୯୭-୧୩-ଏପ୍ରିଲ୍-ସୂର୍ଯ୍ୟ ଦାସ ।

(୫) 'ଅସମୀୟା ଜନସାହିତ୍ୟ' - ପୃ-୩୬-ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ ।

(୬) 'ପ୍ରେମ ଆରୁ ଯୌନାଚାରର ଉତ୍ସବ ରଂଗାଲି ବିହୁ' - 'ରଂପୁର' - ୧୯୯୮-୧୯-ଏପ୍ରିଲ୍ :- ସୀମାନ୍ତ କୁମାର ଲେଖାରୁ ।

(୭) ସମନ୍ୱୟର ଉତ୍ସବ ବହାଗ ବିହୁ - ୧୯୯୮-୧୩-ଏପ୍ରିଲ- 'ଆଜିର ବାତରି' - ଡଃ ପ୍ରବୀନ ଚନ୍ଦ୍ର ଦାସ ।

(୮) ପ୍ରାଚୀନ ଅସମର ବସନ୍ତ ଉତ୍ସବ - 'ଆଜିର ଅସମ' - ଦୈ: ପତ୍ରିକା-୧୯୯୭-୧୩-ଏପ୍ରିଲ- ସୂର୍ଯ୍ୟ ଦାସ ।

(୯) 'ବସନ୍ତୋତ୍ସବ' - ୧୯୯୮ - ୧୯ - ଏପ୍ରିଲ - ଜିତୁ କୁମାର ଲେଖାରୁ ।

(୧୦) ସମନ୍ୱୟର ଉତ୍ସବ ବହାଗ ବିହୁ - ୧୯୯୮-୧୩-ଏପ୍ରିଲ୍- ଆଜିର ବାତରି - ଡଃ ପ୍ରବୀନ ଚନ୍ଦ୍ର ଦାସ ।

(୧୧) ବସନ୍ତୋତ୍ସବ - 'ରଂପୁର' - ୧୯୯୮ -୧୯-ଏପ୍ରିଲ୍ - ଜିତୁ କୁମାର ଲେଖାରୁ ।

(୧୨) ତତ୍ରୈବ ।

(୧୩) 'ହୁଁଚରି - ମୁକଲି ବିହୁ ଆରୁ ବିହୁନାଚ' - ପୃ-୮- ଜୟକାନ୍ତ ଗନ୍ଧୀୟା ।

(୧୪) Festivals of Assam - P. D. Goswami - P-19-20.

(୧୫)'ବସନ୍ତୋତ୍ସବ' - 'ରଂପୁର'- ୧୯୯୮-୧୯-ଏପ୍ରିଲ୍- ଜିତୁ କୁମାର ଲେଖାରୁ ।

(୧୬) ସମନ୍ୱୟର ଉତ୍ସବ- ବହାଗ ବିହୁ- ଆଜିର ବାତରି - ୧୯୯୮-୧୩-ଏପ୍ରିଲ୍- ଡଃ ପ୍ରବୀନ ଚନ୍ଦ୍ର ଦାସ ।

(୧୭) Festivals of Assam - P- 13-14, P. D. Goswami.

(୧୮) Folklore of Assam - P-81- Jogesh Das.

(୧୯) ଅସମୀୟା ଲୋକ ସାହିତ୍ୟର ରୂପରେଖା - ପୃ-୧୭୨-ଲୀଳା ଗଗୈ ।

(୨୦) 'ଗରୁ ବିହୁ - ହୃଦୟର ଉତ୍ସବ' - ଦୈନିକ ପତ୍ରିକା - ଦୈନିକ ଅସମ-୧୯୯୮-୧୮-ଏପ୍ରିଲ୍- ଅସୀମ କୁମାର ବୋରା ।

(୨୧) ହୁଁଚରି - ମୁକଲି ବିହୁ ଆରୁ ବିହୁ ନାଚ - ପୃ-୧୬-ଜୟକାନ୍ତ ଗନ୍ଧୀୟା ।

(୨୨) ଅସମୀୟା ଲୋକ ସାହିତ୍ୟର ରୂପରେଖା - ପୃ-୧୬୪- ଲୀଳା ଗଗୈ ।

(୨୩) ବିହୁନାଚର ଉତ୍ପତ୍ତି - 'ରାମଧେନୁ' - ଚତୁର୍ଥ ବର୍ଷ-ପ୍ରଥମ ସଂଖ୍ୟା - ୧୯୭୩-ଶକ- ହେମ ବରୁଆ ।

(୨୪) ବିହୁର ନିର୍ଭରଯୋଗ୍ୟ ମୂଲ୍ୟାୟନ - ଆଜିର ବାତରି - ୧୯୯୨-୧୪-ଏପ୍ରିଲ୍-ତୋଷେଶ୍ୱର ଚେତିୟା ।

(୨୫) ହୁଁଚରି- ମୁକଲି ବିହୁ ଆରୁ ବିହୁନାଚ - ପୃ- ୪୫-ଜୟକାନ୍ତ ଗନ୍ଧୀୟା ।

(୨୬) ହୁଁଚରି - ମୁ: ବି: ଆ: ବି: ନା - ପୃ- ୬୩-୬୪- ଜୟକାନ୍ତ ଗନ୍ଧୀୟା ।

(୨୭) ହୁଁଚରି- ମୁ: ବି: ଆ: ବି: ନା: - ପୃ- ୩ - ଜୟକାନ୍ତ ଗନ୍ଧୀୟା ।

(୨୮) ତତୈବ ।

(୨୯) 'ସୁନ୍ମାଇ ଦେବୀ ଠାରୁ ସଂଗୃହୀତ, ଗ୍ରାମ- 'ଏରାଗାଓଁ' - ଜିଲ୍ଲା-ମରିଗାଓଁ, ଆସାମ ।

(୩୦) ହୁଁଚରି- ମୁ: ବି: ଆ: ବି: ନା: - ପୃ-୨୩-ଜୟକାନ୍ତ ଗନ୍ଧୀୟା ।

(୩୧) ବିମଳ ଗୋଗୋଇ - ଗୌହାଟୀ - ସଂଗୃହୀତ ।

(୩୨) 'ହୁଚରି ଏ ହାଓ' - ଆଜିର ଅସମ - ୧୯୯୭-୧୩-ଏପ୍ରିଲ୍ - ନରହରି ଚୁତିୟା ।

(୩୩) 'ଅସମର ଲୋକ ସଂସ୍କୃତି' - ପୃ- ୧୮୫-୧୮୬ - ନିର୍ମଳ ପ୍ରଭା ବରଦଲୈ ।

(୩୪) 'ହୁଚରି ଏ ହାଓ' - ଆଜିର ଅସମ- ୧୯୯୭-୧୩-ଏପ୍ରିଲ- ନରହରି ଚୁତିୟା ।

(୩୫) 'ହୁଁଚରି, ମୁକଲି ବିହୁ ଆରୁ ବିହୁନାଚ' - ପୃ-୩ - ଜୟକାନ୍ତ ଗନ୍ଧୀୟା ।

(୩୬) 'ଅସମର ଲୋକସଂସ୍କୃତି' - ପୃ- ୧୮୮-୮୯ - ନିର୍ମଳ ପ୍ରଭା ବରଦଲୈ ।

(୩୭) 'ବିହୁନାଚର ଉତ୍ପତ୍ତି' - 'ରାମଧେନୁ' - ଚତୁର୍ଥ ବର୍ଷ - ପ୍ରଥମ ସଂଖ୍ୟା- '୧୮୭୩-ଶକ' - 'ହେମ ବରୁଆ' ।



# ତୃତୀୟ ପରିଚ୍ଛେଦ

**ମୁକଲିବିହୁ—** ଯୁବକଯୁବତୀମାନେ ଏକା ସାଙ୍ଗରେ କୌଣସି ନୀତିନିୟମ ନ ମାନି ଗୀତ ଗାଇ ନାଚି ପାଳନ କରୁଥିବା ବିହୁକୁ 'ମୁକଲି ବିହୁ' କୁହାଯାଇଥାଏ । ଅବଶ୍ୟ ଏହି ବିହୁ ଯୁଗ ପରିବର୍ତ୍ତନ ସହିତ ସଂସ୍କାର ମାଧ୍ୟମରେ ସୃଷ୍ଟି ହୋଇଥିବା ବିହୁ ଅଟେ । ଆଗକାଳରେ ଯୁବକ-ଯୁବକମାନଙ୍କ ଦଳରେ, ଯୁବତୀ-ଯୁବତୀମାନଙ୍କ ଦଳରେ ଥାଇ ବିହୁ ନାଚୁଥିଲେ, ଦୁଇଟି ଦଳ ସଂପୂର୍ଣ୍ଣଭାବେ ପାଖାପାଖି ରହି ନାଚୁଥିଲେ । ବିହୁଗୀତ ମାଧ୍ୟମରେ ନିଜ ମନର ଭାବକୁ ପ୍ରକାଶ କରି ଭାବର ବିନିମୟ କରୁଥିଲେ । ଆଜିକାଲି ଯୁବକ ଯୁବତୀମାନେ ମିଳି ଏକା ସାଙ୍ଗରେ ମୁକଲି ବିହୁ ପରିବେଶଣ କରୁଛନ୍ତି । ଏହି ବିହୁକୁ ଗଛତଳର ବିହୁ, ରାତି ବିହୁ, ଚ'ତ ବିହୁ (ଚୈତ୍ର ବିହୁ) ବା ବହାଗ ବିହୁ (ବୈଶାଖ ବିହୁ) ଆଦି କୁହାଯାଇଥାଏ । ଚୈତ୍ରମାସର ଶେଷଦିନଠୁ ବୈଶାଖର ପ୍ରଥମ ଛ'ଦିନ ପର୍ଯ୍ୟନ୍ତ ଏହି ବିହୁ ପାଳନ କରାଯାଉଥିବାରୁ କେହି କେହି ଚ'ତ ବିହୁ କହିଲାବେଳେ ଅନ୍ୟ କେତେକ ଲୋକ ବହାଗ ବିହୁ କହିଥାନ୍ତି । ଏଥିରେ ସାଧାରଣତଃ ଯୁବକ ଯୁବତୀମାନଙ୍କର ସଂଖ୍ୟା ସମାନ ସମାନ ରଖାଯାଇଥାଏ । ଉଭୟଙ୍କର ସଂଖ୍ୟା ସମାନ ରହିଲେ ବିହୁ ପରିବେଶଣ ଭଲ ହୁଏ, ଧାରଣା କରାଯାଇଥାଏ । (୧)

ବହାଗ ବିହୁ ବା ଚ'ତ ବିହୁ ଉତ୍ସବ ମୁଖ୍ୟତଃ ବସନ୍ତକାଳୀନ ଉତ୍ସବ ଅଟେ । ଚାଷବାସ ସହିତ ଏହାର ସଂପର୍କ ଓତଃପ୍ରୋତ ଭାବେ ଜଡ଼ିତ । ତେଣୁ ଚାଷଜମିରେ ପାଳନ କରାଯାଉଥିବା ବିହୁ ଉତ୍ସବ ସମୟ କ୍ରମେ ଆଧୁନିକତାର ସ୍ପର୍ଶ ଲାଗି ମଞ୍ଚ ଉପରକୁ ଆସିଲା । ଫଳରେ ଗ୍ରାମୀୟ କୃଷକ ସମାଜର ହୃଦୟଠୁ ବଳି ପ୍ରିୟ ବିହୁ ସହରାଭିମୁଖୀ ହେଲା ମାତ୍ର କୃଷକର ଆପଣାର ବିହୁ ମୁକ୍ତ ପ୍ରାଙ୍ଗଣରେ ପାରମ୍ପରିକ ଭାବେ ପରିବେଶିତ ହେଲା । ତେଣୁ ସମୟକ୍ରମେ ଯୁବକ ଯୁବତୀମାନଙ୍କର ବହାଗ ବିହୁ 'ମୁକଲି ବିହୁ' ଏବଂ 'ମଞ୍ଚ ବିହୁ' ନାମରେ ଦୁଇଭାଗରେ ବିଭକ୍ତ ହେଲା । ମଞ୍ଚ ବିହୁ ମଞ୍ଚରେ ପରିବେଶଣ କରାଗଲେ ହେଁ ମୁକଲି ବିହୁ ଚାଷ ପଡିଆରେ ଯୁବକ ଯୁବତୀମାନଙ୍କ ଦ୍ୱାରା ମୁକ୍ତ ମନରେ ପରିବେଶଣ କରାଗଲା । ଆସାମର ଚାଷ ପଡିଆରେ ପରିବେଶିତ ବିହୁ ଏବଂ ଜର୍ଜିୟାର ସେଣ୍ଟ ଦିବସରେ ପରିବେଶିତ ନୃତ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । (୨)

**ସେନେହର ବିହୁ—** ବହାଗ ବିହୁକୁ 'ସେନେହର ବିହୁ' ବା 'ସ୍ନେହର ବିହୁ' କୁହାଯାଇଥାଏ । ଏହି ବିହୁରେ ଅସମୀୟାମାନେ ଅତିଥିଙ୍କୁ ମୁଖ୍ୟତଃ ଚୂଡ଼ା, ଗୁଡ଼ ଓ ଦହି ତଥା ଅନ୍ୟାନ୍ୟ ସୁସ୍ୱାଦୁଯୁକ୍ତ ଜଳପାନରେ ଆପ୍ୟାୟିତ କରି ନୂଆ ନୂଆ ଗାମୁଛା, ବସ୍ତ୍ର ତଥା ଅନ୍ୟାନ୍ୟ ଉପହାର ଦେଇଥାନ୍ତି । ଅତିଥିଙ୍କୁ ଶରାଇ ଉପହାର ଦେବା ଭଳି ନିୟମ ଏହି ସମୟରେ ପାଳନ କରାଯାଏ । ଅସମୀୟାର ବିହୁ କହିଲେ ବହାଗ ବିହୁକୁ ହିଁ ବୁଝାଇଥାଏ ।

ଏହି ବିହୁରେ ଘରେ ଘରେ ଆନନ୍ଦ ଉଛୁଳି ପଡ଼େ । ଯୁବକ ଯୁବତୀମାନେ ନୂଆ ନୂଆ ବସ୍ତ୍ର ପିନ୍ଧି, ଭଲ ଭଲ ଖାଦ୍ୟ ଖାଇ ସନ୍ଧ୍ୟା ସମୟକୁ ଅତି ଉତ୍କଣ୍ଠାରେ ଅନେଇ ରହିଥାନ୍ତି । ପରସ୍ପରକୁ ବିଭିନ୍ନ ପ୍ରକାରର ଉପହାର ଦେଇ ସନ୍ଧ୍ୟାରେ ଚାଷଜମି ବା ଗାଁ ମୁଣ୍ଡ ଖୋଲା ପଡ଼ିଆରେ ବିହୁ ନାଚ ପରିବେଷଣ କରନ୍ତି । ତେଣୁ ଏହି ବିହୁରେ ଜଣକର ଅନ୍ୟଜଣକ ପ୍ରତି ଥିବା ସ୍ନେହ ବା ସମ୍ମାନର ନିଦର୍ଶନ ସ୍ୱରୂପ ସୁନ୍ଦର ସୁନ୍ଦର ଉପହାର ପରସ୍ପରକୁ ଦେଇଥାନ୍ତି ଓ ଆପଣାର ଆତିଥ୍ୟ ତାର ପରିଚୟ ଦେଇଥାନ୍ତି । ସେଥିପାଇଁ ବହାଗ ବିହୁକୁ 'ସେନେହର ବିହୁ' କୁହାଯାଇଥାଏ । ବିହୁଗୀତ ଗୁଡ଼ିକରେ ବିହୁପର୍ବ ପ୍ରତି ଥିବା ସ୍ନେହ, ଆଶା ଏବଂ ଆନନ୍ଦ ପ୍ରକାଶର ଉଦ୍‌ବିଗ୍ନତା ଏବଂ ଗୃହସ୍ଥକୁ କର୍ତ୍ତବ୍ୟର ସଚେତନତା ଦେବାର ଭାବ ମଧ ପ୍ରକାଶ ପାଇଥାଏ । (୩)

ବିହୁ-ବିବାହର ବେଦୀ— ବହାଗ ବିହୁର ରାତିରେ ଯୁବକଯୁବତୀମାନେ ଯେପରି ଉନ୍ମାଦନା ପୂର୍ଣ୍ଣ ନାଚ ନାଚିଥାଆନ୍ତି, ସେହି ନାଚ ଭିତରେ ପରସ୍ପର ପରସ୍ପର ପ୍ରତି ଆକୃଷ୍ଟ ହୋଇଥାଆନ୍ତି । ଏହି ସମୟରେ ଅଧିକାଂଶ ଯବକଯୁବତୀ ଉଭୟଙ୍କୁ ମନଦେଇ ବିବାହ ପାଶରେ ଆବଦ୍ଧ ହୁଅନ୍ତି । ବିହୁତଳିରେ ନାଚିଲା ବେଳେ ନିଜର ଜୀବନସାଥିକୁ ବାଛିବାର ପରଂପରା ଅସମୀୟା ସମାଜରେ ରହି ଆସିଛି । ସେଥିପାଇଁ ବିହୁତଳିକୁ ବିବାହର ବେଦୀ କୁହାଯାଇଥାଏ । ବିହୁ ନାଚିଲାବେଳେ ଯୁବତୀମାନେ ଅଣ୍ଟାରେ ପଛପଟେ ଗୋଟିଏ ହାତରଖି ଏବଂ ଅନ୍ୟ ହାତଟି ମଥା ଖୋଷାରେ ରଖି ଯୁବକମାନଙ୍କ ପାଖକୁ ଲାଗି ଲାଗି ଆସନ୍ତି । ଯୁବକମାନେ ଢୋଲ, ପେଁପା, ମହୁରି ଆଦି ବଜାଇ ବଜାଇ ଯୁବତୀମାନଙ୍କର ଚାରିପଟେ ଘୂରିଘୂରି ନାଚନ୍ତି । ଯୁବକ ଓ ଯୁବତୀମାନେ ଯୌନୋଦ୍ଦୀପକ ଗୀତ ମଧ୍ୟ ଖୋଲାଖୋଲି ଭାବେ ଗାଇଥାଆନ୍ତି । ଏହା ମାଧ୍ୟମରେ ଭାବର ଆଦାନ ପ୍ରଦାନ ହୋଇଥାଏ । ସମୟ ସମୟରେ ଯୁବକମାନେ ନିଜର ପସନ୍ଦ ଯୁବତୀଟିକୁ ବିହୁତଳିରୁ ନେଇ ପଳାଇଯାଆନ୍ତି । ବଦ୍‌ନାମି ଭୟରେ ଯୁବତୀମାନେ ଯୁବକଙ୍କୁ ଆଗରୁ ସତର୍କ କରିଇ ଦେଇ ଗାଆନ୍ତି -

''ବିହୁ ମାରି ଥାକୌଁତେ, ପଲୁଆଇ ନିନିବା
ଭରିବ ଲାଗିବ ଧନ''

ଅସମୀୟା ସମାଜରେ ବିବାହ ପୂର୍ବରୁ ପୁଅମାନଙ୍କୁ ଝିଅ ବାପର ଦାବୀ ମୁତାବକ ଧନ ଦେବାକୁ ହେବ । ତେଣୁ ଝିଅର ବାପକୁ ଧନ ନ ଦେଇ ନିଜଇଛାମତେ ଝିଅଟି ଗଲେ ପରଂପରାର ବିରୋଧି ହେବ । ସେଥିପାଇଁ ଝିଅରି ବାପକୁ ଧନଦେଇ ନେବାପାଇଁ ଝିଅଟି କହିଛି । ତାଂର ପ୍ରତ୍ୟୁତ୍ତରରେ ପୁଅମାନେ କୁହନ୍ତି ତମେ ଯେ ଗତବର୍ଷ ବିହୁରେ ମୋ ସହିତ ଯିବା ପାଇଁ କଥା ଦେଇଥିଲ, ଏହିବର୍ଷ ବିହୁରେ ମୁଁ ତୁମକୁ ନେବି ।

''ଯୋଆ ବେଲି ବିହୁତେ କଥାଟି ଦିଛିଲା
ଏଇ ବେଲି ବିହୁତେ ନିମ'' ।

ସେଥିପାଇଁ ବିହୁକୁ ଯଥାର୍ଥରେ ବିବାହର ବେଦୀ କୁହାଯାଇଥାଏ । ମା ବସୁମତୀର ଉର୍ବରତା ବୃଦ୍ଧି ପାଇଁ ଯୁବତୀମାନେ ଯୌନୋଦ୍ଦୀପକ ନାଚ ନାଚିଥାଆନ୍ତି । ଲୋକ କବିର ଭାଷାରେ ଯୁବତୀର ନୃତ୍ୟ ଭିତରେ ମାଦକତା ଭରି ରହିଥାଏ । ଢୋଲ ଏବଂ ଖୋଳର ତାଳେତାଳେ ଯୁବତୀମାନେ ବିହୁ ନାଚିବାବେଳେ ଯୁବକମାନଙ୍କ ମନରେ ଏକ ରୋମାଞ୍ଚକର ଭାବ ଜାଗିଉଠେ । ସେଥିପାଇଁ ଯୁବକ ମାନେ କୁହନ୍ତି -

ଢୋଲରେ ବାଇ ଢୋଲିଆ ଖୋଳରେ ବାଇ ଖୋଳିଆ
କାହାର ଘରେ ନାଚେ ନାଚନୀ ;
ପାଖକୁ ଲାଗି ଲାଗି ଆସନି ଗୋ ନାଚୁଣୀ
ତୁମ ଦେହରେ ଅଛି ମୋହିନୀ ।

ବିହୁନାଚ ଉପରେ ମତବ୍ୟକ୍ତ କରି ଡଃ ଲୀଳା ଗଗୈ କୁହନ୍ତି -'' ଆଦିମଖେତିଯେକର ଏଟା ଧାରଣା ଆଛିଲ । ଯୌନ ପ୍ରବୃତ୍ତିମୂଳକ ଗୀତ ଗାଲେ ପୃଥିବୀର ଗାତୋ ଯୌନ ଉତ୍ତେଜନାଇ ଦେଖା ଦିବ ଆରୁ ପୃଥିବୀ ଶସ୍ୟ ସମ୍ଭବା ହୈ ଉଠିବ, ସେଯେହେ ରାତିବିହୁର ଗୀତବୋର ସ୍ୱାଭାବିକତେଇ ଯୌନୋଦ୍ଦୀପକ''। (୪)

**ବିହୁନାଚ** - ବିହୁନାଚ ସାଧାରଣତଃ ଉପଯୁକ୍ତ ଗୀତ ଏବଂ ବାଦ୍ୟସହିତ ତାଳ ରଖି ପରିବେଷଣ କରାଯାଇଥାଏ । ମୋଟାମୋଟିଭାବେ ପାରମ୍ପରିକ ଲୋକଶୈଳୀରେ ବିହୁନାଚ ପରିବେଷଣ କରାଯାଇଥାଏ । ଗୀତ ସହିତ ଅଂଗ ଭଂଗୀର ପରିଚାଳନା କ୍ଷେତ୍ରରେ ଢୋଲ, (Drum), ପେଁପା,(horn pipe), ଏବଂ ଟକା (a split bamboo instrument) ବାଦ୍ୟ ସହିତ ମେଳ ରଖି ନୃତ୍ୟ ପରିବେଷଣ କରାଯାଇଥାଏ ।ଏହା ମୁଖ୍ୟତଃ ଯୁବକଯୁବତୀ ମାନଙ୍କର ବସନ୍ତକାଳୀନ ନୃତ୍ୟ ଅଟେ । ଏହି ନାଚରେ ଗୀତ ମାଧମରେ ମନର ଭାବ,ଆଶା-ଆକାଙ୍‌କ୍ଷା ତଥା କଳ୍ପନା ଓ ସମାଜର ସୁଖଦୁଃଖର ଚିତ୍ର ପରିବେଷଣ କରାଯାଇଥାଏ । ବିହୁନାଚିବାପାଇଁ ଯୁବତୀମାନଙ୍କର ସୁଢ଼ଳଶରୀର ଏବଂ ମଧୁର ସ୍ୱର ହୋଇଥିବା ଦରକାର । ଉଭୟର ମିଳନରେ ବିହୁନାଚ ମନୋମୁଗ୍ଧକର ହୋଇଥାଏ । (୫)

ଆଜିକାଲି ଯୁବକମାନଙ୍କ ମଧରେ ଶ୍ରେଷ୍ଠ ଗାୟକ ତଥା ବାଦକ ଓ ନର୍ତ୍ତକମାନଙ୍କୁ 'ବିହୁକୌଁ ଅର', ବିହୁ ରାଜକୌଁଅର ଆଦି କୁହାଯାଇଥାଏ । ସେହିଭଳି ଭାବେ ଶ୍ରେଷ୍ଠ ବିହୁ ନର୍ତ୍ତକୀକୁ ବିହୁ କୁଁଅରୀ, ବିହୁରାଣୀ, ବିହୁ ସମ୍ରାଜ୍ଞୀ ଆଦି ଉପାଧିରେ ଭୂଷିତ କରାଯାଇଥାଏ । ମାତ୍ର ଏଗୁଡ଼ିକ ସାମନ୍ତ ଯୁଗୀୟ ଶବ୍ଦ ଅଟେ ମାତ୍ର କେତେକ ସମାଲୋଚକ ଯେପରି ଜୟକାନ୍ତ ଗାନ୍ଧୀୟାଙ୍କ ମତରେ ଏହି ଶବ୍ଦଗୁଡ଼ିକର ପରିବର୍ତ୍ତେ ବିହୁଆ, ବରବିହୁଆ (ବଡ଼ବିହୁଆ) ଏବଂ

ବିହୁବତୀ, ବରବିହୁବତୀ ଆଦି ଶବ୍ଦର ପ୍ରଚଳନ କରିବା ଅଧିକ ଯୁକ୍ତି ସଂଗତ ହେବ । (୬)

ଲୋକବିଶ୍ୱାସରେ ବିହୁନାଚର ସୃଷ୍ଟି - ଆଦିମ ଯୁଗରେ କେତେଗୁଡ଼ିଏ ଲୋକବିଶ୍ୱାସକୁ ଭିତ୍ତିକରି ବିହୁନାଚର ଯେ ଉତ୍ପତ୍ତି ହୋଇଛି ସେଥିରେ କୌଣସି ସନ୍ଦେହ ନାହିଁ । ଚୈତ୍ରମାସର ଶେଷଦିନକୁ ଆରମ୍ଭ ହେଉଥିବା ରଂଗାଲିବିହୁ ବର୍ଷର ପ୍ରଧାନ ଚାଷବାସ ପାଗ ଆରମ୍ଭର ସୂଚନା ହୋଇଥାଏ । ବର୍ତ୍ତମାନ ଅସମୀୟା ସଂସ୍କୃତିର ଶକ୍ତିଶାଳୀ ଅଂଗରୂପେ ଗଣ୍ୟହେଉଥିବା ବିହୁର ପ୍ରାଚୀନ ଭେଟି ସ୍ୱରୂପ କୃଷିଜୀବି ସମାଜର କେତେଗୁଡ଼ିଏ ବିଶ୍ୱାସ ଥିଲା । କୌଣସି ଗୋଟିଏ ଜିନିଷକୁ କେନ୍ଦ୍ରକରି ଘୂରି ଘୂରି ଲୋକମାନେ ନୃତ୍ୟ କରୁଥିଲେ । ଏହି ନୃତ୍ୟ ବିଶ୍ୱାସ ଭିତ୍ତିକ ପ୍ରଥା ଥିଲା । ଅତୀତରେ କୌଣସି ମୂର୍ତ୍ତି, ବେଦୀ, କେତେଗୁଡ଼ିଏ ଗଛ ତଥା ନଦୀଘାଟ ଆଦିକୁ ପବିତ୍ର ବୋଲି ବିଶ୍ୱାସ କରାଯାଉଥିବାରୁ ଲୋକମାନେ ସେଗୁଡ଼ିକୁ କେନ୍ଦ୍ରକରି ଘୂରିଘୂରି ନୃତ୍ୟ କରୁଥିଲେ । ସମସ୍ତଙ୍କୁ ଦେବ-ଦେବୀର ପ୍ରତୀକ ହିସାବରେ ପୂଜା କରାଯାଉଥିଲା । ଏହି ଦେବଦେବୀଙ୍କୁ ସନ୍ତୁଷ୍ଟ କରିପାରିଲେ ଶସ୍ୟ କିଆରୀ ଉତ୍କୃଷ୍ଟ ହୁଏ । ନିୟମିତ ଭାବେ ଖରାବର୍ଷା ହୁଏ ଏବଂ ତା ସହିତ ଶସ୍ୟ କିଆରୀ ସମସ୍ତ ପ୍ରକାର ପ୍ରାକୃତିକ ଦୁର୍ଯୋଗରୁ ରକ୍ଷା ପାଇବା ସଂଗେ ସଂଗେ ଫସଲରେ ଭରପୂର ହୁଏ ବୋଲି ପ୍ରାଚୀନ କାଳରୁ ବିଶ୍ୱାସ କରାଯାଇଥାଏ । ତେଣୁ ଏହି ବିଶ୍ୱାସ ଫଳରେ ପ୍ରାଚୀନ କୃଷିଜୀବି ସମାଜରେ ପରିବେଶଣ କରାଯାଉଥିବା ନୃତ୍ୟରୁ ବିହୁନାଚର ଜନ୍ମ ହୋଇଥିଲା । (୭)

ବିହୁନାଚର ନିୟମ - ଅସମୀୟାର ବିହୁ ଅତ୍ୟନ୍ତ ପ୍ରିୟ ନାଚ । ଏହି ଲୋକ ନାଚ ନାଚିବାକୁ ଦେଲେ ଅଭିନୟ ସୂଚକ ଭଂଗୀରେ ନ ନାଚି ଲୋକପରମ୍ପରା ରକ୍ଷା କରି ନାଚିବା ଉଚିତ । ଯୁବତୀମାନଙ୍କର ସୁଢ଼ଳ ଶରୀର ଓ ମଧୁର କଣ୍ଠ ସହିତ ବିହୁନାଚର ମୂଳଭଂଗୀର ସମତା ରକ୍ଷା କରିବା ନିହାତି ଆବଶ୍ୟକ । ବିହୁନାଚର ମୂଳଭଂଗୀ ସାଧାରଣତଃ ଛଅଟା ଅଟେ । ଏହି ଭଂଗୀ କେତୋଟିର ନିୟମ ନିମ୍ନରେ ପ୍ରଦାନ କରାଯାଇଛି ।

୧- ମଇଁଷୀ ଶିଙ୍ଗ ଭଳି ହାତର ଆଙ୍ଗୁଳିର ମୂଳଗଣ୍ଠି ପାଖରୁ ଉପରମୁଟ ପାପୁଲି ପାଖରୁ ଅନ୍ୟ ଏକ ହାତରେ ଧରି ହାତ ଆଙ୍ଗୁଳି ଗୁଡ଼ିକୁ ଏକ ସଂଗେ ମିଳାଇ ଅନ୍ୟ ଏକ ହାତରେ ଧରି ହାତକୁ ତଳକୁ ତଳକୁ ଭାଙ୍ଗି ଏବଂ ତା ସହିତ ଅଣ୍ଟାକୁ ଭାଙ୍ଗି ଭାଙ୍ଗି ହାତ ମେଲି ନାଚିବା ।

୨- ହାତ ପାପୁଲିର ଉପରପଟକୁ ଅଣ୍ଟାରେ ରଖି ମୁହଁକୁ ବାମପଟ ହାତର ବାହୁ ଆଡ଼କୁ ଦେଇ ଅଣ୍ଟାଭାଙ୍ଗିବା ଏବଂ ଅଣ୍ଟା ଭାଙ୍ଗିବାର ତାଳେ ତାଳେ ଛାତିକୁ ଉପରକୁ ଥରେ ତଳକୁ ଥରେ ଉଠାଇ ଏବଂ ପକାଇ ନାଚିବା ।

୩- ଅଣ୍ଟାରେ ହାତ ରଖି ଅଣ୍ଟାର ଉପର ଅଂଶକୁ ଚାରିପଟେ ବୁଲେଇ ବୁଲେଇ ପବନରେ ଗଛ ହଲିଲା ଭଳି ନିଜେ ହଲି ହଲି ନାଚିବା ।

୪- ହାତ ମେଲି ନଂଟୁ ଭଳି ଘୂରି ଘୂରି ନାଚିବା

୫- ଛାତି ଉପରେ ହାତ ରଖି ଇଂଗୀତ ସୂଚକ ନାଚ ନାଚିବା ।

୬- ଗୋଟିଏ ହାତ ମୁଣ୍ଡଖୋଷାରେ ରଖି ଆଉ ଗୋଟିଏ ହାତ ଅଣ୍ଟାରେ ରଖି କୌଣସି ପ୍ରକାଶ ଭଂଗୀ ନକରି ଅଣ୍ଟା ଭାଙ୍ଗି ଭାଙ୍ଗି ନାଚିବା ।

ଏହି ନାଚ ନାଚିଲାବେଳେ ବିଭିନ୍ନ ଭଂଗୀଗୁଡ଼ିକ ସହିତ ମୁହଁର ହସ ହସ ଭାବକୁ ମିଳେଇ ନାଚିବା ଉଚିତ । (୮)

**ବିହୁଗୀତର ନାଚୁଣୀ** - ବହାଗବିହୁରେ ସବୁଠାରୁ ଆକର୍ଷଣୀୟ ହେଉଛି ବିହୁଗୀତ ଓ ନାଚ । ନାଚରେ ମୁଖ୍ୟତଃ ଯୁବକ ଓ ଯୁବତୀମାନେ ଭାଗ ନେଇ ଥାଆନ୍ତି । ଯୁବକମାନେ ଢ଼ୋଲ ଓ ପେଁପା ଆଦି ନେଇ ବାଜା ବଜାଇ ନାଚିଲା ବେଳେ ଯୁବତୀମାନେ ବିଭିନ୍ନ ପ୍ରକାରର ପାରଂପରିକ ଅଳଙ୍କାର ପିନ୍ଧି ମୁଗାର ମେଖଳା ଚାଦର ପିନ୍ଧି ସୁନ୍ଦର ଭାବରେ ଢ଼ୋଲ ଓ ପେଁପାର ତାଳେ ତାଳେ ନାଚିଥାଆନ୍ତି । ଆସାମରେ ଏହି ନାଚନୀ ବା ନାଚୁଣୀଙ୍କର ରୂପ ଓ ନାଚର ବର୍ଣ୍ଣନା ବିହୁଗୀତରେ ଗୁଣିବାକୁ ମିଳିଥାଏ । ସେମାନଙ୍କର ରୂପବର୍ଣ୍ଣନା ସହିତ ବେଶଭୂଷାର ବର୍ଣ୍ଣନା ତଥା ନାଚର ଶୈଳୀ ଆଦି ସରଳ ସୁନ୍ଦର ଲୋକଗୀତରେ ଶୁଣାଯାଇଥାଏ । ବିହୁତଳିରେ ଢ଼ୋଲ ଓ ପେଁପା ଶବ୍ଦ ଶୁଣି ଯୁବତୀମାନେ ଭାବବିହ୍ୱଳ ହୋଇ ନାଚୁଣୀ ବେଶରେ ଯାଇ ବିହୁତଳିରେ ପହଞ୍ଚିଥାଆନ୍ତି । ଢ଼ୋଲ ଓ ପେଁପା ସହିତ ସମତା ରଖି ମୁଣ୍ଡରେ ଧଳା ଗାମୁଛା ପକେଇ ଯୁବତୀମାନେ ନାଚିବାକୁ ଆରମ୍ଭ କରିଦିଅନ୍ତି । ଗାମୁଛାରେ ଥିବା ନାଲି ଫୁଲଗୁଡ଼ିକ ଅତି ସୁନ୍ଦର ଦେଖାଯାଏ । ନାଚୁଣୀମାନେ ଅଣ୍ଟା ହଲେଇ ଘୂରି ଘୂରି ନାଚିଲାବେଳେ ମୁଣ୍ଡରେ ନାଲିଫୁଲ ପକାଧଳା ଗାମୁଛା ଯେପରି ମୟୂର ପକ୍ଷୀର ଲାଞ୍ଜ ଭଳି ଶୋଭା ପାଉଥାଏ ।

ଇ'ଟୋ ପର୍ବତତ କୁକୁରା କାଟିଲେ
ସିଁଟୋତଗୈ ପରିଲା ତେଜ;
ନାଚନୀର ମୂରରେ ଗୁଟି ଫୁଲର ଗାମୋଛା
ଯେନେ ମ'ରା ଚରାଇର ନେଜ ।

ବିହୁତଳିରେ ଯୁବତୀମାନଙ୍କ ସହିତ ଛୋଟ ଝିଅମାନେ ମଧ୍ୟ ଯାଇ ବିହୁର ମୁଗା ମେଖଳା ଚାଦର ପିନ୍ଧି ନାଚୁଥାଆନ୍ତି । ନିଜର ବଡ଼ଭାଇ ପ୍ରେମିକାକୁ ନାଚୁଣୀମାନଙ୍କ ଭିତରେ ଖୋଜୁଖୋଜୁ ହଠାତ୍ ଛୋଟ ଭଉଣୀକୁ ନାଚୁଣୀର ବେଶ ପୋଷାକରେ ଦେଖି ଖୁସୀ ହୋଇଯାଏ । ଚାଦର କାନିରେ ସୁନାର୍ଗ ଜାଠିଟିଏ ବାନ୍ଧି ସୁନ୍ଦର ଭାବରେ ନାଚୁଥିବାର ଛୋଟ ଭଉଣୀକୁ ଦେଖି ଢ଼ୋଲ ବଜାଇ ବଜାଇ ସ୍ନେହର ଭଉଣୀକୁ ଲକ୍ଷ୍ୟକରି ଢ଼ୋଲିଆ ଗାଏ ।

ବିହୁତଳିର ନାଚନୀ କୋନ ସମନୀୟ ।
ବିହୁତଳୀର ନାଚନୀ କୋନ;
ବିହୁତଳୀର ନାଚନୀ ଆମାର ସରୁଭନୀ
ଆଁଚଲତ ବାନ୍ଧିଛେ ସୋନ ।

ଢ଼ୋଲର ତାଳେ ତାଳେ ନାଚୁଣୀମାନେ ନାଚ ଆରମ୍ଭ କରି ଦିଅନ୍ତି । ପ୍ରଥମେ ଧୀରେ ଧୀରେ ଘୂରି ଘୂରି ପରେ ଜୋର୍‌ରେ ନାଚିଲାବେଳେ ନାଚୁଣୀ ଦୂରରୁ ଚକ୍ରି ଘୂରିଲା ଭଳି ଦେଖାଯାଆନ୍ତି । ନାଚୁଣୀ ସହିତ ଅଣ୍ଟାର ମେଖଳା ମଧ୍ୟ ଘୂରୁଥାଏ । ବିଭିନ୍ନ ରଂଗର ମେଖଳା ଓ ଚାଦର ପିନ୍ଧି ନାଚୁଣୀ ଖୁସୀ ମନରେ ନାଚୁଥାଏ । ପ୍ରଜାପତି ସଦୃଶ ତା'ର ମନ ଉଡିବୁଲେ । ନାଚୁଣୀର ନାଚ ଦେଖି ଢ଼ୋଲିଆର ମନର ଆନନ୍ଦ ଭାବ ଗୀତ ମାଧ୍ୟମରେ ଫୁଟି ଉଠେ ।

ଉଘାତ ଐ ଚକରୀ ଘୂରେ ସମନୀୟା
ଉଘାତ ଐ ଚକରୀ ଘୂରେ
ଆମାରେ ନାଚନୀ ନାଚିବଲୈ ଧରିଲେ
ପକ୍ଷିଲା ଉରାଦି ଉରେ ।

କିଛି ସମୟ ପରେ ଢ଼ୋଲିଆ ଢ଼ୋଲ ବଜାଇ ବଜାଇ ନାଚୁଣୀ ପାଖକୁ ପାଖକୁ ଲାଗି ଆସେ । ଫଳରେ ନାଚୁଣୀର ଆନନ୍ଦ ତଥା ଉତ୍ସାହ ବଢ଼ିବା ସ୍ୱାଭାବିକ ଅଟେ । ମୁହଁରେ ହସ ଫୁଟି ଉଠେ । ଆଖିର ଉଜ୍ଜଳତା ବଢ଼ି ଯାଏ, ମାତ୍ର ତା'ର ଲାଜ ଲାଜ ମୁହଁରେ ମନର ଭାବ ସଂପୂର୍ଣ୍ଣଭାବେ ବ୍ୟକ୍ତ କରିପାରେ ନାହିଁ । ନାଚୁଣୀର ଲାଜ ଲାଜ ଭାବ ଢୋଲିଆର ଆଖିରେ ଧରି ପଡ଼େ । ମୁହଁରେ ହସ ତଥା ଆଖିର ଉଜ୍ଜଳତା ଫୁଟି ଉଠିଲେ ହେଁ ତାହା ସ୍ପଷ୍ଟଭାବେ ପ୍ରକାଶ ପାଇନି । ଏହା ଏକ ବ୍ୟତିକ୍ରମ ଭଳି ଯୁବକର ମନରେ ଆଘାତ ହୋଇଥାଏ । ମନର ଅବସ୍ଥାକୁ ଖୋଲି କହିବା ପାଇଁ ଯୁବକଟି ଉଚିତ ମନେ କରେ ।

ଢ଼ୋଲତ ଚାପର ମାରି ଢୁଲିଆ ଓଲାଲେ
ନାଚନୀର ମୁଖ ଲୈ ସାଇ.
ମୁଖର ମିଶିକିନି ଚକୁର ଢ଼ିଲିକନି
ଜେଉତି ଜିଲିକା ନାଇ ।

କେହି କେହି ନାଚୁଣୀ ଆତ୍ମ ଅଭିମାନରେ ଗୋଟିଏ ଜାଗାରେ ଛିଡ଼ା ହୋଇ ରହନ୍ତି । ଢ଼ୋଲିଆ ଢ଼ୋଲ ବଜାଇ ବଜାଇ ଥକିଯାଏ, ଗୀତ ମାଧ୍ୟମରେ ଯେତେ କହିଲେ ବି ସେମାନେ ଉତ୍ତର ଦିଅନ୍ତି ନି କି ବିହୁତଳିରେ ଯୋଗ ଦିଅନ୍ତିନି । ଫଳରେ ଢ଼ୋଲିଆ ଭାବ ପ୍ରବଣ ନ

ଶବ୍ଦାର୍ଥ - ଚାପର - ତାଳି, ନାଇ-ଅନେଇ, ମିଶିକିନି - ହସ, ଚକୁର ଜିଲି କନି, ଆଖିର ଉଜ୍ଜଳତା, ଜେଉତି - ଦୀପ୍ତି. ଜିଲିକା-ଝଲସିବା, ଅଣ୍ଟାଭାଙ୍ଗି-ଅଣ୍ଟା ବଙ୍କା କରି ।

ହୋଇ ଜୀବନର ବାସ୍ତବତା ତଥା ମାନବଜୀବନର କ୍ଷଣ ସ୍ଥାୟିତ୍ୱ ବିଷୟରେ ନାଚୁଣୀଙ୍କୁ ସମ୍ବୋଧନ କରି କୁହନ୍ତି ।

ନାଚନାଚ ବୁଲିଲେ ନେନାଚା ନାଚନୀ
ତୋକେ ଜାନେ କହିବାର ପାୟ;
ଜୀବଟି ଯାବଗେ ଜମରଜାର ଥାନଲେ
ଶବ୍‌ଟି ଶଗୁନେ ଖାୟ ।

ଜୀବନଯେତେବେଳେ ହଜିଯାଇ ଜମରାଜା ପାଖକୁ ଚାଲିଯିବ, ସେତେବେଳେ ଏ ଶରୀର ମୂର୍ଦ୍ଧାରରେ ପରିଣତ ହେବ । ମଶାଣିରେ ଶାଗୁଣା ବସି ଖାଇବେ । ଯେଉଁମର ଶରୀର କ୍ଷଣ ସ୍ଥାୟୀ, ସେ ଶରୀରକୁ ନେଇ ଏତେ ଗର୍ବ, ଅହଙ୍କାର କାହିଁକି ? ଏ ସଂସାରରେ ଦୁଇଦିନ ପାଇଁ ମଣିଷ ଆସି ଜୀବନକୁ ଖୁସୀରେ ନ କଟାଇ ଆତ୍ମ ଅଭିମାନ ଭିତରେ କାହିଁକି ରହିବ । ମଣିଷ ଜବନର ଅପ୍ରିୟ ବାସ୍ତବ ତାର ଛବିକୁ ବିହୁଆଟି ବିହୁ ଗୀତରେ ଆଙ୍କ ଦେଇଥାଏ ।

କେହି କେହି ନାଚୁଣୀ ଆନନ୍ଦରେ ବିଭୋର ହୋଇ ନାଚନ୍ତି । ମନ ଖୋଲା ନାଚ ଭିତରେ ଶରୀରକୁ ଘୂରାଇ ଘୂରାଇ ନାଚିଲାବେଳେ ଢ଼ୋଲିଆ ମଧ ଖୁସୀ ମନରେ ଢ଼ୋଲ ବଜେଇ ବଜେଇ ତିନିଥର ଘୂରିଯାଏ । ନାଚୁଣୀର ପାଦର ତାଳରେ ପୃଥିବୀ ଥରିଯାଏ । ଜମିରେ ଧୂଳିହଜେ । ଆକାଶ ବିହୁଗୀତ ଓ ନାଚ ତଥା ଢ଼ୋଲ ଓ ପେଁପାର ଶବ୍ଦରେ କମ୍ପିଉଠେ । ଆନନ୍ଦମୁଖର ପରିବେଶ ମଧରେ ଲୋକମନ ଓ ପ୍ରାଣ ଏକ ହୋଇଯାଏ । ଏହି ଭଳି ଅବସରରେ ଢ଼ୋଲିଆ ଓ ନାଚୁଣୀର ମନ ବହୁଦୂରକୁ ଚାଲିଯାଏ ।

ନାଚନୀ ନାଚିଲେ ପୃଥିବୀ ଲରିଲେ
ମାଟିତ ହରିଲେ ଧୂଳି;
ତୋମାରେପଦୂଲିତ ମାରେ ତିନିପାକ
କଟାରୀ ହେରାଲେ ବୁଲି ।

ନାଚୁଣୀର ନାଚଦେଖି ଢ଼ୋଲିଆ କହୁଛି ମୁଁ ତୁମ ଅଗଣାରେ ତିନିଥରଘୂରି ଘୂରି ନାଚିଲି । ଏତେ ଖୁସୀ ଭିତରେ ମୋର ଅଣ୍ଟାର କଟୁରୀଟା କେଉଁଠି ହରାଇଲି । ନାଚୁଣୀ ନାଚୁ ନାଚୁ ଧୂଳି ହଜି ବିହୁତଳି ଧୂଳିମୟ ହୋଇଯାଏ । ବିହୁତଳିର ନାଚଦେଖି ବିବାହିତ ନାରୀମାନେ ମଧ ଖୁସୀରେ ଯୋଗ ଦେଇ ଥାଆନ୍ତି । ଛୋଟ ଝିଅଙ୍କଠାରୁ ଆରମ୍ଭ କରି ଯୁବକଯୁବତୀ ତଥା ଗୃହିଣୀ ଓ ବୁଢ଼ାବୁଢ଼ୀମାନେ ଖୁସୀରେ ନାଚିବାକୁ ଆରମ୍ଭ କରନ୍ତି । ନାଚୁ

---

**ଶବ୍ଦାର୍ଥ :** ବୋଇତା - ବିବାହିତ, ଜୁମିଜୁମି - ଝୁଙ୍କିଝୁଙ୍କି, ମୋରଜନୀ - ମୋ ଗୃହିଣୀ ଜଣଙ୍କ,

ନାଚୁ ବହୁ ସମୟ ପାର ହୋଇଯାଏ । ତଥାପି ବିହୁନାଚ ବନ୍ଦହୁଏ ନାହିଁ । କେହି ଜଣେ ନାରୀର ସ୍ୱାମୀ ଖୁସୀରେ ଉଙ୍କିମାରି ବାରମ୍ବାର ନାଚୁଣୀମାନଙ୍କ ଭିତରୁ ସ୍ତ୍ରୀକୁ ଖୋଜିଥାଏ । ଢ଼ୋଲିଆର ତା' ଉପରେ ଆଖି ପଡ଼ିବାରୁ ଗୀତରେ ସ୍ୱରଧରି ଢ଼ୋଲିଆ ଗାଏ -

ନାଚେଁତେ ଉରିବର ଧୂଳି ସମନୀୟା
ନାଚେଁତେ ଉରିବର ଧୂଳି;
ବେଇତା ସ୍ୱାମୀୟେ ଚାୟ ଜୁମି ଜୁମି
ମୋର ଜନୀ ଆହିଛେ ବୁଲି ।

ସମୟ ସମୟରେ ନାଚୁଣୀଟି ବିହୁତଳିରେ ନାଚିଲାବେଳେ ଢ଼ୋଲିଆଜଣକ ହୁଏତ ତା'ର ପରିଚିତ ହୋଇ ନପାରେ ମାତ୍ର ନାଚିଲାବେଳେ ତା'ର ରୂପ ଓ ନାଚରେ ଆକୃଷ୍ଟ ହୋଇ ଢ଼ୋଲିଆଟି ତା' ପ୍ରେମ ଫାନ୍ଦରେ ପଡ଼େ, ତା'ର ମାନସିକ ଅସ୍ଥିରତା ଦେଖାଦିଏ । ନାଚୁଣୀର ନାଚ ଦେଖି ଢ଼ୋଲିଆ ହାତରେ ତାଳ ଠିକ୍‌ରେ ପଡ଼େ ନାହିଁ । ଏକଥା ଦର୍ଶକମାନେ ଅନୁଭବ କରିଥାଆନ୍ତି ।

ଟେକେଲୀ ପରିଲେ ନାଦତ ଐ ନାଚନୀ
ଟେକେଲୀ ପରିଲେ ନାଦତ;
ଆମାରେ ନାଚନୀ ଲର ମାରି ସାରିଲେ
ଢୁଲିଆ ପରିଲେ ଫାନ୍ଦତ ।

ମାଠିଆ ଥରେ କୂଅରେ ପଡ଼ିଗଲେ ଯେମିତି ପାଣି ଭିତରେ ବୁଡ଼ିଯାଏ । ସେମିତି ନାଚୁଣୀ ନାଚି ନାଚି ଶେଷରେ ଢ଼ୋଲିଆର ପ୍ରେମ ଫାନ୍ଦରେ ପଡ଼ି ସଂପୂର୍ଣ୍ଣ ଭାବେ ନିଜକୁ ଆୟତ୍ତ ଭିତରେ ରଖିପାରେ ନାହିଁ । ଏଠାରେ ଅସମୀୟା ଲୋକମନର ରସିକତା ଏବଂ ରାତିବିହୁର ମାଦକତା ବିଷୟରେ ଅଭାସ ମିଳିଥାଏ ।

ନାଚରେ ନାଚୁଣୀର ସ୍ଥାନ ସ୍ୱତନ୍ତ୍ର ଅଟେ । ନାଚୁଣୀ ଯଦି ଅଧିକ ପାରଙ୍ଗମ ହୋଇନଥାଏ ତାଁ ହେଲେ ନାଚ ଅଧିକ ଆକର୍ଷଣୀୟ ହୁଏ ନାହିଁ । କେବଳ ନାଚୁଣୀ ନାଚରେ ନିପୁଣ ହେଲେ ହେବ ନାହିଁ, ସେ ଦେଖିବାକୁ ସୁନ୍ଦର ହୋଇଥିବା ନିହାତି ଆବଶ୍ୟକ । ଅସମୀୟା ନାରୀର ରୂପ ଓ ରଂଗକୁ ଭଗବାନ ଯେପରି ଅଧିକ ସୁନ୍ଦର କରି ଗଢ଼ିତୋଳିଛନ୍ତି, ସେହିପରି ତା'ର ମନକୁ କୋମଳ କରିଛନ୍ତି । ନାଚୁଣୀର ଦେହର ଓ ମୁହଁର ସୌନ୍ଦର୍ଯ୍ୟ, ଆଖିର ଉଜ୍ଜ୍ୱଳତା ବିହୁଗୀତ ଗୁଡ଼ିକରେ ପ୍ରକାଶ ପାଇଛି । କବିର ବର୍ଣ୍ଣନାରେ ନାରୀଟି ଏପରି ସୁନ୍ଦର ଦେଖାଯଉଛି ଯେ ତା' ମୁହଁକୁ ଅନେଇ ହେବନି ।

**ଶବ୍ଦାର୍ଥ :** ଟେକେଲୀ - ଠେକି ବା ମାଠିଆ, ନାଦ - କୂଅ, ନଲ-ତୃଣ, ଗଜାଲି-ଗଜା, ମୂର-ମୁଣ୍ଡ, ପିଖିଲା-ପ୍ରଜାପତି, ଉରେ-ଉଡେ ।

''ନାଚନୀର ଚକୁଲି ଚାବକେ ନୋଆରି
ଜାଲୁକ ଜଲକୀୟାଇ ପୋର'' ।

ନାଚୁଣୀ ନାଚି ନାଚି ହାଲିଆ ହୋଇଯାଏ । ତଥାପି ତା'ର ବିରକ୍ତିଭାବ ଆସେ ନାହିଁ । ସେ ସେମିତି ଢ଼ୋଲର ତାଳେ ତାଳେ ନାଚି ଚାଲିଥାଏ । ନାଚୁଣୀର ନାଚକୁ ଦର୍ଶକମାନେ ଖୁସୀମନରେ ଉପଭୋଗ କରନ୍ତି । ନାଚୁଣୀ ପ୍ରତି ଦର୍ଶକ ମୁହଁରୁ ପ୍ରଶଂସା ଝରିପଡ଼େ । ପ୍ରେମିକର ମନରେ ସନ୍ଦେହ ଆସେ, ଯଦି ନାଚୁଣୀଟି ଏମିତି ନାଚିନାଚି ରାତି କଟାଇଦେବ, ହୁଏତ ତା'ର ରୂପ ଓ ନାଚରେ ଆକୃଷ୍ଟ ହୋଇ ଆଉ କେହି ଲୋକ ତାକୁ ପସନ୍ଦ କରି ଜୀବନସାଥି କରିନେବ । ସେତେବେଳେ ପ୍ରେମିକଟି ତା'ବିନା ବଞ୍ଚିବ କେମିତି ? ଏକଥା ଭାବି ଭାବି ତା'ର ମାନସିକ ଅସ୍ଥିରତା ବଢ଼ିଯାଏ । ସେ ଦୁଃଖରେ ମନର ଭାବକୁ ପ୍ରକାଶ କରିଦିଏ ।

ଆମାରେ ନାଚନୀକ କୋନେ ଯଦି ଧରି ନିଏ
ଆମି କା'ର ଲଗତେ ଥାକୋଁ ?

**ନାଚୁଣୀର ରୂପ ବର୍ଣ୍ଣନା -** ସମୟଚକ୍ରରେ ପ୍ରକୃତିର ପରଶରେ ଆନନ୍ଦ ମୁଖରିତ ହୋଇ ଉଠୁଥିବା ଅସମୀୟା ଜାତିର ପ୍ରାଣର ଉଚ୍ଛ୍ୱାସର ସ୍ୱୀକୃତି ବିହୁଗୀତ ହୋଇଥାଏ । ଆନନ୍ଦର ଅନୁଭୂତି ଦୈହିକ ଚଞ୍ଚଳତା ମାଧ୍ୟମରେ ପ୍ରକାଶ ପାଇଥାଏ । ମନ ବେଳେବେଳେ ଛଟପଟ ହୁଏ । ଦେହଟା ଆନନ୍ଦରେ ନାଚି ଉଠେ । ମନ କୁରୁଳି ଉଠେ । ସେଥିପାଇଁ ଢ଼ୋଲର ତାଳେ ତାଳେ ଥରଟେ ନିଜେ ନାଚି ଏବଂ ନାଚୁଣୀକୁ ନଚାଇବା ପାଇଁ ପ୍ରାଣଟା ବ୍ୟାକୁଳ ହୋଇଉଠେ । ବିନା ନାଚୁଣୀରେ ବିହୁନାଚ ଜମେ ନାହିଁ । ନାଚୁଣୀର ମନ ପ୍ରଜାପତି ଭଳି ଉଡି ବୁଲୁଥାଏ । ସେ ନାଚୁଣୀ ନାଚକୁ ବେଉଷା ଭାବେ ଗ୍ରହଣ କରିଥିବା ନାଚୁଣୀ ନୁହେଁ । ଢ଼ୋଲ ବଜାଉଥିବା ପ୍ରେମିକ ପୁରୁଷର ମନର ମଣିଷ ବି ହୋଇପାରେ । ବିହୁଗୀତ ଗୁଡ଼ିକରେ ନାଚୁଣୀର ରୂପର ବର୍ଣ୍ଣନା ଉଜ୍ଜଳଭାବେ ଫୁଟି ଉଠିଛି ।

ନୈର ପାରେ ପାରେ ନଲରେ ଗଜାଲି
ତା ତେ କ'ଲା ଗରୁ ଚରେ;
ନାଚନୀର ମୂରତେ ଗୁଟି ଫୁଲର ଗାମୋଛା ।
ପଖିଲା ଉରାଦି ଉରେ ।

ନଦୀର କୂଳେ କୂଳେ ଛୋଟ ଛୋଟ ତୃଣଗୁଡ଼ିକ ଗଜିବାରୁ ବହୁତ ସୁନ୍ଦର ଦେଖାଯାଇଥାଏ ସେଠାରେ କଳାଗୋରୁ ଖୁସୀ ମନରେ ଚରେ । ନାଚୁଣୀର ମୁଣ୍ଡରେ ଧଳରାରଂଗର ଗାମୁଛାରେ ନାଲିରଂଗର ଫୁଲ ମଧ୍ୟ ନାଚର ତାଳେ ତାଳେ ଉଡୁଥାଏ । ନାଚୁଣୀର ନାଚ ଭିତରେ ଗାମୁଛାଟି ପ୍ରଜାପତିଟିଏ ହଲିଲା ଭଳି ଦେଖାଯାଏ ।

ଜାଲୁକ - ଗୋଲମରିଚ, ଜଲକୀୟା - ଲଙ୍କା, ଥାକୋଁ - ରହିବି । କଳଙ୍ଗ ଉରହୀ- ଜଳାଶିମ୍ବ

ଅସମୀୟା ନାରୀର ପାରମ୍ପରିକ ବସ୍ତ୍ରରୂପେ ମୁଗାପାଟର ମେଖଳା ଓ ଚାଦର ପିନ୍ଧି, ବକ୍ଷଦେଶକୁ ଆବୃତ୍ତ କରିବା ପାଇଁ ଛାତିରେ ରିହା ଭିଡ଼ି ହାତରେ ଗାମଖଡୁ, କାନରେ କେରୁମଣି, ଗଳାରେ ଜୋନବିରି, ହାତରେ ମଞ୍ଜୁଆତି ରଂଗ ଓ ଖୋଷାରେ କପୌଫୁଲ ପିନ୍ଧି ସୁନ୍ଦର ଭାବରେ ସଜ୍ଜିତ ହୋଇ ଯୁବତୀଟି ଯେତେବେଳେ ବିହୁତଳିରେ ଉପସ୍ଥିତ ହୁଏ, ଯୁବକର ହାତରେ ଢ଼ୋଲଟି ସମୟ ବା ଦର୍ଶକଙ୍କ ଭିଡ଼କୁ ଅପେକ୍ଷା ନ କରି ବାଜି ଉଠେ । ଆଖିରେ କଜ୍ଜଳର ଦୁଇଧାର ଓ ଓଠର ନାଲିରଂଗ ଭିତରେ ଯୁବକଟି ପ୍ରତିଥିବା ଆକର୍ଷଣ ଗୁଞ୍ଜରଣ ସୃଷ୍ଟି କରେ ।

ଅଣ୍ଟାକୁ ନଟୁ ଭଳି ଘୁରେଇ ଘୁରେଇ ନାଚୁଣୀ ଗୀତ ଗାଇବାକୁ ଆରମ୍ଭ କରେ ।

ଘରେ ତୋ ନ ରହେ ମନ ସମନୀୟା
ପଥାରତେ ନ ରହେ ମନ;
ଙ୍କମୋଆ ତୁଲାବୋର ଯେନେକୈ ଉରିଛେ
ତେନେକୈ ଉରିବର ମନ ।

ନା ଘରେମନ ରହୁଛି ନାଁ ଚାଷଜମିରେ ମନ ରହୁଛି । ଶିମୁଳି ତୁଳା ପବନରେ ଉଡ଼ିଲା ଭଳି ମନଟା ବହୁଦୂରକୁ ଉଠିଯିବା ପାଇଁ ଇଚ୍ଛା କରୁଛି ।

ବାରୀରେ ଡ଼ାପରେ  କଜଲା ଉରହୀ
ପାତେ ତିରେ ବିରେ କରେ;
ନାଚନୀର ମୁଖଲୈ  ଚାବକେ ନୋଆରି
ଚକୁ ଛାଟେ ମାରି ଧରେ ।

ବାଡ଼ିରେ କଳାରଂଗର ଶିମ୍ବଗଛର ପତ୍ରଗୁଡ଼ିକ ପବନରେ ଅସ୍ତବ୍ୟସ୍ତ ହେଲା ଭଳି ନାଚୁଣୀର ମୁହଁକୁ ଅନେଇ ହେବନି, ଆଖି ଦୁଇଟି ବ୍ୟସ୍ତ ଓ ବିବ୍ରତ କରିପକାଏ । ଆଖିର ଉଜ୍ଜ୍ୱଳ କାନ୍ତିକୁ ସିଧାସଳଖ ଭାବେ ଅନେଇ ହୁଏନି ।

କ'ଳା ଚୋଲା କୁରୁଟା  ଗୁଦାମ ଆଛେ ଚାରିଟା
ଚାରିକୋ ଚାରିଯେ ଚରେ;
ନାଚନୀର ମୁଖଲୈ  ଚାବକେ ନୋଆରି
ଜାଲୁକ ଜ୍ଞଲକୀଯାଇ ପୋରେ ।

**ବିହୁଗୀତରେ ସାହିତ୍ୟକ ସୌନ୍ଦର୍ଯ୍ୟ -**

ଇଂରାଜୀ ସାହିତ୍ୟର ବାଲାଡ୍ ଏବଂ ପୃଥିବୀର ଅନ୍ୟାନ୍ୟ ରାଜ୍ୟର କବିତା ଗୁଡ଼ିକ ଭଳି ଆସାମର ବିହୁଗୀତ ଗୁଡ଼ିକରେ ପ୍ରକୃତିର ଶୋଭାରେ ପିଲାବେଳର ସରଳ ଆନନ୍ଦ

ଏବଂ ସରଳ ପ୍ରାଣର ବିମଳ ନୈସର୍ଗିକ ସନ୍ତୋଷ ଦେଖିବାକୁ ମିଳିଥାଏ । ଆସାମର ପ୍ରକୃତି ସତରେ ଅନୁପମ । ଗଛଲତାରେ ବସନ୍ତର ପରଶଲାଗିଲେ ମନୋମୁଗ୍ଧକର ଦୃଶ୍ୟ ସୃଷ୍ଟି ହୁଏ ଯାହାକୁ କେବଳ ଅନେଇ ରହିବାପାଇଁ ମନ ହୁଏ । ଏହି ପ୍ରାକୃତିକ ଶୋଭାର କଥା ବିହୁଗୀତରେ ଅନାମୀ ଗୀତିକାରମାନେ ଅତ୍ୟନ୍ତ ସୁନ୍ଦର ଭାବେ ପ୍ରକାଶ କରିଛନ୍ତି । ସେଇଥିପାଇଁ ବହୁଗୀତ ଗୁଡ଼ିକରେ ପ୍ରେମ ଓ ପ୍ରଣୟର ଚିତ୍ର ଜୀବନ୍ତ ଭାବେ ପ୍ରକାଶିତ ହୋଇ ଥାଏ । ବିଭିନ୍ନ ଅଳଙ୍କାରରେ ବିହୁଗୀତ ଗୁଡ଼ିକ ମଣ୍ଡିତ ହୋଇଛି । ଲୋକକବିର କଳ୍ପନା ଭିତରେ ଏକ ଅପୂର୍ବ ଲୋକସାହିତ୍ୟ ସୃଷ୍ଟି ହୋଇପାରିଛି । ଯାହା ମଧ୍ୟ ଯୁଗୀୟ କବିର ସୃଷ୍ଟିଭଳି ଅଳଙ୍କାରରେ ଭାରାକ୍ରାନ୍ତ ହୋଇ ନାହିଁ ଯଦିଓ ନିଜର ସୌଷ୍ଠବ ମଣ୍ଡିତ କରିପାରିଛି ।

**ନାରୀସୌନ୍ଦର୍ଯ୍ୟ ଏବଂ ନାରୀଚରିତ୍ର** - ବିହୁଗୀତର ପ୍ରଧାନ ସ୍ୱର ପ୍ରଣୟ ହୋଇଥିବା ଯୋଗୁ ଅସମୀୟା ନାରୀର ସୌନ୍ଦର୍ଯ୍ୟ ଏବଂ ନାରୀଚରିତ୍ର ହିଁ ମୁଖ୍ୟତଃ ବିହୁଗୀତ ଗୁଡ଼ିକରେ ସୁନ୍ଦର ଭାବେ ପ୍ରକାଶ ଲାଭ କରିଛି । ନାରୀର ରୂପରଂଗର ବର୍ଣ୍ଣନା ସହିତ ତା'ର ମାନ ଅଭିମାନ, ପ୍ରଣୟ ତଥା ବିରହର ଛବି ଫୁଟି ଉଠିଛି । ନାରୀର ରୂପ ସହିତ ପ୍ରକୃତିର ପ୍ରଭାବ ଏବଂ ତା'ର ବେଶପୋଷାକ ଓ ଅଂଗରାଗ ବିହୁଗୀତରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । କେବେ କେବେ ପ୍ରେମିକର ମୁହଁରେ ପ୍ରେମିକାଟି ମଇନା, ଲାହରୀ ଆଦି ସମ୍ବୋଧନ ଗୁଡ଼ିକ ଭିତରେ ଅଧିକ ସ୍ନେହମୟୀ ପ୍ରଣୟିନୀର ପରିଚୟ ଦେଇଛି । ଏହା ସହିତ ବିହୁଗୀତ ଗୁଡ଼ିକରେ ଅସମୀୟା ଖଣ୍ଡବାକ୍ୟ ଏବଂ ବିଭିନ୍ନ ଜାତିର ଢ଼ାଞ୍ଚାର ପ୍ରୟୋଗ ସ୍ମରଣଯୋଗ୍ୟ ଅଟେ । ବିହୁଗୀତରେ ଇତିହାସର କଥା, ପ୍ରକୃତିର ଭୌଗୋଳିକ ପରିବେଶର ଛବି ଏବଂ ଅଳଙ୍କାରର ପ୍ରୟୋଗ ମାଧ୍ୟମରେ ସାହିତ୍ୟିକ ସୌନ୍ଦର୍ଯ୍ୟ ଉଚ୍ଚକୋଟୀରର ହୋଇଉଠିଛି ।

**ଅଳଙ୍କାର ର ପ୍ରୟୋଗ** - ବିହୁଗୀତ ମୁଖ୍ୟତଃ ଯୌବନର ଗୀତ, ପ୍ରେମ ଓ ପ୍ରଣୟର ଗୀତ । ଲୋକକବିର କେତେଗୁଡ଼ିଏ ଗୀତରେ ଦୁର୍ବାର ଯୌନ ଆକାଙ୍‌କ୍ଷା ଅତି ମାତ୍ରାରେ ପ୍ରକାଶ ପାଇଥିବା ଦେଖାଯାଏ । ଚୈତ୍ର ବା ବହାଗ ବିହୁ ଖେଳିଲାବେଳେ ଯୁବକମାନେ ଯୁବତୀକୁ ତଥା ଯୁବତୀମାନେ ଯୁବକମାନଙ୍କୁ ନିଗୂଢ଼ ପ୍ରେମରେ ଆବଦ୍ଧ କରି ଚିରଦିନ ପାଇଁ ନିଜର କରିବା ପାଇଁ ଇଚ୍ଛା କରନ୍ତି । ସେଥିପାଇଁ ଯୁବକ ଯୁବତୀମାନଙ୍କର ବିହୁଗୀତ ଗୁଡ଼ିକରେ ଆଦିରସର ପ୍ରାଧାନ୍ୟ ଅଧିକ ଅଟେ । ବିହୁଗୀତ ଗୁଡ଼ିକରେ ଅତି ସୁନ୍ଦର ଭାବେ ବିପ୍ରଲମ୍ଭର ପୂର୍ବରାଗ ପ୍ରକାଶ ପାଇଥାଏ । ବିପ୍ରଲମ୍ଭ ଆଦିରସର ଗୋଟିଏ ଭାଗ, ମିଳନ ନ ହେବା ଅବସ୍ଥାକୁ ବିପ୍ରଳମ୍ଭ କୁହାଯାଏ । ବିପ୍ରଲମ୍ଭର ଚାରୋଟି ଭାଗ ରହିଛି ଯେପରି ପୂର୍ବରାଗ, ମାନ, ପ୍ରବାସ ଏବଂ କାରୁଣ୍ୟ । ନାୟକନାୟିକାର ପରସ୍ପର ରୂପ ଗୁଣ ଆଦି ଦର୍ଶନ ବା ଶ୍ରବଣରୁ ଯେଉଁ ଅନୁରାଗ ପ୍ରକାଶ ପାଏ ତା'କୁ ପୂର୍ବରାଗ କୁହାଯାଇଥାଏ । ତା'ର ଗୋଟିଏ ଉଦାହରଣ ନିମ୍ନରେ ରକ୍ମିଣୀହରଣ କାବ୍ୟରୁ ଦିଆଯାଇଛି ।

ପୂର୍ବରାଗ - ଶୁନିୟା କନ୍ୟାର ହେନ କଥା ନାରାୟଣ ।
କେତିକ୍ଷଣେ ପାଇବୋ ଉତ୍ରାବ୍‌ଲ କରେ ମନ ।।
ହୃଦୟତ ପୀଡ଼େ ମଦନର ପଞ୍ଚବାଣ ।
ରାତ୍ରିଦିନେ ରକ୍ମିଣୀକ କରନ୍ତି ଧିୟାନ ।।
ତେହେନ୍ତେସେ ହୈବ ମୋର ଭାର୍ଯ୍ୟା ପ୍ରାଣେଶ୍ୱରୀ ।
କୋନ ବୁଦ୍ଧି ପାଇବୋ ଆବେ ରକ୍ମିଣୀ ସୁନ୍ଦରୀ ।।
ନାହିଁ ସୁଖ ଶାନ୍ତି ମନେ ନୁରୁଚଇ ଭାତ ।
ଉଗୁଲ ଥୁଗୁଲ ନିଦ୍ରା ନାସନ୍ତ ନିଶାତ । (ର ! ହ!)

ବିହୁଗୀତରେ ଏହିଁ ଭଳି ଭାବେ ବିପ୍ରଲମ୍ଭର ପୂର୍ବରାଗର ଉଦାହରଣ ଅସଂଖ୍ୟ ଅଟେ ।

୧ - ତୋମାରେ ବାରୀତେ କଲାପାତ କାଟିଲୋଁ
ଆଗଲି ଆଗଲି ଚାଇ
ବିହୁରେ ତଳିତେ ତୋମାକ ବାଛି ଲଲୋଁ
କଁକାଲ ଖାମୃଚୀୟା ପାଇ ।।

ପ୍ରେମିକାର ରୂପକୁ ଦେଖି ପ୍ରେମିକଟି କହୁଛି ହେ ପ୍ରିୟତମା, ତୁମ୍ ବାଡ଼ିରୁ ମୁଁ ଥରେ କଦଳୀ ପତ୍ର କାଟିବା ପାଇଁ ଯାଇଥିଲି, କେବଳ ମଞ୍ଜିପତ୍ର ଦେଖି ଦେଖି କାଟିଲି । ବିହୁତଳିରେ ସେହିଭଳି ଭାବେ ତୋ'ର କ୍ଷୀଣକଟୀକୁ ଦେଖି ଆକୃଷ୍ଟ ହୋଇ ତତେ ଚିରଦିନ ପାଇଁ ଜୀବନ ସାଥି ରୂପେ ପସନ୍ଦ କଲି ।

୨ - ଦେଖିବଲୈ ଶୁବ୍‌ନି ତୋମାର ବୁକୁଖନି
କୁମଲୀ ୟା ତାମୋଲର ଥୋକ;
ମିଶିକିୟା ହାଁହିଟା ଲାହରି ଓଁଠତେ
କୋନ ମତେ ଏରି ଯାମ ଲ୍ତୋକ ।

ହେ ପ୍ରିୟା ତୋ'ର ବକ୍ଷଦେଶ ଅତ୍ୟନ୍ତ ସୁନ୍ଦର ଅଟେ । ସତେ ଯେପରି କୋମଳ ଗୁଆପେଣ୍ଡାଟିଏ, ଯାହା ପ୍ରତିଟି ଅସମୀୟାର ଅତି ପ୍ରିୟ ଅଟେ । ତା'ଠୁ ସୁନ୍ଦର ତୋ ଓଠର ଦରଫୁଟାହସ ଟିକକ । ମୁଁ ତୋତେ କେମିତି ଛାଡି ରହିବି ।

ସମୟ ଚକ୍ରରେ ପ୍ରେମର ଚକ୍ର ଘୁରି ବୁଲେ । ପ୍ରେମ ଜାଲରେ ପଡ଼ି ଜଣେ ଜଣକୁ ନ ଦେଖି ରହିପାରେନି । ଯାହାକୁ ତା'କୁ ନିଜ ପ୍ରିୟା ବିଷୟରେ ପଚାରିଥାଏ, ମାତ୍ର ପ୍ରେମିକା

---

କଲାପାତ- ପଦଲୀପତ୍ର, ଆଗଲି-ଅଗପତ୍ର, ଖାମୃଚୀୟା - ସୁନ୍ଦର ଓ କ୍ଷୀଣ କଟି, ଶୁବ୍‌ନି - ସୁନ୍ଦର, ତାମୋଲର ଥୋକ - ଗୁଆ ପେଣ୍ଡା, ମିଶିକିୟା ହାଁ ହି ଆନନ୍ଦଦାୟକ ଦରଫୁଟା ହସ, ରାଙ୍ଗଲୀ - ରକ୍ତବର୍ଣ୍ଣାସ୍ତ୍ରୀ, ବେଲି - ସୂର୍ଯ୍ୟ

ବିଷୟରେ କାହାଠୁ କିଛି ଖବର ନ ପାଇ ବିରହ ଯନ୍ତ୍ରଣାରେ ଛଟପଟ ହୋଇଗାଏ -

ତୋଲୋ ଚାଇ ରାଙ୍ଗଲୀ ବାନ୍ଧି ଯାଉଁ
ଡ଼ାଙ୍ଗରି ଗଢ଼ା ଚପାଇ ବାନ୍ଧି ଯାଉଁ ନାଓ
ଗା ଚମେଚମାଇ ଦେହା ଟନେଟନାଇ
ତୋକନୋ କାହାନିକେଁ ପାଉଁ ।

ପ୍ରେମିକଟି ପ୍ରିୟାର ଆସିବା ବାଟକୁ ଅନେଇ ଅନେଇ ମଧ ଧୈର୍ଯ୍ୟହରା ହୋଇନାହିଁ । ପ୍ରିୟା ଆସିବ ଏକଥା ନିଶ୍ଚିନ୍ତ ସତ୍ୟ ମାତ୍ର ଅପେକ୍ଷାରେ ଅନ୍ତନାହିଁ । ପ୍ରିୟା ଆସିବ । ଏହି ଖୁସୀରେ ଯୁବକଟି ନିଜ କର୍ମ ପଥରେ ଆଗେଇ ଯାଉଛି । ଖୁସୀରେ ବଡ଼ ଡଙ୍ଗାଟିକୁ ଟାଣିଟାଣି ନଦୀ କୂଳକୁ ଆଣି ବାନ୍ଧି ଦେଇଛି । ଦେହ ବେଳେ ବେଳେ ଆନନ୍ଦରେ କମ୍ପି ଉଠୁଛି ତ ପୁଣି କେବେ କେବେ ଶିତେଇ ଉଠୁଛି । ପ୍ରିୟା ଆସିବ । ଏକଥା ଭାବିଲେ ଆନନ୍ଦରେ ଅଧିର ହୋଇପଡୁଛି କିନ୍ତୁ କାହାଠୁ ବା ପ୍ରିୟା ଆସିବା ଖବର ପାଇବ ? ଶେଷରେ ନିଜ ମନକୁ ମାରି ପୁଣି କାମରେ ଲାଗି ଯାଉଛି ।

ସମୟ ଗଡ଼ିଯିବା ସଂଗେ ସଂଗେ ମିଳନର ବ୍ୟବଧାନ ମଧ ବେଶି ବେଶି ବଢ଼ି ଚାଲିଛି । ମନର ଅସହ୍ୟ ଯନ୍ତ୍ରଣାକୁ ପ୍ରିୟ ଲୋକଟି ପାଖରେ ପହଞ୍ଚାଇବାର ଆଶା ରଖି ସେ ବିରହପୂର୍ଣ୍ଣ ଗୀତ ଗାଇ ମନକୁ ଶାନ୍ତ୍ୱନା ଦେଇଥାଏ । ଶେଷରେ ସେ ସକାଳଠୁ ସନ୍ଧ୍ୟା ପର୍ଯ୍ୟନ୍ତ ପ୍ରିୟ ଆସିବା ପାଇଁ କଥା ଦେଇଥିବା ଜାଗାରେ ଅପେକ୍ଷା କରି ରହିଛି । ପୂର୍ବଦିଗର ସୂର୍ଯ୍ୟ ପଶ୍ଚିମଦିଗକୁ ଯାଆନ୍ତି । ଆକାଶରେ ବଗୁଲୀମାନେ ବସାକୁ ବାହୁଡ଼ି ଆସନ୍ତି ତଥାପି ଆଜି ମନ କଥା ପ୍ରିୟତମକୁ ଖୋଲି କହିବ ବୋଲି ସକାଳଠୁ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରି କରି ଶେଷରେ ଦେଖା ପାଇଲାନି । ମନର ଭାବ ଗୀତ ମାଧମରେ ଫୁଟି ଉଠିଛି -

ପୂବରେ ବେଲିଟି ପଶ୍ଚିମତ ଘୂରିଲେ ମଲୟାତ ଘୂରିଲେ ବଗ;
ମନର କଥାଟି ମନତେ ଘୂରିଲେ କବଲୈ ନାପାଲୋ ଲଗ ।

**ବିପ୍ରଲମ୍ଭର ମାନ - ଅଭିମାନ** - ଶୁଭସ୍ୟ ଶୀଘ୍ରମ୍ ନ ହେବା ଯୋଗୁ ପ୍ରେମିକ ପ୍ରେମିକାର ମନରେ ପରସ୍ପର ପ୍ରତି ସନ୍ଦେହ ଆସିଥାଏ । ଏହା ମାଧମରେ ସାହିତ୍ୟର ଆଦିରସର ବିପ୍ରଲମ୍ଭର ମାନ-ଅଭିମାନ ପ୍ରସ୍ଫୁଟିତ ହୋଇଥାଏ । ପ୍ରଣୟୀ-ପ୍ରଣୟୀନି ମଧରେ କିଏ ଅନ୍ୟଜଣେ ବାହାର ଲୋକକୁ ମନ ଦେଇଛି ଭାବି ମନରେ ସନ୍ଦେହ ଉପୁଜିଲେ ନିଜର ଲୋକଟିକୁ ଆପଣାର କରିବା ଉଦ୍ଦେଶ୍ୟରେ ନିଜଲୋକପ୍ରତି କେତେଗୁଡ଼ିଏ ଖରାପ ବାକ୍ୟର ପ୍ରୟୋଗ କରିଥାଏ ଯେପରି -

କିନୋ ଖାଇ ପାହରିମ ତୋକ ଐ ମଇନା
କିନୋ ଖାଇ ପାହରିମ ତୋକ;

ମିଶିମି ଆହିବ ବରବିହ ଆନିବ
ତାକେ ଖାଇ ପାହରିମ ତୋକ ।

ମିଶିମି ଜନଜାତିମାନେ ବରବିହ ବା ବିଷ ଆଣି ବିକ୍ରି କରନ୍ତି । ତା'କୁ ଖାଇ ପ୍ରେମିକଟି ତା'ର ପ୍ରିୟାକୁ ଭୁଲିବା ପାଇଁ କହିଛି । ନିଜ ଜୀବନକୁ ନିଜେ ନଷ୍ଟ କରିଦେବ ବୋଲି ପ୍ରିୟାକୁ କହିଛି । କେବଳ ସେତିକି ନୁହେଁ, ଜଙ୍ଗଲରେ କେହିବା ନିଃସଙ୍ଗ ପକ୍ଷୀ ତା'ର ସାଥିକୁ ନପାଇ ବିରହ ଯନ୍ତ୍ରଣାରେ ଛଟପଟ ହୋଇ କାନ୍ଦୁଛି ମାତ୍ର ସେ ତା'ର ଜୀବନକୁ ନିଜେ ଧ୍ୱଂସ କରିଦେବ । ଶଦିୟାର ରଣଭୂମିରେ ଯାଇ ମରିବ କାରଣ ତା'ର ପ୍ରିୟା ତାକୁ ଥରଟିଏ ବି ଦେଖାଦେଉନି । ତା'ମନରେ ଅଶାନ୍ତି ବେଳକୁ ବେଳ ବଢ଼ିଯାଉଛି । ସେଥିରୁ ରକ୍ଷା ପାଇବା ପାଇଁ ସେ ଶଦିୟା ରଣଭୂମିରେ ଆତ୍ମହତ୍ୟା କରିବ ବୋଲି ସ୍ଥିର କରିଛି ।

କି ଚରାଇ କାନ୍ଦିଲେ ବନତ ଐ ଲାହରି
କି ଚରାଇ କାନ୍ଦିଲେ ବନତ;
ତୋମାରେ ବେଜାରତ ଥାକିବ ନୋଆରୋଁ
ମରିମ ଗୈ ଶଦିୟା ରଣତ ।

**ବିପ୍ରଲମ୍ଭ ପ୍ରବାସ** - ସମୟ ତଥା ପରିସ୍ଥିତିକୁ ଦେଖି ମଣିଷକୁ ତା' ସହିତ ଖାପ ଖୁଆଇ ଚଳିବାକୁ ହେବ । ସେନାଇ ଯଦି କୌଣସି ସରକାରୀ ଚାକିରୀ କରି ଦୂର ଦୂରାନ୍ତରକୁ ଚାଲିଯାଏ, ସେନେହୀର ଆଖିରୁ ଆପେ ଆପେ ଲୁହ ଝରି ଆସେ । ଏହି କ୍ଷେତ୍ରରେ ବିପ୍ରଲମ୍ଭର ପ୍ରବାସ ପ୍ରକାଶିତ ହୁଏ । ଦୁଇଜଣ ପ୍ରଣୟୀ ପରସ୍ପରଠୁ ଦୂରରେ ରହିଲେ ଜଣକର ମନରେ ଯେଉଁ ଦୁଃଖ ଜନ୍ମିଥାଏ ତାକୁ ପ୍ରବାସ କୁହାଯାଏ । ବିହୁଗୀତରେ ବିପ୍ରଲମ୍ଭର ପ୍ରବାସ ଏହିଭଳି ପ୍ରକାଶିତ ହୋଇଛି ।

ଜାଲତ ବନ୍ଦୀ ହଲେ ଜାଲରେ ମକରା
ଶାଲତ ବନ୍ଦୀ ହେଲେ ହାତୀ,
ସରକାରୀ କାମତେ ସେନାଇ ବନ୍ଦୀ ହେଲେ
ଟୋପନି ନ ଧରେ ରାତି ।

ବୁଢ଼ିଆଣୀ ଜାଲରେ ବନ୍ଦୀ ହେଲା ଭଳି, ହାତୀ ଯନ୍ତା ଭିତରେ ବନ୍ଦୀ ହେଲା ଭଳି ପ୍ରିୟ ସେନାଇଟି ସରକାରୀ କାମ ବ୍ୟସ୍ତତା ଭିତରେ ବନ୍ଦୀ ହୋଇ ରହିଗଲା । ତା'କଥା ଭାବି ଭାବି ସେନେହୀର ଆଖିକୁ ନିଦ ଆସୁନି ନାହିଁ ।

---

**ଶବ୍ଦାର୍ଥ** - ବରବିହ - ବିଷ, ଲଗ - ସାକ୍ଷାତ, ସେନାଇ - ପ୍ରେମିକ, ସେନେହୀ - ପ୍ରିୟା, ମକରା-ବୁଢିଆଣୀ, ପାବଲୈ-ପାଇବାକୁ ।

କେବଳ ସେତିକି ନୁହେଁ, ଲୁଇତନଦୀର ଗୋଟିଏ ଧାର ଗୋଟିଏ ପଟେ । ଦିଖୌନଦୀର ଗୋଟିଏ ଧାର ଆଉ ଗୋଟିଏ ପଟେ ଗଲା ଭଳି ପ୍ରେମିକଟି ଗୋଟିଏ ପଟେ ଯାଉଛି । ପ୍ରିୟା ଅନ୍ୟ ଗୋଟିଏ ପଟେ ଅଛି । ସେ କଥା ଭାବିଲେ ଦେହ ଝିମ୍ ଝିମ୍ ହୋଇଯାଏ, ଛାତି ଦକ୍‌ଦକ୍ ହୁଏ ତଥାପି ପ୍ରିୟ ମଣିଷଟିକୁ ପାଖରେ ପାଏ ନାହିଁ ।

ଲୁଇତର ଏସୁଁତି ଦିଖୌର ଏସୁଁତି
ମୋର ଧନ ଏସୁଁତିୟେ ଯାୟ;
ଦେହା ରମେରମାଇ ବୁକୁହମେ ହମାଇ
ମୋର ଧନକ ପାବଲୌ ନାଇ ।

**ବିପ୍ରଲମ୍ଭର କାରୁଣ୍ୟରସ** - ପ୍ରେମିକ ପୁରୁଷ ପ୍ରେମିକାକୁ ସ୍ନେହରେ ମଇନା, ମଇନା ବୋଲି ବେଳେବେଳେ ଡ଼ାକିଲେ ହେ ପ୍ରେମିକା ଥରେ ବି ସ୍ନେହରେ ତାକୁ ଡ଼ାକେନି କି ଅନାଏନି । ଫଳରେ ପ୍ରେମିକର ମନରେ ବୈରାଗ୍ୟଭାବ ଆସିଲା । ପାଖରେ ଥିବା ଇଟାଭାଟି ଅଥବା ଶଦିୟାର ରଣକ୍ଷେତ୍ରକୁ ଯାଇ ମରିବ ବୋଲି ପ୍ରେମିକାକୁ ଧମକ ଦେଲା । ପ୍ରେମିକାଟି ମୁହଁରେ କିଛି କହି ନ ପାରିଲା ମଧ୍ୟ ବିରହ ବେଦନାରେ ଝୁରି ଝୁରି ମଲା ଭଳି ହୋଇଗଲା । ଦିନରାତି ଆଖିରୁ ପାଣି ଗଡ଼ାଇ ଗଡ଼ାଇ ପ୍ରେମିକର ଫେରିବା ବାଟକୁ ଅନେଇ ରହିଲା । ଏହିଠାରେ ବିପ୍ରଲମ୍ଭର କାରୁଣ୍ୟରସ ଉଦ୍ରେକ ହୋଇଛି ।

୧ - ନୈର ସିପାରେ କୋନେ ଜୁଇ ଦିଲେ
ଓପରେ ଉରିଗଲ ଛାଁଇ
ମୋରନୋ ଦେହତ ଐ କୋନେ ଜୁଇ ଦିଲେ
ବିଚନୀ ଧରୋତା ନାଇ ।

ନଈ ସେପଟରେ ଥିବା ଜଙ୍ଗଲରେ କିଏ ବା ନିଆଁ ଲଗାଇଲେ, ଜଙ୍ଗଲଟି ପୋଡ଼ି ଛାଇଖାର ହୋଇଗଲା । ପାଉଁଶ ଆକାଶକୁ ଉଡ଼ିଗଲା, ପ୍ରେମିକର ହୃଦୟରେ କିଏ ଅବା ନିଆଁ ଲଗେଇ ବହୁଦୂରକୁ ଚାଲିଗଲା । ସେ କେବଳ ତା ପାଇଁ ଦିନରାତି ଝୁରିଝୁରି ମରିବା ସମାନ ହେଲାଣି ଅଥଚ ତା'କୁ ବିଞ୍ଚିଦେବା ପାଇଁ କିମ୍ବା ତା'ମନରେ ଶାନ୍ତ୍ୱନା ଦେବାପାଇଁ ଜୀବନ ସଙ୍ଗିନୀଟି ପାଖରେ ନାହିଁ । ବିରହର ଜ୍ୱାଳାରେ ପ୍ରେମିକଟି ଛଟପଟ ହେଉଛି ।

୨ - ଦିଖୌ ପାର କରି କୋନେ ଲୈୟେ ଯାବ
କୋନେ ଲୈୟେ ଯାବ ସାକୋଁ,
କୋନେ ଦିଙ୍କେ ଯାବ ରାଁଚ ଦୋରପତି
କୋନେ ଦିୟେଯାବ ମାକୋ ।

---

ଶବ୍ଦାର୍ଥ : ଦିଖୌ-ନଦୀ, ଲୈୟେଯାବ-ନେଇଯିବ, ସାଁକୋ- ଅସ୍ଥାୟୀ ପୋଲ

୩-　　　　କୋନ ଜନ ଈଶ୍ୱରେ ତୋମାକ ସରଜିଲେ
　　　　　　　　ଚାଇନୋ ଚାଇ ଥାକିବର ମନ ।

ପ୍ରିୟାଟି ଦୁଃଖ ଓ ଅଭିମାନରେ କହୁଛି ତୁ ମୋଠୁ ଦୂରରେ ରହିଲେ ମୋତେ ଦିଖୌନଦୀ ପାର କରି କିଏ ନେବ ? କିଏ ମୋତେ ନଦୀର ବାଉଁଶ ପୋଲ ଉପରେ ହାତଧରି ପାର କରିଦେବ ? ମୋ ତନ୍ତଶାଳରେ କପଡ଼ା ପାଇଁ ସୂତାଗୁଡିକୁ ଠିକ୍‌ଭାବେ ସଜାଡିବା ପାଇଁ କିଏ ରାଁଚ ଦୋରପତି ଦେବ ? ଏହି ଚିନ୍ତାରେ ପ୍ରିୟାର ଆଖିରୁ ଲୁହ ଗଡିଛି; ପ୍ରେମିକଟି ପ୍ରିୟାଙ୍କ ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତା'କୁ ପ୍ରଶ୍ନ କରିଛି ତତେ ଏତେ ସୁନ୍ଦର କରି କେଉଁ ଭଗବାନ୍ ସୃଷ୍ଟି କଲେ, ଯାହାକୁ ଦେଖିଲେ ବି ବାରମ୍ୱାର ଦେଖିବାକୁ ଇଚ୍ଛା ହୁଏ ।

**ଦୈହିକ ଆହ୍ୱାନ-** ପ୍ରେମିକ ପ୍ରେମିକା ପରସ୍ପରକୁ ଯେତେ ଦେଖିଲେ ବି ସେମିତି ଅନେଇ ରହିବାକୁ ଇଚ୍ଛା ହୁଏ । ବେଳେବେଳେ ମନର ଭୋକ ଏତେ ବେଶୀ ହୁଏ ଯେ ଯୁବକଟି ମନକଥା ଖୋଲାଖୋଲି ଭାବେ କହିବା ପାଇଁ ସଂକୋଚ୍ ବୋଧ କରେ ନାହିଁ ।

୧ -　　　　ମନେ କି ବିଚାରେ ଦେହେ କି ବିଚାରେ
　　　　　　　　କ'ବ ମଇ ନୋଆରୋ ତୋ'କ;
　　　　ମନେ ମୋର ବିଚାରେ ମଇନା ତୋ'ର ଦେହଟୋ
　　　　　　　　ଏ ଦିନ ଦିୟେ ଯାବି ମୋ'କ ।

ଦୈହିକ ବାଞ୍ଛାକୁ ପୂରଣ କରିବା ପାଇଁ ମନ ଯେ ପ୍ରେମିକାର ଦେହକୁ ପାଖରେ ରଖିବା ପାଇଁ ଇଚ୍ଛା କରିଛି, ଏହା ଆଦିମ ମାନବର ମୁକ୍ତ ଆକାଙ୍କ୍ଷାକୁ ସରଳ ଭାଷାରେ ବିହୁଗୀତର ଗାୟକ ରୂପ ଦେଇଛନ୍ତି ।

ପୁରୁଷର ଦୈହିକ ଆହ୍ୱାନର ଇଂଗିତ ପାଇ ପ୍ରେମିକା ସ୍ପଷ୍ଟଭାବେ ଉତ୍ତର ଦେଇ କହିଛି, ତୁ ଦୁଆର ଖୋଲା ରଖି ଅପେକ୍ଷା କରିଥିବୁ, ମୁଁ ଯେମିତି ହେଲେ ଆଜି ତୋ' ପାଖରେ ପହଞ୍ଚିବି ।

　　　　'ଆଜି ଗଧୂଲିକେ ପାବି ତଇ ସେନାଇଟି
　　　　　　　　ବାଟରେ ନଙ୍ଗଲା ମେଲି ।

**ଆଦିରସର ସମ୍ଭୋଗ-** ସମୟକ୍ରମେ ପୁରୁଷ ଓ ପ୍ରକୃତିର ମିଳନ ହୁଏ । ଦୈହିକ ସୁଖ ଉପଭୋଗ କରି ଦୁଇ ପ୍ରେମୀ ରାତି କଟାଇଦେବା ପରେ ସକାଳ ହୁଏ । କୁକୁଡ଼ାର ପ୍ରାତଃ ମୁହୂର୍ତ୍ତର ଡାକରେ ଉଭୟପ୍ରେମୀର ନିଦ୍ରା ଭାଙ୍ଗିଯାଏ । ପ୍ରେମିକାଟି ରାଗ ଓ ଅଭିମାନରେ କୁକୁଡ଼ାକୁ ଗାଳିଦେଇ କହେ ରାତି ନ ପାହୁଣୁ ତୁ କାହିଁକି ଡାକ ଦେଲୁ ? ତୋ ପାଇଁ ମୋର

ଶବ୍ଦାର୍ଥ : ନଙ୍ଗଲା - ଦୁଆର ମୁହଁ, ଏରି- ଛାଡ଼ି, ଲେଡେରି- ଅପରିଷ୍କାର, ପେଘେନିୟାର - ଥଟ୍ଟା କରିକରି, ସମନୀୟା - ସାଙ୍ଗ, ଶୁବା ଖାଇଟି- ଅଣ୍ଟାଖୋଖାଇ, ଫାପରି - ଫିମ୍ପିଖାଇ

ପ୍ରିୟତମ ମୋତେ ଛାଡ଼ି ଚାଲିଗଲେ । ତତେ ପଛପଟୁ ଗୋଡ଼େଇ ଗୋଡ଼େଇ କଷ୍ଟଦେଇ ସମସ୍ତେ ମାରିବେ ।

କୁକୁରା କୁକୁରା ଅଜାତି କୁକୁରା ଭୁକୁଆଇ ମାରିମେ ତୋ'କ;
ରାତି ନୌ ପୁଆଓଁତେଇ କିୟ ଡାକ ଦିଲି ଧନେ ଏରି ଗ'ଲ ମୋ'କ ।

ଉପରୋକ୍ତ ଗୀତରେ ଦୁଇପ୍ରେମୀଙ୍କର ମିଳନରେ ଆଦିରସର ସମ୍ଭୋଗ ଉତ୍ପନ୍ନ ହୋଇଛି ।

**ହାସ୍ୟରସ-** ଲୋକକବିର ବିହୁଗୀତରେ ମୁଖ୍ୟତଃ ଆଦିରସର ବର୍ଣ୍ଣନା କରାଯାଇଥିଲେ ହେଁ ପ୍ରସଙ୍ଗକ୍ରମେ କେତେଗୁଡ଼ିଏ ହାସ୍ୟରସର ବର୍ଣ୍ଣନା ମଧ୍ୟ କରାଯାଇଛି ।

୧- ଧେଂ ତେରି ଲେତେରି ଶୁବା ଖାଇଟି ଫାପରି
ନେପାଇହେ ଆନିଲୋଁ ତୋ'କ;
ସମନୀୟାର ଆଗଲୈ ନୋଲାବି ଫାପରି
ପେଘେନୀୟାଇ ମାରିବ ତୋ'କ ।

ପ୍ରେମିକଟି ପ୍ରିୟାକୁ ଗାଳିଦେଇ କହୁଛି ତୁ ଅପରିଷ୍କାର, ଅଇଁଠା ଖାଇ, ଝିମ୍ପି ଖାଇ, ମୁଁ ପରିସ୍ଥିତିରେ ପଡ଼ି କେବଳ ତତେ ବାହାହୋଇ ଘରକୁ ଆଣିଲି । ତୁ ମୋର ସାଙ୍ଗମାନଙ୍କ ଆଗକୁ ବାହାରିବୁନି, ସେମାନେ ତତେ ଥଟ୍ଟା କରି କରି ଅପମାନିତ କରିବେ, ତୁ ଶେଷରେ ମରିବୁ ।

**ଖଣ୍ଡବାକ୍ୟ ଏବଂ ପ୍ରବାଦ ଓ ପ୍ରବଚନ-** ବିହୁଗୀତ ଗୁଡିକରେ ଖଣ୍ଡବାକ୍ୟ ବା ପ୍ରବାଦ ପ୍ରବଚନର ପ୍ରଭାବ ସ୍ପଷ୍ଟ ଅଟେ । କୌଣସି ନୀତିକଥା ବୁଝାଇବା ପାଇଁ ବା କୌଣସି ଉଦାହରଣ ଦେବା ପାଇଁ ଅଥବା ମୂଳକଥାର ତାତ୍ପର୍ଯ୍ୟ ବଢ଼ାଇବା ପାଇଁ ପ୍ରବାଦ, ପ୍ରବଚନ ବା ଖଣ୍ଡବାକ୍ୟ ଗୁଡିକର ବ୍ୟବହାର କରାଯାଇଥାଏ । ବିହୁଗୀତରେ ନିରକ୍ଷର ଗାଉଁଲିଆ କବି ଅତି ସୁନ୍ଦର ଭାବେ ଏହି ଖଣ୍ଡବାକ୍ୟ ଗୁଡିକର ପ୍ରୟୋଗ କରିଛନ୍ତି । ଯେପରି 'ଚଲଚାଇ କଠୀୟା ପରା'ର ପ୍ରୟୋଗ ଦୈନନ୍ଦିନ ଜୀବନରେ ପ୍ରାୟତଃ କରାଯାଇଥାଏ । ଏହାର ଆକ୍ଷରିକ ଅର୍ଥ ହେଉଛି ପାଗ ଦେଖି ତଳି ରୁଇବା । ମଣିଷ ଯେ ପ୍ରତ୍ୟେକ କାମରେ ଅବହେଳା କରିଥାଏ, ଠିକ୍ ସମୟରେ କାମ ନ କରି ଅଧିକାଂଶ ବେଳେ ଅସୁବିଧାରେ ପଡିଥାଏ । ଏହା ନିରାଟ ସତ୍ୟ ଅଟେ । ପରିସ୍ଥିତି ଓ ଉପଯୁକ୍ତ ସମୟକୁ ଆଗରେ ରଖି କାମ କଲେ ଲୋକମାନେ ବିପଦରେ ପଡନ୍ତି ନାହିଁ, ତାହା ପ୍ରାୟତଃ ଉପରୋକ୍ତ ଉକ୍ତି ମାଧ୍ୟମରେ ସ୍ମରଣ କରାଇ ଦିଆଯାଇଥାଏ ।

---

ଶବ୍ଦାର୍ଥ : ଚଲଚାଇ-ପାଗଦେଖି, କଠିଆ-ଧାନତଳି, ଫାଲି-ଖୋଲି, କଲିୟାହିଁତାତ-ଉପଯୁକ୍ତ ପାଗ

କେହି କେହିଁ ସରଳ ପ୍ରକୃତିର ଲୋକମାନେ ନିଜ ପ୍ରେମର କାହାଣୀ ଅନ୍ୟ ଆଗରେ ଶୁଣାଇବାକୁ ଯାଇ ବିପଦରେ ପଡିଥାନ୍ତି । ପ୍ରେମିକାଟି ପ୍ରିୟ ପୁରୁଷକୁ ସତର୍କ କରି ଦେଇ କହୁଛି ଲୋକ ଯଦି ସମୟ ଓ ପାଗଯୋଗ ଦେଖି ଧାନଚାଷ କଲେ ବିପଦରେ ପଡି ନଥାଏ, ଠିକ୍ ସେହିଭଳି ଭାବେ ଏକଥା ଯଦି ମନ ଭିତରେ ରଖିପାରିବୁ, ନିଜର ସମନୀୟା ବା ସାଙ୍ଗମାନଙ୍କୁ ଯେତେବେଳେ ଯେଉଁଠି ନକହି ଠିକ୍ ବେଳରେ ପ୍ରକୃତ ବନ୍ଧୁକୁ କହିବୁ ତା'ହେଲେ ତୋ'ର କୌଣସି ଅସୁବିଧା ହେବନାହିଁ । ସବୁଲୋକ ସମାନ ନୁହଁନ୍ତି ନ୍ୟାୟରେ ତୋ'ର କର୍ମଫଳ ତୁ ଭୋଗିବୁ । ଏହିଁ କଥାଟି ବିହୁଗୀତରେ ପ୍ରାୟତଃ ଶୁଣାଯାଇଥାଏ ।

ଚଲଚାଇ କଠୀୟା ପାରିବା କଲିୟା ବଁତାତ ନିସିଞ୍ଚିବା ଧାନ;
ସମନୀୟାର ଆଗତ ଫାଲି କଥା ନକବା ଇକଥା ପାବଲୈ ଟାନ ।

ସଂସ୍କୃତ ସାହିତ୍ୟର 'ମୁନୀନାଞ୍ଚ ମତିଭ୍ରମ' ସଦୃଶ ବିହୁଗୀତ ଗୁଡିକରେ 'ହସ୍ତୀରୋ ପିଛଲେ ପାଁଓ, ସଜ୍ଜନରୋ ବୂରେ ନାଓ' ବୋଲି ପ୍ରବାଦ ପ୍ରାୟତଃ କୁହାଯାଇଥାଏ । କୌଣସି ଲୋକର ଘରେ ବିହୁ ମାରିବା ପାଇଁ ଯାଇ ଯୁବକମାନେ ଯଥାସାଧ୍ୟ ସଂଯତ ହେବାପାଇଁ ଚେଷ୍ଟା କରନ୍ତି ତଥାପି ବିହୁନିଶାରେ ଗୃହସ୍ଥର ଦୋଷ ବାରିବା ସହିତ କେତେଗୁଡ଼ିଏ ପ୍ରେମ ଓ ପ୍ରଣୟମୂଳକ ଗୀତ ଗାଇଥାଆନ୍ତି । ସେଥିପାଇଁ ଗୃହସ୍ଥଠାରୁ ବିଦାୟ ଆଣି ଆସିଲାବେଳେ ବିହୁଗୀତ ଗାଇବା ଛଳରେ ସୁନ୍ଦର ପଟ୍ଟନ୍ତର ମାଧ୍ୟମରେ ନିଜର କ୍ଷମା ମାଗିଥାନ୍ତି । ତା ସହିତ ପର୍ବତରେ ଢେକୀୟା ଶାଗ ଗଛଗୁଡିକ କିପରି ସୁନ୍ଦରଭାବେ ହୃଷ୍ଟପୁଷ୍ଟ ହୋଇ ବଢ଼ିଥାଆନ୍ତି, ତାହା ବଖାଣିଥାଆନ୍ତି । ଢେକୀୟା ଶାଗ ଗଛର ପତ୍ରଗୁଡିକ ଲମ୍ବା ଲମ୍ବା ହୋଇ ମୋଡ଼ି ମୋଡ଼ି ହୋଇଥାନ୍ତି । କେବେ କେବେ ଶାଗ କିଆରୀ ଭିତରେ ବିଲେଇଟିଏ ପଶି ମ୍ୟାଉଁ ମ୍ୟାଉଁ ଶବ୍ଦ କରି ଲୋକମାନଙ୍କୁ ନିଜର ବାସସ୍ଥାନର ସଙ୍କେତ ଦେଇଥାଏ । ଏହିକଥା ଗୃହସ୍ଥ ଶୁଣି ଆନନ୍ଦରେ ହସିଦିଏ । ଉପଯୁକ୍ତ ସମୟ ଦେଖି ବିହୁଆ କହେ ହେ ଦେଓତା, ସମୟ ସମୟରେ ହାତୀର ବି ପାଦ ଖସିଯାଏ, ସେହି ମର୍ମରେ ଆମେ ତୁମର ଦୋଷଗୁଣ ବାରିଛୁ ବା କିଛିଟା ଅସଂଗତିସୂଚକ ବିହୁଗୀତ ଗାଇଛୁ, ତମେ ଆମକୁ ଏହିଥରକ ପାଇଁ କ୍ଷମା କରିଦିଅ ।

''ପର୍ବତର ଢେକୀୟା ଚିରିଲି ପତୀୟା
ମେକୁରୀ କରିବର ମାଓଁ;
ଏଇବାରର ଦାୟଦୋଷ କ୍ଷମିବା ଦେଓତା
ହସ୍ତୀରୋ ପିଛଲେ ପାଓଁ ।''

---

ଚଲଚାଇ-ପାଗଦେଖି, କଠୀୟା-ଧାନତଳି, ଫାଲି-ଖୋଲି, କଲିୟା ବଁଗତ-ଉପଯୁକ୍ତ ପାଗ, ଚିରିଲି ପତୀୟା-ଲମ୍ବା ଲମ୍ବା ପତ୍ର, ମେକୁରୀ-ବିଲେଇ

ଖଣ୍ଡବାକ୍ୟର ପ୍ରୟୋଗ– ନୀତିବାକ୍ୟ ବା ପ୍ରବାଦ ପ୍ରବଚନ ସହିତ ବିହୁଗୀତ ଗୁଡ଼ିକରେ ଖଣ୍ଡବାକ୍ୟ ଗୁଡିକର ପ୍ରୟୋଗ ମନକୁ ସ୍ପର୍ଶ କରିଥାଏ । ଗୋଟିଏ ଗୋଟିଏ ଗୀତରେ ଖଣ୍ଡବାକ୍ୟର ବ୍ୟବହାର ଦେଖି ଗାଉଁଲିଆ ଗୀତିକାରର ନିପୁଣତା ଏବଂ ସେହି ସମୟର ଅସମୀୟା ସମାଜରେ ଏଗୁଡ଼ିକର ଜନପ୍ରିୟତାର କଥା ମନକୁ ଆସିଥାଏ । ଅସମୀୟା ସମାଜରେ କେତେଗୁଡ଼ିଏ ଜନପ୍ରିୟ ଖଣ୍ଡବାକ୍ୟ ଶୁଣିବାକୁ ମିଳିଥାଏ । ସେଗୁଡ଼ିକ ମଧ୍ୟରୁ ଅଧିକାଂଶର ପ୍ରୟୋଗ ମଧ୍ୟ ବିହୁଗୀତରେ ହୋଇଥାଏ । ଯେପରି–

କାଁହରେ ବାଟିତେ ସରିୟହ ପିଛଲେ
ନିୟରତ ପିଛଲେ ଭରି;
କଥାରେ ଲାଚତେ କଥାଟି ପିଛଲେ
କଥାରେ ଥୋପନି ଧରି ।

ଏହି ଗୀତରେ ସରିୟହ ପିଛଲା, କଥାର ଲାଚ, ଥୋପନିଧରା ଆଦି ଖଣ୍ଡବାକ୍ୟର ପ୍ରୟୋଗ କରାଯାଇଛି । ସରିୟହ ପିଛଲାର ଅର୍ଥ ସୋରିଷ କଂସା ବାସନରେ ଖସି ଖସି ଯାଏ । ସେହିଭଳି ଭାବେ ଜୀବନର ବହୁ ଘଟଣା ମନରୁ ପାଶୋରି ହୋଇଯାଏ । ତା'ର ମୂଳରେ ପରିବେଶ ଓ ପରିସ୍ଥିତି ମୁଖ୍ୟତଃ ଦାୟୀ ଅଟେ । କଂସା ବାସନରେ ସୋରିଷ ଖସିବା ସ୍ୱାଭାବିକ ଭଳି ମନରୁ କଥା ଖସିଯିବା ଅତି ସ୍ୱାଭାବିକ ଅଟେ । କଥାର ଲାଚ କହିଲେ କେତେବେଳେ ବା କଥା ବୁଲେଇ ବଙ୍କେଇ କହିଲେ କଥା ଛଳରେ ଅସଲ କଥାଟି ଲୁଚିଯାଏ । ଯେଉଁ କଥା ପାଇଁ ପ୍ରସଙ୍ଗଟି ଆରମ୍ଭ ହୁଏ, ସମୟକ୍ରମେ ସେହି ମୂଳ କଥା ହିଁ ଲୋପ ପାଇଯାଏ ଯେପରି ସୋରିଷ ପାଇଁ କଂସାର ପ୍ରୟୋଜନ ହେଲେହେଁ ସୋରିଷ ତଳେ ପଡ଼ିଯିବାରୁ ବାସନଟି ଅଦରକାରୀ ହୋଇଥାଏ ।

ଥୋପନିଧରାର ଅର୍ଥ ଯେ କୌଣସି କଥା ବା ଘଟଣାର ମୁଖ୍ୟ ଅଂଶକୁ ବୁଝାଏ । ମୁଖ୍ୟ ଅଂଶର ଦ୍ୱାହି ଦେଇ ଆଲୋଚନା ଆରମ୍ଭ ହେଲେ ହେଁ ସମୟକ୍ରମେ କଂସାର ଅପ୍ରୟୋଜନୀୟତା ସଦୃଶ ମୂଳକଥା ଲୋପପାଏ, ମୂଳକଥାକୁ ଆଶ୍ରୟ କରି ଗଢ଼ି ଉଠିଥିବା କଥାଟି ବେଶୀ ପ୍ରାଧାନ୍ୟ ପାଇଥାଏ ।

ବିହୁଗୀତର ସ୍ରଷ୍ଟା ଲୋକକବି ଆଲଙ୍କରିକ ନୁହନ୍ତି କି ସାହିତ୍ୟର ଅଳଙ୍କାର ଶାସ୍ତ୍ରରେ ପଣ୍ଡିତ ନୁହନ୍ତି କିନ୍ତୁ ପଣ୍ଡିତମାନଙ୍କ ଭଳି ସେମାନେ ନିଜର ରଚନାରେ ଶବ୍ଦାଳଙ୍କାର ଏବଂ ଅର୍ଥାଳଙ୍କାରର ପ୍ରୟୋଗ କରିଛନ୍ତି । ଆଳଙ୍କାରିକତା ପ୍ରୟୋଗ କ୍ଷେତ୍ରରେ ବିହୁଗୀତର ବନଘୋଷାରେ ଗୀତଗୁଡ଼ିକ ଯେପରି ସଂପୂର୍ଣ୍ଣ ଖୋଲାଖୋଲି ଭାବେ ଆତ୍ମପ୍ରକାଶ କରିଛନ୍ତି ।

---

ଶବ୍ଦାର୍ଥ : ଚିରିଲିପତୀୟା-ଲମ୍ବା ୨ ପତ୍ର, ମେକୁରୀ-ବିଲେଇ, ପିଛଲେ-ଖସେ, ପାଓଁ-ପାଦ

ତେଣୁ ଆଲଙ୍କାରିକ ବିଚାରରେ ବନଘୋଷାର ସରଳତା ଏବଂ ସ୍ୱଚ୍ଛଳତା ସ୍ପଷ୍ଟ ହୋଇଉଠିଛି । ବନଘୋଷା ଗୁଡିକ ପ୍ରତୀକଧର୍ମୀ ମାତ୍ର-ସହଜବୋଧ ଅଟେ । ଆବେଗରେ ଉଛୁଳି ଉଠୁଥିବା ଶିଳ୍ପୀ ମନର ଭାବ ବନଘୋଷାରେ ସ୍ପଷ୍ଟ ହୋଇଉଠିଛି । ଲୋକକବି ଅଳଙ୍କାରର ପ୍ରୟୋଗ କରିବା ପାଇଁ ଚେଷ୍ଟା କରିନାହାନ୍ତି କିନ୍ତୁ ସ୍ୱତଃ ସ୍ପୂର୍ତ୍ତଭାବେ ଗୀତଗୁଡ଼ିକ ଅଳଙ୍କୃତ ହୋଇଉଠିଛି ।

କାନରେ 'କେରୁମଣି' ନାମକ ଏକପ୍ରକାର ଅଳଙ୍କାର ପିନ୍ଧି ନାରୀ ଯେପରି ସୌନ୍ଦର୍ଯ୍ୟମୟୀ ହୋଇଥାଏ, ସେହିପରି ଶବ୍ଦ ଏବଂ ଅର୍ଥଦ୍ୱାରା ସାହିତ୍ୟର ଶୋଭା ବୃଦ୍ଧି ପାଇଥାଏ । ଅସମୀୟା ନାରୀର କର୍ଣ୍ଣର ଶ୍ରେଷ୍ଠ ଅଳଙ୍କାର କେରୁମଣି ମୁହଁର ସୌନ୍ଦର୍ଯ୍ୟ ବଢାଇଲା ଭଳି ଶବ୍ଦ ଏବଂ ଅର୍ଥ ସାହିତ୍ୟର ଅଳଙ୍କାର ରୂପେ ସାହିତ୍ୟିକ ସୌନ୍ଦର୍ଯ୍ୟ ବଢାଇଥାଏ । ସେଥିପାଇଁ ସାହିତ୍ୟରେ ତା'କୁ ଶବ୍ଦାଳଙ୍କାର ଏବଂ ଅର୍ଥାଳଙ୍କାର କୁହାଯାଇଥାଏ । ଯେଉଁଠାରେ କେବଳ ଅକ୍ଷର ବା ଶବ୍ଦ ନାନାବିଧ ଭଂଗୀରେ ସାହିତ୍ୟର ଉଜ୍ଜ୍ୱଳତା ବଢ଼ାଇଥାଏ । ତା'କୁ ଶବ୍ଦାଳଙ୍କାର କୁହାଯାଇଥାଏ । ଶବ୍ଦାଳଙ୍କାର ପୁନର୍ବାର ଅନୁପ୍ରାସ, ଶ୍ଳେଷାଳଙ୍କାର, ଜମକ, ପୁନରୁକ୍ତି, ବଦାଭାଷା, ବକ୍ରୋକ୍ତି, ସାଁଥର, ଦୃଷ୍ଟାନ୍ତ, ଚିତ୍ରାଳଙ୍କାର ଆଦି ଭାଗରେ ଭାଗ କରାଯାଇଥାଏ । ବିହୁଗୀତରେ ଶବ୍ଦାଳଙ୍କାରର ପ୍ରୟୋଗ ଅତି ଚମତ୍କାର ଅଟେ । ପ୍ରଥମେ ଅନୁପ୍ରାସର ପ୍ରୟୋଗ ବିଚାରକୁ ଅଣାଯାଇପାରେ । ଗୋଟିଏ ପ୍ରକାର ବ୍ୟଞ୍ଜନ ବର୍ଣ୍ଣର ବାରମ୍ବାର ପ୍ରୟୋଗକୁ ଅନୁପ୍ରାସ କୁହାଯାଇଥାଏ । ଯେପରି-

ଭାବକୁ ଭାଇ ଭଜା ଭଗବନ୍ତ ଭକ୍ତି ଭାବେ;
ଭଗ୍‌ବନ୍ତ ଭଜିଲେ ପରମ ଗତି ପାବେ ।

ଏହା ଶ୍ରୀମନ୍ତ ଶଙ୍କର ଦେବଙ୍କ ରଚିତ 'ବରଗୀତ'ରୁ ଅଣାଯାଇଛି । ଏଥିରେ ଭକ୍ତି ସହକାରେ ଭଗବାନଙ୍କୁ ଭଜିବା ପାଇଁ କୁହାଯାଇଛି । ଭଗବାନଙ୍କୁ ଭଜିଲେ ପରମ ଗତି ପ୍ରାପ୍ତ ହୁଏ ବୋଲି ଶଙ୍କର ଦେବ ଆଲୋଚନା କରି ଯାଇଛନ୍ତି । ବିଶିଷ୍ଟ କଳାକାର ଶଙ୍କର ଦେବଙ୍କ ଭଳି ସୁପରିକଳ୍ପିତ୍ ଭାବେ ଗାଉଁଲିଆ କବି ନିଜ ରଚନାରେ ଅଳଙ୍କାରର ପ୍ରୟୋଗ କରିନଥିଲେ ହେଁ ତାଙ୍କର ରଚନାରେ ଶବ୍ଦାଳଙ୍କାରର ପ୍ରୟୋଗ ଅତ୍ୟନ୍ତ ସୁନ୍ଦର ଅଟେ । ଯେପରି -

ଧନକ ଧନ୍ତେ କରି ଧନକେ ଘଟିଲା
ପରମ ଯତନ କରି;
ଧନେ ଯାବ ଚଲିଁ ଦେହା ଗ୍'ଲ ପିଛଲି
ଟ୍'ଲ ଦୁଚାଲି ଖରି ।

ଏଠାରେ ଜଣେ ଅନାମିକା ପ୍ରେମିକାର ମନର ଅବସ୍ଥା ବିଷୟରେ କୁହାଯାଇଛି । ଧନ ବା ଅର୍ଥକୁ ଶ୍ରେଷ୍ଠ କରି ଜୀବନସାରା ଯତ୍ନ କରି ଧନ ସଞ୍ଚୟ କରିଥିବା ପୁରୁଷଟି ସମୟର ଆହ୍ୱାନରେ ଏ ମର ସଂସାରରୁ ଚାଲିଯିବ, ତା'ର ଶରୀର ନଷ୍ଟ ହୋଇଯିବ, କେବଳ ଆତ୍ମା ତା'ଠୁ ଅଲଗା ହୋଇଯିବ । ତା ସହିତ ସଞ୍ଚିତ ଧନ ଯିବ ନାହିଁ କେବଳ ଦୁଇଖଣ୍ଡ କାଠ ଯିବ । ସେହି ପୁରୁଷଟି ତା' ପ୍ରେମିକା ପାଇଁ ସବୁଠୁ ଶ୍ରେଷ୍ଠ ଓ ପ୍ରିୟ ଧନ ଅଟେ ।

ଶବ୍ଦାଳଙ୍କାରର ଅନୁପ୍ରାସକୁ ପୁନର୍ବାର ଛେକାନୁପ୍ରାସ, ବୃତ୍ତ୍ୟାନୁପ୍ରାସ, ଅନ୍ତ୍ୟାନୁପ୍ରାସ ଆଦି ଭାଗରେ ଭାଗ କରାଯାଇଛି । ଲୋକ କବିର କଳ୍ପନାରେ ଏଗୁଡ଼ିକ ସୁନ୍ଦରଭାବେ ପ୍ରକଟିତ ହୋଇଛି । ଆଗରୁ ଯେଉଁ ଯେଉଁ ବର୍ଣ୍ଣ ଯେପରି ଥିଲା, ପଛରେ ଠିକ୍ ସେହିପରି ରହିଲେ ଛେକାନୁପ୍ରାସ ହୁଏ ।

୧ - ଢୋଲେ ଭାଲେ କରି ବାବି ଐ ଢୁଲୀୟା
ଢୋଲେ ଭାଲେ କରି ବାବି;
ଲାହେକୈ ନାବାବି ଖରକୈ ନାବାବି
ନାଚନୀ ଛେଓତେ ବାବି ।

ନାୟିକାଟି ଢୋଲିଆକୁ ସମ୍ବୋଧନ କରି କହୁଛି, ହେ ପ୍ରିୟ ଢୋଲିଆ, ତମେ ଢୋଲ ଭଲ କରି ବଜେଇବ ଯେପରି ମୁଁ ସେହି ତାଳରେ ନାଚି ପାରିବି । ଧୀରେ ଧୀରେ ଢୋଲ ବଜେଇବନି କି ଜୋର୍‌ରେ ବଜେଇବନି, ନାଚୁଣୀର ନାଚର ତାଳ ସହିତ ମିଳେଇ ବଜେଇବ ।

୨ - ଚୋମନି ଚୋମନି ପୂଲିକୈ ଚୋମନି
ଭାଗିଲେ ଚୋମନି ବାରୀ ।
ପିଛଲି ପରିବର କାଁହୀ ବାଇ ମାଲିନୀ
ପିଛଲି ପରିବର କାଁହୀ ।

ଗୋଟିଏ ବା ତତୋଽଧିକ ବ୍ୟଞ୍ଜନବର୍ଣ୍ଣ ଦୁଇଥରରୁ ବେଶୀ ଉଲ୍ଲେଖ ହେଲେ ବୃତ୍ତ୍ୟାନୁପ୍ରାସ ହୋଇଥାଏ ।

୧ - ଶଲେ ଭୁମୁକିୟାଇ ଶାଲେ ଭୁମୁକିୟାଇ
ଚେଙ୍ଗାଇ ଭୁମୁକିୟାଇ ଖାଲତ;
ଦେହାରେ ଭିତରତ ତୁମି ଭୁମୁକ ମାରା
ସଦାୟ ପରି ଥାକେ ମନତ ।

---

ଚୋମନି-ସୋମ ଗଛ, ପୁଲି-ଗଛ, ଭାଗିଲେ ଚୋମନି ବାରୀ-ସୋମଗଛର ବଗିଚା ଭାଙ୍ଗିଲା, କାଁହୀ-କାଶି କାଶି, ପିଛଲି ପରିବର-ଖସି ପଡ଼ିବ ।

ଶେଉଳ ମାଛ, ଶାଳ ମାଛ ଏବଂ ଚେଙ୍ଗ ମାଛ ଖାଲରେ, ପାଣି ଭିତରେ ଉଙ୍କି ମାରିବା ଭଳି ପ୍ରିୟାର ରୂପ ଦେହ ଭିତରେ ଉଙ୍କି ମାରିଥାଏ । ସେଥିପାଇଁ ସେ ପ୍ରାୟତଃ ମନେ ପଡିଥାଏ ।

୨ - ଚାଓଁ ତିନିବେଲି ଖରିକା ମଙ୍ଗଲେ
ମାତୋଁ ତିନିବେଲି ଗଣକ;
ପଦୂଲି ମୂରଲୈ ଓଲାଓଁ ତିନିବେଲି
ଏ ବେଲି ନେଦେଖୋଁ ଧନକ ।

ପ୍ରେମିକାଟି ଅନେକ ଦିନ ଧରି ପ୍ରେମିକକୁ ଅପେକ୍ଷା କରି କରି ଶେଷରେ ଅଧୈର୍ଯ୍ୟ ହୋଇ କହିଛି ମୁଁ ଦିନରେ ତିନିଘଡ଼ି ତୁମର ଆସିବା ବାଟକୁ ଅନେଇ ରହେ । ବେଳେବେଳେ ତୁମର ନାଁ ଧରି ନିଢେ ତିନିଥର ଡାକେ । କେବେ କେବେ ଦୁଆରବନ୍ଧରେ ଆସି ଅନାଏଁ ତ ପୁଣି ଘର ଭିତରୁ ବାହାରକୁ ଆସେ, ତଥାପି ତୁମକୁ ଥରଟିଏ ବି ଦେଖି ପାରେନି ।

୩- ଢୋଲଟି ବାବରେ ତିନିଟି ଆଙ୍ଗୁଲି
ମାଢରଟି ଆଙ୍ଗୁଲି ଲରେ;
ଯେତେକେ ଲରିବ ପୁରୁଷର ଆଙ୍ଗୁଲି;
ତେତେକେ ଜେଉତି ଚରେ ।

ଏହି ଗୀତରେ ଢୋଲିଆର ଢୋଲ ବଜାଇବାର ନିପୁଣତା ସଂପର୍କରେ କୁହାଯାଇଛି । ଢୋଲ ବଜାଇବା ପାଇଁ ତିନୋଟି ଆଙ୍ଗୁଳିର ଚାଳନାର ଶୈଳୀ ସବୁଠୁ ମହତ୍ତ୍ୱପୂର୍ଣ୍ଣ । ଢୋଲ ବଜାଇଲାବେଳେ ମଝି ଆଙ୍ଗୁଳିଟି ଜୋର୍‌ରେ ଢୋଲ ଉପରେ ସଞ୍ଚାଳିତ ହୁଏ । ପୁରୁଷର ଆଙ୍ଗୁଳି ଯେତିକି ଜୋର୍‌ରେ ଢୋଲ ଉପରେ ଚଳପ୍ରଚଳ ହୁଏ, ସେତିକି ଅଧିକ ଉଜ୍ଜ୍ୱଳ ହୋଇଉଠେ ।

ପଦଛନ୍ଦର ଶେଷରେ ଥିବା ଅକ୍ଷରଗୁଡିକ ବା ଯତି ସ୍ଥାନ ଶେଷରେ ଥିବା ବ୍ୟଞ୍ଜନବର୍ଣ୍ଣ ଯେଉଁଭାବେ ଅନୁସ୍ୱାର ବିସର୍ଗ ବା ସ୍ୱରବର୍ଣ୍ଣର ପରେ ବା ପୂର୍ବରୁ ଥାଏ । ପଦ ଶେଷରେ ବା ପରବର୍ତ୍ତୀ ଯତି ସ୍ଥାନରେ ଯଦି ସେହିଭାବେ ସେହି ବର୍ଣ୍ଣର ପରେ ଏବଂ ଆଗରୁ ଥିବା ସ୍ୱର ଆଦି ସହିତ ଆବୃତ୍ତି କରାହୁଏ । ତା'ହେଲେ ତାହାକୁ ଅନ୍ତ୍ୟାନୁପ୍ରାସ କୁହାଯାଇଥାଏ । ଯେପରି–

ବ୍ରହ୍ମାଯେ ସ୍ରଜିଲେ ବିଷ୍ଣୁଯେ ପାଳିଲେ
ସବାକୋ ଏକାକାର କରି;
ତୋମାକ ମୈ ଲାହରୀ କୋ'ନେ ସରଜିଲେ
ଦୟା ନାଇକିୟା କରି ।

---

ଶବ୍ଦାର୍ଥ : ଚୋତାଳ - ଅଗଣା, ଦୁବରି-ଦୁବ, ଗୁଚିବ-ଯିବ, ହାଁହ-ହଂସ, ଲୋଦୋରେ ମ୍ଲୋଦରେ-ଲଙ୍ଗରପସର

ଭଗବାନଙ୍କ ସୃଷ୍ଟି ସତରେ କେତେ ସୁନ୍ଦର, ତାହା କଳ୍ପନାତୀତ ଅଟେ । ବ୍ରହ୍ମା ଜଗତକୁ ସୃଷ୍ଟି କଲେ ଏବଂ ବିଷ୍ଣୁ ସମଦୃଷ୍ଟିରେ ପାଳନ କଲେ । ଯୁବକଟି ଆଶ୍ଚର୍ଯ୍ୟ ହୋଇ ପ୍ରେମିକାକୁ କହୁଛି ହେ ଲାହରୀ, ଭଗବାନଙ୍କ ସୁନ୍ଦର ସୃଷ୍ଟିରେ ତତେ ଏତେ ହୃଦୟହୀନା କରି କିଏ ଗଢ଼ିଲେ ? ତୋ ମନରେ କାହା ପ୍ରତି ଟିକିଏ ବି ସ୍ନେହ ନାହିଁ ।

୨ - ଚୋତାଲତ ଦୁବରି କୋନ କାଲେ ଗୁଚିବ
ଗୁଟି କୋନେ ନେଚାଁନେ ମାନେ;
ତୋମାର ମରମ ସେନେହ କୋନ ବାଲେ ଗୁଚିବ
ଈଶ୍ୱରେ ନେମାରେ ମାନେ ।

ଅଗଣାର ଦୁବଘାସ ଅବା କେଉଁକାଳେ ଯିବ, କେବେ ଅବା ଦୁବଘାସ 'ମଞ୍ଜି' ବା 'ମୂଳ' ଲୋପପାଇବ । ହେ ପ୍ରିୟା ତୋ'ର ସ୍ନେହ ମମତା ମୋଠୁ କେବେ ଦୂରେଇଯିବ, ମୁଁ ଶାନ୍ତିରେ ମରିବି, କିନ୍ତୁ ଈଶ୍ୱର ମୋତେ ମରିବାକୁ ଦେଉନାହାନ୍ତି । ବଞ୍ଚେଇ ରଖି କଷ୍ଟ ଦେଉଛନ୍ତି । ଦୁବଘାସ ଯେତେ ଚାଞ୍ଛିଲେ ବି ପୁଣି ଉଠିଲା ଭଳି ପ୍ରିୟାର ସ୍ନେହ ମମତା ପୁରୁଷଟି ପ୍ରତି ସେମିତି ରହିଥାଏ ।

**ବକ୍ରୋକ୍ତି—** ଏହିଗୁଡିକୁ ବାଦ୍ ଦେଇ ବିଦ୍ରୁପ, ବ୍ୟଙ୍ଗୋକ୍ତି, ବାକ୍ୟୋକ୍ତିର ଉଦାହରଣ ମଧ୍ୟ ଲୋକକବିର ବିହୁଗୀତ ବା ବନଘୋଷା ଗୁଡିକରେ ଲକ୍ଷ୍ୟ କରାଯାଇଥାଏ । ଯେତେବେଳେ ବକ୍ତା କୌଣସି କଥା ଗୋଟିଏ ଅର୍ଥରେ କହେ ଏବଂ ଶ୍ରୋତା ଜାଣିଶୁଣି ଅସଲ ଅର୍ଥ ଲୁଚାଇବାକୁ ଚେଷ୍ଟା କରେ ଏବଂ ଅନ୍ୟ ଅର୍ଥରେ ନିଏ, ସେତେବେଳେ ବକ୍ରୋକ୍ତି ହୁଏ ଯେପରି-

ହାଁହେ ବାଟେ ବୁଲେ ଲୋଦୋରେ ପୋଦୋରେ
ପାରଇ ବାଟ ବୁଲେ ରଇ;
ସରିଯହ ଜନମଲି ବେଟେରୀ ଟେପାଲି
କେଲେଇ କରିଛା ଭୟ ।

କବି ଏଠାରେ ତୁଳନାତ୍ମକ ଭାବେ ଭାଗ୍ୟର କଥା କହିଛନ୍ତି । ମଣିଷ ସଂସାରରେ ଜନ୍ମ ହୋଇ ସୁଖଦୁଃଖକୁ ଆଦରି ନେବା ଉଚିତ । ହଂସ ରାସ୍ତାରେ ଲସର ପସର ହେଲାବେଳେ ପାରା ରହି ରହି ମଝିରେ ମଝିରେ ଚରେ । ଏହା ଭଗବାନଙ୍କ ସୃଷ୍ଟିର ନିୟମ । ସୋରିଷ ଜନ୍ମ ପାଇ ତେଲ ପେଡ଼ାରେ ପେଷା ହେଲା ଭଳି ମଣିଷ ଦୁଃଖକୁ ଆନନ୍ଦରେ ଆଦରି ନେବା ଉଚିତ ।

---

ଶବ୍ଦାର୍ଥ : ବେଟେରୀ ଟେପା - ଘଣା, କେଲେଇ - କାହିଁକି

ଏହିଭଳି ଭାବେ ବିଚାର କରି ଦେଖିଲେ ଲୋକକବିର ରଚନାରେ ଶବ୍ଦାଳଙ୍କାରର ଅନୁପମ ପ୍ରୟୋଗ ଦେଖିବାକୁ ମିଳିଥାଏ ।

**ଉପମାର ପ୍ରୟୋଗ–** ବିହୁଗୀତରେ ଆମେ ଦେଖିଥାଉ ଯେ ଜନକବିମାନେ ନିରକ୍ଷର ହୋଇ ମଧ୍ୟ, ଅନ୍ୟକୁ ଅନୁକରଣ ନକରି ମଧ୍ୟ ଯଥୋଚିତ ଉପମା ମାଧ୍ୟମରେ ଖ୍ୟାତନାମା କବିମାନଙ୍କ ଭଳି ନରନାରୀର ରୂପର ସୁନ୍ଦର ବର୍ଣ୍ଣନା ଦେଇ ପାରିଛନ୍ତି । ଏହା ମାଧ୍ୟମରେ ଜନକବିମାନଙ୍କର ଅସାମାନ୍ୟ କବି ପ୍ରତିଭା ଏବଂ ସେହି ପ୍ରତିଭାକୁ ଛନ୍ଦୋବଦ୍ଧ ଭାବେ ରୂପ ଦେଲା ଭଳି ଦକ୍ଷତାର ଅପୂର୍ବ ନିଦର୍ଶନ ମିଳିଛି । ମୋଟ ଉପରେ କହିବାକୁ ଗଲେ ଲୋକକବିର ବର୍ଣ୍ଣନାରେ ଉପମା, ଅଳଙ୍କାରର ପ୍ରୟୋଗ ବିହୁଗୀତଗୁଡ଼ିକୁ ବେଶୀ ଆକର୍ଷଣୀୟ କରିଛି । ନିମ୍ନ ଗୀତିରେ ଉପମାର ବ୍ୟବହାର ଲକ୍ଷ୍ୟ କରାଯାଇପାରେ ।

ଘରତୋ ନ ବହେ ମନ ସମନୀୟା
ପଥାରତୋ ନ ବହେ ମନ;
କମୋଆ ତୁଲାବୋର ଯେନେକୈ ଉରିଛେ
ତେନେକୈ ଉରିବର ମନ ।

କେହି ଜଣେ ଅଧିରା ନାୟିକା ନାୟକକୁ ଅପେକ୍ଷା କରି କରି ବ୍ୟସ୍ତ ହୋଇପଡ଼ୁଛି । ବିହୁ ପାଖେଇ ଆସିଛି, ନାଁ ଘରେ ମନ ଲାଗୁଛି ନାଁ ବାହାରେ, ନାଁ ଜମିର କାମରେ ମନ ଲାଗୁଛି । ମନ ଶିମୂଳୀ ତୂଳାଭଳି ଆକାଶରେ ଉଡିବା ପାଇଁ ଇଚ୍ଛା କରୁଛି । ଏଠାରେ ବିହୁ ପ୍ରତି ଅସମୀୟା ନାରୀର ଥିବା ଆନ୍ତରିକତା ଓ ପୁରୁଷ ପ୍ରତି ଥିବା ସ୍ନେହଭାବ ପ୍ରକାଶ ପାଇଛି ।

**ରଂଗ ଏବଂ ସୁରଭିର ସମାହାର- ବିହୁର ପାଗ—** ହସ ଏବଂ ଅବସରର ପାଗ ହେଉଛି ବହାଗ ବିହୁ । ଏହା ଗୁଣୁ ଗୁଣୁ କରି ଗୁଞ୍ଜରଣ ସୃଷ୍ଟି କରିବାର ପାଗ । ବହୁ ରଂଗ ନେଇ, ବହୁ ଉସାହ ନେଇ ବିହୁ ଆସିଥାଏ । ଆକାଶରେ ଉଡୁଥିବା ଶିମୂଳି ତୁଳାପରି ଲାଲ୍ ପଲାଶର ରଂଗ ନେଇ, ରକ୍ତଜବା ଫୁଲର ରଂଗ ନେଇ ବିହୁ ଆସିଥାଏ । ପ୍ରକୃତି ଯୌବନର ଶୀର୍ଷଦେଶରେ ପାଦ ରଖି ଗର୍ବରେ ଫୁଲିଉଠେ । ଧଳା ଏବଂ ବାଇଗଣି ରଂଗର କପୌ ଫୁଲର ପେଛା, ମଝିରେ ମଝିରେ ପ୍ରକୃତିର ପ୍ରସ୍ଫୁଟିତ ଚମ୍ପା ଫୁଲର ମହକ, କଞ୍ଚା ସୁନା ରଂଗର ଆକାଶୀଲତା ତଳକୁ ଝୁଲି ଆସି ମାଟିକୁ ଛୁଇଁବାର ଆନନ୍ଦ, ଭେରେଲୀ ଲତାର ଫୁଲର ସୁହାଗ ମଣିଷ ଓ ପ୍ରକୃତିକୁ ବିଭୋର କରିଦିଏ । ହଳଦିଆ ପ୍ରଜାପତିର ସବୁଜ ରଂଗର ପକ୍ଷୀ କମ୍ପିଉଠେ ।

ବିହୁର ପାଗରେ ଦୂର ପାହାଡର ରଂଗ ଧୂସର ହୁଏ । ଏହି ରଂଗକୁ ଦେଖି ସ୍ୱପ୍ନ ଦେଖିଲା ଭଳି ମନେ ହୁଏ । ନଈକୂଳରେ ଥିବା ମୁକ୍ତାଭଳି ରଂଗ ବେରଙ୍ଗର ଟିକି ଟିକି ବାଲିଗରଡ଼ା ଗୁଡିକ ପାଣିଲାଗି ଚିକ୍‌ମିକ୍ କରି ଉଠନ୍ତି । ବାଟ ଭୁଲି ଆସିଥିବା କରାଣ୍ଡି ମାଛ,

ଥରେ ଦି ଥର ଝିପି ଝିପି ବର୍ଷାର ପରଶ ପାଇ ତୁଠରେ ଖୁସୀରେ ନସରପସର ହୁଅନ୍ତି । ବଗୁଲୀ ଆକାଶରେ ଡେଣା ମେଲି ଆନନ୍ଦରେ ଉଡୁଥାଏ । ବାଉଁଶ ଗଛର ପତରେ ପତରେ ଲାଲ୍‌ଫୁଲ ଝୁଲୁଥାଏ । ମନର ଆଶା ଓ ଆକାଙ୍କ୍ଷା ତନ୍ତଶାଳରେ ଯୁବତୀର ପରଶ ନେଇ ଲାଲ୍ ରଙ୍ଗର ଗାମୁଛାର ଫୁଲ ଭିତରେ ଲୁଚକାଳି ଖେଳନ୍ତି । ଶୁଖିଲା ଗଛରେ ସବୁଜ ରଙ୍ଗର ପତ୍ର କଅଁଳ ନୂତନ ଆଶାର ପ୍ରେରଣା ଦିଏ । ବିହୁର ପାଗରେ ଲୋକପ୍ରାଣ ଆନନ୍ଦରେ ଉଛୁଳି ଉଠେ । ଏହା ହିଁ ରଙ୍ଗ ଏବଂ ସୁରଭିର ସମାହାରର ସମୟ ଅଟେ । (୯)

ବିହୁ ପ୍ରାଚୁର୍ଯ୍ୟର ପ୍ରତୀକ ଅଟେ । କୃଷିଜୀବି ଲୋକର ଆଶା ଏବଂ ଆନନ୍ଦର ପ୍ରତୀକ, ଅବସରର ଉତ୍ସବ, ମନକୁ ସବଳ କରିବାର ଉତ୍ସବ । କେହି କେହି ବିହୁକୁ ଦେହ ଏବଂ ମନର ଜଡ଼ତା ଭାଙ୍ଗିବାର ଉତ୍ସବ ବୋଲି କହିଥାନ୍ତି । ଆଶାବାଦର ନାଚୁଣୀକୁ ମନର ବାରଣ୍ଡାରେ ବିହୁଆଟି ନଚାଇ ନଚାଇ ନୂତନ ଉଦ୍ଦୀପନାରେ ଜାତୀୟ ଜୀବନ ତଥା ପ୍ରାଣକୁ ଚଞ୍ଚଳ କରି ଗଢ଼ିତୋଳେ । ଲୋକବାଦ୍ୟ ପେଁପା ତଥା ଗଗନାର ସ୍ୱତଃସ୍ଫୂର୍ତ୍ତ ସ୍ୱର ଜୀବନକୁ ବଞ୍ଚାଇ ରଖିବାର ଉତ୍ତଳା ସ୍ୱାଗତ ଜଣାଏ । ଏହା ହିଁ ରଙ୍ଗ ଏବଂ ସୁରଭିର ସମାହାରର ପାଗ ଅଟେ ।

**ପ୍ରେମ, ପ୍ରୀତି ଓ ଯୌବନର ଉତ୍ସବ ବିହୁ—** ବସନ୍ତ ଋତୁ ହେଉଛି ପ୍ରୀତିର ସମୟ । ମନ ଭିତରେ ଖୋଜୁଥିବା ମଣିଷଟିକୁ ପସନ୍ଦ କରିନେବାର ସମୟ । ବିଭିନ୍ନ ପ୍ରକାର ଫୁଲରେ ପ୍ରକୃତି ରାଣୀ ଏହି ସମୟରେ ସଜ୍ଜିତା ହୋଇଥାଏ । ଯୁବତୀଟି ମନର ମଣିଷକୁ ଦେଖିବା ପାଇଁ ବ୍ୟାକୁଳ ହୋଇଉଠେ । ସେ ମନର ଭାବକୁ ଗୀତ ମାଧ୍ୟମରେ ପ୍ରକାଶ କରି ପ୍ରିୟତମକୁ ଖୋଜି ବୁଲେ ।

ବରଘରର ମୂରତେ ଭଁରାଳର ଟୁପତେ
 ଚରାଇ ଫୁଟୁକଲା ଖାୟ;
ମୋର ଜାନୋ ମନତେ ପରେ ଘନେ ଘନେ
 ତୋ'ର ଜାନୋ ମନତେ ନାଇ ।

ରୋଷେଇ ଘର ପାଖକୁ ଲାଗିଥିବା ଭଣ୍ଡାରଘର ଉପରେ ଚଢେଇଟିଏ ବସି ଫୁଟୁକଲା ଖାଉଛି । ତା'କୁ ଦେଖି ପ୍ରିୟାର ପ୍ରିୟତମ କଥା ବାରମ୍ବାର ମନେପଡୁଛି ମାତ୍ର ପ୍ରିୟତମଟି ତା'କୁ ଭୁଲିଯାଇଛି ।

ସମାଜରେ ପ୍ରେମ ପାଇଁ କେତେଗୁଡିଏ ଦୁଃଖଦାୟକ ଘଟଣା ଘଟିଥାଏ । ସେହିଭଳି ଯୌବନର ତାଡ଼ନାରେ ପ୍ରେମ, ଭଲପାଇବା ଗଢ଼ି ଉଠେ । ହୃଦୟ ଦିଆନିଆ ହୁଏ କିନ୍ତୁ

---

**ଶବ୍ଦାର୍ଥ :** ଭଁରାଳ - ଭଣ୍ଡାର ଘର, ଚରାଇ - ଚଢ଼େଇ, କଲା-କଦଳୀ, ପରେ-ପଡ଼େ, ଜାମୁକ - ଜାମୁ, ପୂଲି- ଚାରା ।

ସମାଜର ନିର୍ଦ୍ଦିଷ୍ଟ ନିୟମ ପାଇଁ ପ୍ରେମିକ ନିଜର ପସନ୍ଦ ମୁତାବକ ସଂଗୀକୁ ପାଇବାର ଅଧିକାରରୁ ବଞ୍ଚିତ ହୁଏ । ଏହା ବିହୁଗୀତରେ ସ୍ପଷ୍ଟ ହୋଇଉଠେ ।

ଆହୋଁତେ ଦେଖୋ ଧନ ଯାଉଁତେ ଦେଖୋଧନ
ବଗା ଜାମୁକରେ ଫୁଲି;
ଖୋଆରୋ ନ ହ'ଲି ପିନ୍ଧାରୋ ନ ହ'ଲି
ଚକୁରହେ ପୋରଣି ହ'ଲି ।

ଯିବା ଆସିବା ରାସ୍ତାରେ ପ୍ରେମିକାଟି ଦେଖାହୁଏ । ସତେଅବା ଛନଛନିଆ ଧଳା ଜାମୁ ଗଛଟିଏ । ତା'କୁ ଦେଖିଲା ପରେ ନାଁ ସେ ଖାଇପାରୁଛି ନାଁ ଶୋଇପାରୁଛି । ଦିନରାତି ଦେଖି ଦେଖି କେବଳ ତା' ଆଖିରୁ ପାଣି ମରିଛି ।

ପ୍ରେମ ବେଳେବେଳେ ଏତେ ଯନ୍ତ୍ରଣା ଦିଏ ଯେ ମନ କହେ ପ୍ରେମିକାଟି ସବୁଦିନ ପାଖରେ ରହିବା ପାଇଁ । ପ୍ରିୟତମର ଅବସ୍ଥାଠୁ ପ୍ରିୟାର ଅବସ୍ଥା ଅଧିକ ଯନ୍ତ୍ରଣାଦାୟକ ହୋଇଉଠେ । ପ୍ରିୟତମ ବେଳେବେଳେ ତା'ର ପ୍ରିୟା ପାଇଁ ଫୁଲର ବଗିଚା ସଜାଏ । ସେହି ବଗିଚାରେ 'ଖରିକାଜାଇ' ନାମକ ଫୁଲଗଛଟିଏ ପ୍ରିୟା ପାଇଁ ଲଗାଇଲା । ବଗିଚାଟି ତା'ପାଇଁ ସବୁଠୁ ପ୍ରିୟ ଥିଲା । ତା'ଠୁ ଅଧିକ ସ୍ନେହରେ ସେ ପ୍ରେମ କଲା ଅଥଚ ତା'ର ଆସିବା ବାଟକୁ ଅପେକ୍ଷା କରି କରି ଶେଷରେ ଶୁଖି ଶୁଖି ମଲା ।

ବସନ୍ତ ଋତୁରେ ବର୍ଷକର ସଞ୍ଚିତ ବେଦନା ସମୂହକୁ ବିହୁଗୀତ ଗୁଡିକ ମାଧ୍ୟମରେ ପ୍ରକାଶ କରି ମନକୁ ହାଲ୍‌କା କରାଯାଇଥାଏ । ବସନ୍ତକାଳରେ ଯୁବକ ଯୁବତୀମାନଙ୍କ ମଧ୍ୟରେ ଯୌନାକାଙ୍‌କ୍ଷାର ଦୁର୍ବାର ଗତି ମଧ୍ୟ ବଢ଼ି ଯାଇଥାଏ । ସେହି ଆକାଙ୍‌କ୍ଷାର ପରିପୂରଣ ନିମନ୍ତେ କେହି କେହି ସୁଯୋଗ ଖୋଜୁଥାନ୍ତି । ପ୍ରେମିକ ପୁରୁଷଟି ମାଛି ରୂପରେ ଯାଇ ପ୍ରେମିକାର କୋମଳ ଗାଲରେ-ବସି ଚୁମ୍ବନଟିଏ ଦେବାର ଆଶା ପୋଷଣ କରି କହେ—

ମାଖି ରୂପ ଧରି ଚୁମା ଖାଇ ଆହିମ ଗୈ
ତୋମାର କୁମଲୀୟା ଗାଲତ ।

ବସନ୍ତ ଋତୁରେ ଯୁବକ ଯୁବତୀମାନଙ୍କର ଶରୀର ନରମ ତଥା ଅଧିକ ସୁନ୍ଦର ଓ ସତେଜ ଦେଖାଯାଇଥାଏ । କାହାର ହାତ ବା ଗୋଡ ଯଦି ଥଣ୍ଡାରେ ଫାଟି ଥାଏ; ସେ ସବୁ ମଧ୍ୟ କମିଯାଇଥାଏ । ଏଭଳି ସୁନ୍ଦର ଋତୁରେ ନାରୀ ତଥା ପୁରୁଷ ମାନଙ୍କର ସୌନ୍ଦର୍ଯ୍ୟ ଅଧିକ ଉଜ୍ଜ୍ୱଳ ହୋଇଉଠେ । ଏହା ସହିତ ମନର ସୌନ୍ଦର୍ଯ୍ୟ ବିହୁଗୀତ ଗୁଡିକରେ ପ୍ରକାଶ ପାଇଥାଏ । ବସନ୍ତ ଋତୁରେ ଯୁବକ ଯୁବତୀମାନେ ଆସାମର ଖାଲ, ନଦୀ, ପାହାଡ଼, ପର୍ବତ, ଗଛଲତା, ମାଛ, ନଦ-ନଦୀ, ଚଢ଼େଇ ଆଦି ସମସ୍ତଙ୍କୁ ସମ୍ବୋଧନ କରି ନିଜର ଭାବ ପ୍ରକାଶକ ଉପମା ହିସାବରେ ପ୍ରୟୋଗ କରିଛନ୍ତି । ଏପରିକି ଚୈତ୍ରମାସର ଶୁଖିଲା ନଦୀଟି ମଧ୍ୟ ଏମାନଙ୍କ ଆଖିରୁ ବାଦ୍ ପଡି ନାହିଁ ।

ରଙ୍ଗାନୈ ଶୁକାଲେ ମାଛରେ ବେଜାରତ
ଲୁଇତ ଖନ ଶୁକାଲେ କିୟ ;
ମଇ ସେନାଇ ଶୁକାଇଛୋ ତୋମାରେ ବେଜାରତ
ତୁମିନୋ ଶୁକାଇଛା କିୟ ?

ମାଛ ପାଇଁ ରଂଗା ନଈ ଶୁଖିଲା । ଲୋକମାନେ ମାଛ ଧରିବାକୁ ଆସି ନଈକୁ ଶୁଖାଇଦେଲେ କିନ୍ତୁ ଲୁଇତନଦୀ କାହିଁକି ଶୁଖିଗଲା ? ତାହା ଏକ ପ୍ରଶ୍ନବାଚୀ ଅଟେ । ନିଜକୁ ନିଜେ ଯୁବକଟି ପ୍ରଶ୍ନ କରୁଛି - ପ୍ରିୟତମା, ମୁଁ ତୁମ କଥା ଚିନ୍ତା କରି କରି ଶୁଖିଗଲି କିନ୍ତୁ ତମେ କାହିଁକି ଶୁଖିଗଲ ମୁଁ ବୁଝି ପାରୁନି ।

ବସନ୍ତ କାଳରେ ଯୁବକ ଯୁବତୀମାନଙ୍କର ମନର ଭାବ ବିହୁଗୀତ ଗୁଡ଼ିକରେ ବିକଶିତ ହୋଇଉଠେ । ଆସାମରେ ବସନ୍ତ ଋତୁର ଯେଉଁ ପ୍ରାକୃତିକ ପରିବେଶ ସେହି ପରିବେଶର ପ୍ରତିଟି ଅଂଶ ଆସାମର ଯୁବକ ଯୁବତୀମାନଙ୍କର ମନର ଆଶା-ଆକାଙ୍କ୍ଷାର ସାଙ୍କେତିକ ଚିହ୍ନ ହିସାବରେ ପରିଗଣିତ ହୋଇଛି । (୧୦) ମୁକ୍ତ ପରିବେଶ ଏବଂ ଉନ୍ମୁକ୍ତ ଆବେଗ ଭିତରେ ଯୁବକ ଯୁବତୀମାନେ ଖୋଲା ପଡ଼ିଆରେ ବିହୁନାଚ ପରିବେଶଣ କଲା ବେଳେ ଯୌବନର ପାଦଦେଶରେ ଯୁଗଯୁଗର ଆଶା ଓ ବାଞ୍ଛା ହାବୁକା ମାରିଥାଏ । ଜୀବନର ଏକ ନୂତନ ସ୍ୱାଦର ପରଶ ପାଇବା ପାଇଁ ବିଚଳିତ ମନ ସୃଷ୍ଟିର ଚିରନ୍ତନ ନିୟମ ଭିତରେ ଉଙ୍କିମାରି ନିଜର ପ୍ରିୟତମକୁ ଖୋଜିଥାଏ । ମୁକ୍ତ ପ୍ରାଙ୍ଗଣରେ ସବୁଜ ଆଶା ଓ ଆକାଙ୍କ୍ଷା ବିହୁର ତାଳେ ତାଳେ ଯୁବକ ଯୁବତୀମାନଙ୍କର ଅଂଶ ପ୍ରତ୍ୟଙ୍ଗରେ ପ୍ରକାଶ ପାଇଥାଏ । ବହାଗ ବିହୁ କହିଲେ ବିହୁର ନୃତ୍ୟଗୀତର ମାଦକତା ଛୋଟପିଲାଠୁ ଆରମ୍ଭ କରି ଯୁବକ ଯୁବତୀ ତଥା ବୃଦ୍ଧ ବୃଦ୍ଧାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମନପ୍ରାଣକୁ ଛୁଇଁ ଯାଇଥାଏ । ସନ୍ଧ୍ୟା ହେଲେ ନିଜର କାମ ଧନ୍ଦା ସାରି ମନ ଖୁସୀରେ ସମସ୍ତେ ମିଳି ଗାଁ ମୁଣ୍ଡରେ ଥିବା ବଡ଼ ପଡ଼ିଆରେ ଯାଇ ଏକଜୁଟ ହୁଅନ୍ତି । ସେହିଠାରେ ବିହୁଆ ଓ ବିହୁ ବତୀମାନେ ବିହୁନାଚ ପରିବେଶଣ କରନ୍ତି । ଗୋଟିଏ ପଟୁ ଯୁବକମାନେ ଢ଼ୋଲ ବଜେଇ ବଜେଇ ନାଚିନାଚି ଆସନ୍ତି । ଢ଼ୋଲର ତାଳ ଭିତରେ ଯୁବତୀମାନଙ୍କୁ ଆସିବା ପାଇଁ ସଙ୍କେତ ଦେଇ ଥାଆନ୍ତି । ଯୁବତୀମାନେ ଅଣ୍ଟାରେ ବାଁହାତ ରଖି ଖୋଷା ପଛରେ ଡ଼ାହାଣ ହାତ ରଖି ଏକା ସଂଗେ ବିହୁତଳିକୁ ଚାଲିଆସନ୍ତି । ଯୁବକମାନେ ଗୁରୁଜନମାନଙ୍କୁ ପ୍ରଥମେ ସମ୍ମାନ ଜଣାଇ ବିହୁଗୀତରେ ଗାଉଥିବା ଉଦ୍ଦାମ ଯୌବନପୂର୍ଣ୍ଣ ଗୀତ ପାଇଁ ନିଜ ଭୁଲ୍‌ନାହିଁ ବୋଲି ବିହୁଗୀତ ମାଧ୍ୟମରେ କହିଥାଆନ୍ତି । ପ୍ରେମ ଓ ପ୍ରୀତି ସୃଷ୍ଟିର ଚିରନ୍ତନ ନିୟମ । ଭଗବାନ୍ ନିଜେ ଏହାକୁ ସୃଷ୍ଟି କରିଛନ୍ତି କାରଣ ଭଗବାନ ପ୍ରଥମ ସୃଷ୍ଟିକୁ ରଚନା କରି ତାଁ 'ପରେ ଜୀବଜଗତକୁ ସୃଷ୍ଟିକଲେ । ସେହି ଭଗବାନ ନିଜେ ପ୍ରୀତି କରି ମାନବସମାଜ ନିକଟରେ ପୂଜା ପାଉଛନ୍ତି । ତେଣୁ ମାନବସମାଜ କାହିଁକି ପ୍ରେମ ଓ ପ୍ରୀତି କରିବ ନାହିଁ ।

ପ୍ରଥମେ ଈଶ୍ୱରେ ସୃଷ୍ଟି ସରଜିଲେ
ତ'ର ପିଛତ ସ୍ରଜିଲେ ଜୀବ;
ସେଇନୋ ଜନ ଈଶ୍ୱରେ ପୀରିତି କରିଲେ
ଆମିନୋ ନ କରିମ କିୟ ?

ଯୌବନ ଚିରସ୍ଥାୟୀ , ଏକଥା ସମସ୍ତେ ଭଲଭାବେ ଜାଣିଲେ ହେଁ ଯୌବନର ପାଦ ଦେଶରେ ଛିଡ଼ା ହୋଇ ମଣିଷ ନିଜର ଅତୀତ ଓ ଭବିଷ୍ୟତକୁ ଭୁଲିଯାଏ କେବଳ ଯୌବନର ପରଶରେ ମନଟା ଉବୁଟୁବୁ ହୁଏ, ଫଳରେ ଗୀତର ଲୁଆର-ଭିତରେ ମନ ଓ ପ୍ରାଣର କଥା ଫୁଟି ଉଠିଥାଏ । ସେମାନେ ଭଗବାନଙ୍କୁ ସାକ୍ଷୀରଖି ଛୋଟବେଳେ ପରସ୍ପରକୁ ଭଲପାଇ ବସିଥିଲେ ମାତ୍ର ସମାଜର କୈତେଗୁଡ଼ିଏ ନିର୍ଦ୍ଦିଷ୍ଟ ନୀତିନିୟମ ଯୋଗୁ ପରସ୍ପରକୁ ଅତି ନିକଟରେ ପାଇବାର ସୁଯୋଗ ପାଇଲେନି । ଯୁବକଟି ସମାଜର ନୀତିନିୟମକୁ ଭାଙ୍ଗି ଦୂରକୁ ଉଡ଼ିୟିବାପାଇଁ ଇଚ୍ଛା କରିଛି ମାତ୍ର ସାଂଗରେ ପ୍ରିୟତମାକୁ ନେଇ କେମିତି ବା ଯିବ ? ସେଥିପାଇଁ ହତାଶ ହୋଇ ସେ କହୁଛି ଚଢ଼େଇ ହୋଇଥିଲେ ମୁଁ ତତେ ସେହି ରାଜ୍ୟକୁ ନେଇ ଉଡ଼ିଯାଇଥାଆନ୍ତି କିନ୍ତୁ ମୋର ପକ୍ଷୀ ନାହିଁ । ସେଠାରେ ମନଖୋଲି ଦିନଦିନ ଧରି ଆମେ ଖୁସୀରେ ଗପି ପାରିଥାଆନ୍ତେ ।

ତୁମିଯେ ଆମିଯେ ପୀରିତି କରିଲୌଁ
ଈଶ୍ୱରକ କରିଲୌଁ ସାକ୍ଷୀ;
ଚରାଇ ହୋଆଇଲେ ଉରିଗଲୌଁ ହେଁ ତେନ
ତାଲିକୋ ନାଇକିୟା ପାକ୍ଷୀ ।

ବିହୁଗୀତରେ ପ୍ରେମର ବନ୍ଦନା କରାଯାଇଛି । ଲୋକକବିର ଅମୂଲ୍ୟ ସଂପଦ ରୂପେ ବହୁକାଳରୁ ଲୋକମୁହଁରେ ପ୍ରଚଳିତ ହୋଇ ଆସୁଥିବା ବିହୁଗୀତ ଗୁଡ଼ିକ ଅସମୀୟା ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଲୋକକବିର ସରଳ ମନ ସୁନ୍ଦର ପରିବେଶ ଭିତରେ ପ୍ରେମ ବିହ୍ୱଳ ହୋଇ ଉଠିଛି । ମଣିଷ ପ୍ରେମ କରିଲେ ପ୍ରଥମେ କିପରି ଅସୁବିଧାର ସମ୍ମୁଖିନ ହୁଏ, ବିନା ଅନୁଭୂତି ଯୋଗୁ ଲୋକହସା ହୁଏ, ମନଟା କିପରି ଡ଼ହଳ ବିକଳ ହୁଏ ମାତ୍ର ସମୟକ୍ରମେ ମନଟା ଆୟତ୍ତକୁ ଆସିଲେ ହେଁ ଭୋକଶୋଷ ଭୁଲିହୋଇଯାଏ, ଯାହା ବାହାରକୁ ପ୍ରକାଶ କରି ହୁଏନି, ତାହା ଲୋକକବିଙ୍କ ସରଳ ଭାଷାରେ ଗାଇଛନ୍ତି । ସେତେବେଳେ ମନ ଆଉ କେଉଁଠି ଲାଗେ ନାହିଁ, କେବଳ ଦୂରରେ ଥିବା ପ୍ରିୟାର କଥା ମନେ ପଡ଼େ ।

ପ୍ରଥମର ପୀରତି ଆଜଲି କାଜଲି
ପ୍ରେମତେ ମଜିଗଲ ମନ;
ପେଟତ ଭାତେ ପାନି ନେଲାଗେ ଲାହରୀ
ସଦାୟ ତୋମାଲୈ ମନ ।

ଦୂରରେ ଥିବା ପ୍ରେମିକାକୁ ମନ ବେଳେବେଳେ ଅତି ନିକଟରେ ଖୋଜେ କିନ୍ତୁ ପାଖରେ ନ ପାଇ ବଡ଼ ହନ୍ତସନ୍ତ ହୁଏ । ସତରେ ସେ କେତେ ଅଭାଗା ? ସେ ଅତି ଛୋଟ ଜୀବ ଚଢ଼େଇ ଭଳି ମୁକ୍ତ ନୁହେଁ କାହିଁକି ? ଏତେ ନୀତି ନିୟମ ତା' ପାଇଁ କାହିଁକି ରହିଛି ? ଧାନ କିଆରୀରେ ଅଧିକ ପାଣି ମାଡ଼ିଯିବାରୁ ଧାନ ଗଛଗୁଡ଼ିକ ମରିଗଲା, ଫଳରେ ଜଙ୍ଗଲୀ ଗଛ ଉଠିଲା । ସେଠାରେ ଆକାଶରେ ଉଡୁଥିବା ଛୋଟ ଛୋଟ ଚଢ଼େଇମାନେ କିଛି ସମୟ ପାଇଁ ରହି ପ୍ରୀତିର ଆଦାନ ପ୍ରଦାନ କରି ପୁଣି ଚାଲିଗଲେ ଅଥଚ ମଣିଷର ସେ ସୌଭାଗ୍ୟ ନାହିଁ ।

ଏଇବେଲି ଆହୁଧାନ ପାନୀୟେ ମାରିଲ୍ଲେ
ଓପରେ ଗଜିଲେ ମାମି;
ଉରଣୀୟା ଚରାୟେ ପୀରତି କରିଲେ
ତା'ରୋ ମାନ ନ ହଲୌଁ ଆମି ।

ପ୍ରେମ ଏକ ଚିରନ୍ତନ ସତ୍ୟ । ଏହା ଯୁଗେ ଯୁଗେ ନିଜର ଜୟଗାନ କରି ଆସିଛି । ପ୍ରେମ ବିନା ସୃଷ୍ଟି ଅସମ୍ଭବ । ମଣିଷ ପ୍ରେମ ପାଗଳ ହୋଇ ନିଜକୁ ନିଜେ ଭୁଲିଯାଏ । ଯାହା ସୃଷ୍ଟିର ନିୟମ, ତା'କୁ କେବଳ ବିହୁ ଗୀତରେ ବିହୁଆମାନେ ନାଚି ନାଚି ପରିବେଶଣ କରିଥାଆନ୍ତି । ସେହି ପ୍ରେମ ପ୍ରୀତି ଲୋକଗୀତ ସ୍ରଷ୍ଟାର ଭାଷାରେ ସୁନ୍ଦର ଭାବେ ବ୍ୟାଖ୍ୟା ହୋଇଛି । ସେ ଅତି ସୁନ୍ଦର ତଥା ସରଳିଆ ଗାଉଁଲୀ ଭାଷାରେ କହିଛନ୍ତି ଯାହା ପ୍ରତ୍ୟେକର ମନ ଓ ପ୍ରାଣକୁ ସହଜରେ ଛୁଇଁପାରିବ । ନୂଆ କରି ଆଣ୍ଠୋଉଥିବା ପିଲାକୁ ଜୋର ଜବରଦସ୍ତି କୋଳରେ ରଖିଲେ ମଧ୍ୟ ସେ କୋଳରୁ ଓହ୍ଲେଇଯାଇ ମାଟିରେ ଆଣ୍ଠୋଇବା ପାଇଁ କାନ୍ଦେ, ସେ ଧୂଳିମାଟି ପ୍ରତି ଭ୍ରୂକ୍ଷେପ ନ କରି ବରଂ ଧୂଳିରେ ଆଣ୍ଠୋଇ ଆଣ୍ଠୋଇ ଯିବା ପାଇଁ ପାଗଳ ଭଳି ହୁଏ କାରଣ ସେ ଆଣ୍ଠୋଇବା ଭିତରେ ସବୁଠାରୁ ବେଶୀ ଆନନ୍ଦ ପାଇଥାଏ । ଠିକ୍ ସେହିଭଳି ସାଧୁସନ୍ଥମାନେ ସମାଜର ସମସ୍ତ ମୋହଠୁ ଦୂରରେ ରହି ଧର୍ମ ପ୍ରତି ପାଗଳ ଭଳି ଆଶକ୍ତ ହୋଇଥାଆନ୍ତି । ଜୀବନର ଭୋକଶୋଷ ଭୁଲି ପ୍ରକୃତ ସନ୍ଥମାନେ ନିଜର ଜୀବନକୁ ଧର୍ମ ଦର୍ଶନରେ ହିଁ ନିୟୋଜିତ କରିଥାଆନ୍ତି । ସେହିଭଳି ଭାବେ ଯୁବକମାନେ ସମାଜରେ ପ୍ରେମରେ ପାଗଳ ହୋଇ ପ୍ରେମ ଓ ପ୍ରୀତିର ଜୟଗାନ କରିଥାଆନ୍ତି ।

ଧୂଳିମାଟିତ ପାଗଲା ଆଣ୍ଠୁକଢ଼ା ଲରା ।
ଧର୍ମତ ପାଗଲା ସାଧୁ
ଆମି ଡ଼େକାଲରା ପୀରତି ପାଗର୍ଲ
ନକରି କେନେକୈ ଥାକୌଁ ।

ଶବ୍ଦାର୍ଥ : ପାନି-ପାଣି, ସଦାୟ - ସବୁବେଳେ, ଆହୁ-ବର୍ଷାକାଳ ଧାନ, ଉରଣୀୟା-ଉଡ଼ନ୍ତା, ମାମି-ଜଙ୍ଗଲୀଗଛ

ଆସାମରେ ବ୍ରହ୍ମପୁତ୍ର ନଦୀଠୁ ଆରମ୍ଭ କରି ଦିଖୌନଦୀ ଏବଂ ଝାଁଜୀନଦୀ ଆଦି ଅସମୀୟାର ଅତି ପ୍ରିୟ । ବହୁକାଳରୁ ଅସମୀୟା ନଦୀକୂଳରେ ଘର କରି ଚାଷବାସ କରି ରହିବା ପାଇଁ ପସନ୍ଦ କରୁଥିଲେ । ନଦୀକୂଳରେ ବିଭିନ୍ନ ପ୍ରକାର ଫସଲ କରି ଦି ପଇସା ରୋଜଗାର କରିବା ସଂଗେ ସଂଗେ ବିହୁ ଆଗଦିନ ନଦୀକୂଳେ କୁଡ଼ିଆ କରି ଉରୁକା ଉତ୍ସବ ପାଳନ କରନ୍ତି ସେଥିପାଇଁ ଅସମୀୟାମାନେ ନଦୀକୁ ପୂଜା କରିଥାଆନ୍ତି । ନଦୀରେ ଏକା ସାଙ୍ଗରେ ମାଛଧରି ଯୁବକଯୁବତୀମାନେ ବେଶ୍ ଆନନ୍ଦ ଅନୁଭବ କରି ଥାଆନ୍ତି । ବ୍ରହ୍ମପୁତ୍ର ନଦୀକୁ ବ୍ରହ୍ମପୁତ୍ର ଦେବତା ବୋଲି କୁହାଯାଇଥାଏ । ତେଣୁ ନଦୀର ଆକର୍ଷଣ ପ୍ରତ୍ୟେକ ଅସମୀୟା ପ୍ରତି ଅଧିକ । ସନ୍ଧ୍ୟା ହେଲେ ନାଆଟିଏ ନେଇ ଲଣ୍ଠନ ଜଳାଇ ମାଛ ଧରିବାର ଆନନ୍ଦକୁ ଅସମୀୟାଟି ଭାଷାରେ ବ୍ୟକ୍ତ କରିପାରେ ନାହିଁ । ନଦୀକୂଳରେ ଫସଲ କରିବା ପାଇଁ ନଦୀର ପାଣି, ଜୀବିକା ଅର୍ଜନ ପାଇଁ ତଥା ପରିବାର ପାଇଁ ନଦୀରୁ ମାଛ ଧରିବା ପାଇଁ ପ୍ରତ୍ୟେକ ବେଶୀ ଆଗ୍ରହ ଦେଖାଇ ଥାଆନ୍ତି । ସେଥିପାଇଁ ନଦୀକୂଳରେ କେହିକେହି ଲୋକ ଘରକରି ସ୍ଥାୟୀଭାବେ ରହି ଥାଆନ୍ତି । ତେଣୁ ପ୍ରେମର ଜୟଗାନ କଲାବେଳେ ଅସମୀୟା ଯୁବକଟି ନଦୀର ଉଦାହରଣ ଦେଇ କହେ ଜୀବିକାର୍ଜନର ମୂଳସମ୍ବଳ ନଦୀକୁ ମୁଁ ଛାଡ଼ିଦେଇ ପାରିବି କିନ୍ତୁ ହେ ଲାହରୀ, ମୁଁ ତତେ ଛାଡ଼ିପାରିବିନି କାରଣ ନଦୀଠୁ ବି ତୁ ମୋ ପାଇଁ ଅଧିକ ପ୍ରିୟ । ତେଣୁ ଦରକାର ହେଲେ ବରଂ ନଖାଇ ମୁଁ ଶୁଖି ଶୁଖି ମରିଯିବି, ମାତ୍ର ତୋଠୁ ଦୂରରେ ରହିବା ମୋ ପାଇଁ ସବୁଠୁ ଯନ୍ତ୍ରଣା ଦାୟକ ।

ଦିଖୌ ନୈ ଏରିବ ପାଁରୋଁ ମଇଁ ଲାହରୀ;
ଜାଁଜୀ ନୈ ଏରିବ ପାରୋଁ;
ତୋମାରେ ପୀରତି ଏରିବ ନୋଆରେ
ନେ ଖାଇ ମରିବ ପାରୋଁ ।

ପ୍ରେମ ଏକ ଆକର୍ଷଣ ଅଟେ । ଥରେ ଏହା ଭିତରେ ପଡ଼ିଗଲେ, ସେ ବନ୍ଧନରୁ ଆଉ ସହଜରେ କେହି ମୁକ୍ତି ପାଇପାରେ ନାହିଁ । ଲୋକମାନେ ପ୍ରେମରେ ପଡି ପାଗଳ ଭଳି ଆଚରଣ କରନ୍ତି । ଅତି ପାଖରେ କ'ଣ ହୁଏ ତାହା ମଧ୍ୟ ଆଖି ଆଗରେ ଧରାପଡ଼େ ନାହିଁ । ଥରେ ଯୁବକଟି ଦିଖୌ ନଦୀ କୂଳରେ କମ୍ପାନୀର ଜାହାଜଟିକୁ ଲୁଇତନଦୀରେ ଯାଉଥିବାର ଦେଖିଲା । ଅନାଇଁ ଅନାଇଁ ଜାହାଜଟି ନୁଆଡ଼େ ବହୁ ଦୂରକୁ ଚାଲିଗଲା । ତା'ର ମନେ ପଡ଼ିଲା ଏମିତି ଦିନେ ସେ ପ୍ରେମ କରି ତା ଜୀବିକାର୍ଜନର ମୁଖ୍ୟ ସମ୍ବଳ ମଇଁଷୀକୁ ବିକି ଦେଇଥିଲା ।

---

ଶବ୍ଦାର୍ଥ : ଲରା-ପୁଅ, ଡେକା-ଯୁବକ, କେନେକୈ-କେମିତି, ଖୁଟି-କନ୍ଧା, ମ'ହ - ମଇଁଷୀ ।

ଦିଖୌ ମୁଖତ ଦେଖିଲୋଁ          କୋମ୍ପାନୀର ଜାହାଜଖୀ
                    ଲୁଇତେ ଭଟୀୟାଇ ଗଲ;
ସେନାଇର ଲଗତେ             ପୀରିତି କରୋଁତେ
                    ଖୁଟିର ମ'ହ ବିକରେ ଗଲ ।

ପ୍ରେମର ଅନେକରୂପକୁ ବ୍ୟାଖ୍ୟା କରିବା ସତରେ କଷ୍ଟକର । ପ୍ରେମ ମଣିଷର ମନ ଓ ସ୍ୱାସ୍ଥ୍ୟ ଉପରେ ପ୍ରଭାବ ପକାଇଥାଏ । ପ୍ରେମ ଏମିତି ଏକ ଜିନିଷ ଯେ କୌଣସି ଲୋକ ଏହି ଫାଶରେ ଆବଦ୍ଧ ହେଲେ ଯେତେ ଚୁପ୍ ଚାପ୍ ରହିଲେ ମଧ୍ୟ ସେ ଧରାପଡ଼ିଥାଏ । ମୁହଁରେ ଚୁପ୍ ରହି ମଧ୍ୟ ଜଣକର ପ୍ରେମ ଭାବକୁ ଅନ୍ୟଜଣେ ବୁଝିପାରିଥାଏ । ପ୍ରେମ ସବୁବେଳେ ମଣିଷର ମନକୁ ଆନନ୍ଦ ଦେଇଥାଏ ଫଳରେ ସେ ନିଜର ଏହି ଆନନ୍ଦକୁ କୌଣସି ମତେ ଲୁଚାଇ ରଖିପାରେ ନାହିଁ ।

ଲୁଇତ ବା ବ୍ରହ୍ମପୁତ୍ରର ସୌନ୍ଦର୍ଯ୍ୟ ତା'କୂଳରେ ରହିଥିବା ବାଲୁକାଗୁଡ଼ିକ ହିଁ ବଢ଼ାଉଥାଆନ୍ତି । ବାଲୁକଣାଗୁଡ଼ିକ ବହୁଦୂରରୁ ସୂର୍ଯ୍ୟ ରଶ୍ମିରେ ତଥା ଜହ୍ନରାତିରେ ଚିକ୍‌ଚିକ୍ କରିଥାଆନ୍ତି । ଆକାଶରେ ଅସଂଖ୍ୟ ତାରା ଚିକ୍‌ମିକ୍ ହୋଇ ଜଳିଲାବେଳେ ଆକାଶର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଥାଏ । ସେହିଭଳି ଲୋକମାନେ ଭିତରେ ଭିତରେ ପ୍ରେମ କଲେ ହେଁ ତା'ର ଆଭାସ ଲୋକର ଚେହେରାରେ ଫୁଟିଉଠେ, ଲୋକର ସୌନ୍ଦର୍ଯ୍ୟ ମଧ୍ୟ ବଢ଼ିଥାଏ ।

ଲୁଇତର ଶୁଅନି               ବାଲିକୈ ଚାପରି
                    ସରଗର ଶୁଅନି ତାରା;
ଭିତରି ଭିତରି               ଲୋକଲୈ ପୀରିତି
                    ମୁଖେରେ ଚୁପତି କରା ।

ପ୍ରେମ ମାନବର ସବୁଠାରୁ ଶ୍ରେଷ୍ଠ ସଂପଦ । ସୁଖଦୁଃଖମୟ ସଂସାର ଭିତରେ ମଣିଷ ପ୍ରେମକୁ ଆଶ୍ରୟ କରି ବଞ୍ଚିଥାଏ । ବିନା ପ୍ରେମରେ ଜୀବନ ଶୁଷ୍କ ଓ ନୀରସ ହୋଇଥାଏ । ପ୍ରୀତି କରି ଯଦି କେହି ଏହାଠୁ ଦୂରେଇ ଯାଏ ତା ହେଲେ ଆଉ ପ୍ରୀତି ପାଇବା କଷ୍ଟକର ହେବ । ପ୍ରେମିକ ପ୍ରେମିକା ଯୌବନର ଆହ୍ୱାନରେ ପ୍ରୀତିର ଜୟଗାନ କରିଥାଆନ୍ତି କାରଣ ପ୍ରେମ ଓ ପ୍ରୀତି ସାଂସାରିକ ଦୁଃଖ ଜଞ୍ଜାଳ ଭିତରେ ପ୍ରୀତିର ଜୟଗାନ କରି ନଥାଏ । ତା ପ୍ରତି ଲକ୍ଷ୍ୟ ରଖି ଅନ୍ୟ ଯୁବକ ଯୁବତୀମାନେ କୁହନ୍ତି ତୁ ଯଦି ଏହି ସମୟରେ ପ୍ରେମ କରିବୁନି ଆଉ କେତେବେଳେ କରିବୁ ? ଏ ବୟସରେ ମନଦୁଃଖ କରି କାହିଁକି ରହିବ କାରଣ ଏହା ଦୁଃଖ କରିବାର ସମୟ ନୁହେଁ ବରଂ ପ୍ରୀତିର ମନ୍ତ୍ର ଗାଇବାର ଉତ୍କୃଷ୍ଟ ସମୟ । ପ୍ରୀତିର ଜୟଗାନରେ ହିଁ ପ୍ରେମ ଅଧିକ ଉଜ୍ଜ୍ୱଳ ହୋଇଉଠିଥାଏ ।

---

ଶବ୍ଦାର୍ଥ : ଶୁଅନି - ସୁନ୍ଦର, ଚୁପତି - ମଜ୍ଜା

ପୀରିତି ପ୍ରେମର ଧନ ଅ' ମୋର ମଇନା କନ
ଏରିଲେ ପାବଲୈ ଟାନ ;
ଏଇନୋ ଯୌବନତ ପୀରିତି ନ କରି
କିୟ ମାରି ଥାକା ମନ ?

ପ୍ରେମର ଅନ୍ୟନାମ ତ୍ୟାଗ ଅଟେ । ଏହା ଯୁଗେ ଯୁଗେ ଅମର । ପ୍ରେମର ସାର୍ଥକତା ପାଇଁ ଉଭୟଙ୍କୁ କିଛିଟା ତ୍ୟାଗ କରିବାକୁ ହେବ । ବିନା ତ୍ୟାଗରେ ପ୍ରେମ ନିମ୍ନସ୍ତରକୁ ଖସିଯାଇ କେବଳ ଦୈହିକ ବାସ୍ନା ଚରିତାର୍ଥ କରିଥାଏ । ସମୟ ଚକ୍ରରେ ମଣିଷ ପୃଥିବୀରୁ ବିଦାୟ ନେଲେ ହେଁ ତା'ର ପ୍ରେମପୂର୍ଣ୍ଣ ଅମର କାହାଣୀ ଇତିହାସରେ ଲିପିବଦ୍ଧ ହୋଇଥାଏ । ତେଣୁ ତ୍ୟାଗରେ ପ୍ରେମକାହାଣୀ ମାର୍ଜି ହୋଇ ଚିକ୍‌ଚିକ୍ କରେ । ପରସ୍ପରକୁ ବୁଝିବାର ଧୈର୍ଯ୍ୟ ଓ ଚିନ୍ତାଧାରା ଭିତରେ ରହି, ସମୟ ଏବଂ ପରିସ୍ଥିତିକୁ ଦେଖି ସମାଜର ଶୃଙ୍ଖଳା ଭିତରେ ରହି ପ୍ରେମିକ ପ୍ରେମିକା ପ୍ରେମ ଭାବର ଆଦାନ ପ୍ରଦାନ କରିବାରେ ମଧ୍ୟ ପ୍ରେମର ଜୟଗାନ କରାଯାଇପାରେ । ତେଣୁ ଯେଉଁମାନେ ପରିସ୍ଥିତିକୁ ହୃଦୟଙ୍ଗମ କରି ଅନ୍ୟପାଇଁ ତ୍ୟାଗ କରିଥାଆନ୍ତି, ତା ମଧ୍ୟରେ ପ୍ରକୃତ ପ୍ରେମକୁ ସେମାନେ ଉପଲବ୍ଧି କରିଥାଆନ୍ତି । ସେଥିପାଇଁ ଯେଉଁମାନେ ବିବେକୀ, ସେମାନେ ଭଲମନ୍ଦର ବିଚାର କରିପାରନ୍ତି ।

ରୈନୋ ରୈ ପୀରିତି କରିମ ଐ ଲାହରୀ
ରୈନୋ ରୈ ପୀରିତି କରିମ ;
ଜୀୟାଇ ଥାକୋଁମାନେ ପୀରିତି ନ କରି
ମରିଲେ କାହାନୀ କରିମ ।

ଅସମୀୟା ସମାଜରେ ପ୍ରେମ ଓ ପ୍ରୀତି ସହିତ ପାରମ୍ପରିକ ବିଶ୍ୱାସ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ପ୍ରେମ ଭଳି ଏକ ପବିତ୍ର ଜିନିଷ ଯାହା ଛୋଟବେଳୁ ସରଳ ମନକୁ ଅଧିକ ଚଞ୍ଚଳିତ କରିଥାଏ । ପ୍ରେମ ସୂକ୍ଷ୍ମ ତଥା କୋମଳ ମନ ଉପରେ ଧୀରେ ଧୀରେ ନିଜର ଆଧିପତ୍ୟ ବିସ୍ତାର କରିଥାଏ । ଯୁବକଯୁବତୀମାନେ ଯେତିକି ଯେତିକି ବଡ଼ ହୁଅନ୍ତି, ଅଭିଜ୍ଞତା ବି ତା ସହିତ ବଢ଼ି ଚାଲିଥାଏ । ସମୟକ୍ରମେ ପରିବେଶ ଓ ପରିସ୍ଥିତି ଯୁବକଯୁବତୀମାନଙ୍କୁ ପ୍ରେମ ଓ ପ୍ରୀତି ମାଧ୍ୟମରେ ଜୀବନର ସୁଖଦୁଃଖର ଆଭାସ ଦେଇଥାଆନ୍ତି । ପରିସ୍ଥିତି କେବେ ପୁଣି ପ୍ରେମିକକୁ ଜୀବିକାର୍ଜନ ଉଦ୍ଦେଶ୍ୟରେ ପ୍ରେମିକାଠୁ ବହୁଦୂରକୁ ନେଇଯାଏ । ଦୂରରେ ପରିସ୍ଥିତିର ତାଡ଼ନାରେ ମଣିଷ ଅତୀତକୁ ପଛରେ ଛାଡ଼ିଦେଇ ଚାଲିଯାଏ । ଗାଁର ସରଳ ନିରୀହା ଝିଅଟି ଅତୀତକୁ ଜାବୁଡ଼ିଧରି ଦୁଃଖରେ ଦିନ କାଟିବାକୁ ବାଧ ହୁଏ । ଛୋଟବେଳୁ ପରସ୍ପର ପରସ୍ପରକୁ ଭଲ ପାଇଥିଲେ ମଧ୍ୟ ବଡ଼ ହେଲାପରେ ଯୁବକର ଉଚ୍ଚଡିଗ୍ରୀଧାରୀ ଶିକ୍ଷା ତା'କୁ

---

ଶବ୍ଦାର୍ଥ :- ରୈ-ରହି, ଜୀୟାଇ-ବଞ୍ଚି, କାହାନୀ-କେତେବେଳେ, କଲ - କଦଳୀ

ସହରାଭିମୂଖୀ କରିବା ସଂଗେ ସଂଗେ ଉଚ୍ଚାଭିଳାଷୀ କରି ଗଢି ତୋଳେ । ତା'ର ପରିଣତି ସ୍ୱରୂପ ସେ ଛୋଟବେଲୁ ଭଲପାଇ ବସିଥିବା ଝିଅଟିକୁ ନିଜର ଅନୁପଯୁକ୍ତା ଭାବି ଜାଣିଶୁଣି ତା'କୁ ଚିରଦିନ ପାଇଁ ଆପଣାର କରିବାକୁ ଇଚ୍ଛା କରେନାହିଁ । ଛୋଟବେଲୁ ତା'ର ସୁଖଦୁଃଖରେ ଭାଗୀ ହୋଇଥିବା ଝିଅଟି ତା' ବିନା ଦିନରାତି ଆଖିରୁ ଲୁହ ଝରାଏ । ସେ ଅନ୍ୟକୁ ନିଜ ହୃଦୟରେ ସ୍ଥାନ ଦେବାପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇପାରେ ନାହିଁ । ସେଥିପାଇଁ ଆସାମରେ ଲୋକବିଶ୍ୱାସରେ ଛୋଟବେଲୁ କେହି କୌଣସି ଝିଅକୁ ଭଲପାଇ ଶେଷରେ ତା'କୁ ଯଦି ଗ୍ରହଣ କରିବାକୁ ରାଜିହୁଏ ନାହିଁ, ତା' ହେଲେ ତା'କୁ ସ୍ତ୍ରୀବଧଜନିତ ପାପ ଲାଗେ ବୋଲି ବିଶ୍ୱାସ କରାଯାଇଥାଏ । ଘର ଦୁଆର ମୁହଁରେ ଉତ୍ତମ ବାସ୍ନାଯୁକ୍ତ ସୋନ୍ଧା କଦଳୀଗଛଟିଏ ଲଗେଇଲେ ଅତି ସୁନ୍ଦର ଦେଖାଯାଏ ମାତ୍ର ତାହା କୋଉ କୂଳକୁ ନୁହଁ, କାଉଟିଏ ବସିପଡିଲେ ଗଛ ଭାଙ୍ଗିପଡ଼େ । ସେମିତି ଛୋଟବେଲୁ ଏତେ ସ୍ନେହ ଓ ପ୍ରୀତିର କିଛି ମୂଲ୍ୟ ନାହିଁ ଯଦି ବଡ଼ ହୋଇ କ'ଣ ତା'କୁ ଭୁଲି ଯିବ ?

ପଦୂଲି ମୁଖରେ ସୋନ୍ଧାକଲ ଏଜୁପି
କାଉରୀ ପରିଲେ ଭାଗେ ;
ଆମାରେ ପୀରିତି ସରୁରେ ଏ ପରା
ଏରିଲେ ତିରୀ ବଧ ଲାଗେ ।

ବୁଦ୍ଧିମାନ ତଥା ଅଭିଜ୍ଞତା ସଂପନ୍ନ ଲୋକମାନେ ପ୍ରେମକରି ପ୍ରେମର ମହତ୍ତ୍ୱ ବଜାଇ ରଖି ଥାଆନ୍ତି । ସତ୍‌ସାହସ ତଥା ନିଜ ଉପରେ ଆସ୍ଥାବାନ ବ୍ୟକ୍ତି ହିଁ ପ୍ରେମର ପରାକାଷ୍ଠା ପ୍ରଦାନ କରିଥାଏ । ସମାଜ ସବୁବେଳେ ପ୍ରେମିକ ଓ ପ୍ରେମିକାର ସଂପର୍କକୁ ସ୍ୱୀକୃତି ଦେଇ ନଥାଏ । ରକ୍ଷଣଶୀଳ ସମାଜରେ କେହି ଯଦି ନିଜର ଦାୟିତ୍ୱକତାର ପରିଚୟ ଦେବାକୁ ଯାଇ ସମାଜ ଆଗରେ ସ୍ପଷ୍ଟବାଦୀ ହେବ, ସେ କେବଳ ଆଘାତ ପାଇବ, ଲୋକହସା ହେବ, ଶେଷରେ ସେ ଅପମାନିତ ହୋଇ ସମାଜ ପାଖରେ ହାରିଯିବ । ତେଣୁ ପ୍ରେମର ଜୟଗାନ କରୁଥିବା ଅଭିଜ୍ଞ ପୁରୁଷ କହିଛନ୍ତି ପ୍ରେମପ୍ରୀତିକୁ ଚିରସ୍ଥାୟୀ କରିବାକୁ ହେଲେ ବୁଦ୍ଧି ଓ ବିବେକର ପ୍ରୟୋଜନ । ଯିଏ ବୁଦ୍ଧିମାନ ଲୋକ, ସେ ସ୍ଥାନ, କାଳ, ପାତ୍ରର ବିଚାର କରି ନିଜର ପ୍ରୀତିର ମହତ୍ତ୍ୱ ବଢେଇବ । ପରିସ୍ଥିତି ଓ ପରିବେଶକୁ ଦେଖି ଲୋକମାନଙ୍କ ଆଗରେ ଅତି ଆପଣାର ଲୋକକୁ ମଧ୍ୟ ମନଖୋଲା କଥା ନ କହି ନିଜର ଇଚ୍ଛାକୁ ଦମନ କରି ରଖିବା ଉଚିତ । ନିଜର ଶତ୍ରୁକୁ ଦେଖିଲେ ପ୍ରେମିକାଟି ଆପଣାର ଲୋକଟିକୁ କମ୍ କଥା କହିବ, ଏକୁଟିଆ ବେଳେ ନିଜର ଇଚ୍ଛାମତେ ସମ୍ବୋଧନ କରି ମନକଥା ଖୋଲି କହିବ, ତା ହେଲେ ସେହି ଲୋକ ପ୍ରେମ ଓ ପ୍ରୀତି ଚିରସ୍ଥାୟୀ ହେବ । ବିଜ୍ଞ ଅଭିଜ୍ଞତାସଂପନ୍ନ ଲୋକର ଦୃଷ୍ଟିରେ ପ୍ରେମର ମହତ୍ତ୍ୱ ବଜାଇ ରଖିବାକୁ ହେଲେ ବୁଦ୍ଧିର ଆବଶ୍ୟକତା ବହୁତ ବେଶୀ ।

ଚଲେ ଚାଇ ପୀରିତି କରିବା ଲାହରୀ
ସମୟ ଚାଇ ଲଗାବା ମାତ ;
ଶତୁରୁ ଦେଖିଲେ କକାଇଦେଓ ବୁଲିବା
ଅକଲେ ବୁଲିବା ନାଥ ।

ପ୍ରେମ ମଣିଷକୁ ହତାଶା ଭିତରକୁ ଟାଣି ନେଇଥାଏ । ଅପେକ୍ଷାର ସୀମା ଅତିକ୍ରମ କଲେ ଉଭୟ ପ୍ରେମୀଙ୍କର ଧୈର୍ଯ୍ୟଚ୍ୟୁତି ଘଟେ । ଦିନରାତି ଦୁଃଖ ଓ ମାନସିକ ଯନ୍ତ୍ରଣା ଭିତରେ ଦିନ କଟାଇବାକୁ ହୁଏ । ଭୋକଶୋଷ ଭୁଲି ଉଭୟ ପ୍ରେମୀ ଆଖିରୁ ଲୁହ ଗଡାଇଥାଆନ୍ତି । ସମାଜରେ ସମସ୍ତେ ଏହି ପରିସ୍ଥିତିକୁ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ । ସମୟ ସମୟରେ ମନେ ହୁଏ, ଅତି ଆପଣାର ଲୋକଟି ଚିରଦିନ ପାଇଁ ପର ହୋଇଯିବ । ଏକଥା ଭାବିଲେ ଲୋକଟି ନିଜକୁ ନିଜେ ସମ୍ଭାଳି ପାରେନି । ସେ ବେଳେବେଳେ କାନ୍ଦି କାନ୍ଦି ତଳେ ଲୋଟିଯାଏ। ସମାଜ ପ୍ରତି ତା'ର ଆଉ ଭ୍ରୂକ୍ଷେପ ନଥାଏ । ସେ ସମସ୍ତଙ୍କଠୁ ସବୁପ୍ରକାର ମୋହମାୟା ଛଡ଼ାଇ ଏ ସଂସାରରୁ ବିଦାୟ ନେବାକୁ ଇଚ୍ଛା କରେ । ତା' ଜୀବନରେ କେବଳ ଦୁଃଖ ଓ ହତାଶା ଆସିଥାଏ । ଭବିଷ୍ୟତ ତା'କୁ ଉପହାସ କରେ । ସେ ନିଜେ ବଞ୍ଚିବା ପାଇଁ ଉଚିତ ମନେ କରେ ନାହିଁ । ଅନ୍ୟପଟେ ପ୍ରେମ ଓ ପ୍ରୀତିକୁ ବଜାୟ ରଖିପାରେନି । ଫଳରେ ବେକରେ ଦଉଡି ଦେଇ ମରିବ ବୋଲି ସ୍ଥିର କରିଥାଏ ।

ତୁମିଯେ ଆମିଯେ ପୀରିତି କରିଲୋଁ
ଭାଲୁକା ବାଁହର ତଳତ ;
ତୋମାକ ଐ ଲାହରୀ ନେ ପାବ ଲାଗିଲେ
ଟୀପ ଦି ମରିଯାମ ଗଳତ ।

ପ୍ରେମ ନୀରବତା ଭିତରେ ଅଧିକ ଯନ୍ତ୍ରଣା ଦେଇଥାଏ । ଜଣେ ଅନ୍ୟଜଣକୁ ମନର କଥା କହିବ ବୋଲି ଭାବି ଭାବି ଶେଷରେ ବ୍ୟର୍ଥ ହୋଇଥାଏ । ପ୍ରେମର ଭାଷା ପ୍ରତୀକଧର୍ମୀ କିନ୍ତୁ ସହଜବୋଧ । ଆବେଗରେ ଉଛୁଳି ପଡୁଥିବା ଶିଳ୍ପୀମନର ଆନନ୍ଦ ବିହୁଗୀତ ଗୁଡିକରେ ସୁପରିକଳ୍ପିତ ଭାବେ ଅଳଙ୍କାରରେ ପରିପୂର୍ଣ୍ଣ ନ ହେଲେ ହେଁ ବେଳେବେଳେ ସ୍ୱତଃସ୍ଫୂର୍ତ୍ତ ଭାବେ ଅଳଙ୍କୃତ ହୋଇପଡିଛି । ଭାବୁକପ୍ରେମୀ ଆକାଶରେ ଉଡି ଯାଉଥିବା କଳା ଭଅଁରକୁ ସ୍ଥିର ହୋଇ ଚାହିଁ ରହିଛି । କେଜାଣି କେମିତି ଏହି ସମୟରେ ହଠାତ୍ ଅନ୍ୟ ଉପରେ ଆଖି ପଡିଯାଇଛି । ଆଖିରେ ଆଖିରେ ପ୍ରେମ ଭାବର ଆଦାନ ପ୍ରଦାନ ହୋଇଛି । ସମୟ ବିତି ଯାଇଛି । ଆଜି ସେ କଥା ପୁଣି ମନେ ପଡୁଛି ।

---

ଚଲ - ସୁଯୋଗ, ଚାଇ-ଦେଖି, ଲଗାବା ମାତ - କଥାକହିବା, ଶତୁରୁ-ଶତ୍ରୁ, କକାଇ- ବଡ଼ଭାଇ, ଅକଲେ-ଏକୁଟିଆ, ଟୀପଦି-ରଶିଦେଇ, ବାହଁ-ବାଉଁଶ, କାଳିନ୍ଦୀ- କାଳିଆ ।

ଓପରେ ଉରିଲେ  କାଳିନ୍ଦୀ ଭୋମୋରା
ଥୟ ହୈ ଆଛିଲୋଁ ଚାଇ ;
ତୋମାରେ ଆମାରେ  ପୀରିତି ଲାଗିଲେ
ଚକୁୟେ ଚକୁୟେ ଚାଇ ।

ବହୁଗୀତରେ ପ୍ରକୃତିର ଅପରୂପ ଛବି ବର୍ଣ୍ଣିତ ହେବା ସଂଗେ ସଂଗେ ଦୈନନ୍ଦିନ ଜୀବନର କାହାଣୀ ମଧ୍ୟ ବର୍ଣ୍ଣିତ ହୋଇଛି । ବିହୁଗୀତର ବନଘୋଷା ବିଭାଗଟିରେ ଯୁବକଯୁବତୀମାନଙ୍କର ପ୍ରେମ ଓ ପ୍ରୀତିର ଭାବ ସ୍ୱଷ୍ଟଭାବେ ଫୁଟି ଉଠିଛି । ଯେଉଁ ବିହୁଗୀତ ଗୁହିକ ଅଶ୍ଳୀଳ ଓ ଅଶ୍ରାବ୍ୟ ବୋଲି କେତେକ ଆଲୋଚକ୍ମ ମତ ଦେଇଛନ୍ତି ତାହାକୁ 'ବନଘୋଷା' ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇଛି । କେହି କେହି ସମାଲୋଚକଙ୍କ ମତରେ 'ବିହୁଗୀତ' କିମ୍ୱା ବନଘୋଷାର ଭାଷା ସରଳ ଏବଂ ଗାଉଁଲିଆ ଲୋକର ଭାଷା । ବନଘୋଷାର ଭାଷାରେ ବନରୀୟା ବା ଜଙ୍ଗଲୀଆ ଭାବ ଏବଂ ମୁକ୍ତରୀତି ଦେଖିବାକୁ ମିଳିଥାଏ । ନଈକୂଳର ପାଣିଘାଟ, ଗୋରୁଚରା ପଡିଆ, ଚୈତ୍ରମାସ ରାତିର ବିହୁ, ବିହୁତଳି ଅଥବା ଘନଜଙ୍ଗଲ ମଧ୍ୟରେ ଉନ୍ମୁକ୍ତ ମନନେଇ ଘୁରି ବୁଲୁଥିବା ଗାଉଁଲିଆ ସ୍ୱଭାବକବି ଖୁସୀମନରେ ଗାଉଥିବା ଗୀତଗୁଡ଼ିକୁ ତଥାକଥିତ ଶିକ୍ଷିତ ତଥା ଭଦ୍ରସମାଜର ଲୋକମାନଙ୍କ ପାଇଁ ଅଶ୍ଳୀଳ ହୋଇପାରେ ମାତ୍ର ଏହା ସରଳ ମନର ଅବିକଳ ରୂପ । ଗୀତରେ ହେଲେ ମଧ୍ୟ ଗାଉଁଲିଆ ଲୋକଟି ପ୍ରକୃତରେ ମନର ଭାବକୁ ବ୍ୟକ୍ତି କରିବା ପାଇଁ ଇଚ୍ଛା କରେ, ତା'କୁ ବଳିଷ୍ଠ ଭାବେ ପ୍ରକାଶ କରିବା ପାଇଁ ଶବ୍ଦଚୟନ ପ୍ରତି ଦୃଷ୍ଟି ଦେଇ ନଥାଏ । ଯେଉଁ ଶବ୍ଦ ମାଧ୍ୟମରେ ଭାବ ଅଧିକ ଶକ୍ତିଶାଳୀ ହୋଇ ପ୍ରକାଶ ପାଇବ ବୋଲି ସେ ଆଶା କରେ, ସେହିଭଳି ଶବ୍ଦକୁ ବ୍ୟବହାର କରେ ଏବଂ ସେହି ସମୟରେ ଅଶ୍ଳୀଳ ଶବ୍ଦ ମଧ୍ୟ ପ୍ରକାଶ ପାଇପାରେ । ଏହିପରି ତଥାକଥିତ ଅଶ୍ଳୀଳ ବା ଅଶ୍ରାବ୍ୟ ଗୀତଗୁଡ଼ିକ ଭିତରେ ମାର୍ଜିତ, ସୁରୁଚିପୂର୍ଣ୍ଣ କାବ୍ୟିକ ଅଭିବ୍ୟକ୍ତି ବ୍ୟଞ୍ଜିକ ମୁକ୍ତାମଣି ସଦୃଶ ଗୋଟିଏ ଗୋଟିଏ ଗୀତ ଶୁଣିବାକୁ ମିଳିଥାଏ । (୧୧୬)

**ନାରୀର ରୂପ ବର୍ଣ୍ଣନା-** ଯୌବନର ପରଶରେ ପୃଥିବୀ ବସନ୍ତ ଋତୁରେ ଅଧିକ ସୁନ୍ଦରୀ ହେଲାଭଳି ନାରୀମାନେ ଯୌବନାବସ୍ଥାରେ ଅଧିକ ଆକର୍ଷଣୀୟ ହୋଇଥାଆନ୍ତି । ସୌନ୍ଦର୍ଯ୍ୟ ପ୍ରତି ଥିବା ତୀବ୍ର ଆଗ୍ରହ ଏହି ଅବସ୍ଥାରେ ଜାଗି ଉଠେ । ଯୌନାସକ୍ତିର ପ୍ରଭାବରେ ପ୍ରଭାବାନ୍ୱିତ ଶାରୀରିକ ସୌନ୍ଦର୍ଯ୍ୟ ମଧ୍ୟ ଯୌନାସକ୍ତିପୂର୍ଣ୍ଣ ହୋଇପଡ଼େ । ନାରୀପ୍ରତି ପୁରୁଷର, ପୁରୁଷ ପ୍ରତି ନାରୀର ଆକର୍ଷଣ ବଢ଼ିଥାଏ । ଅଂଗ ବିଶେଷରେ ଆକର୍ଷଣ ସ୍ୱଷ୍ଟଭାବେ ପ୍ରକଟିତ ହୋଇଉଠେ । ମୁଖମଣ୍ଡଳ ସହିତ ହାତ, ଗୋଡ଼ ତଥା ଅଣ୍ଟାର ମନମୋହକ ରୂପ ବିହୁଗୀତ ଭିତରକୁ ଧସେଇ ହୋଇ ପଶିଆସେ ।

ହାତଲୈ କି ଚାବା ହାତୀରେ ଶୁଁରେ ଯେନ
ଭରିରନୋ କି ଚାବା ଗୋଟ ;
ମୁଖଲୈ କି ଚାବା ଦୋଲା ଦାପୋନ ଯେନ
ଏ ଖାମୋଚ କଙ୍କାଳର ଗୋଟ ।

ନାରୀର ରୂପରେ ପ୍ରେମିକ ଯେତିକି ମୁଗ୍ଧ ହୋଇ ଆକୃଷ୍ଟ ହୋଇଛି । ତା'ଠୁ ବେଶୀ ଅବିଭୂତ ହୋଇପଡିଛି । ସେ ନିଜେ ଆଶ୍ଚର୍ଯ୍ୟ ପ୍ରକାଶ କରି କହୁଛି ପ୍ରେମିକାର ହାତ ହାତୀର ଶୁଣ୍ଢଭଳି ଶୋଭା ପାଉଛି । ପାଦଦୁଇଟି ପୃଥିବୀର ସମସ୍ତ ସୌନ୍ଦର୍ଯ୍ୟକୁ ଏକାଠି କରି ପ୍ରକାଶ ପାଇଛି । ମୁହଁଟି ଦର୍ପଣ ଭଳି ଝଟକୁଛି । ଅଣ୍ଟାଟି ହାତମୁଠାରେ ମୁଠିଏ ବି ହେବନି । ଏଠାରେ ନାରୀର ସୁନ୍ଦର କଟୀ ପୁରୁଷକୁ ଅଧିକ ଆକୃଷ୍ଟ କରିଥିବାରୁ ତାହା ବିହୁଗୀତରେ ଏ ଖାମୋଚ କଙ୍କାଳର ଗୋଟ ବୋଲି ବର୍ଣ୍ଣିତ ହୋଇଛି ।

ନାରୀର ରୂପ ବର୍ଣ୍ଣନା ସହିତ ବିଭିନ୍ନ ପରିବେଶ ଓ ପରିସ୍ଥିତିରେ ପୁରୁଷର ମନକୁ ନାରୀର କାର୍ଯ୍ୟକଳାପ ଗୁଡିକ ଆନନ୍ଦ ପ୍ରଦାନ କରିଥାଏ । ଘରବାଡ଼ି କାମରେ ନାରୀମାନେ ବ୍ୟସ୍ତରହି ବେଳେ ବେଳ ନିଜର ଆପଣାର ଲୋକଟି ପ୍ରତି ଧ୍ୟାନ ଦେଇ ନଥାନ୍ତି ତଥାପି ଏହି ଜଞ୍ଜାଳ ଭିତରେ ନାରୀର ଅନ୍ତଃ ସୌନ୍ଦର୍ଯ୍ୟ ଫୁଟି ଉଠିଥାଏ । ସେ ଗୋଟିଏ ଜାଗାରେ ବସି କୌଣସି କାମ କଲାବେଳେ ମନପୁଣି ଅତୀତକୁ ଫେରିଯାଏ । ପାଦର ଆଙ୍ଗୁଳିରେ ଧୀରେ ଧୀରେ ମାଟିକୁ ଆଡ଼ଉ ଆଡ଼ଉ କାମ କଥା ଭୁଲିଯାଏ । ହାତର ଲମ୍ବା ଲମ୍ବା ଗଣ୍ଡି ଗଣ୍ଡିକିଆ ଆଙ୍ଗୁଳିଗୁଡିକ ଏତିକିବେଳେ ଯେତିକି ସୁନ୍ଦର ଦେଖାଯାଏ, ତା'ଠୁ ଅଧିକ ସୁନ୍ଦର ପାଦରେ ଲାଗି ଲାଗି ରହିଥିବା ଆଙ୍ଗୁଳିଗୁଡିକ ଦେଖାଯାଏ ।

ହାତର ଆଙ୍ଗୁଳି ପବାଲି ପବାଲି
ଭରିର ଆଙ୍ଗୁଳି ଘନ ;
ଭରିର ଆଙ୍ଗୁଳିତ ମାଟି ଖୁସରିଛ
କାଲୈ କରିଛ ମନ ?

ବିନା ଅଳଙ୍କାରରେ ମଧ୍ୟ ଅସମୀୟା ନାରୀର ସୌନ୍ଦର୍ଯ୍ୟ ଫୁଟି ଉଠିଥାଏ । ତା'ର ରଂଗ ଓ ରୂପର ବର୍ଣ୍ଣନା କରିବା ପାଇଁ ଲୋକକବି ବ୍ୟାକୁଳ ହୋଇପଡିଛି । ଏଠାରେ ପ୍ରେମିକର ମୁହଁରେ ଏହି ବର୍ଣ୍ଣନା ଅଧିକ ରୋମାଞ୍ଚକର ହୋଇଛି । ନାରୀଟିର ରୂପ ଓ ଗୁଣରେ ମୁଗ୍ଧ ହୋଇ କେହି କେହି ସ୍ନେହରେ 'ମଇନା' ବୋଲି ଡାକିଲେ ହେଁ ପ୍ରିୟ

---

ଶବ୍ଦାର୍ଥ : ଚାବା-ଦେଖିବା, ଶୁଁର-ଶୁଣ୍ଢ, ଭରି-ଗୋଡ଼, ଦାପୋନ-ଦର୍ପଣ, ଏଖାମୋଚ - ମୁଠାଏ, ଆଙ୍ଗୁଳି-ଆଙ୍ଗୁଠି, ଖୁସରିଛ-ଆଁଚୁଡ଼ିବା, ବୁକୁ-ହୃଦୟ, ଫାଳ-ଆଡ଼କୁ, ଜୋନ-ଜହ୍ନ, ଘୋରାଁ-ଘୋଡ଼ା, ନୋଆରି-ପାରିବନି, ପାଭମାଛ-ପମ ଫ୍ରେଟମାଛ ।

ପୁରୁଷଟି ତା'କୁ ନିଜ ଅନ୍ତରର ସୁବର୍ଣ୍ଣ ବୋଲି ଡାକିଛି । ତା'ର ଉଜ୍ଜ୍ୱଳ କାନ୍ତିରେ ପୁରୁଷଟି ତା' ମୁହଁକୁ ଅନେଇବାକୁ ଯାଇ ନିଜେ ଲାଜ ପାଇଛି । ଶେଷରେ ସେ ଉପମାରେ ପ୍ରେମିକାକୁ ବିଭୂଷିତା କରିବାକୁ ଇଚ୍ଛା କରି କହିଛି ତୋ ମୁହଁଟି ପୂର୍ଣ୍ଣିମାର ଜହ୍ନ ଭଳି ଦାଉ ଦାଉ କରୁଛି ।

ଇ ବୋଲେ ମଇନା ସି ବୋଲେ ମଇନା
ମଇଁ ବୋଲୋଁ ବୁକୁରେ ସୋନ ;
ମଇନାର ଫାଲଲୈ ଚାବକୈ ନୋ ଆରି
ଯେନେ ପୂର୍ଣ୍ଣିମାର ଜୋନ ।

ଓଡ଼ିଆ ସାହିତ୍ୟ ଜଗତରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ନାରୀର ରୂପ ବର୍ଣ୍ଣନା କଲାବେଳେ ଯେପରି ବେଳେବେଳେ ଆତ୍ମବିଭୋର ହୋଇପଡ଼ିଛନ୍ତି, ଠିକ୍ ସେମିତି ଆସାମର ଲୋକକବି ନାରୀର ନଖଠୁ ଶିଖ ପର୍ଯ୍ୟନ୍ତ ବର୍ଣ୍ଣନା କରୁ କରୁ କେତେଗୁଡ଼ିଏ ପ୍ରାଚୀନ ଉପମାର ପ୍ରୟୋଗ କରିଛନ୍ତି । କବିର ଭାଷାରେ ତା'ର ଗାଲ ଦୁଇଟି ପାଭ ମାଛ ଭଳି ଚିକ୍‌ଚିକ୍ କରୁଥାଏ, କେଶଗୁଡ଼ିକ ଘୋଡ଼ାଲାଞ୍ଜର କେଶଭଳି ଅତି ସୁନ୍ଦର ଦେଖାଯାଉଥାଏ । ସେହି କେଶବତୀ ନାରୀଟିକୁ ବାହାହୋଇ ଘରକୁ ଆଣିବା ପାଇଁ ପୁରୁଷଟି ଘରର ଆସବାସ ପତ୍ର ବିକ୍ରୀ କରି ଘରକୁ ସଜେଇଲା । ଅତି ଯତ୍ନରେ କୁଣକାଠିରେ ମସିଣା ଓ ତୁଳାର ଗଦି ତିଆରି କଲା ତଥାପି ତା' ଅପେକ୍ଷାର ଶେଷ ହେଲା ନାହିଁ ।

ତୋମାର ଗାଲଦୁଖନି ପାଭମାଛର ନିଶିନା
ଘୋରାଁ ଫାନର ନିଶିନା ଚୁଲି ;
ତୋମାକ ଆନିମ ବୁଲି ସଜାଲୋଁ ପରାଲୋଁ
ମାଦୁରି ତୁଲାରେ ତୁଲି ।

ପ୍ରେମିକାଟି ମୁଣ୍ଡରେ ନାଲିରଂଗର ଟୋପାଟିଏ ଲଗେଇ ବହୁଜଣଙ୍କ ଭିତରେ ବାରିହୋଇ ପଡୁଛି । ପାଣିର ଦଳ ଉପରେ ଚଢେଇଗୁଡ଼ିଏ ଦଳ ଦଳ ହୋଇ ଉଡ଼ିଗଲାବେଳେ ତାଙ୍କ ନାଁ ନ ଜାଣିଲେ ମଧ୍ୟ ତାଙ୍କର ନାଲିଓଠ ପାଇଁ ମନରେ ଏକ ପ୍ରକାର କୌତୂହଳ ଆସିଥାଏ । ଠିକ୍ ସେହିଭଳି ପ୍ରେମିକାର କପାଳର ନାଲିଟିପାଟିଏ ବହୁଦୂରରୁ ଜଣାପଡ଼ିଥାଏ । ଝିଅଟି ଏମିତିରେ ସୁନ୍ଦର । ତା ସହିତ ମଥାରେ ନାଲିଟିପା, ମୁଣ୍ଡରେ ସୁନା କ୍ଲିପ୍ ମାରିଥିବାରୁ ସେ ବହୁଦୂରରୁ ଆଖିରେ ପଡ଼ିଥାଏ ।

ଦଲନି ଓପରେ କିଂଚରାଇ ଉରିଲେ
ଆଟାଇରେ ରଂଘା ରଂଗା ଠୋଁଟ ;
ଅକଲ ବଗୀ ତରା , ସୋନର ଗିଲିପ ମରା
କପାଲତ ସେନ୍ଦୂରର ଫୋଁଟ ।

ନାରୀର ଅପରୂପ ସୌନ୍ଦର୍ଯ୍ୟ ସହିତ ତା'ର ପାରମ୍ପରିକ ବେଶପୋଷାକ ଓ ପାରଂପରିକ ରୂପଚର୍ଚ୍ଚାରେ ଲୋକକବି ଆତ୍ମବିଭୋର ହୋଇପଡିଛି । ତା'ର ଅଳଙ୍କାର ଭାବେ ହାତରେ ଗାମଖଡୁ, ବକ୍ଷଦେଶରେ ରିହା, ନାରୀର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରିଥାଏ । ସେହିଭଳି ମଥାର ସୁନ୍ଥାଣି ମଥାର ସୌନ୍ଦର୍ଯ୍ୟ ବଢାଇଥାଏ ଏବଂ ଗଳାର ପଛପଟେ ମଥାର ଖୋପା ଗଳାର ସୌନ୍ଦର୍ଯ୍ୟକୁ ଅଧିକ ବଢାଇଥାଏ ।

ହାତରେ ଶୁଅନି          ହାତର ଗାମଖାରୁ
କଙ୍କାଳର ଶୁଅନି ରିହା ;
ମୂରରେ ଶୁଅନି          ମୂରରେ ସେଓଁତା
ଗଲଧନର ଶୁଅନି ଖୋପା ।

ନାରୀ ବେଶପୋଷାକ ତଥା ଅଳଙ୍କାରରେ ମଣ୍ଡିତା ହୋଇ ଅଧିକା ସୁନ୍ଦର ଦେଖାଯାଏ ସତ ମାତ୍ର ତା'ର ଈଶ୍ୱରଦତ୍ତ ପ୍ରକୃତ ସୌନ୍ଦର୍ଯ୍ୟ ବିନା ବେଶ ପରିପାଟୀରେ ମଧ ମ୍ଳାନ ହୁଏ ନାହିଁ । ସେହି ସୌନ୍ଦର୍ଯ୍ୟର ପରିପ୍ରକାଶ ପାଇଁ ବେଶପୋଷାକର ଆବଶ୍ୟକ ହୁଏ ନାହିଁ । ତାହା ହେଉଛି ମୁହଁର ଆକର୍ଷଣୀୟ ହସ ଟିକିଏ । ଏହି ଦରଫୁଟା ହସ ସାଙ୍ଗକୁ ମୁଣ୍ଡର କଳା ମିଚ୍‌ମିଚ୍ କେଶଗୁଡିକ ତା'କୁ ଅଧିକ ସୁନ୍ଦର କରି ଗଢ଼ି ତୋଳେ । ଏଭଳି ରୂପବତୀ ନାରୀକୁ ଦେଖି ଯେ କୌଣସି ପୁରୁଷର ମନରେ ସୌନ୍ଦର୍ଯ୍ୟ ପିପାସା ଦେଖାଦେବ । ନାରୀର ରୂପକୁ ଦେଖି ପୁରୁଷଟି ଆକୃଷ୍ଟ ହୋଇ କହୁଛି ତୁ ମୋ ସହିତ ଏହି ଜହ୍ନରାତିରେ ରହିଲେ ରାତିଟି ଅତି ଆନନ୍ଦରେ କଟିଯିବ । ଆମର ଦେହ, ମନ ତଥା ପ୍ରାଣ ଏକ ହୋଇଯିବ । ଆମ ଦୁଇଜଣଙ୍କର ମିଳନ ସାଙ୍ଗକୁ ଏହି ଜହ୍ନରାତି ଏବଂ ଶିମିଳି ତୁଳାର ଗଦି ସବୁଠୁ ଆନନ୍ଦ ଦେବ । ପୁରୁଷର ଦୁର୍ବାର ଯୌନ ଆକାଙ୍‌କ୍ଷା ବିହୁଗୀତରେ ସ୍ପଷ୍ଟ ହୋଇଉଠିଛି ।

ମୁଖରେ ଶୁଅନି          ମିଶିକି ହାଁ ହିଟି
ମୂରରେ ଶୁଅନି ଚୂଲି ;
ତୋମାର ମୋର ଶୁଅନି   ଜୋନାକି ରାତିଟି-
ଶିମଲୁ ତୁଲାରେ ତୁଲୀ ।

ଅସମୀୟା ନାରୀର ମୁହଁ, ଗାଲ, ହାତ, ପାଦର ବର୍ଣ୍ଣନା ସହିତ ତା'ର ହସହସ ମୁହଁର ଦାନ୍ତ ଦୁଇଧାଡି ଅତି ସୁନ୍ଦର ଭାବେ ଝଲସି ଉଠେ । ସେଭଳି ସୁନ୍ଦର ମୁହଁରେ ସୂର୍ଯ୍ୟ କିରଣ ପଡିଲେ ଅଧିକ ଚିକ୍‌ମିକ୍ କରେ । ତା' ସହିତ ଈଶ୍ୱରରେ ମଧୁର କଣ୍ଠରେ ନାରୀଟି ଯେତେବେଳେ ତା'ର ପ୍ରିୟତମକୁ ଥରେ ଡାକିଦିଏ, ପୁରୁଷର ମନ ଓ ପ୍ରାଣରେ ଏକ

---

ଶବ୍ଦାର୍ଥ : ଦଳନି-ଦଳ ଗାଡ଼ିଆ, ଆଟାଗ୍ରର-ସମସ୍ତଙ୍କର, ରଂଗା-ଲାଲ, ଖାରୁ-ଖଡୁ, ସେଓଁତା-ସୁନ୍ଥା, ଗଲଧନ-ଗଳା, ରିହା-ବକ୍ଷଦେଶର କପଡ଼ା, ତୁଲୀ-ଗଦି ।

ପ୍ରକାର ଶିହରଣ ସୃଷ୍ଟି ହୁଏ । ସେ ନିଜ ଭିତରେ ଏକ ପରିବର୍ତ୍ତନ ଅନୁଭବ କରେ । ତା' ମୁହଁରୁ ଆପେ ଆପେ ବାହାରି ଆସେ-

କିନୋ ହାତଦୁଖନି କିନୋ ଭରି ଦୁଖନି
କିନୋ ତୋମାର ଶୁଓଲା ମାତ ;
ର'ଦ ପାଇ ଜ୍ଜିଲିକେ ତୋମାର ଗାଲ ଦୁଖନି
ହାଁହିଲେ ଜିଲିକେ ଦାଁତ ।

ନାରୀଟି ଯେତେବେଳେ ପୁରୁଷର ସ୍ୱପ୍ନରେ ଆସିଥାଏ, ତାହା ଏକ ଭିନ୍ନ ସ୍ୱାଦର ଅନୁଭୂତି ଅଟେ । କ୍ଷଣିକ ପାଇଁ ହେଲେ ବି ସେ ଆନନ୍ଦ ଅବର୍ଣ୍ଣନୀୟ ଅଟେ । ବହୁଦିନରୁ ଘରଦ୍ୱାର ଠିକ୍‌ଠାକ୍ କରି ରଖିଲେ ବି ତା'କୁ ବାହା ହୋଇ ଘରକୁ ଆଣିବ ଆଣିବ ଭାବି ଆଣି ପାରୁନି । ଆଗରେ କେତେଗୁଡ଼ିଏ ସାମାଜିକ ସମସ୍ୟା ଆସିଯାଉଛି । କଳ୍ପନାରେ ଦେଖିଥିବା ଆଗାମୀ ସୁନ୍ଦର ଭବିଷ୍ୟତକୁ ସେଥିପାଇଁ ବେଳେବେଳେ ସ୍ୱପ୍ନରେ ଦେଖି ପୁରୁଷଟି ଖୁସୀ ହୁଏ । ଦିନେ ନାଁ ଦିନେ ତା'ର ଆପଣାର ନାରୀଟି ତା' ଘରକୁ ଆସି ଭାତ ରାନ୍ଧି ତା'କୁ ଖାଇବାକୁ ଦେବ, ତା' ପାଖରେ ବସି କେତେ କଥା ଗପିବ, ଏ କଳ୍ପନା ଆଗାମୀ ଭବିଷ୍ୟତରେ ନିଶ୍ଚୟ ସତ ହେବ, ଏଇ ଆଶା ନେଇ ସେ ବଞ୍ଚିଛି । ସେଥିପାଇଁ ସେ ରାତିରେ ସ୍ୱପ୍ନ ଦେଖୁଛି । ଥରେ ଥରେ ବସି କଂସାରେ ଭାତ ଖାଉଥିବା ବେଳେ ତା' ପ୍ରେମିକା ଭଳି ମଧୁର ବର୍ଣ୍ଣର ନାରୀଟିଏ ତା' ପାଖରେ ବସିଥିବାର ସ୍ୱପ୍ନ ଦେଖେ, ଯାହା ଦେହରେ ସେ ତା'ର ଆଉ ଗୋଟିଏ ହାତ ରଖିଥାଏ ।

ଆଜି ଯୋଆ ରାତି ସପୋନଟି ଦେଖିଲୋଁ
କାଁହୀତ ଖାଇ ଆଛିଲୋଁ ଭାତ ;
ତୋମାରେ ନିଶିନା ମିଠା ବରଣୀୟା
ଗାତ ଦି ଆଛିଲୋଁ ହାତ ।

ନାରୀଟି ଅଣ୍ଟାକୁ କ୍ଷୀଣ କରି ମୁହଁ ଉପରକୁ ଉଠେଇ ଯେତେବେଳେ ଦାମ୍ଭିକତା ସହକାରେ ଚାଲେ, ଏହା ମାଧ୍ୟମରେ ସେତେବେଳେ ତା'ର ଆତ୍ମବିଶ୍ୱାସର ପରିଚୟ ମିଳେ । ତା ଭଳି ସୁନ୍ଦରୀ ଓ ସାହସୀନି ନାରୀ ବିରଳ ଯେପରି ମନେହୁଏ । ପୁଣି ସେହି ନାରୀ ଯେତେବେଳେ ଅତି ଧୀରେ ଧୀରେ ପାଦ ପକାଏ, ଏହି ଚାଲି ମଧ୍ୟରେ ତା'ର ନମ୍ରଭାବ ଓ ଲଜ୍ଜାବତୀ ନାରୀର ପରିଚୟ ମିଳେ । ଏତିକିବେଳେ ତା'ର କ୍ଷୀଣକଟି ଧୀରେ ଧୀରେ ହଲିଯାଏ । ସମଗ୍ର ଶରୀରଟି ଦୋହଲିଯାଏ । ରୂପବତୀ ନାରୀଟିର ଦାମ୍ଭିକତା, ନମ୍ରଭାବ ତଥା ଲଜ୍ୟା ଭାବ ଉକୁଟି ଉଠିଥିବା ମୁଖମଣ୍ଡଳଟି ପୁରୁଷକୁ ଆକୃଷ୍ଟ କରେ ।

---

ଶବ୍ଦାର୍ଥ : ଦୁଖନି-ଦୁଇଟି, କିନୋ-କିଯେ, ଶୁଅଲାମାତ-ସୁନ୍ଦରସ୍ୱର, ରଦ୍-ଖରା, ଜିଲିକେ-ଚକ୍‌ମକ୍ ହୁଏ, ଯୋଆ-ଯିବା, କାଁହୀ-କଂସା, ନିଶିନା-ଧରି, ବରଣୀୟା-ବର୍ଣ୍ଣର ।

ବୁକୁ ବହଳ କରି କଁକାଳ ଚିଁୟା କରି
ତୋମାର ମାନ ଶୁଅନୀ ନାଇ ;
ତୋମାର କଁକାଳଟି ଅତିକୈୟେ ଲାହୀ
ଖୋଜତ ହାଲିଜାଲି ଯାୟ ।

ଅସମୀୟା ନାରୀ କେବଳ ଯେ ରୂପବତୀ ତା ନୁହେଁ, ସେ ସର୍ବଗୁଣସଂପନ୍ନା ଅଟେ । ହାତବୁଣା ମେଖେଳା ଚାଦର ପିନ୍ଧିବାକୁ ସେ ଅଧିକ ପସନ୍ଦ କରେ । ପୁରୁଷ ସହିତ ମିଳି ଘରକାମଠୁ ଆରମ୍ଭ କରି ଚାଷବାସ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସେ ତା'ର ଆପଣାର ମଣିଷଟିକୁ ସାହାଯ୍ୟ କରିଥାଏ । ହାତବୁଣା ଗାମୁଛାକୁ ଅତି ସ୍ନେହରେ ତା'ର ପ୍ରିୟ ପୁରୁଷକୁ ଉପହାର ଦେଇ ଆତ୍ମସନ୍ତୋଷ ଲାଭ କରେ । ତା'ର ସେହି ସ୍ନେହର ମୂଲ୍ୟ ଜୀବନରେ ପୁରୁଷଟି କେବେହେଲେ ଶୁଝିପାରିବ ନାହିଁ । ତା'କୁ ଆଗ ଜନ୍ମରେ ପାଇବା ପାଇଁ ଭଗବାନଙ୍କ ନିକଟରେ ଗୁହାରୀ କରି ସେ କହୁଛି ମୁଁ ତତେ ବି ଅନୁରୂପ ଭାବେ ଭଲ ପାଏ । ତୋ ଗୁଣ ମୁଁ ଜୀବନରେ ଭୁଲି ପାରିବିନି । ତୋ ବେକର ଗଜରା ହାରଟି ସୁନ୍ଦର ଦେଖାଦେଉଛି । ଏକଥା ଯେ କୌଣସି ପୁରୁଷ କହିବ କିନ୍ତୁ ତା'ଠୁ ଅଧିକ ସୁନ୍ଦର ତୋ'ର ଗୁଣଗୁଡିକ ଯାହା ମୋତେ ପାଗଳ କରିଛି । ତୋ'ର ଗୋଲ ଏବଂ ପତଳା ମୁହଁଟି ବି କିଛି କମ୍ ସୁନ୍ଦର ନୁହେଁ । କାନରେ ପିନ୍ଧିଥିବା ଭରିଏ ସୁନାର କାନଫୁଲ ହଳେ ତୋ ମୁହଁକୁ ବେଶ୍ ମାନୁଛି । ମୁଁ ତତେ ସବୁ ଜନ୍ମରେ ପାଇବା ପାଇଁ ଇଚ୍ଛା କରୁଛି । ତୁ ଯେପରି ମୋତେ ଏକୁଟିଆ ଛାଡି ଚାଲିଯିବୁ ନାହିଁ ।

ଡିଙ୍ଗିତେ ଗେଜେରା ମୁଖରି ଚକଲା
କାନତେ ଏତୋଲା ସୋନ ;
ଜୀବନ ମରଣେ ନେରିବା ଲାହରୀ
ନେ ପାହରୋ ତୋମାରେ ଗୁଣ ।

ଆକାଶରେ ତାରାମାନେ ଦପ୍‌ଦପ୍ କରି ପ୍ରଜ୍ୱଳିତ ହୋଇ ଆକାଶକୁ ଆଲୋକିତ କଲାଭଳି ପ୍ରେମିକାର ଆଖି ଦୁଇଟି ସ୍ୱର୍ଗର ତାରାଭଳି ସବୁବେଳେ ଝଲମଲ ହୋଇ ମୁହଁର ସୌନ୍ଦର୍ଯ୍ୟ ବଢାଇଥାଏ । ଏହା ସହିତ କ୍ଷୀଣକଟୀର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ ଅଟେ । ସେହି ରୂପବତୀ ନାରୀର ଆଖିରେ ଆଖି ମିଳାଇବାକୁ ଯାଇ ଉଭୟ ପ୍ରେମୀ ଚୁପ୍ ରହିଲେ । ସାମାଜିକ ନୀତିନିୟମ ଉଭୟଙ୍କ ଆଖିରେ ପ୍ରାଚୀର ଭଳି ରହିଗଲା । ନିଜର ଭାଗ୍ୟକୁ ଦୋଷଦେଇ ପୁରୁଷଟି କହୁଛି ସତରେ ମୋର ନିଆଁଲଗା କପାଳରେ ତୋ ସହିତ ଦିପଦ କଥା ହେବାର ସୌଭାଗ୍ୟ ନାହିଁ ।

---

ଶବ୍ଦାର୍ଥ : ଚିଁୟା-କ୍ଷୀଣ, ଲାହୀ-ପାତଳ, ଖୋଜ-ଚାଲି, ଡ଼ିଙ୍ଗି-ଗଳା, ଗେଜେରା- ଗଳା ଅଳଙ୍କାର ଏତୋଲା-ତୋଳାଏ ।

ତୋମାର ଚକୁ ଯୁରି     ସରଗର ତରା ଯେନ
କିନୋ ଖାମୁଚୀୟା କଁକାଳ ;
ଚକୁତ ଚକୁ ଆମାର     ପରିଓ ନ ପରିଲ
କିନୋ ଜୁଇଲଗା କପାଳ ।

ଅସମୀୟା ନାରୀମାନେ ଅଧିକ ସୌନ୍ଦର୍ଯ୍ୟପ୍ରିୟ ଅଟନ୍ତି । ସହଧର୍ମୀଣି ଭାବେ ପ୍ରତ୍ୟେକ କ୍ଷେତ୍ରରେ ପୁରୁଷଙ୍କୁ ସାହାଯ୍ୟ କରି କର୍ମନିଷ୍ଠାର ପରିଚୟ ଦେବା ସହିତ ନିଜର ରୂପଚର୍ଚ୍ଚା କ୍ଷେତ୍ରରେ ସେମାନେ ଅଧିକ ସଚେତନ । ସେମାନେ ନିଜର ଆଙ୍ଗୁଠି ତଥା ନଖରେ ଜେତୁକା ଲଗାଇ ନଖ ପଚାଇ ନାଲି କରିଥାଆନ୍ତି । ଜେତୁକା ନଖରେ ଝଲସି ଉଠେ । ରୂପ ପ୍ରସାଧନରେ ନାରୀ କେବଳ ସମୟ ନଷ୍ଟ କରେ ନାହିଁ, ଗରମ ଦିନରେ ଦେହରୁ ଗମ୍‌ଗମ୍ ହୋଇ ଝାଳ ବାହାରୁଥାଏ ତଥାପି ସେ ଏହାକୁ ଖାତିର ନକରି ତୁଳାଭିଣି ଲୁଗା ବୁଣେ । ଏହାରି ଭିତରେ ଅସମୀୟା ନାରୀର କର୍ମତତ୍ପରତା ତଥା ଆତ୍ମନିର୍ଭରଶୀଳତାର ପରିଚୟ ମିଳିଥାଏ । ଅସମୀୟା ନାରୀ ନିଜପାଇଁ କପଡ଼ା ବୁଣିବା ସହିତ ଘର ପରିବାରର ସମସ୍ତ ସଦସ୍ୟଙ୍କ ପାଇଁ ଗାମୁଛା ତଥା ଅନ୍ୟାନ୍ୟ କପଡ଼ା ବୁଣିବା ସଂଗେ ସଂଗେ ବିଛଣାଚାଦର ଆଦି ବୁଣି ଥାଆନ୍ତି । ସେମାନେ ପୁରୁଷଙ୍କୁ ଚାଷବାସ କାର୍ଯ୍ୟରେ ଯେପରି ଧାନତଳି ରୁଇବା, ଧାନକିଆରୀରୁ ବାଲୁଙ୍ଗା ବାଛିବା ଓ କିଆରୀରେ ପାଣି ମଡେଇବା ତଥା ଧାନ କାଟିବା ଆଦି କାମରେ ସାହାଯ୍ୟ କରିଥାଆନ୍ତି । ଗାଉଁଲୀଆ, ସରଳ ନାରୀମାନେ ଉଚ୍ଚ ଡିଗ୍ରୀଧାରଣ କରି ନଥିଲେ ହେଁ ତନ୍ତରେ ଲୁଗାବୁଣି ଦୁଇ ପଇସା ଉପାର୍ଜ୍ଜନ କରି ପରିବାର ଭରଣ ପୋଷଣର ଦାୟିତ୍ୱ ବହନ କରିଥାଆନ୍ତି । ତା'ର ଏହି କର୍ମବ୍ୟସ୍ତତା ଜୀବନ ଭିତରେ ପ୍ରେମିକ ପୁରୁଷ ନାରୀର ବାହ୍ୟ ତଥା ଅନ୍ତଃସୌନ୍ଦର୍ଯ୍ୟକୁ ଉପଲବ୍ଧି କରି କହେ-

ହାତରେ ଆଙ୍ଗୁଳି     କିନୋ ଚାଇ ଯାବ
ଜିଲିକେ ଜେତୁକାର ବୋଲ ;
ମୋରନୋ ମଇନାକା     କିନୋ ଚାଇ ଯାବା
ବୈ ଯାୟ ଘାମରେ ଜୋଲ ।

ସେବତୀ, ମାଳତୀ, କେତକୀ ଆଦି ଫୁଲଗୁଡିକ ସଂପୂର୍ଣ୍ଣଭାବେ ଫୁଟିବା ପୂର୍ବରୁ ଆଧା ପାଖୁଡ଼ା ମେଲା ଅବସ୍ଥାରେ ଫୁଲଟି ମନକୁ ମୋହିନିଏ । ସେତିକିବେଳେ ଫୁଲର ବାସ୍ନା ସବୁଆଡେ ମହକି ଯାଏ । ମାତ୍ର ଏଠାରେ ପ୍ରେମିକାର ଦେହ ଅଧାଫୁଟା ପଦ୍ମଫୁଲ ଭଳି ସୁନ୍ଦର ଓ ଆକର୍ଷଣୀୟ ହୋଇଉଠିଛି । ତା'ର ହସଟି ମାଣିକ ଭଳି ଅତି ମଧୁର ଅଟେ । ସେ ହସ ପାଖରେ ପୃଥିବୀର ଯେ କୌଣସି ଜିନିଷ ତୁଚ୍ଛ ଅଟେ । ଭାଷାର ଅଭାବରୁ ପ୍ରେମିକଟି ବଗିଚାର କେତୋଟି ଫୁଲ ସହିତ ପ୍ରେମିକାର ଶରୀରର କୋମଳତା ତଥା ମାଣିକ ସହିତ ହସକୁ ତୁଳନା କରିଛି ।

---

ଶବ୍ଦାର୍ଥ : ଯୁରି - ଯୋଡ଼ିକ, ଜେତୁକା-ମେହେନ୍ଦୀ, ଜୋଲ-ତୁଳାଭିଣା, ଘାମ-ଝାଳ, ଜୁଇ-ନିଆଁ

ସେଉତୀ ଏ ପାହି ମାଳତୀ ଏ ପାହି
କେତକୀର ଥୋରାଲି ପାହି ;
ତୋମାର ଦେହାଟି ପଦୂମର ପାହି ଯେନ
ମାଣିକୀ ମଧୁରୀ ହାଁହି ।

ନାରୀର ରୂପ ଯୁଗେ ଯୁଗେ ପୁରୁଷକୁ ଆକୃଷ୍ଟ କରିଛି । ଉଜ୍ଜ୍ୱଳ ବର୍ଣ୍ଣରେ ନାରୀଟି ଯେତିକି ସୁନ୍ଦର ଦେଖାଯାଏ, ତା'ଠୁ ତା'ର ରକ୍ତବର୍ଣ୍ଣର ଗାଲ ଦୁଇଟି ଅଧିକ ଆକର୍ଷଣୀୟ ଅଟେ । ପାଣିର ପୋକ ଯେମିତି ପାଣିରେ ରହି ଚିକ୍‌ଚିକ୍ କରନ୍ତି, ଫୁଲଟିର ଭିତରେ ପାଖୁଡ଼ାଟି ଯେମିତି ଚିକ୍‌ଚିକ୍ କରେ, ସେମିତି ନାରୀର ରକ୍ତାଭ ଗାଲ ଦୁଇଟି ଅଧିକ ସୁନ୍ଦର ଦେଖାଯାଏ । ସେହି ଅପୂର୍ବ ସୁନ୍ଦର ମୁହଁରେ ହସ ଟିକିଏ ଫୁଟି ଉଠିଲେ, ତା'ର ବର୍ଣ୍ଣନା କରିବା ପାଇଁ ପୁରୁଷ ପାଖରେ ନୂଆ ଉପମା ନ ଥାଏ ।

ପାନୀ ତ ଜକେମକାୟ ପାନୀରେ ପରୁଆ
ଫୁଲର ଜକେମକାୟ ପାହି ;
ତୋମାର ଗାଲ ଦୁଖନିତ ତେଜେ ଜକେମକାୟ
ମୁଖତ ମିଚିକିୟା ହାଁହି ।

ଅସମୀୟା ଲୋକକବିକୁ ପ୍ରେମିକାର କୋମଳ ହାତ ଓ ପାଦର ସୌନ୍ଦର୍ଯ୍ୟ ଅଧିକ ଆକୃଷ୍ଟ କରିଥିବାରୁ ବିହୁଗୀତରେ ଏହାର ବର୍ଣ୍ଣନା ବେଶୀ ସମୟରେ ଦେଖା ଯାଇଛି । ପୁରୁଷଟି ଦୀର୍ଘ ସାତମାସ କାଳ ପ୍ରିୟାଠୁ ଦୂରରେ ରହି ଭାବୁଛି କୋମଳ ହାତ ପାଦ ସହିତ କୋମଳ କଣ୍ଠର ଡାକ ମୋତେ ବହୁତ ସୁଖ ଦେଇଥାଏ ମାତ୍ର ଆଜିକୁ ସାତମାସ ହେଲା ସେ ଡାକ ମୁଁ ଶୁଣିନାହିଁ । ମନଟା ଅଥୟ ହୋଇ ପଡୁଛି ।

ହାତ କୁମଲୀୟା ଭରି କୁମଲୀୟା
ତୋମାର କୁମଲୀୟ ମାତ ;
ଆଜି ସାତ ମାହେ ଶୁନା ନାଇକିୟା
ତୋମାର ଐ ଶୁଆଦି ମାତ ।

ପ୍ରିୟାର ରୂପ ଅତୁଳନୀୟ ଅଟେ । ପୁରୁଷଟି ସାରା ଆସାମ ଘୁରିବୁଲିଛି କିନ୍ତୁ ତା' ଭଳି ରୂପବତୀ ନାରୀ କେଉଁଠି ଦେଖିନାହିଁ । ତା'ର ଉଜ୍ଜ୍ୱଳ ବର୍ଣ୍ଣର ଦେହରେ ତେଲ ଲଗାଇଲେ ତେଲ ନିଜେ ନିଜେ ଖସି ପଡ଼େ । ଦେହର ଚିକ୍‌କଣ ଓ ସୁନ୍ଦର ରଂଗ ପାଖରେ ତେଲର ଆବଶ୍ୟକତା ପଡ଼େ ନାହିଁ । ଯଦି ପ୍ରେମିକାଟି କେବେ କେମିତି ଦେହରେ ତେଲ ଲଗାଏ, ତା' ହେଲେ ତା'ର ରଂଗ ଅଧିକ ଚିକ୍‌ଚିକ୍ କରେ । ଏହି ରଂଗକୁ ଦେଖି ପ୍ରେମିକଟିର ମନ

---

ଶବ୍ଦାର୍ଥ : ଏପାହି - ଗୋଟିଏ ଗୁଚ୍ଛ, ଥୋରାଲି-କଢ଼ ମେଲିଥିବା, ତେଜ-ରକ୍ତ, ସେଉତୀ-ସେବତୀ, ଜକମକ-ଝିକ୍ ୨, ପରୁଆ-ପୋକ, ମାତ-କଥା, ମାହ-ମାସ, ନାଇକିୟା-ନାହିଁ ।

ଅଥୟ ହୁଏ । ସେ ନିଜକୁ ସମ୍ଭାଳିପାରେ ନାହିଁ । ପ୍ରେମିକା ତୁଲ୍ୟ ନାରୀ ଖୋଜି ଖୋଜି ସେ ଥକିପଡ଼େ ମାତ୍ର ତା' ପ୍ରିୟା ଭଳି ସୁନ୍ଦରୀ ଓ ଗୁଣବତୀ ନାରୀଟିଏ ଦେଖିବାକୁ ପାଏନି । ନିଜର ଉତ୍କଣ୍ଠାକୁ ସେ ଭାଷାରେ ପ୍ରକାଶ କରେ ।

ତେଲ ପରି ପିଛଲେ ତୋମାରେ ବରନଟି
ଆଛେ ତିରେବିରେ କରି ;
ତୋମାରେ ନିଶିନା କ'ତୋ ନେଦେଖିଲୋଁ
ଉଜନି ନାମନି ଫୁରି ।

ଏ ପର୍ଯ୍ୟନ୍ତ ସେ କେବଳ ପ୍ରେମିକାର ରୂପ ଓ ଗୁଣର ପ୍ରଶଂସା କରି ଆସିଥିଲା ମାତ୍ର ପ୍ରେମିକଟି ତା'କୁ ଏଥର କହୁଛି ତୋ'ର ଏହି ରୂପ, ରଂଗ ଓ ଗୁଣକୁ ଦେଖି ମୋ ମନ ଅଧୈର୍ଯ୍ୟ ହୋଇ ଉଠୁଛି, ତୋ ହାତର ତଥା ଗଣ୍ଠି ଗଣ୍ଠିକିଆ ଲମ୍ବା ଲମ୍ବା ଆଙ୍ଗୁଳି ଗୁଡ଼ିକ ଯେତିକି ସୁନ୍ଦର, ପାଦରେ ଲାଗିଲାଗି ରହିଥିବା ଆଙ୍ଗୁଳିଗୁଡ଼ିକ ତା'ଠୁ ସୁନ୍ଦର । ତୋର ଏ ଶରୀରକୁ କେଉଁ ଈଶ୍ୱର ସୃଷ୍ଟି କଲେ; ଯାହାକୁ କେବଳ ଦିନରାତି ଅନେଇ ରହିବାକୁ ମନ ହେଉଛି । ତୋ' ରୂପକୁ ଯେତେ ଦେଖିଲେ ବି ପୁଣି ଦେଖିବାକୁ ଇଚ୍ଛା ହେଉଛି । କବିବରର କଳ୍ପନାରେ "ସୁନ୍ଦର ତୃପ୍ତିର ଅବସାଦ ନାହିଁ, ଯେତେ ଦେଖିଲେ ହେଁ ପୁଣି ଦେଖୁଥାଇ" ଭଳି ଅସମୀୟା ଅନାମଧେୟ କବିଟି ଗାଇଛି-

ହାତରେ ଆଙ୍ଗୁଳି ପବାଲି ପବାଲି
ଭରିଲେ ଆଙ୍ଗୁଳି ଘନ ;
କୋନଜନ ଈଶ୍ୱରେ ତୋମାକେ ସରଜିଲେ
ଚାଇନୋ ଚାଇ ଥାକିବର ମନ ।

ସେ ଆଉ କେତେଦିନ ପ୍ରେମିକାର ରୂପକୁ ଏମିତି ଦେଖୁଥିବ । ମନର କଥାକୁ ଫିଟେଇ ସ୍ପଷ୍ଟଭାବେ ସେ କହୁଛି ତୋ'ର କ୍ଷୀଣଅଣ୍ଟାକୁ ଦେଖି ମୋ ମନରେ ଆଉ ଧୈର୍ଯ୍ୟ ରହୁନି । ମୋର କୋମଳ ମନ ଓ ଯୌବନ ଅବସ୍ଥା ସାଂଗକୁ ତୋ'ର ମଧ ସେହି ଅବସ୍ଥା । ଆଗାମୀ ବହାଗ ବିହୁରେ ଆମେ ଦୁଇଜଣ ବିବାହ କରି ସାଂଗ ହୋଇ ଜୀବନସାରା ଆନନ୍ଦରେ କଟାଇବା । ଆଉ ମୁଁ ଧୈର୍ଯ୍ୟ ଧରି ଅପେକ୍ଷା କରି ରହି ପାରିବନି ।

କୁମଲୀୟ କଁକାଲଟି ଚିଁୟା ଐ ମଇନା
କୁମଲୀୟା କଁକାଲଟି ଚିଁୟା ;
ତୁମି କୁମଲୀୟା ମଇନୋ କୁମଲୀୟା
ପାତି ଯାଓଁ ବହାଗତ ବିୟା ।

**ଅଂଗରାଗ ଓ ରୂପଲାବଣ୍ୟ-** ବହାଗବିହୁର ଆଗମନକୁ ଯୁବକ ଯୁବତୀମାନେ ଅନେକ ଦିନ ଆଗରୁ ଉତ୍କଣ୍ଠାରେ ଅନେଇ ରହିଥାଆନ୍ତି । ପ୍ରେମିକ ପ୍ରେମିକା ବିହୁତଳିରେ

---

ଶବ୍ଦାର୍ଥ : ପିଛଲେ - slip କରେ, ତିରେବିର-ଚକ୨, ଫୁରି-ଘୁରି, ଘୁରି, ପାତି - କରି, ବିୟା- ବିବାହ,

ପରସ୍ପରକୁ ଏକ ରୋମାଞ୍ଚକର ପରିବେଶ ମଧ୍ୟରେ ଭେଟନ୍ତି । ପ୍ରେମିକା ବିଭିନ୍ନ ପ୍ରକାର ପାରମ୍ପରିକ ଅଳଙ୍କାରରେ ନିଜକୁ ସଜେଇଥାଏ । ପାରମ୍ପରିକ ବସ୍ତ୍ରରୂପେ ମେଖଳା ଚାଦର ପିନ୍ଧି ଛାତିରେ ନାଲିରଂଗର ରିହା ପିନ୍ଧିଥାଏ । ହାତରେ ଗାମଖଡୁ ; ଗଳାରେ ଜୋନବିରି, ମଥାରେ ଖୋଷାଟିଏ । ଖୋଷାରେ ଫୁଲର ହାର ଗୁଡ଼େଇ ଓଠକୁ ପାନଖାଇ ନାଲି କରିଥାଏ । ଆଙ୍ଗୁଠି ଗୁଡିକରେ ଜେତୁକା ଲଗେଇ ନଖ ତଥା ଆଙ୍ଗୁଠି ନାଲି କରିଥାଏ । ଆଖିରେ ଦୁଇଧାଡି କଜ୍ଜଳ, ମଥାରେ ନାଲି ରଂଗର ଫୋପାଟିଏ ତା' ମୁହଁକୁ ଅଧିକ ସୁନ୍ଦର ଦେଖାଯାଏ । କାନରେ କେରୁମଣି, ଅଣ୍ଟାରେ ରୂପାର ଅଣ୍ଟାସୂତା ଓ ମୁଣ୍ଡରେ କପୌ ଫୁଲରମାଳା ଗୁଡ଼େଇଥାଏ । ବିହୁତଳିରେ ନାଚିବା ପାଇଁ ନିଜକୁ ସଂପୂର୍ଣ୍ଣଭାବେ ସଜେଇ ଗାଁ ମୁଣ୍ଡ ବିହୁତଳିରେ ଯାଇ ନାୟିକାଟି ପହଞ୍ଚିଯାଏ । ତା'ର ପ୍ରିୟ ଢୋଲିଆଟି ବିହୁର ଉପହାର ସ୍ୱରୂପ ବଜାରରୁ ପୋହଳା ହାରଟିଏ କିଣି ଆଣି ତା'କୁ ଦିଏ । ପ୍ରେମିକାଟିକୁ ହାରଟି କେମିତି ଦିଶିବ ଭାବି ସେ ବାରମ୍ବାର ହାରକୁ ଚାହୁଁଥାଏ । ବେଳେବେଳେ ପ୍ରେମିକାଟି ସେ ହାର ପିନ୍ଧି ନାଚିଲାବେଳେ ଢୋଲିଆଟି ତା'ର ଆଗପଟ ତଥା ପଛପଟକୁ ଅନେଇ ରହେ ।

ଶୁଆୟ କି ନୁଶୁଆୟ   ସୋନ ପୋଆଲ ମଣି
ଉଲିୟାଇ ଉଲିୟାଇ ଚାଓଁ ;
ଶୁଆୟ କି ନୁଶୁଆୟ   ମୋର ଜାନୋ ଧନକ ଐ
ଆଗେ ପିଛେ କରି ଚାଓଁ ।

**ପ୍ରେମ ଓ ପ୍ରଣୟର ଚିତ୍ର-** ପ୍ରେମ ଓ ପ୍ରଣୟ ବିହୁଗୀତଗୁଡିକରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ପ୍ରେମିକଟି ପ୍ରେମିକାର ଅଗଣାରେ ଗୁଆକାଟି ଖାଇ ଆସିବାର ଚିହ୍ନସ୍ୱରୂପ ଗୁଆଚୋପା ସେଠାରେ ପକାଇଦେଇ ଆସିବ ବୋଲି ବିହୁଗୀତରେ କହିଥାଏ । ପ୍ରେମ ଓ ପ୍ରଣୟର ଚିହ୍ନ ସ୍ୱରୂପ ପ୍ରେମିକଟି ବୀଣାର ତାରକୁ ଟାଣି ଟାଣି ବଜେଇବ, ତା' ଭିତରେ ପ୍ରେମିକାର ସ୍ମୃତିକୁ ମନେ ପକାଇବ ।

ଜୋକାରି ବାଇ ଯାମ   ବୀନ ମୋର ବାନ୍ଧେ ଏ
ଜୋକାରି ବାଇ ଯାମ ବୀନ ;
ତୋମାର ପଦୂଲିତ   ତାମୋଲ କାଟି ଖାମ
ବାକଲି ଥୈ ଯାମ ଚିନ ।

ପ୍ରେମିକାର ହସହସ ମୁହଁଟିକୁ ଦେଖି ତା'କୁ ପାଇବା ପାଇଁ ଯୁବକଟି ଆଗ୍ରହ ପ୍ରକାଶ କରିଛି । ଦିନକୁ ଦିନ ଯୁବକଟିର ଆଗ୍ରହ ଏତେବେଶି ହୋଇଛି ଯେ ସେ ଆଉ ନିଜକୁ ସମ୍ଭାଳି ପାରୁନାହିଁ । ମନ ଯନ୍ତ୍ରଣାରେ ଛଟପଟ ହୋଇଛି । ସେ ପ୍ରିୟାକୁ କହୁଛି ତତେ ମୋ

---

ଶବ୍ଦାର୍ଥ : ଶୁଆୟ-ସୁନ୍ଦର ଦିଶେ, ପୋଆଲ-ପୋହଳା, ଜୋକାରି-ଟାଣି୨, ବାଇ-ବଜେଇ, ବାକଲି-ଚୋପା ।

ଘରକୁ ଜୀବନସାଥି କରି ଆଣିବା ପାଇଁ ମନ ଉତ୍ତାଳ ହୋଇ ଉଠୁଛି କିନ୍ତୁ ତୁ ଏତେ ଛୋଟ ହୋଇ ସବୁ ପ୍ରକାର ଅଡୁଆ କଲୁ । ସେଥିପାଇଁ ମୁଁ ତତେ ବାହାହୋଇ ବି ପାରୁନି କିମ୍ବା ତୋ'ର ହସହସ ମୁହଁଟିକୁ ଦେଖି ନିଜକୁ ସମ୍ଭାଳି ବି ପାରୁନି ।

ଚକୁଲୌ ଚାଲେ ହାଁହି ମିଖିକିୟାଇ
ହାଁହିତେ ଲଗୋଆ ବେଥା ;
ତୋମାକ ଆନିବଲୌ ମନେଲିକ୍ ଲିକାଇ
ସରୁ ହୈ ଲଗାଇଛ ଲେଠା ।

ତୁ ଛୋଟବେଳେ ମା' ସହିତ ଏକାଠି ବସି କଂସାରେ ଭାତ ଖାଉଥିଲୁ । ମା' କୋଳରେ ଶୋଉଥିଲୁ । ବର୍ତ୍ତମାନ ଧୀରେ ଧୀରେ ବଡ଼ ହୋଇ ଯୁବତୀରେ ପରିଣତ ହେବାରୁ ମନ ଏକ ଜୀବନ ସଙ୍ଗିନୀ ଖୋଜୁଛି । ବିନା ସଙ୍ଗିରେ ଜୀବନଟା ବଡ଼ ଖାପଛଡ଼ା ଲାଗୁଛି । ବିହୁର ପରଶରେ ଏକୁଟିଆ ମନଟା ଛଟପଟ ହେଉଛି ।

ସରୁ ହୈ ଆଛିଲି ମାରର ଜଗତ ଶୁଇଛିଲ
କାଁହୀତ ଖାଇ ଆଛିଲି ଭାତ;
ଏତିୟା ମଇନା ଡାଙ୍ଗର ହୈ ଆହିଲି
ମରମ ବେଥା ଲଗାଲି ଗାତ ।

ସମାଜ ବ୍ୟବସ୍ଥାରେ ଧନୀ-ଗରୀବର ପାର୍ଥକ୍ୟ ଏତେ ବେଶୀ ଯେ ଜଣେ ଅନ୍ୟଜଣକୁ ମନ ଦେଇଥିଲେ ବି ତା'କୁ ଗ୍ରହଣ କରିବା ପାଇଁ ସମାଜ ବାଧା ଦିଏ । ଜାତି, ଧର୍ମ ତଥା ଧନୀ ଦରିଦ୍ରର ପାର୍ଥକ୍ୟ ଦୁଇ ପ୍ରେମୀଙ୍କ ମିଳନରେ ବାଧା ସୃଷ୍ଟି କରେ । ଏଥିରେ ମର୍ମାହତ ହୋଇ ଯୁବକଟି କହେ-

ତୁମି ଚୋଆ ଆମାଲୌ ଆମି ଚାଓଁ ତୋମାଲୌ
ଚାଇନୋ ଚାଇ କରିବା କି;
ଏଦିନ ଏବେଲା ରାଖିବ ନୋଆରୋ
କୋନୋବା କାରୋବାର ଜୀ ।

ଯୁବକଟି ଭଲଭାବେ ହୃଦୟଙ୍ଗମ କରିଥାଏ ଯେ ସମାଜର ସମସ୍ତ ବାଧାବିଘ୍ନ ସତ୍ତ୍ୱେ ଯଦି ତା'ର କପାଳରେ ସେହି ଝିଅଟିକୁ ପାଇବା ପାଇଁ ବିଧାତା ଲେଖିଥାଏ; ସେ ନିଶ୍ଚୟ ପାଇବ କିନ୍ତୁ ସମାଜର ପାରଂପରିକ ନୀତିନିୟମରେ ଉଭୟପ୍ରେମୀ ନିନ୍ଦା ଓ ଅପମାନରେ ମାନସିକ ଯନ୍ତ୍ରଣାରେ ଛଟପଟ ହେବେ । ନିଷ୍ଠୁର ସମାଜର କ୍ରୁର ଦୃଷ୍ଟିରୁ ନିଜକୁ ଦୂରେଇ ରଖିବା ପାଇଁ ସେ ତା'ର ପ୍ରିୟାକୁ ସବୁବେଳେ ସତର୍କ କରି ଦେଇଥାଏ । ଲୋକ ଚକ୍ଷୁରେ

ଶବ୍ଦାର୍ଥ : ଲିକଲିକାଏ-ଛଟପଟହୁଏ, ସରୁ-ଛୋଟ, ଲେଠା-ଅଡୁଆ, ମରମ-ସ୍ନେହ, ପ୍ରେମ, କୋନୋବା-କୋନୋବା କାରୋବାର- କାହାର, ଜୀ- ଝିଅ ।

ସେମାନେ ଯେମିତି ପ୍ରେମିକ-ପ୍ରେମିକା ଭାବେ ଧରା ନପଡନ୍ତି, ସେଥିପାଇଁ ପୁଅଟି ଝିଅଟିକୁ କହେ ତୁ କେବେହେଲେ ମୋତେ କଣେଇ କଣେଇ କରି ଅନେଇବୁନି, ତୋତେ ମୋ ଶପଥ ଖୁଆଇ କହୁଛି । ଯଦି ଭଗବାନଙ୍କର ଦୟା ହୁଏ ତେବେ ଜନ୍ମଜନ୍ମାନ୍ତର ପାଇଁ ଆମେ ଏକାଠି ରହିବା । ଏଠାରେ ପ୍ରେମିକାଟି ଅଧିକ ଭାଗ୍ୟବାଦୀ ହୋଇପଡ଼ିଛି ।

ଗାଲୈ କାତିକୈ ନେଚାବା ମଇନା
 ମୋର ଶପତ ଲାଗିବ ବେୟା;
ଜନମେ ଜନମେ ଥାକିମ ଏକେଲଗେ
 ଯଦି କରେ ଈଶ୍ୱରେ ଦୟା ।

ପ୍ରିୟାର ରୂପଦର୍ଶନରେ ବିଭୋର ହୋଇ ପୁରୁଷର ମନ ବହୁଦୂରକୁ ଚାଲିଯାଏ । କଳ୍ପନା ରାଜ୍ୟରେ ମନ ଘୁରି ବୁଲେ ପ୍ରିୟାକୁ ଅତି ନିକଟରେ ପାଇ ପୁଣି ବାସ୍ତବତାକୁ ଫେରି ଆସିଲେ ମନରେ ଆଘାତ ହୁଏ । ଯାହାକୁ ନେଇ ମନ ଏତେ କଳ୍ପନା ଜଳ୍ପନା କରୁଛି ସେ ଯେ ବୟସରେ ଯଥେଷ୍ଟ ସାନ, ତା'କୁ ଜୀବନସଙ୍ଗୀ ରୂପେ ପାଇବାକୁ ହେଲେ ବହୁତ ଦିନ ଅପେକ୍ଷା କରିବାକୁ ହେବ । ତଥାପି ପ୍ରେମିକ ପୁରୁଷଟି କିଛି ସମୟ ପାଇଁ କାବ୍ୟିକ ଦୃଷ୍ଟିରେ ପ୍ରିୟାକୁ ଅନେଇ ରହେ । କବିର କଳ୍ପନାରେ ଉପମାର ଅଭାବ ନଥାଏ । ଗୋଲାପ ଫୁଲ ଭଳି ଦିଶୁଥିବା ଅଂଗଟି କେତେ ଯେ କୋମଳ ତା'ଠୁ ଅଧିକ କୋମଳ ତା'ର ମନଟି । ଯୁବକଟି ତା' ପାଇଁ ଅନେକ ଦିନ ଧରି ଅପେକ୍ଷା କରିବା ପାଇଁ ନିଜ ମନକୁ ବୁଝାଇ ରହିପାରିବ କିନ୍ତୁ ସେ କୋମଳମତି ଝିଅଟି ଯଦି ଆଉ କାହାକୁ ମନ ଦେଇଦିଏ; ପ୍ରେମିକଟିର ଅବସ୍ଥା କ'ଣ ହେବ ? ସେ ତା'କୁ ଦେହ ଓ ମନରେ ଚିରଦିନ ପାଇଁ ନିଜର କରିବା ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି । ଝିଅଟିକୁ ଅନୁରୋଧ କରି କହୁଛି-

ଗୋଲାପ ଫୁଲାଦି ଫୁଲା ঐ ଲାହରି
 ବୟସତ ମୋତକୈ ସରୁ;
କାକୋ ঐ ନକବି ଅ' ମୋର ଲାହରି
 ମଇ ଯେ ପୀରିତି କରୋ ।

ଯୁବକଟି ପ୍ରେମିକାର ରୂପରେ ଆକୃଷ୍ଟ ହୋଇ ନିଜର ଅଜାଣତରେ ତା'କୁ ବିଭିନ୍ନ ଉପମାରେ ଅଳଙ୍କୃତ କରିଥାଏ ତଥାପି ତା'ର ଉପମାର ଅନ୍ତ ହୁଏ ନାହିଁ । ଦିନରେ ସୂର୍ଯ୍ୟ ଯେପରି ପୃଥିବୀକୁ ଆଲୋକିତ କରି ସୁନ୍ଦର ଦେଖାଯାଆନ୍ତି, ରାତିରେ ଚନ୍ଦ୍ରମା ଆଲୋକ ପ୍ରଦାନ କରି ସୁନ୍ଦର ଦେଖାଯାଇଥାନ୍ତି, ସେମାନଙ୍କଠୁ ଅଧିକ ସୁନ୍ଦର ତା'ର ପ୍ରିୟା ଦେଖାଯାଏ । ତା'ର ପ୍ରିୟା ପୂର୍ଣ୍ଣମୀର ଜହ୍ନ ଠାରୁ ଅଧିକ ଉଜ୍ଜ୍ୱଳ ଦେଖାଯାଏ ।

---

ଶବ୍ଦାର୍ଥ : ଫୁଲା - ଫୁଟିବା, କାକୋ-କାହାକୁ, କବି-କହିବୁ, ମଇ-ମୁଁ, ମୋତକୈ-ମୋଠୁ

ଦିନରେ ଚିକୁଣ ଦିନର ସବିତା
ରାତିରେ ଚିକୁଣ ଜୋନ;
ତାତୋଙ୍କେ ଚିକୁଣ ମୋର ଐ ମଇନା
ଯେନ ପୂର୍ଣ୍ଣିମାର ଜୋନ ।

ପ୍ରେମ ଓ ପ୍ରଣୟର ଆନନ୍ଦରେ ଉବୁଟୁବୁ ହେଉଥିବା ମନଟି ପ୍ରେମର ସଂଜ୍ଞା ଦେବାକୁ ଯାଇ କୌଣସି ନିର୍ଦ୍ଦିଷ୍ଟ ସମାଧାନରେ ପହଞ୍ଚିପାରେ ନାହିଁ । ନିଜ ମନ ନିଜକୁ ପ୍ରଶ୍ନ କରେ ପ୍ରେମ କି ଜିନିଷ ? ଯାହା କେବେ ଭାଙ୍ଗେ ନାହିଁ, ଛିଣ୍ଡେ ନାହିଁ କି ପ୍ରେମର ଅନ୍ତହୁଏ ନାହିଁ । ଏହା ସ୍ନେହର ଡୋରି ଅଟେ, ଏମିତି ଏକ ଡୋରି ଯାହାକୁ ଯେତେ ଗୁଡ଼େଇବ, ସେ ସେତେଥର ଗୁଡ଼େଇ ହୋଇଯିବ ତଥାପି ଛିଣ୍ଡିବ ନାହିଁ ।

ପୀରିତି ନେଭାଗେ ପୀରିତି ନିଛିଗେ
ପୀରିତି ନ ପରେ ସରି;
ଯ'ତ ମେରିଯାବି ତତେ ମେରେ ଖାବ
ପୀରିତି ମରମର ଜରି ।

ପ୍ରେମଡୋରିରେ ବାନ୍ଧି ହୋଇଥିବା ଯୁବମନଟି ପ୍ରିୟାକୁ ସବୁବେଳେ ଅନେଇ ରହିବାକୁ ଇଚ୍ଛା କରେ । ଆଖିରେ ପଲକ ପଡେ ନାହିଁ । ତା'ର ପ୍ରିୟା ତା'କୁ ସବୁଠୁ ସୁନ୍ଦର ଦିଶେ । ସେ ଭାବେ ତା'ର ପ୍ରିୟା ଯଦି କେଉଁଠି ହଜିଯିବ, ସେ ତା'କୁ କେମିତି ଖୋଜି ଖୋଜି ପାଇବ ? ତା'କୁ ଈଶ୍ୱର ଏଭଳି ସୁନ୍ଦର କରିଛନ୍ତି ଯେ ତା' ରୂପରେ ଆକୃଷ୍ଟ ହୋଇ ଫୁଲ ପାଖକୁ ଭଅଁର ଆସିଲାଭଳି ଯୁବ ମନ ନିଜେ ନିଜେ ଟାଣି ହୋଇ ଆସିବ । ସେ ଏତେ ସୁନ୍ଦର ଯେ ତା'ର ନାମ କାମେଶ୍ୱରୀ ରଖିଲେ ଭୁଲ୍ ହେବ ନାହିଁ ।

ତୁମି ଐ ଲାହରୀ ସବାତକୈ ସୁନ୍ଦରୀ
ଲ'ଲା କାମେଶ୍ୱରୀ ନାମ;
ଯଦି କେନେବାଙ୍କୈ ହେରାବ ଲାଗିଲେ
କେନେକୈ ବିଚାରି ପାଂମ ।

ସେ ପ୍ରିୟା ବିଭିନ୍ନ ପୋଷାକରେ ଭିନ୍ନ ଭିନ୍ନ ରୂପରେ ଅଧିକ ସୁନ୍ଦର ଦେଖାଯାଏ । ଥରେ ନଦୀରେ ଗାଧୋଇଲାବେଳେ ଭିଜା ଲୁଗାରେ ନଦୀ ତୁଠରେ ପ୍ରେମିକଟି ତା'କୁ ଭେଟିଲା । ଆଗରୁ ସେ ତା'କୁ ବହୁତଥର ଦେଖିଛି ହେଲେ ଆଜି ଯେମିତି ତା'କୁ ପ୍ରଥମ ଥର ପାଇଁ ଭେଟୁଛି । ତା'ର ଆଖିରେ ପ୍ରିୟାର ରୂପ ଝଲସି ଉଠିଲା । ତା'ର ପାଦଠୁ ମୁଣ୍ଡ ପର୍ଯ୍ୟନ୍ତ ସେ ତା'କୁ କେବଳ ଅନେଇ ରହିଲା । ଭଗବାନଙ୍କର କ'ଣ ବା ଇଚ୍ଛା ସେମାନେ

ଶବ୍ଦାର୍ଥ : ହେରାବ-ହଜିବ, ଚିକୁଣ- ସୁନ୍ଦର, ଭାଗେ-ଭାଙ୍ଗିବା, ଛିଗେ-ଛିଣ୍ଡିବା, ଜରି-ଡୋରି

ଜାଣିନାହାନ୍ତି ହୁଏତ ମିଳନର ସମୟ ପାଖେଇ ଆସୁଛି । ପୁରୁଷ ପ୍ରେମିକଟି ରାତିରେ ତା'ର ପ୍ରିୟାକୁ ପୁଣିଥରେ ସ୍ୱପ୍ନରେ ସେହି ବେଶରେ ଦେଖୁଛି ।

କାଲି ତୁମି ମଇନା ଗା ଧୁଇ ଆଛିଲା
ଆଗର ପରା ଗୁରିଲୈ ଚାଲୋଁ;
କିଜାନି କି କଥା ବିଧିୟେ ବୁଲିଲେ
ଆଜି ତୋମାକ ସପୋନତ ପାଲୋଁ ।

**ଅନୁରାଗ—** ପ୍ରେମଲୀଳାର ବୈଚିତ୍ର୍ୟରେ ପୃଥିବୀ ବୈଚିତ୍ର୍ୟମୟ ହୋଇଉଠେ । ବହାଗ ବିହୁ ପାଖେଇ ଆସିଲେ ତା'ର ସ୍ପର୍ଶରେ ଉଭୟ ଯୁବକ ଯୁବତୀର ଦେହମନରେ ଅପୂର୍ବ ଶିହରଣ ଜାଗି ଉଠେ । ଜଣେ ଅନ୍ୟଜଣକର ସ୍ପର୍ଶ ପାଇବା ପାଇଁ ବ୍ୟାକୁଳ ହୁଅନ୍ତି । ଯୁବତୀଟି ଟିକିଏ ସଙ୍କୋଚ କରିଲେ ହେଁ ନିଜର ଅଂଗେ ଅଂଗେ ଫୁଟି ଉଠିଥିବା ଯୌବନକୁ ଆଉ ଆୟିତ୍ତ କରି ନ ପାରି ପୂର୍ଣ୍ଣିମା ରାତିରେ ବିହୁତଳିକୁ ଦୌଡ଼ିଦୌଡ଼ି ଯାଏ । ମିଳନର ସମୟ ଯେତିକି ଯେତିକି ପାଖେଇ ଆସେ, ମନ ସେତିକି ଖାପଛଡ଼ା ହୁଏ । ଯୁବକଟିର ମନରେ ଅନୁରୂପ ଭାବ ଦେଖାଦିଏ । ସମ୍ଭୋଗର ଲାଳସା ଜାଗି ଉଠେ । ଉଭୟେ କୌଣସି ସ୍ଥିରତାରେ ପହଞ୍ଚି ପାରନ୍ତି ନାହିଁ । ଯୁବକଟି ପ୍ରିୟାକୁ କଥାଦିଏ । ବହାଗ ବିହୁର ପୂର୍ଣ୍ଣିମା ରାତିରେ ତା'କୁ ବିବାହ କରି ଘରକୁ ନେଇଯିବ । ସେମାନେ ଏକାଠି ରହି ଆନନ୍ଦରେ ସଂସାର କରିବେ, ଦୁଇଟି ହୃଦୟ ଏକ ହୋଇଯିବ ।

ବହାଗର ବିହୁତେ ପୂର୍ଣ୍ଣିମାର ରାତିତେ
ପାତିମ ତୋ'ରେ ମୋରେ ବିୟା;
ଦୁୟୋ ଏକେ ଲଗେ ଘରେ ପାତିଖାମ
ମିଲାମ ଐ ଦୁଖନି ହିୟା ।

ପ୍ରିୟାଟି ଆଉ ଅପେକ୍ଷା କରିବା ପାଇଁ ଇଚ୍ଛା କରେ ନାହିଁ । ନିଜର ବ୍ୟଥାକୁ ବୁଝାଇବାକୁ ଯାଇ କହେ କଲରା ଯେମିତି ପିତା, ତମେ ଖାଇଲେ ଜାଣିବ ଯେ ତାହା ପାଟିକୁ କେମିତି ଲାଗେ ? ଜଣେ ନ ଖାଇବା ଯାଏ ଯେତେ କହିଲେ ବି କେହି ବିଶ୍ୱାସ କରିବେନି । ସେହିଭଳି ଝିଅଟିର ଅନ୍ତରର ଦୁଃଖକୁ କହିଲେ ବିଶ୍ୱାସ କରିବ କିନ୍ତୁ ନିଜେ ଅନୁଭବ ନ କରିବା ଯାଏ ବିରହ ଦୁଃଖ କିଭଳି ଯନ୍ତ୍ରଣାଦାୟକ କେବଳ କଥାରେ ବୁଝିହୁଏ ନାହିଁ ।

ତିତାକୈ କେରେଲା ଖାଲହେ ଜାନିବା
ମୁଖତ କେନେ କୁଆ ଲାଗେ;
ମୋରେ ଦୁଃଖର କଥା କଲୈହେ ଜାନିବା
ହୃଦୟତ କେନେକୁଆ ଲାଗେ ।

ଶବ୍ଦାର୍ଥ : ଆଗ-ଅଗ, ଗୁରି-ମୂଳ, ତିତା-ପିତା, କେରେଲା-କଲରା, କେନେକୁଆ-କେମିତି ।

ଯୁବକଟି ଯୁବତୀପାଇଁ କ୍ୱେବେକେବେ ସ୍ନେହରେ ବଇଁଶୀ ବଜାଏ ତା'କୁ ଖୁସୀ କରିବା ପାଇଁ । ଯୁବତୀଠୁ ଦୂରେଇ ରହିଲେ ମଧ୍ୟ ତା'କୁ ପାଇବାକୁ ହେଲେ ଘରର ସମସ୍ତ ଲୋକଙ୍କୁ ଯେ ଖୁସୀ କରିବାକୁ ହେବ, ଏକଥା ପ୍ରେମିକାଟି ହୃଦୟଙ୍ଗମ କରିଥିଲା । ତା' ପ୍ରତି ଯୁବତୀର ଅନୁରାଗ ବଢ଼ାଇବା ପାଇଁ ସେ ବାଉଁଶ ଗଛତଳେ ବସି ଧୀରେ ଧୀରେ ବଇଁଶୀ ବଜାଉଥିଲା । ଶାଶୁ କ୍ୱାଇଁକୁ ବଇଁଶୀ ବଜାଇବାର ଦେଖିଲେ ହୁଏତ ପ୍ରଶଂସା କରିବେ ମାତ୍ର ଝିଅଟିର ମା ବଇଁଶୀର ସ୍ୱର ଶୁଣି ଭାବି-କ୍ୱାଇଁ ଟିକିଏ ରସିକ ଓ ମଜାଳିଆ ଲୋକ ବୋଲି କହି ହସିଦେଇ ଚାଲିଗଲେ ।

ବାଁହର ତଲେତଲେ ବାଁହୀଟି ବଜାଲୋ
ଶାଶୁଯେ ଶୁନକହି ବୁଲି;
ଶାଶୁ ଆଇଏ ଶୁନିଲେ ମିଚିକାଇ ହାଁହିଲେ
ଢୋଁଆଇ ଧେମେଲୀୟା ବୁଲି ।

ପ୍ରେମିକାଟି ସବୁବେଳେ ଦେଖି ନ ପାରିଲେ ହେଁ ତା ପ୍ରତି ଥିବା ସ୍ନେହ ଓ ଅନୁରାଗକୁ ଯୁବକଟି ଭଲଭାବେ ହୃଦୟଙ୍ଗମ କରିଛି । ତା' ବିନା ଝିଅଟି ଯେ ଦିନରାତି କିପରି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଆଖିରୁ ଲୁହ ଝରାଉଛି; ଏକଥା କେବଳ ଉଭୟ ପ୍ରେମୀ ଅନୁଭବ କରିଛନ୍ତି । ଯୁବକଟି ପାଇଁ ତା'ର ପ୍ରେମିକା ସବୁଠୁ ସୁନ୍ଦର ଓ ଶ୍ରେଷ୍ଠ ଜିନିଷ । ଶୋଷବେଳେ ପାଣି ସବୁଠୁ ମଧୁର ଓ ଭୋକବେଳେ ଭାତ ସବୁଠୁ ସୁଆଦ ଲାଗେ, ତା'ଠୁ ଅଧିକ ପ୍ରିୟାର ମଧୁର କଣ୍ଠର ଡାକଟିଏ, ଯାହା ସବୁବେଳେ ଯୁବକଟିର କାନ ପାଖରେ ଗୁଞ୍ଜାରଣ ସୃଷ୍ଟି କରି ତା'ମନରେ ଅଧିକ କଷ୍ଟ ଦେଉଛି ।

ପିୟାହର ସୁଆଦି ପାନି
ଭୋକରେ ସୁଆଦି ଭାତ;
ତାତୋକୈ ସୁଆଦି ତୋମାର ମାତେଷାରି
ଲଗାଇ ଥୈ ଯୋଆ ମାତି ।

ପ୍ରେମିକ ପ୍ରତି ଥିବା ଅନୁରାଗର ଚିହ୍ନ ସ୍ୱରୂପ ଭାତକଂସା ପାଖରେ ବସି ପ୍ରେମିକାଟି ଆଖିରୁ ଲୁହ ଗଡ଼ାଇ ସବୁବେଳେ କାନ୍ଦେ । ବହି ଯାଖରେ ବସିଲେ ଆଖିରୁ ଆପେ ଆପେ ଲୁହ ଝରି ଆସେ । ଘରେ ବା ବାହାରେ ମନ ଲାଗେ ନାହିଁ । ତା' ମନକୁ ଶାନ୍ତ୍ୱନା ଦେବାପାଇଁ ଯୁବକଟି ଯେତେ ବୁଝାଇ ଶୁଝାଇ ଚିଠି ଲେଖିଲେ ବି ତା' ମନ ବୁଝେ ନାହିଁ ବରଂ ଚିଠିକୁ ଧରି ବହୁତ ସମୟ ଯାଏ କାନ୍ଦେ ।

---

ଶବ୍ଦାର୍ଥ : ଆଇ-ମା, ମିଚିକାଇ-ଦରଫୁଟାହସ, ଧେମେଲୀୟା-ମଜାଳିଆ, ପିୟାହ-ଶୋଷ

କିତାପ ପଢ଼ି ପଢ଼ି     କାନ୍ଦ ତଇ ମଇନା
   ଚିଠି ପଢ଼ି ପଢ଼ି କାନ୍ଦ;
ଭାତର ପାତତ ବହି     କାନ୍ଦ ତଇ ମଇନା
   କାଲୈ ଚିନ୍ତା କରି ଥାକ ?

ବିହୁଗୀତର ବନଘୋଷା ଗୁଡିକ ଯୌବନ ଓ ଜୀବନର ସ୍ୱଷ୍ଟ ଅଭିବ୍ୟକ୍ତି । ସେଥିପାଇଁ ବନଘୋଷା ଗୁଡିକରେ ପ୍ରେମିକାକୁ ମଇନା, ସେନାଇ, ଲାହରୀ, ବହନା, ଧନ, ପ୍ରିୟା ଆଦି ସମ୍ବୋଧନ ଗୁଡିକର ବ୍ୟବହାର ବିହୁ ଗୀତ ଗୁଡିକରେ ବେଶି ଦେଖାଯାଏ । ଏହା ସହିତ ପ୍ରଣୟାତ୍ମକ ଗୀତର ପ୍ରାଚୁର୍ଯ୍ୟ ମଧ୍ୟ ଅଧିକ । ଯୌନ ଜୀବନର ଆବେଗ-ଅନୁଭୂତି ସହିତ ବହୁ ସାମାଜିକ ବୈଷମ୍ୟର କଥା ମଧ୍ୟ ପ୍ରକାଶ ପାଇଛି ।

ବିଚ୍ଛେଦ— ଯୌବନ ଏବଂ ବିହୁର ସମନ୍ୱୟ ଯୁବକ ଯୁବତୀମାନଙ୍କର ଜୀବନରେ ପୂର୍ବରାଗ, ଅନୁରାଗ, ପ୍ରେମ-ପ୍ରୀତି, ପ୍ରଣୟ ଏବଂ ମିଳନର ମାଧୁରିମା ଢ଼ାଳି ଦେଇଥାଏ । କେହି ବା ପ୍ରଣୟର ପୂର୍ଣ୍ଣତାରେ ଦାମ୍ପତ୍ୟ ଜୀବନର ସୁଖ ଅନୁଭବ କଲାବେଳେ କେହି ପୁଣି ବିଚ୍ଛେଦ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ସେମାନଙ୍କର ମନରେ ଗୁଞ୍ଜରିତ ହୋଇ ଉଠିଥିବା ଅନେକ ସବୁଜ ଆଶା-ଆକାଙ୍‌କ୍ଷା ରୂପ ନେବାପାଇଁ ଏତିକିବେଳେ ମନ ଭିତରେ ଉଙ୍କି ମାରନ୍ତି, ବିରହର ପ୍ଲାବନରେ ମନରେ ବିତୃଷ୍ଣା ଆସେ ତଥାପି ଅତୀତକୁ ମନେ ପକାଇ ସେ ସକେଇ ସକେଇ କାନ୍ଦେ । ଅତୀତର ପ୍ରୀତିକୁ ରୋମନ୍ଥନ କରେ । ପ୍ରେମିକାଟି କହେ, ଅତୀତ ସ୍ମୃତି ହୋଇ ବାରମ୍ବାର ଆସେ । ତୁମର ସେ କଥା ମନେ ନାହିଁ—

ମୋର୍ ଜାନୋ ମନତେ ପରେ ଘନେ ଘନେ
   ତୋର ଜାନୋ ମନତେ ନାଇଁ ।

ହୃଦୟର ବେଦନାକୁ ଚାପି ରଖି ନ ପାରି ମନଟି ମିଳନର ଅପେକ୍ଷା ରଖେ ତଥାପି ତା'ର ମନର ଆକାଙ୍‌କ୍ଷା କେବଳ ଆକାଙ୍‌କ୍ଷାରେ ରହିଯାଏ । ବିଚ୍ଛେଦର ଯନ୍ତ୍ରଣାକୁ ସହି ନ ପାରି ନାରୀଟି ଆତ୍ମହତ୍ୟା କରିବା ପାଇଁ ସ୍ଥିର କରେ । ସବୁବେଳେ ମରିଯିବି, ମରିଯିବି ଭାବ ଦେଖାଦିଏ । ସେ କ'ଣ ବା ଖାଇ ମରିବ ବୋଲି ଭାବେ । ଶେଷରେ 'ମିଶିମି' ଜନଜାତି ଆଣୁଥିବା ବରବିହ (ବିଷ) ଖାଇ ମରିବ ବୋଲି ନିଷ୍ପତ୍ତି ନିଏ ।

କିନୋ ଖାଇ ପାହରିମ   ତୋକେ ଐ ଲାହରୀ
   କିନୋ ଖାଇ ପାହରିମ ତୋକ;
ମିଶିମି ଆହିବ     ବରବିହ ଆନିବ
   ତା'କେ ଖାଇ ପାହରିମ ତୋ'କ ।

---

ଶବ୍ଦାର୍ଥ : କାଲୈ-କାହାପାଇଁ, କିତାପ-କିତାବ, ପାହରିମ-ପାଶୋରିବି

ବିହୁଗୀତ ଗୁଡିକ ଅଶ୍ଳୀଳ ବୋଲି ଲୋକମାନେ ଯେଉଁ ଉପରଠାଉଣିଆ ମନ୍ତବ୍ୟ ଦିଅନ୍ତି, ତାହା ଜୀବନର ବାସ୍ତବ ଅନୁଭୂତିର ସ୍ୱରୂପ ଅଟେ । ଏହି ଗୀତଗୁଡିକରେ ସମୟର ଛାପ, ସ୍ଥାନୀୟ ପରିବେଶର ପ୍ରଭାବ ତଥା ପ୍ରକୃତିର ମଧୁର ପରଶ ରହିଛି । ଆକାଶରେ ଡେଣା ମେଲି ଉଡୁଥିବା ଚଢେଇର ଆକର୍ଷଣୀୟ ରଂଗର ମନୋମୋହକ ଦୃଶ୍ୟ, ନଈର ଚିକ୍‌ମିକ୍ ବାଲି, କାଶତଣ୍ଡୀ ଫୁଲରେ ଭରପୂର ଜଙ୍ଗଲ, ନଦୀବକ୍ଷରେ ନାଆମେଲି ମାଛ ଧରୁଥିବା ଯୁବକର ଖୋଲା ମନର ଗୀତ, ଚାଷଜମିରେ ଧାନ କାଟୁଥିବା ଯୁବତୀମାନଙ୍କର ସ୍ୱଭାବପ୍ରବଣ ମନୋବୃତ୍ତି, ନଦୀ ପର୍ବତର ପ୍ରାକୃତିକ ମନୋରମର ଦୃଶ୍ୟ ଅତି ଜୀବନ୍ତ ଭାବେ ବିହୁଗୀତ ଗୁଡିକରେ ଫୁଟି ଉଠିଛି । ଗୀତ ଗୁଡିକରେ ପ୍ରେମ ଓ ବିରହର ଚିତ୍ରଟି ଆଙ୍କିବା ମାଧ୍ୟମରେ ନଦୀଗୁଡିକର ସ୍ୱତନ୍ତ୍ର ବୈଶିଷ୍ଟ୍ୟର କଥା ମଧ୍ୟ କୁହାଯାଇଛି । ଧନଶିରୀର ପୋଲ, ବ୍ରହ୍ମପୁତ୍ର ନଦୀର ଆରପଟେ ଥିବା ବର୍ହମଥୁରି ଗଛଟିଏ, ଲୁଇତର ବାଲି, ରଂଗା ନଈର ମାଛ, ଦିଖୌ ନଦୀରେ ବକ୍ଷ କଂପାଇ ପଶି ଆସୁଥିବା କଂପାନୀର ଜାହାଜ, ଜାଁଜୀ ନଦୀର ଜାଁଜରି, ଭୋଗଦୈ ନଦୀର ମଇଳା ପାଣି ଆଦି କାବ୍ୟିକ ଭାଷାରେ ଉଜ୍ଜ୍ୱଳିତ ହୋଇଉଠିଛି । ଏହି ଗୁଡିକର ବର୍ଣ୍ଣନା ମାଧ୍ୟମରେ ଜୀବନର ପ୍ରେମ, ମିଳନ ଓ ବିରହର ଛବି ଫୁଟି ଉଠିଛି ।

ବ୍ରହ୍ମପୁତ୍ରର ପାରରେ ବର୍ହମଥୁରି ଏ ଜୁପି
ଆମିନୋ ଖରିଲୁରା ଠାଇ;
ବ୍ରହ୍ମପୁତ୍ର ଦେବତା ଉଟୁଆଇ ନିନିବା
ତାମୋଲ ଦି ମାତୋତା ନାଇ ।

ସ୍ୱଭାବ କବିର ଅପଲକ ଦୃଷ୍ଟିରେ ଆସାମର ପଶୁପକ୍ଷୀ ମଣିଷର ଆପଣାର ହୋଇଛନ୍ତି । ଗଛଲତା ପ୍ରାଣ ପାଇ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ମୁଣ୍ଡ ଉପରେ ଉଡ଼ିଯାଉଥିବା ଚଢ଼େଇ ଯୋଡିଙ୍କୁ ଦେଖି ସୃଷ୍ଟିର ସନାତନ ସତ୍ୟ ପ୍ରକୃତି ପୁରୁଷର ମିଳନର କଥା ମନେ ପଡିଛି । ନଈ ସାଗର, ପର୍ବତ-ପଥର ଆଦି ପୃଥିବୀକୁ ଚଢ଼େଇର ଡେଣା ଭଳି ଡେଣା ଲଗେଇବା ପାଇଁ ପ୍ରେମୀମାନଙ୍କର ଇଚ୍ଛା ହୋଇଛି । ନାଁ ସେ ବିଜୁଳି ଭଳି ପୃଥିବୀକୁ ଚମକେଇ ପ୍ରିୟାକୁ ଦେଖିପାରିବ ନାଁ ବହୁଥିବା ନଦୀଭଳି ପ୍ରିୟାର ଗାଁ ପାଖଦେଇ ଯିବ, ନାଁ ଚଢ଼େଇ ଭଳି ଉଡି ଉଡି ଆସି ପ୍ରିୟାକୁ ଦେଖାଦେଇ ପାରିବ ।

ଚମକତ ଚାବଲୈ ନହଉଁ ମଇ ବିଜୁଲୀ
ନ ହଉଁ ମଇ ରୋବ୍‌ତୀ ନୈ;
ଚରାୟୋ ନ ହଲୋ ଉରିଗଲୋ ହେଁତେନ
ଦୁ କାଷେ ଦୁପାଖି ଲୈ ।

ଶବ୍ଦାର୍ଥ : ବର୍ହମଥୁରି - ଏକ ପ୍ରକାର ଗଛ, ଏଜୁପି- ଗୋଟିଏ, ଉଟୁଆଇ - ଭସେଇ, ବୋବ୍‌ତୀ- ବହୁଥିବା, କାଷେ-ପଟେ

ପ୍ରେମିକାଟି ନଦୀରେ କପଡ଼ା ଧୋଇଲାବେଳେ ଆକାଶର ମୁକ୍ତପକ୍ଷୀମାନଙ୍କୁ ଦେଖି ତାଙ୍କ ସହିତ ଉଡି ଯିବାର ଆଶାପୋଷଣ କରିଛି ।

ଚିରିପ୍ ଚିରିପ୍ କରି କାପୋର ଧୁଇ ଆଛିଲୋ
ଓପରେ ଉରିଲେ ଟୁନି;
ଟୁନିର ଲଗତେ ଉରିମ ଯେନ ଲାଗିଛିଲ
ଓଟରତ ନାଛିଲା ତୁମି ।

ହଲଦିଆ ରଂଗର ସୁନ୍ଦର ପକ୍ଷୀଯୁକ୍ତ ଚଢ଼େଇକୁ ଦେଖି ପ୍ରିୟାଟି ଭାବୁଛି ଏ ଚଢ଼େଇକୁ ସବୁବେଳେ ଦେଖାପାଉଛି ଅଥଚ ମୋର ପୁରୁଷଟିକୁ ଦିନରେ ଥରଟିଏ ବି ଦେଖିପାରୁନି । ତା' ବିନା ପେଟକୁ ଭାତ ଯାଉନି-

ଚରାଇ ହାଲଧିୟା ପାଖି ବିନନ୍ଦୀୟା
ଅରଣ୍ୟର ଭିତରତ ଟୋପ;
ଦିନଟୋର ଭିତରତ ଏବାର ନିଦିଖିଲେ
ପେଟତୋ ନାଲାଗେ ଭୋକ ।

ପ୍ରକୃତି ଏବଂ ପୁରୁଷର ଆକର୍ଷଣ ସୃଷ୍ଟିର ଆଦିମ ସତ୍ୟ । ଯୌବନର ଉନ୍ମାଦନା ଯେତେବେଳେ ଜୀବନରେ ଏକ ନୂତନ ଆଶା ନେଇ ଆସେ, ସେତେବେଳେ ଯୁବତୀର ମୁହଁ, ଆଖି, ଓଠ, ହାତର ଆଙ୍ଗୁଳିରେ ସୌନ୍ଦର୍ଯ୍ୟର ସ୍ୱପ୍ନ ଦେଖେ । ସେତେବେଳେ ହୁଏତ ହୃଦୟ ହୃଦୟର କଥା ଜାଣିବା ପାଇଁ ଆଗ୍ରହ ପ୍ରକାଶ କରେ । ଦୁଇଟି ମନ ଗୋଟିଏ ହୋଇଯିବାର ବାସ୍ନା ଜାଗି ଉଠେ । ସେତେବେଳେ ପ୍ରଣୟର ପୂର୍ବରାଗରେ ମନଗୁଡିକ କେବଳ କୋମଳ ହୋଇଉଠେ । ଗୋଟିଏ ପେଛା ଫୁଲ, ଖଣ୍ଡିଏ ପାନ, ଟିକିଏ ହସ, ମନର ଯେଉଁପରି ଗଭୀର କଥାଟିକୁ ପୂର୍ବାଭାସ ଦେବାର ପ୍ରୟାସ କରେ । ସେତେବେଳେ ମନ କହେ—

ଆହୋଁତେ ଦେଖୋ ଧନ ଯାଓଁତେ ଦେଖୋଧନ
ବଗୀ ଜାମୁକରେ ପୁଲି;
ଖୋଆରେ ନ'ହଲି ପିନ୍ଧାରୋ ନ'ହଲି
ଚକୁର ହେ ପୋରଣି ହଲି ।

ସେତେବେଳେ ମନରେ ଆଶା, ଭୟ ଏବଂ ଅଚିହ୍ନା ମନର ଅଜଣା ଆଶଙ୍କା ମନକୁ ଜାବୁଡ଼ି ଧରେ । ମନ ପଚାରିବାକୁ ଇଚ୍ଛା କରେ—

---

ଶବ୍ଦାର୍ଥ: ଓଟରତ- ଶାଖରେ, ପାଖି-ପକ୍ଷୀ, ବିନନ୍ଦିୟା-ସୁନ୍ଦର

ଚକୁଲେ ଚାଲେ ହାଁହି ମିଶ କିୟାଇ
ହାଁହିତେ ଲଗୋଆ ବେଥା ।

ଯେତେବେଳେ ପୂର୍ବରାଗର ପରଶରେ ମନରଞ୍ଜିତ ହୋଇଉଠେ, ସେତେବେଳେ ପ୍ରଣୟୀର ଦୃଷ୍ଟି କୌଣସି ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ କେନ୍ଦ୍ରୀଭୂତ ହୋଇପଡ଼େ, ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିତ୍ୱ ସେତେବେଳେ ପୃଥିବୀର ସମୂହ ସୌନ୍ଦର୍ଯ୍ୟକୁ ରୂପଦେବା ପାଇଁ ଇଚ୍ଛା କରେ–

ଉଜାଇ ଚାଲୋଁ ମଇ ଭଟୀୟାଇ ଚାଲୋଁ ମଇ
ତୋମାର ମାନ ଶୁଅନୀ ନାଇ;
ଦେବେଐ ମାରିବ ମନିଷେ ମାରିବ
ତୋମାକ ଜାନୋ ଅକଲେଁ ପାଇ ।

ପ୍ରିୟାକୁ ଦେଖି ମଣିଷ ଏମିତିକି ଦେବତା ମଧ୍ୟ ଏକୁଟିଆ ପାଇଲେ ତା'ର ରୂପରେ ଆକୃଷ୍ଟ ହୋଇ ତା'କୁ ଉପଭୋଗ କରିବା ପାଇଁ ଇଚ୍ଛା କରିବେ ।

ଯୌବନର ରଙ୍ଗୀନ ଆଭାରେ ଉଦ୍ଦୀପିତ ଆଖି ଦୁଇଟି ସର୍ବାଙ୍ଗ ସୁନ୍ଦର ଦେଖେ । ଅଂଗେ ଅଂଗେ କାମନାର ଶିଖା ଜଳି ଉଠେ । ହୃଦୟର ଗଭୀର ଆବେଗ ଜଡ଼ିତ କଥାଗୁଡ଼ିକ ବିହୁଗୀତର ବନ ଘୋଷାରେ ବ୍ୟକ୍ତ ହୋଇଥାଏ । ବନ ଭିତରେ ହାତୀକୁ ଲୋକମାନେ ହଜାଇଥିଲେ । ଯୁଦ୍ଧ ଭୂମିରେ ଘୋଡ଼ା ହଜାଇଥିଲେ, ସେ ତା'ର ପ୍ରେମିକାକୁ ଅଗଣାର ଘାସ ବଣ ଭିତରେ ହଜାଇଲା । ତା' କପାଳରେ ସ୍ୱର୍ଗର ମୁକ୍ତା ଭୋଗ କରିବାକୁ ନାହିଁ ।

ହାତୀ ହେରୁଆଲୋଁ ଲିହିରୀ ବନତଐ
ଘୋଁରା ହେରୁ ଆଲୋଁ ରଣତ;
ପାଇ ହେରୁଆଲୋଁ ସରଗର ମୁକୁତା
ଚୋତାଲର ଦୁବରି ବନତ ।

**ବିଷାଦ–** ବିରହ ଯନ୍ତ୍ରଣାରେ ଛଟପଟ ହେଉଥିବା ନାରୀ ମନଟି ନିଜର ଦୁଃଖକୁ ଚାପି ରଖିପାରେ ନାହିଁ । କାହା ଆଗରେ କହିଦେଲେ ମନ ହାଲ୍‌କା ହୋଇଯାଏ କିନ୍ତୁ ସେ ମନର ଦୁଃଖକୁ କେମିତି ବା ବୁଝାଇ କହିବ ? ସେଥିପାଇଁ ଖରା ବର୍ଷାରେ ଦେହ କଳା ହେଲାପରି, ମଇଳା ଲାଗି ଲୁଗା କଳା ହେଲାପରି ତା' ଆପଣାର ଲୋକଟିର ଚିନ୍ତାରେ ତା'ର ଦେହ ଶୁଖି ଶୁଖି କଳା ହୋଇଗଲାଣି । ଦୁଃଖରେ ସେ ନିଜକୁ ହୀନ ବୋଲି ଭାବେ । ନିଜ ଭାଗ୍ୟକୁ ଦୋଷ ଦେଇ କହେ ଏ ଜୀବନର କ'ଣ ବା ମୂଲ୍ୟ ଅଛି ? କାହିଁକି ଯମ ନେଉ ନାହିଁ ? ବଞ୍ଚେଇ ରଖି କେବଳ କଷ୍ଟ ଦେଉଛି ।

---

ଶବ୍ଦାର୍ଥ : ଚୋତାଲ - ଅଗଣା

ଗା କାଲା ହଲେ ରଦେ ବରଷୁଣେ
କାପୋର କାଲା ହ'ଲେ ମଳି;
ତୋମାର ସନ୍ତାପତ ଶରୀର କାଲା ହ'ଲ
ଢମେ ଓ ନିନିୟେ ମାରି ।

ଯୁବକଟି ମଧ୍ୟ ଅନୁରୂପ ଭାବେ ପ୍ରିୟାର କଥା ଭାବି ଭାବି ଝଡିଯାଏ । ସେ ତା'ର ପ୍ରିୟାକୁ ଭୁଲେଇ ଭୁଲେଇ ନିଜର ମନକଥା କହିବାକୁ ଚେଷ୍ଟା କରେ । ସେ ଓଲଟା ପ୍ରଶ୍ନ କରେ ତୋ'ର ମନ କେବେ ସ୍ୱର୍ଗରେ ତ କେବେ ପୁଣି ମର୍ତ୍ତ୍ୟ ଅଥବା କେବେ ପୁଣି ପାତାଳରେ ଘୂରି ବୁଲେ । ତୋ ମନର ଅସ୍ଥିରତା ଦେଖି ମୋତେ ବେଶି ଭୟ ଲାଗେ, କେଜାଣି କାହିଁକି ଦିନେ ନା ଦିନେ ତୁ ମୋ'ଠୁ ଦୂରେଇ ଯିବୁନି ତ ? ଏହି ଚିନ୍ତାରେ ମୁଁ ଦିନରାତି ମରୁଛି ।

ସ୍ୱରଗତ ଏକମନ ପାତାଳତ ଏକମନ
ମର୍ତ୍ତ୍ୟତ ଏକମନ କରି;
ତିନିକ ତିନି କରି କି କର ଲାହରି
ଆଛୋ ସନ୍ତାପତ ମରି ।

**ବିରାଗ—** ପ୍ରେମରେ ସାର୍ଥକତା ଆଣିବା ପାଇଁ ହେଲେ ଉଭୟ ପ୍ରେମିକ ଓ ପ୍ରେମିକାଙ୍କୁ ତ୍ୟାଗ କରିବାକୁ ହେବ । ଅନେକ ପ୍ରକାର କଷ୍ଟ ଅପମାନ ସହ୍ୟ କରିବାକୁ ହେବ । ଏ ସବୁର ଶୀକାର ହୋଇ ଭାଙ୍ଗି ପଡ଼ିଲେ ଦୁଇ ପ୍ରେମୀଙ୍କର ମିଳନ କଷ୍ଟକର ହୁଏ । ତଥାପି ସହିବାର ସୀମା ପାର ହୋଇଗଲେ ମନରେ ବିତୃଷ୍ଣା ଆସିଥାଏ । ଝିଅଟି ଅଧିକ ଲାଞ୍ଛିତ ହୋଇଥାଏ । ବେଳେବେଳେ ପୁଅର ବିରୁଦ୍ଧରେ ବହୁତ କଥା ଶୁଣିବାକୁ ପାଏ । ଅଭିମାନରେ ତା'ର ମନ ଭାଙ୍ଗିଯାଏ, ତଥାପି ମନ ଦେଇଥିବା ଲୋକଟିଠୁ ଦୂରେଇ ଯିବା ପାଇଁ ମନ ଚାହେଁ ନାହିଁ । ଯେତେ କଷ୍ଟ ହେଉ ବରଂ ତା'କୁ ପାଇବା ପାଇଁ ଅବୁଝା ମନ ବ୍ୟାକୁଳ ହୋଇଉଠେ । ଘରର ସମସ୍ତଙ୍କ ବାରଣ ସତ୍ତ୍ୱେ ତା'କୁ ଦେଖାକରି କୁହେ- ରାମଲକ୍ଷ୍ମଣ ଯୁଦ୍ଧ କଲାବେଳେ ରାମଭକ୍ତ ବିଭୀଷଣ ହାତରେ କର୍ତ୍ତବ୍ୟ ଓ ଧର୍ମ ତାଡ଼ନାରେ ଶର ଧରିଲାଭଳି ମୋତେ ତମେ ପାଇବାକୁ ହେଲେ ସେହିଭଳି ତ୍ୟାଗ କରିବାକୁ ହେବ । ଗଙ୍ଗାରେ ସ୍ନାନ କରି କାଶୀ ଦର୍ଶନ କରି ଠାକୁରଙ୍କ ପାଖରୁ ବର ମାଗି ଆଣ । ତା ହେଲେ ମୋତେ ତମେ ପାଇବ ।

ରାମେ ଲକ୍ଷ୍ମଣେ ଯୁଦ୍ଧଲୈ ଓଲାଲେ
ବିଭୀଷଣେ ଧରିଲେ ଶର;
ମୋକ ନୋ ପାବଲୈ ଗଙ୍ଗା ସ୍ନାନ କରାଗୈ
କାଶୀତ ଲୈ ଆହାଗୈ ବର ।

ଶବ୍ଦାର୍ଥ : ଓଲାଲେ-ବାହାରିଲେ ।

## ତୃତୀୟ ପରିଚ୍ଛେଦ

ସଙ୍କେତସୂଚୀ—

୧) ହୁଁଚରି-ମୁକଲି ବିହୁ ଆରୁ ବିହୁନାଚ - ପୃ-୫୨-ଜୟକାନ୍ତ ଗନ୍ଧୀୟା ।
୨) ଅସମୀୟା ଜନସାହିତ୍ୟ-ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀ-ପୃ-୨୬ ।
୩) ଅସମୀୟା ଲୋକ ସାହିତ୍ୟର ରୂପରେଖା-ପୃ-୧୬୬-ଲୀଳା ଗଗୈ ।
୪) ଅସମୀୟା ଲୋକ ସାହିତ୍ୟର ରୂପରେଖା-ପୃ-୧୭୪-ଲୀଳା ଗଗୈ ।
୫) Folklore of Assam - Jogesh Das - P-126.
୬) ହୁଁଚରି-ମୁକଲି ବିହୁ ଆରୁ ବିହୁନାଚ-ପୃ-୩୧-ଜୟକାନ୍ତ ଗନ୍ଧୀୟା ।
୭) ବିହୁନାଚ ଆରୁ ଲୋକ ବିଶ୍ୱାସ-ଆଜିର ବାତରି-୧୯୯୬-୧୦-ଏପ୍ରିଲ୍- ଜେଇଞ୍ଚୀ ଚୁତୀୟା ।
୮) 'ହୁଁଚରି-ମୁକଲି ବିହୁ ଆରୁ ବିହୁନାଚ' — ପୃ-୪୨-ଜୟକାନ୍ତ ଗନ୍ଧୀୟା ।
୯) 'ଅସମର ଲୋକସଂସ୍କୃତି' - ନିର୍ମଳପ୍ରଭା ବରଦଲୈ - ପୃ-୧୬୫ ।
୧୦) ପ୍ରେମ ଆରୁ ଯୌନାଚାରର ଉତ୍ସବ ରଂଗାଲି ବିହୁ- 'ରଂପୁର' -୧୯୯୮-୧୯-ଏପ୍ରିଲ- ଦୀପକ କୁମାର ଗୋସ୍ୱାମୀ ।
୧୧) 'ବସନ୍ତୋତ୍ସବ' - 'ରଂପୁର' - ୧୯୯୮-୧୯-ଏପ୍ରିଲ- ଜିତୁ କୁମାର ଲେଖାରୁ ।



# ଚତୁର୍ଥ ପରିଚ୍ଛେଦ

**ସଂସ୍କୃତିର ପ୍ରତୀକ ବିହୁ**— ଅସମୀୟା ସଂସ୍କୃତି କୃଷି-ସଂସ୍କୃତି । କୃଷିକୁ କେନ୍ଦ୍ର କରି ଅସମୀୟା ଜାତୀୟ କୃଷ୍ଟି ଯେ ସ୍ୱକୀୟ ରୂପ ଯୁଗେ ଯୁଗେ ବଜାୟ ରଖି ଆସିଛି ତା'ର ମନୋରମ ଇତିହାସ ଲୁଇତନଦୀର ସେପଟେ ଏବଂ ଚରାଇ ପର୍ବତର ବୁକୁରେ ବସା ବାନ୍ଧିଛି । ଝିଲମିଲ ହୋଇ ଉଠୁଥିବା ଏହି ଇତିହାସ ଅସମୀୟା ଜୀବନର ବିହୁ ସ୍ୱରୂପକୁ ଆଶ୍ଚର୍ଯ୍ୟଜନକ ଭାବେ ଉଦ୍‌ଭାସିତ କରି ରଖିଛି ।

ବ୍ରହ୍ମପୁତ୍ରର ଉପକୂଳବର୍ତ୍ତୀ ଅଞ୍ଚଳର ସଂସ୍କୃତିର ପ୍ରତୀକ ହିସାବରେ ବହାଗ ବିହୁକୁ କୁହାଯାଇପାରେ କାରଣ ବହାଗ ବିହୁର ନୃତ୍ୟ, ଗୀତ, ଆଚାର ଏବଂ ଅନୁଷ୍ଠାନ ଆଦି ଅସମୀୟା ଲୋକର ଜୀବନଯାତ୍ରା ଏବଂ ଜୀବନଦର୍ଶନ ଆଦି ସ୍ୱରୂପକୁ ହିଁ ଏହି ବିହୁ ଉତ୍ସବ ବହନ କରିଛି । ବିହୁଗୀତ ସମୂହରେ ଆସାମର ଅପରୂପ ପ୍ରକୃତିର ଛବି, ଅସମୀୟାର ଜୀବନର କଳ୍ପନା, ଉପଲବ୍ଧି ଏବଂ ହୃଦୟର କଥା ତଥା ଆସାମର ସମଗ୍ର ସଂସ୍କୃତିର ରଂଗ ଏବଂ ସୁରଭି ସଞ୍ଚିତ ହୋଇଅଛି । ବିହୁ ନୃତ୍ୟର ତାଳେ ତାଳେ ଆଦିମ ବିଶ୍ୱାସର ରୂପ ଏବଂ ଜୀବନ ଛନ୍ଦ ରୂପାୟିତ ହୋଇଛି, ତା' ସହିତ ବିହୁର ରୀତିନୀତିରେ ଯୁଗଯୁଗ ଧରି ଆସାମର ମାଟିରେ ପ୍ରବାହିତ ହେଉଥିବା ଜୀବନ ମନ୍ଦାକିନୀର ସଂଗମ ଘଟିଛି ।

ବିହୁ ଶବ୍ଦର ଉତ୍ପତ୍ତି କ୍ଷେତ୍ରରେ କେହି କେହି ବିଦ୍ୱାନ ପଣ୍ଡିତମାନେ ବିଷୁବ ଶବ୍ଦର ଅପଭ୍ରଂଶରୁ ବିହୁ ଶବ୍ଦର ଉତ୍ପତ୍ତିକୁ ସ୍ୱୀକାର ନ କରି 'ବିଷୁବ ସଂକ୍ରାନ୍ତି'ରୁ ବିହୁ ଶବ୍ଦର ଉତ୍ପତ୍ତି ବୋଲି କହିଥାନ୍ତି । ତେବେ ଯା ହେଉନା କାହିଁକି ସମୟକ୍ରମେ ବିଭିନ୍ନ ଜାତି-ଜନଜାତିର ସମ୍ମିଳିତ କୃଷ୍ଟିର ଏହା ଏକ ମନୋରମ ସମନ୍ୱୟ ବୋଲି ଧାରଣା କରାଯାଇଥାଏ ।

କୃଷ୍ଟିର ଅର୍ଥ ଯଦି 'Culture is what man does' ହୁଏ ଏବଂ ସଂସ୍କୃତି ଯଦି ତାହାର ମାର୍ଜିତ ପ୍ରକାଶ ବୋଲି ଧରାଯାଏ, ତାହେଲେ ସମୟ ଧାରାରେ ଜାତି-ଉପଜାତିର ବିଚିତ୍ର ଜୀବନଯାତ୍ରାରଂ ବିଭିନ୍ନ ରଂଗର ଆଗନ୍ତୁକ ଦ୍ୱାରା ଅସମୀୟା ସଂସ୍କୃତିର ପତ୍ର ଓ ଫୁଲଫଳ ଯେପରି ବିକଶିତ । ନୃତତ୍ତ୍ୱର ଗବେଷଣାରୁ ଜଣାଯାଇଥାଏ ଯେ ଅସମୀୟା ଜାତିର ରକ୍ତ ଏକ ମିଶ୍ରିତ ରକ୍ତ । ଅଷ୍ଟ୍ରଲୟଡ୍, ଦ୍ରାବିଡ଼ୀ, ମଙ୍ଗଲୟଡ୍ ଏବଂ କକେସସ୍‌ମାନଙ୍କର ସ୍ରୋତରେ ଅଧ୍ୟୁଷିତ ଆସାମର ମାଟିରେ ରକ୍ତର ସମିଶ୍ରଣ ଘଟିଥିଲା । ଦେହର ରଂଗ, ମୁହଁ, ନାକ ଏବଂ କେଶର ଗଢ଼ଣ, ଉଚ୍ଚତା ଏବଂ କୃଷ୍ଟିର ଧାରାରେ ଆସାମର ବର୍ତ୍ତମାନ ଅଧିବାସୀ ସକଳ ଅଷ୍ଟ୍ରଲୟଡ୍, ମଙ୍ଗଲୟଡ୍ ଏବଂ କକେସସ୍‌ମାନଙ୍କର ବିଭିନ୍ନ ତଥା ସମ୍ମିଳିତ ଅବଦାନ ନିକଟରେ ଋଣୀ । ଅଷ୍ଟ୍ରଲୟଡ୍‌ମାନେ ପ୍ରାକ୍ ଦ୍ରାବିଡ଼ୀ ବା ନିଷାଦ ନାମରେ ପରିଚିତ ।

ମଙ୍ଗଲୟଡମାନେ ତିବ୍ବତବର୍ମୀ ପରିବାର ଏବଂ କକେସସ୍‌ମାନେ ଆର୍ଯ୍ୟନାମରେ ପରିଚିତ । ଆସାମର ଭୌଗୋଳିକ ଅବସ୍ଥିତି ଏପରି ଯେ ଆଦିମ କାଳରୁ ଗୋଟିଏ ପଟେ ସୁଦୂର ପ୍ରାଚ୍ୟ ଅର୍ଥାତ୍ ଚୀନ, ଦକ୍ଷିଣପୂର୍ବ ଏସିୟା ପର୍ଯ୍ୟନ୍ତ ଭାରତ ଠାରୁ ଅନ୍ୟପଟେ ପ୍ରାଚ୍ୟରୁ ପଶ୍ଚିମ ପର୍ଯ୍ୟନ୍ତ ଆସାମର ବକ୍ଷଦେଇ ବିଭିନ୍ନ ସମୟରେ ଜନଗୋଷ୍ଠୀର ହୋଇଥିଲା । ନୃତତ୍ତ୍ୱଗବେଷକମାନଙ୍କ ମଧ୍ୟରେ ମତଭେଦ ତଥା ଶୃଙ୍ଖଳାବଦ୍ଧ ବିଶ୍ଳେଷଣର ଅଭାବସତ୍ତ୍ୱେ ମଧ୍ୟ ଏହା କୁହାଯାଇପାରେ ଯେ ପୂର୍ବ ଆସାମ ବର୍ମା ରାସ୍ତା ଦେଇ (ଦକ୍ଷିଣ ପୂର୍ବରେ କାଚାର ଏବଂ ମଣିପୁର ମଧ୍ୟ ଦେଇ ଏବଂ ଉତ୍ତର ପୂର୍ବରେ ପାତକାଇ ପର୍ବତ ଦେଇ) ଉତ୍ତରରେ ଭୂଟାନ, ତିବ୍ବତ ଏବଂ ନେପାଳ ମଧ୍ୟ ଦେଇ, ଦକ୍ଷିଣରେ ବଙ୍ଗୋପସାଗର ମଧ୍ୟ ଦେଇ ଏବଂ ପଶ୍ଚିମ ଦିଗରେ ଏହିଭଳି ସ୍ରୋତ ଆସି ବ୍ରହ୍ମପୁତ୍ର ଉପତ୍ୟକାରେ ଆଶ୍ରୟ ନେଇଥିଲେ ।

ନିଷାଦ ବା ପ୍ରାକ୍‌ଦ୍ରାବିଡୀ ବା ଅଷ୍ଟ୍ରଲୟଡ଼ ନାମରେ ପରିଚିତ ଜାତି ହିଁ ଆସାମର ପ୍ରାଚୀନତମ ଅଧିବାସୀ ବୋଲି ପଣ୍ଡିତମାନେ କହିଥାନ୍ତି । ଡଃ ଇଟ୍‌ଟନ୍‌ଙ୍କ ମତରେ ପ୍ରାଚୀନ କାଳରେ ଅଷ୍ଟ୍ରେଲିୟା ଏବଂ ଅନ୍ୟାନ୍ୟ ନିକଟତମ ଦ୍ୱୀପଗୁଡ଼ିକ ସହିତ ଏସିୟାର ଦକ୍ଷିଣ ଅଞ୍ଚଳ ସଂଲଗ୍ନ ହୋଇଥିଲା ଏବଂ ତା'ଫଳରେ ସେହି ସ୍ଥାନଗୁଡ଼ିକର ମଝିରେ ଯାତାୟତ ଏବଂ ସାଂସ୍କୃତିକ ପରଂପରାର ପ୍ରଭାବ ପରସ୍ପର ଉପରେ ପଡ଼ିଥିଲା । ଅଷ୍ଟ୍ରେଲିୟାରୁ ଅଷ୍ଟ୍ରଲୟଡ଼, ଅଷ୍ଟ୍ରଏସିୟାଟିକ୍ ଏବଂ ଅଷ୍ଟ୍ରିକ୍ ଆଦି ଶବ୍ଦର ଉଦ୍ଭବ ହୋଇଥିଲା । ଏସ. ସି. ରାୟଙ୍କ ମତରେ ଭୂମଧ୍ୟସାଗରୀୟ ଲୋକମାନଙ୍କର ଗୋଟିଏ ଭାଗ ପୂର୍ବଭାରତର ନଦୀ ଉପତ୍ୟକା ସମୂହରେ ଅଷ୍ଟ୍ରଲୟଡ଼ମାନଙ୍କ ସହିତ ମିଳିତ ହୋଇଥିଲା ଏବଂ ଏହାର ଗୋଟିଏ ଭାଗ ଅସୁର ନାମରେ ବିଦିତ ହୋଇ ଆସାମ ଏବଂ ଛୋଟନାଗପୁରରେ ବାସ କରୁଥିଲେ । ସେମାନେ ଏହି ଭୂମଧ୍ୟସାଗରୀୟ ଲୋକମାନଙ୍କୁ ଆଦି ଦ୍ରାବିଡ଼ ବୋଲି କହିଛନ୍ତି । ଯା'ହେଉନା କାହିଁକି, ଆସାମକୁ ଆସି ଆଦିମ ବସତି ସ୍ଥାପନ କରି ଏହି ପ୍ର'ଟ ଅଷ୍ଟ୍ରଲୟଡ଼ ଏବଂ ଦ୍ରାବିଡ଼ମାନଙ୍କର ସଂସ୍କୃତିରେ ପ୍ରକୃତି ପୂଜାର ପ୍ରଚଳନ ଥିଲା ବୋଲି ଅଜସ୍ର ପ୍ରମାଣ ମିଳିଛି । ଋତୁ ଉତ୍ସବ ବା ଉର୍ବରତା ବୃଦ୍ଧିର ସହିତ ଜଡ଼ିତ ବିଶ୍ୱାସ (Fertility cult) ଏବଂ ସର୍ପପୂଜାର ନିୟମ ଏମାନେ ହିଁ ପ୍ରଚଳନ କରିଥିଲେ ବୋଲି ବିଶ୍ୱାସ କରାଯାଇଥାଏ । ଜାଭା, ନିକୋବର ଦ୍ୱୀପପୁଞ୍ଜ ଆଦି ଯେଉଁ ଯେଉଁ ସ୍ଥାନରେ ଅଷ୍ଟ୍ର-ଏସିୟାଟିକମାନଙ୍କର ପ୍ରଭାବ ପଡ଼ିଥିଲା, ସେଠାରେ କୃଷି ସହିତ ଜଡ଼ିତ ବିଶ୍ୱାସ ଏବଂ ଋତୁଧର୍ମୀ ନୃତ୍ୟ ଉତ୍ସବର ପରିଚୟ ମିଳିଛି ।

ଆସାମର ସେହି ପ୍ରାଚୀନ ଅଧିବାସୀମାନଙ୍କୁ ମଙ୍ଗୋଲୀୟ ଗୋଷ୍ଠୀର ତିବ୍ବତବର୍ମୀମାନଙ୍କର ଦ୍ୱିତୀୟ ସ୍ରୋତ ଛିନ୍ନ ଭିନ୍ନ କରିଦେଲା ଏବଂ ସେମାନେ ଆସାମରେ ବ୍ୟାପିଥିବା ଅଷ୍ଟ୍ରଏସିୟାଟିକ୍ ସଂସ୍କୃତି ଉପରେ ମଙ୍ଗୋଲୀୟ ବିଶିଷ୍ଟ କୃଷିର ପ୍ରଭାବ ପକାଇଥିଲେ । ଦୁଇଟି କୃଷି ମଧ୍ୟରେ ସୂକ୍ଷ୍ମ ଏବଂ ସ୍ୱଷ୍ଟ ବିଭାଜନ (Sharp & clear

division) କରିବା ଅସମ୍ଭବ ତଥା ଜଟିଳ ହେଲେ ହେଁ ଦୁଇଟା ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଥିବା ଗୋଷ୍ଠୀ ମଧ୍ୟରେ ବର୍ତ୍ତମାନ ମଧ ସଂରକ୍ଷିତ ହୋଇଥିବା ବିଶ୍ୱାସ, ରୀତିନୀତି ଆଦି ସମଧରଣର, ଯାହା ଆଲୋଚ୍ୟଯୋଗ୍ୟ ଅଟେ ।

ଅଷ୍ଟ୍ରଲୟଡ୍ ଏବଂ ମଙ୍ଗଲୟଡ୍ ଦୁଇଟା ସ୍ୱତନ୍ତ୍ର ବୈଶିଷ୍ଟ୍ୟଥିବା ଗୋଷ୍ଠୀ ହେଲେ ହେଁ ଉଭୟ କୃଷିଜୀବୀ ଏବଂ ଉଭୟଂ ଗୋଷ୍ଠୀର ଅଜସ୍ର ବିଶ୍ୱାସ କୃଷି ସହିତ ଯେପରି ସାଙ୍କୁଳି ଖାଇ ରହିଛି । ଜମିର ଉର୍ବରତା ତଥା ଶସ୍ୟର ପ୍ରାଚୁର୍ଯ୍ୟତା ପାଇଁ ଅଶରୀରି ଶକ୍ତିକୁ ସନ୍ତୁଷ୍ଟ କରିବା ପାଇଁ ଅଦୃଷ୍ଟବାଦୀ ଆଦିମ କୃଷିଜୀବି ସମାଜ ମେଘ ଖରା ପବନକୁ ଅନୁକରଣ କରି ଚାଷଜମିରେ ନାଚୁଥିଲେ ଏବଂ ମଣିଷର ଜୀବନର ଯେଉଁ କ୍ରିୟା ନାରୀକୁ ସନ୍ତାନ ସମ୍ଭବା କରି ଗଢ଼ି ତୋଳୁଥିଲା, ସେହି ଆଦିମ ଜୈବିକ ଅଭିଜ୍ଞତା ନୃତ୍ୟରେ ରୂପାୟିତ କରୁଥିଲେ । ଚାଷଜମି ବା ମାଟିକୁ ଯେ ସେମାନେ ନାରୀ ବା ମାତୃରୂପରେ ଜ୍ଞାନ କରୁଥିଲେ ଏହି କଥା ସେମାନେ ସ୍ପଷ୍ଟ କରିଥିଲେ ।

Sir Joseph Sachs କହିଥିଲେ– Long before primitive man weaves the natural cycle of events into picturesque tales, he describes them in bodily movements. He has sun dances and wind dances, the dances of the chase and of the harvest, indeed every activity of his life and every aspects of the elements around him has its counterpart in this mimicry of his person.

(Joseph Sachs) (୧)

ଆଦିମ ସମାଜର ଏହି ସୃଷ୍ଟି-ସ୍ପୃହା ଋତୁ ଉତ୍ସବ ବହାଗ ବିହୁରେ ସମୁଜ୍ଜ୍ୱଳ । ବିହୁର ସମୟ, ବିହୁ ନାଚ ଏବଂ ବିହୁ ପାଗର ବିଶ୍ୱାସ ଏହି କଥାକୁ ଦୃଢ଼ କରାଇଥାଏ ଯେ ବିହୁ ଆସାମକୁ ବହୁ ଡେ଼ରିରେ ଆସିଥିବା ଆର୍ଯ୍ୟମାନଙ୍କର ଅବଦାନ ନୁହେଁ । ଆସାମର ପର୍ବତୀୟା ଏବଂ ସ୍ଥାୟୀ ଜନଜାତିମାନଙ୍କର ସଂସ୍କୃତିରୁ ବୁଝାଯାଇଥାଏ ଯେ ସେମାନଙ୍କର ଉତ୍ସବ ଏବଂ ନୃତ୍ୟ ସଂପୂର୍ଣ୍ଣଭାବେ କୃଷିକୁ କେନ୍ଦ୍ର କରି ଗଢ଼ି ଉଠିଛି । ଚାଷଜମିର ସୃଷ୍ଟି ଏବଂ ଅବକାଶ ନଥିବା ସହିତ ଗାରୋ, ମିରି, ଟାଂଛା, ନଗା, ଲୁସାଇ, ବଡୋମାନଙ୍କର କୃଷି ବିଜଡ଼ିତ । ୱରାଂଗାଲା ଏବଂ ରଂଚୁଗାଲା ଗାରୋମାନଙ୍କର କୃଷି ନୃତ୍ୟର ମନୋରମ ପ୍ରକାଶ । ବଡ଼ୋମାନଙ୍କର ଖେରାଇ ନୃତ୍ୟ ଉତ୍ସବରେ ଶସ୍ୟର ପ୍ରାଚୁର୍ଯ୍ୟ କାମନା କରାହୁଏ । ଖାସି, ମିକିର, ରେଂମା ପମ୍‌ଗା, ଲାଖେରମାନଙ୍କର ଉତ୍ସବର ଉତ୍ସ କୃଷି କର୍ମ । ଆଦି ସମାଜରେ ପନୁଂ ନୃତ୍ୟ ଶସ୍ୟ କାମନାର ହିଁ ନୃତ୍ୟ । "କନିୟାକ' ନାଗାମାନଙ୍କର ବସନ୍ତୋତ୍ସବ ପାଳନ ସହିତ ଜଡ଼ିତ ବିଶ୍ୱାସର କଥା ଅଟେ । 'ନେକେଡ୍‌ନାଗା ନାମ୍ନକ ପୁସ୍ତକରେ ହେଇମେନ୍ ଡ୍‌ଫି ଏହିଭଳି ଭାବେ କହିଛନ୍ତି– "Its (Naga festival) theme is the fertility of the

field and the central formula runs. As a woman embraces her lover, so many the earth take the seed of the rice into her womb. The fertility of field and man is closely linked in the mind of the Nagas, they are the different expressions of the same force and the prosperity of the village depends on its abundance.

ଆସାମର ମୁଖ୍ୟ ଉତ୍ସବ ବିହୁର ପଟ୍ଟଭୂମି ଏହା ସହିତ ସମାନ । ଅଣ୍ଡାଯୁଦ୍ଧ ଏବଂ କଉଡ଼ି ଖେଳ ବହାଗ ବିହୁରେ ବ୍ୟାପକ ଆନନ୍ଦ ଦେଇଥାଏ । ଏହା ଅଷ୍ଟ୍ରୋ ଏସିୟାଟିକ୍‌ର ଉର୍ବରତା ବୃଦ୍ଧିର ବିଶ୍ୱାସର ସ୍ପଷ୍ଟ ଇଂଗିତ ଦେଇଥାଏ କାରଣ କଉଡ଼ି ଏବଂ ଅଣ୍ଡା ପ୍ରଜନନର ପ୍ରତୀକ । ବିହୁନାଚ ଉନ୍ମାଦ ଏବଂ ସ୍ୱତଃସ୍ଫୂର୍ତ୍ତ ଜୀବନ ସ୍ପୃହାର ଉଲ୍ଲାସମୟ ଛନ୍ଦ । ତଥାକଥିତ ସଭ୍ୟତା ହିଁ ବାସନାର ମୁକ୍ତ ପ୍ରକାଶକୁ ସଙ୍କୁଚିତ ଏବଂ ଆବରିତ କରିଛି ଯଦିଓ ଗଛତଳର ମୁକ୍ତବିହୁ ଏବଂ ରାତିବିହୁ ନାଚର ବଳିଷ୍ଠତା ହିଁ ସୃଷ୍ଟିବାସ୍ନାର ମୁକ୍ତ ପ୍ରକାଶ ଦେଇଥାଏ । ସେଥିପାଇଁ ବଡ଼ୋ ଏବଂ ମିରିମାନଙ୍କର ନୃତ୍ୟ ଭଂଗିମାର ଲହରୀ ହିଁ ଅସମୀୟା ବିହୁନାଚର ଉତ୍ସ ବୋଲି ଚିନ୍ତା କରାଯାଇଥାଏ ।

ଏଠାରେ ଅନ୍ୟଗୋଟିଏ ଉଲ୍ଲେଖନୀୟ କଥା ହେଉଛି ନାମନି ଆସାମରେ (Lower Assam) ବହାଗ ବିହୁ ସମୟରେ ପାଳନ କରାଯାଉଥିବା 'ଭଠେଲୀ ଉତ୍ସବ'ର ମୂଳ 'ନଭସ୍ଥଳୀ' ବୋଲି କେହି କେହି ପଣ୍ଡିତ ଭାବିଲେ ହେଁ ଏହି ଅନୁଷ୍ଠାନରେ ବାଉଁଶ ସଜ୍ଜିତ କରି ଯେଉଁ ଆଚାର ବା ନୀତିନିୟମ ପାଳନ କରାଯାଇଥାଏ, ସେହି ଆଦିମତାକୁ ଲକ୍ଷ୍ୟକଲେ ଲିଙ୍ଗପୂଜା ସହିତ ତା'ର ସାଦୃଶ୍ୟ ରହିଛି । ଗୋଆଲପାରାର ମଦନ ଚତୁର୍ଦ୍ଦଶୀରେ ଅନୁଷ୍ଠିତ ବାଉଁଶ ପୂଜା ଏବଂ 'ମଦାର ପୂଜା' ମଧ ସେହି ଏକାଧରଣର ପ୍ରତୀକୀ ପୂଜା ବୋଲି ଅନୁମାନ କରାଯିବାର ବହୁତ ପ୍ରମାଣ ରହିଛି । ଭୂମିର ଉର୍ବରତା ବୃଦ୍ଧିର ଆକାଙ୍କ୍ଷା ଏହି ଅନୁଷ୍ଠାନର ମୂଳକଥା । ଡବ୍ଲ୍ୟୁ ଏସ୍ ଲରେନ୍ସଙ୍କ ମତରେ– Infact, the phallas was used as a fertility charm in a host of festivals in both the west and the east during the middle ages.

ଦକ୍ଷିଣପୂର୍ବ ଏସିୟା ସହିତ ଆସାମ ସଂସ୍କୃତିର ସାଦୃଶ୍ୟକୁ ଦେଖି ଏହି କଥା କୁହାଯାଇପାରେ ଯେ ମଙ୍ଗୋଲୀୟ ଗୋଷ୍ଠୀମାନେ ଅସମୀୟା ଆହାର ବା ଖାଦ୍ୟ, ସାଜପୋଷାକ ତଥା ଆଚାର ଅନୁଷ୍ଠାନ ଉପରେ ବ୍ୟାପକ ପ୍ରଭାବ ପକାଇଲେ । ବଡ଼ୋଜନଜାତିମାନଙ୍କ ମଧ୍ୟରେ ପାଳନ କରାଯାଉଥିବା 'ବିହୁ ଉତ୍ସବ'ରେ ଗୋରୂପୂଜା ତଥା ଗୋରୁମାନଙ୍କୁ ସ୍ନାନ କରାଇ ପରିବା ଖୁଆଉଥିବା ସମୟରେ ଗାଉଥିବା ଗୀତଗୁଡ଼ିକ ବଡ଼ୋମାନଙ୍କର ଅବଦାନ ଅଟେ। ଚାଷବାସର ଅବସର ସମୟରେ କପଡ଼ା ବୁଣି ବା ଗାମୁଛା ବୁଣି ନିଜର ଆତ୍ମୀୟ ତଥା ପ୍ରିୟଜନଙ୍କୁ ବିହୁଦିନ 'ବିହୁବାନ୍' ଦେବା ପ୍ରଥା (ଆସାମର

ନିମ୍ନ ଅଞ୍ଚଳରେ 'ବିହାନ' ଦେବା ବୋଲି ସର୍ବସାଧାରଣ କହିଥାନ୍ତି) ଆସାମର ଘରେ ଘରେ ପ୍ରଚଳିତ । ଏହା ବଡ଼ୋମାନଙ୍କର ଅବଦାନ ବୋଲି ଧରାଯାଇଥାଏ । ଗାଢ଼ଲାଲ କିମ୍ବା ସବୁଜ ରଂଗର ସୂତାରେ ବୁଣା ଯାଉଥିବା ହାଁଟ୍‌ଚି (ପାନ ଗୁଆ ରଖିବା ପାଇଁ ବୁଣା ଯାଉଥିବା କପଡ଼ା) ବଡ଼ୋମାନଙ୍କର ଅବଦାନ ବୋଲି ଭାବିବା ମୂଳରେ ଯଥେଷ୍ଟ କାରଣ ଅଛି । କାରଣତଃ ସୁନୀତି କୁମାର ଚାଟାର୍ଜୀ ତାଙ୍କର ପ୍ରସିଦ୍ଧ 'କିରାତଜନକୃତି'ରେ କିରାତ ଅର୍ଥାତ୍ ବଡ଼ୋକଚାରୀମାନଙ୍କର ସ୍ଥିତି ଏବଂ ଶିଳ୍ପ ସୃଷ୍ଟିର ମୂଲ୍ୟାଙ୍କନ କରିଛନ୍ତି ଏବଂ ସେ 'ବାଣୀକାନ୍ତ କାକତି ସ୍ମରଣ ବକ୍ତୃତା'ରେ କହିଛନ୍ତି ଯେ ଆସାମରୁ ଚୀନର ଦକ୍ଷିଣ ପଶ୍ଚିମ ପର୍ଯ୍ୟନ୍ତ ଥିବା ଗୋଟିଏ ବାଣିଜ୍ୟ ପଥ ଦେଇ ପାଟକପଡ଼ା, କେଁଚାପାଟ (ଏକ ପ୍ରକାର ପାଟସୂତା), ବାଉଁଶର ବାଁହୀ (ବାଉଁଶ ନିର୍ମିତ ବଇଁଶୀ) ଆଦି ଆସାମ ଦେଇ ଭାରତକୁ ପ୍ରବେଶ କରିଥିଲା । ଡଃ ପ୍ରତାପ ଚନ୍ଦ୍ର ଚୌଧୁରୀ ଗୋଟିଏ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ଯେ ଖ୍ରୀ: ପୂ: ୧୦୦୦ରେ ଆର୍ଯ୍ୟମାନଙ୍କୁ ପ୍ରଥମେ ନିଗାଢୀ (ଗଢ଼ା ବିହୀନ ଚାଷ) ଦେଖାପାଇ ବଡ଼ୋମାନେ ଚିରସ୍ଥାୟୀ ଚାଷ ସେମାନଙ୍କୁ ଶିଖାଇଥିଲେ ଏବଂ ସେମାନେ ତୁଳାଚାଷ କରି କପଡ଼ା ବୁଣିବା କାମ ଜାଣିବା ସଂଗେ ସଂଗେ ରେଶମ ଏବଂ ଘାସର ସୂକ୍ଷ୍ମ ସୂତାରେ କପଡ଼ା ତିଆରି କରିବା ଶିଖିଥିଲେ । ରେଶମ ସୂତା ପାଇଁ ଏଣ୍ଡିପୋକ ପୋଷିବାର ପ୍ରଚଳନ ସେମାନେ ଆସାମରେ କରିଥିଲେ ବୋଲି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଅନୁମାନ କରାଯାଇଥାଏ ।

ଏହିସବୁ କଥାକୁ ଲକ୍ଷ୍ୟ କରି ବିଚାର କଲେ ଏବଂ ବିହୁନାଚରେ ବ୍ୟବହୃତ ବାଦ୍ୟ ଟକା, (ବଡ଼ୋମାନଙ୍କର ଏହି ପ୍ରକାର ବାଦ୍ୟକୁ 'ଥରକା' କୁହାଯାଇଥାଏ) ଗଗନା, (ଗାରୋମାନେ ଲେପଟାଂ, କଚାରୀମାନେ ଗଂଗନା କହିଥାନ୍ତି), ଢୋଲ (ପାହାଡ଼ ପର୍ବତର ଜନଜାତିମାନଙ୍କ ମଧ୍ୟରେ ଏହି ବାଦ୍ୟ ପ୍ରଚଳିତ) ପେଁପା (ମିଶିଂମାନେ ପେମ୍‌ପା କୁହନ୍ତି) ବ୍ୟବହାରକୁ ଦେଖିଲେ ବିହୁ ଜନଜାତୀୟ ଋତୁ ଉତ୍ସବର ସମନ୍ୱୟ ବୋଲି ପ୍ରତୀୟମାନ ହୋଇଥାଏ । ବଡ଼ୋ ଭାଷାରେ ବୈଶାଗୁ ବା ବଟୈଗୁ-ବୈହାଗୁ'ରୁ ବିହୁର ରୂପାନ୍ତର ଘଟିଛି ବୋଲି ଅନୁମାନ କରାଯାଇଥାଏ । ବଡ଼ୋ ଭାଷାରେ ବୈହାଗୁ ବା ବିହାଁଗୁ ର ଅର୍ଥ ଯାହା ମାଗିବ ଏବଂ ଦିଆଯିବ ଶବ୍ଦରୁ 'ବିହୁ' ଶବ୍ଦ ଆସିଛି ବୋଲି ଅନୁମାନ କରାଯାଇଥାଏ । ରାଭାମାନଙ୍କର ବିହୁ ଉତ୍ସବର ନାମ 'ବୈଖୁ' ଯାହାର ଅର୍ଥ ବସୁମତୀ । ଏହା ବିହୁ ଶବ୍ଦର ପାଖାପାଖି ଶବ୍ଦ । ଟାଂଚା ବା ଟାଂସା ଉତ୍ସବରେ ପରିବେଷିତ ଗୀତର ନାମ 'ବିହୌଟି ଗୀତ' । ବିହୁ ବିଷୁବ ଶବ୍ଦରୁ ଆସିଥିଲେ ଆସାମ ବାହାରେ ଅନ୍ୟାନ୍ୟ କେତେକ ସ୍ଥାନରେ ମଧ୍ୟ 'ବିହୁ' ଶବ୍ଦର ପ୍ରଚଳନ ଥାଆନ୍ତା ମାତ୍ର ଅନ୍ୟ କୌଣସି ରାଜ୍ୟରେ 'ବିହୁ' ଶବ୍ଦର ପ୍ରଚଳନ ନାହିଁ । ହୁଁଚରିର ପ୍ରଚଳନ ମଧ୍ୟ ବଡ଼ୋ କଚାରୀମାନଙ୍କ ଠାରୁ ଆସିଛି ବୋଲି ଅନୁମିତ ହୋଇଥାଏ । ଶିଳ୍ପୀ ବିଷ୍ଣୁପ୍ରସାଦ ରାଭାଙ୍କ ମତରେ 'ହୌ-ଚରି-ଚରି' ଅର୍ଥାତ୍

ମାଟିରେ ଗଡ଼ି ଗଡ଼ି ନାଚିବା ଯୋଗୁ ହୁଁଚରି ଶବ୍ଦର ଉତ୍ପତ୍ତି ହୋଇଛି । ଏହିଭଳି ଭାବେ 'ବିହୁ' ତଥା 'ବିହୁ ହୁଁଚରି' ବଡ଼ୋ କଚାରୀମାନଙ୍କ ଠାରୁ ଆସିଛି ବୋଲି ଅନୁମିତ ହୋଇଥାଏ ।

ପାହାଡ଼ ପର୍ବତ କନ୍ଦରରେ ବାସ କରୁଥିବା ଅସମୀୟା ଲୋକସମାଜ ମଧ୍ୟରେ ପ୍ରଚଳିତ ବିହୁ ଉତ୍ସବକୁ ମଙ୍ଗୋଲୀୟ ଗୋଷ୍ଠୀର ଅହମ୍ ରାଜାମାନେ ସୁନାର ମୁକୁଟ ପିନ୍ଧାଇଲେ । ରାଜକୀୟ ପୋଷାକ ପିନ୍ଧି ବିହୁ ଅସମୀୟା ଜାତୀୟତ୍ୱର ପ୍ରତୀକ ହୋଇଉଠିଲା । ଅହମମାନଙ୍କ ଯତ୍ନରେ ବହାଗ ବିହୁ ଉତ୍ସବ ଜାକଜମକୀୟା ଉନ୍ମାଦନାପୂର୍ଣ୍ଣ ଏକ ପ୍ରାଣଶକ୍ତିଦାୟିନୀ ଉତ୍ସବକୁ ରୂପାନ୍ତରିତ ହେଲା । ବିହୁଗୀତ୍ର ଭାଷା ମଧ୍ୟ ତେରଶତିକା ଆଗରୁ ଏପରି ରୂପ ପରିଗ୍ରହଣ କରିଥିଲା ଭଳି ମନେ ହୁଏ ନାହିଁ । ଏହା ସହିତ ଶଙ୍କର ଦେବଙ୍କ ଦ୍ୱାରା ପ୍ରଚାରିତ ନବ-ବୈଷ୍ଣବ ଆନ୍ଦୋଳନର ପ୍ରଲେପ ମଧ୍ୟ ବିହୁରେ ଦିଆଯାଇଛି ।

ସମୟକ୍ରମେ ହିନ୍ଦୁସମାଜର ଉଚ୍ଚ ସଂପ୍ରଦାୟର ଲୋକମାନେ ବିହୁର ନୃତ୍ୟଗୀତରେ ଅଂଶଗ୍ରହଣ ନ କରିବା ଫଳରେ ବିହୁର ଉନ୍ମାଦନା ଇଂରେଜ ଶାସନ କାଳରେ କିଛିଟା ସଙ୍କୁଚିତ ହୋଇପଡିଲା । ତେଣୁ ଆର୍ଯ୍ୟ ହିନ୍ଦୁ ଧର୍ମର ପ୍ରଭାବ ଏହାର ଅନ୍ୟ ଏକ ମୁଖ୍ୟ କାରଣ । ଏପରି ଇଂରେଜ ଶାସନର ନିମ୍ନରେ ଥିବା ଆମୋଲତାନ୍ତ୍ରିକ ଶାସନ ମଧ୍ୟ ବିହୁର ନୃତ୍ୟଗୀତକୁ ଅଶ୍ଳୀଳ କହି ହେୟ ପ୍ରତିପନ୍ନ କରିବା ପାଇଁ ଗୋଟିଏ ସମୟରେ ଚେଷ୍ଟା କରିଥିଲେ । ଅବଶ୍ୟ ମୁକ୍ତି ସଂଗ୍ରାମର ସଂଗେ ସଂଗେ ଜାତୀୟ ଜାଗରଣ ଫଳରେ ଲକ୍ଷ୍ମୀନାଥ ବେଜବରୁଆ, ରଜନୀକାନ୍ତ ବରଦଲୈ ଆଦି ପଥ ପ୍ରଦର୍ଶକ ଚିରନମସ୍ୟମାନେ ବିହୁର ଜାତୀୟ ଜୀବନ ସହିତ ଥିବା ତାତ୍ପର୍ଯ୍ୟ ଦେଖାଇ ବିଭ୍ରାନ୍ତଧାରଣାକୁ ଖଣ୍ଡନ କରିଯାଇଛନ୍ତି ।

ସାଧିନତା ଲାଭ ପରେ ଉଣେଇଶ ଏକାବନ-ବାଉନ ମସିହାରୁ ବହାଗ ବିହୁକୁ ଜାତୀୟ ଏକତାର ପ୍ରତୀକ ଭାବେ ଗ୍ରହଣ କରି ଜାତୀୟ ଐକ୍ୟ ଅନୁଭବ କରିବାର ଶୁଭଚେତନା ଉଜନି ତଥା ନାମନି (Upper and lower Assam) ଆସାମରେ ପରିଲକ୍ଷିତ ହୋଇଛି । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ମିଳିତ ହେବାର ସ୍ୱତଃସ୍ଫୁର୍ତ୍ତ ସୁଯୋଗ ଏବଂ ଆନନ୍ଦ ଉତ୍ସବ ବିହୁ ପର୍ବ ହିଁ ଦେଇଥାଏ । (୨)

ଗୁରୁଜନଙ୍କୁ ସମ୍ମାନ ଜଣାଇବା ଏବଂ ଛୋଟମାନଙ୍କୁ ସ୍ନେହ କରିବା ଭଳି ପରମ୍ପରା ଯେପରି ଆସାମର ସଂସ୍କୃତିରେ ପ୍ରଚଳିତ ସେହିଭଳି ବହୁ ପ୍ରାଚୀନକାଳରୁ ଦେବାଦେବୀଙ୍କ ବନ୍ଦନା ପ୍ରସଙ୍ଗରେ ନିଜର ଭକ୍ତିଭାବର ପରିଚୟ ଦେବା ସହିତ ଅସମୀୟା ପ୍ରସାଦ ରୂପେ କଞ୍ଚାବୁଟ, କଞ୍ଚାବିରି, ନଡ଼ିଆ, ଆଖୁ, କଦଳୀ ତଥା ଅନ୍ୟାନ୍ୟ ଫଳମୂଳ ଆଦି ଠାକୁରଙ୍କ ପାଖରେ ପ୍ରସାଦ ରୂପେ ଅର୍ପଣ କରାଯାଇଥାଏ । କଞ୍ଚାବୁଟ, କଞ୍ଚାବିରି, କଞ୍ଚାମୁଗ ଆଦି ପ୍ରସାଦ ଅର୍ପଣ ଅସମୀୟା ସଂସ୍କୃତିରେ ପ୍ରାଚୀନକାଳରୁ ପ୍ରଚଳିତ ହୋଇଆସୁଛି । ବିହୁଗୀତ ମାଧ୍ୟମରେ ଏହା ସୁନ୍ଦର ଭାବେ ଉପସ୍ଥାପନା କରାଯାଇଛି ।

୧ - ଆଇ ସରସ୍ୱତୀ ଦେବୀ ପାରେବ୍ତୀ
ତୋମାଲୈ ବଢ଼ାଇ ଯାଓଁ ମାହ;
ପାହରା ଗୀତକେ ସୋଁଅରାଇ ଦି ଯାବା
ଗୀତର ଭାଙ୍ଗିଯାବା ଆଁହ ।

୨ - ପ୍ରଥମେ ପ୍ରଣାମୋ ଦେବୀ ସରସ୍ୱତୀ
ଦ୍ୱିତୀୟେ ପ୍ରଣାମୋ ହରି;
ତୃତୀୟେ ପ୍ରଣାମୋ ଗାଁଓର ବୁଢ଼ାମେଥା
ଧରି ଯାଓଁ ନାମରେ ଗୁରି ।

ବିହୁ ଗାୟକମାନେ ଭଗବାନ ତଥା ମା ସରସ୍ୱତୀ ଏବଂ ପାର୍ବତୀଙ୍କ ନିକଟରେ କ୍ଷମା ମାଗି ସମଗ୍ର ଲୋକସମାଜ ତରଫରୁ ବିହୁଗୀତରେ ପ୍ରକାଶ କରୁଥିବା ଉଦ୍ଧାମତା ପାଇଁ କ୍ଷମା ମାଗିଛନ୍ତି । ଏହା ମାଧ୍ୟମରେ ଅସମୀୟାର ନମ୍ରଭାବର ପରିଚୟ ମିଳିଛି ।

ନାମରେ କଠୀୟା ଈଶ୍ୱରେ ଦିଛିଲେ
ବ୍ରହ୍ମାଇ ସରଜା ନାମ;
ବେୟା ନାମ ଓଲାଲେ ଖେମିବା ସଦୌଏ
ବିହୁରେ ଗୀତକେ ଗାମ ।

**ହସ୍ତଶିଳ୍ପ**— ଆସାମର ଗାଉଁଲିଆ ଜୀବନରେ ଶିଳ୍ପଚର୍ଚ୍ଚାର କାହାଣୀ ଅନ୍ୟ ସବୁଥିରେ ଲୋକପାଇଲେ ହେଁ ବିହୁଗୀତ ଗୁଡ଼ିକରେ ଯୁଗ ଯୁଗ ଧରି ଝଲସିବ । ପୁରୁଷ ସବୁବେଳେ ବାଉଁଶରେ ବିଭିନ୍ନ ପ୍ରକାର ଜିନିଷ ତିଆରି କରି ନିଜର ହସ୍ତଶିଳ୍ପର ପରିଚୟ ଦେଇଥାନ୍ତି । ନାରୀମାନେ ଘରେ ଘରେ ତନ୍ତରେ ଲୁଗା ବୁଣିଥାନ୍ତି । ଅସମୀୟା ପୁରୁଷର ମୁଖ୍ୟ ବେଉଷାର କଥା ବିହୁଗୀତରେ ଝଲସି ଉଠିଛି ।

୧ - ମୋରୋ ଖତି ହ'ଲ ହାତର କାଠୀ କାମି,
ତୋମାର ଖତି ହ'ଲ ତାଁତ ।

୨ - ବର୍ଗ ଘରର ମୂରତେ ସେନାଇର ତାଁତ ଶାଳ,
ଦି ଯାଓଁ ହାତୀ ଦାନ୍ତର ମାକୋ ।

ଜାପି ବୁଣିବାରେ ଅସମୀୟା ପୁରୁଷ ସିଦ୍ଧହସ୍ତ । ବାଉଁଶ ପାତିଆରେ ଜାପି ବୁଣି ସେଥିରେ ବିଭିନ୍ନ ରଂଗର କପଡ଼ାରେ ଫୁଲ ଲଗାଇ ଏହାକୁ ଅଧିକ ଆକର୍ଷଣୀୟ କରିଥାନ୍ତି । ତା'କୁ ଦେଖିଲେ ମନେ ହୁଏ ଅସମୀୟା ପୁରୁଷର ଆଙ୍ଗୁଠିରେ ଭଗବାନ ସୁନ୍ଦର ମଧୁରହସ୍ତ

---

ଶବ୍ଦାର୍ଥ : ମାହ-ମୁଗ, ପାହରା-ପାଶୋରା, ଗୁରି-ମୂଳ, କଠୀୟା-ତଳି, ଖତି-କ୍ଷତି, ଜାପି-ବାଉଁଶର ରଙ୍ଗିନ ଟୋପି, ହେଙ୍ଗୁରୀୟାକାଟି- ଲାଲରଂଗର ଧଡ଼ି, ଜାକୈ, ଖାଲୈ-ମାଛଧରା ସରଞ୍ଜାମ ।

ଶିଳ୍ପର ସ୍ପର୍ଶ ଦେଇଛନ୍ତି । ବାଉଁଶ ପାଚିଆଠୁ ଆରମ୍ଭ କରି ବିଭିନ୍ନ ଘରକରଣା ଜିନିଷ ଯେପରି ଫୁଲ ଓ ଫଳରଖା ଦାନି, ବାଉଁଶର ଚଉକି ବା ବେତର ଚଉକି, ଖଟ, ଟେବୁଲ ଆଦିରେ ହସ୍ତଶିଳ୍ପର ଉତ୍କୃଷ୍ଟ ପରିଚୟ ମିଳିଥାଏ ।

୧ - ଜାପିର ସରୁଦୈୟା ଫୁଲ,
ଯେନ ପାଞ୍ଜିକଟା ଶଳା ।

୨ - ଫୁଲ ଚଟି ଲଗାଇଯେ,
ବର ଘର ସାଜିଲୋ ।

ଉପରୋକ୍ତ ଗୀତରେ ପୁରୁଷଟି ସୁନ୍ଦର ଘର କିପରି ସଜାଇଛି, ତା' ମଧ୍ୟରେ ନିଜର ସୌନ୍ଦର୍ଯ୍ୟ ପ୍ରିୟତାର ପରିଚୟ ମଧ୍ୟ ଦେଇଛି ।

ଅସମୀୟାର ଅତିପ୍ରିୟ ମହୁରା, ତା'ଠୁ ପ୍ରିୟ ତା'ର ତନ୍ତଶାଳର 'ମାକୋ' । ଏହା ଅସମୀୟା ନାରୀ ତଥା ପୁରୁଷର କେବଳ ପ୍ରିୟ ନୁହେଁ । ଏହା ଜାତିର ସଂସ୍କୃତିର ପ୍ରତୀକ ଅଟେ । ତନ୍ତଶାଳରେ ନାରୀମାନେ ଫୁଲପକା ଗାମୁଛା ବୁଣି ପୁରୁଷଙ୍କୁ ଉପହାର ଦେଇ ଯେତିକି ଆତ୍ମସନ୍ତୋଷ ଲାଭ କରିଥାନ୍ତି, ତା'ଠୁ ଅଧିକ ଗୌରବ ଅନୁଭବ କରନ୍ତି । ତେଣୁ ମୁଗାରେ ମହୁରା (ପାଟସୂତାରେ ଗୁଲି) ଓ ସେନେହର 'ମାକୋ' କହି ପ୍ରତ୍ୟେକ ସୁଖ ଅନୁଭବ କରନ୍ତି ।

ଧାନ କାଟିବା ପାଇଁ ହେଙ୍ଗୁଲୀୟା ବା ନାଲି ରଂଗର ଦାଆ, ମାଛ ଧରିବା ପାଇଁ ଅନ୍ଥୁଲି ଏବଂ ଖାଳେଇ ଯିବା ଅସମୀୟା ଲୋକର ନିଜର ହାତ ତିଆରି ପ୍ରିୟ ଜିନିଷ ତାହା ବିହୁଗୀତରୁ ଜଣାଯାଇଥାଏ ।

୧ - ଧାନେ କାଟିବରେ ହେଙ୍ଗୁଲୀୟା କାଟିଖନ,
୨ - ଜାକୈୟା ଓଲାଲେ ଖାଲୈୟା ଓଲାଲେ
ମାରେ କୋନ ବିଲରେ ମାଛ ।
୩- ହାଲଲୈ ଲିଖିଲେ ମୌକେ ଐ ମଇନା
କୋରଲୈ ଲିଖିଲେ ମୋକ ।
୪- ଧାନ ବହାବରେ ଗୋଟୋଙ୍ଗଟୋଟୋ
୫- ତରାଣି ହାବିରପରା ଆନି ତରା ପଘା ବଟା,
୬- ଲାଓ ହେଁ ଦାଲି ଦିୟା, ଧାନ ବନା,
୭- ତାମୋଲତ ଜାଲୁକ ବଟଗୋଓବା, ମଦାରତ ପାନ ବଗୋଓଆ ।

ଶବ୍ଦାର୍ଥ : ହାଲ-ହଳ, କୋର-କ୍ରୋଡ଼ି, ବହାବ-ସିଝେଇବ, ତରାଣି-ଏକ ପ୍ରକାର ଲତା, ହାବି-ଜଙ୍ଗଲ, ବଟା-ବଳିବା, ହେଁଦାଲି-ଭାଡ଼ି, ଧାନବନା-ଧାନକୁଟା, ମଦାର- ପାଳଧୁଆଗଛ, ଜାଲୁକ - ଗୋଲମରିଚ

୮- ଚୋମନିତ ମୁଗା ପୋହା ।

ଏହି କାମ ମଧ୍ୟରେ ଅସମୀୟାର ହସ୍ତଶିଳ୍ପର ପରିଚୟ ମିଳିଥାଏ ।

ଓଡ଼ିଆ ଅନୁବାଦ–

୧- ଧାନ କାଟିବା ପାଇଁ ନାଲିରଂଗର ଦାଆ ।

୨- ଜାକେି ନେଇ ବାହାରିଲେ, ଖାଲେଇ ନେଇ ବାହାରିଲେ
ମାରିବ କୋଉ ବିଲର ମାଛ ।

୩- ହଳ କରିବା ପାଇଁ ବିଧାତା ମୋ କପାଳରେ ଲେଖିଲେ
କୋଡ଼ି ହାଣିବା ପାଇଁ ଲେଖିଲେ ।

୪- ଧାନ ସିଝେଇବା ପାଇଁ ଗୋଟାଳିଆ ଜିନିଷ ।

୫- ତରାଣି ଜଙ୍ଗଲରୁ ତରାଁଣି ନଡ଼ା ପଘା ପାଇଁ ଆଣିବ ।

୬- ଲାଉ ଭାଡି ତିଆରି କରିବା, ଧାନ କୁଟିବା ।

୭- ଗୁଆ ଗଛରେ ଗୋଲମରିଚ ଲତା ମଡେଇଦେବା,
ମନ୍ଦାର ଗଛରେ ପାନ ମଡେଇବା ।

୮- ସୋମ ଗଛରେ ମୁଗାପୋକ ପୋଷିବା ।

**ବିହୁଗୀତର ତନ୍ତଶାଳ–** ଅସମୀୟା ଯୁବତୀର ତନ୍ତଶାଳ ଅତି ପ୍ରିୟ ଅଟେ । ମହାମାଗାନ୍ଧୀ ଆସାମକୁ ଆସି ତନ୍ତଶାଳ ଦେଖି କହିଥିଲେ– ଧନ୍ୟ ଆସାମର ନାରୀ, ସେମାନେ ତନ୍ତ ମଧ୍ୟରେ ସ୍ୱର୍ଗର ତାରାଙ୍କୁ ବାଛିଥାନ୍ତି । ସତକଥା କହିବାକୁ ଗଲେ ଆସାମର ଯୁବତୀମାନେ ହାତବୁଣା କପଡ଼ା ଭିତରେ ଅନ୍ତରର ସ୍ନେହ ମମତାକୁ ମିଶେଇ ଦେଇଥାନ୍ତି । ସ୍ନେହ ଓ ଶ୍ରଦ୍ଧା ତଥା ପ୍ରେମ୍‌ରେ ତିଆରି କପଡ଼ା ଖଣ୍ଡିଏ ଭିତରେ ଅସମୀୟା ନାରୀର ଆତ୍ମମର୍ଯ୍ୟାଦା ଓ ସଚେତନଭାବ ଫୁଟି ଉଠିଥାଏ । ସେଥିପାଇଁ ଜାତୀୟ ବିହୁଦିନ ଅତି ଭକ୍ତିରେ ଗୁରୁଜନଙ୍କୁ ଅସମୀୟା ନାରୀ ହାତବୁଣା ଗାମୁଛା ଉପହାର ଦେଇ ଆତ୍ମସନ୍ତୁଷ୍ଟି ଲାଭ କରିଥାଏ । ତା'ଠୁ ବଡ଼କଥା ହେଉଛି ଅସମୀୟା ନାରୀ ଦୁଃଖ ଓ ଅଭାବରେ ପଡିଲେ କାହା ପାଖକୁ ଯାଇ ହାତ ନ ପତାଇ ତନ୍ତରେ କପଡ଼ା ବୁଣି ନିଜର ଓ ପରିବାରର ଗୁଜରାଣ ମେଣ୍ଟାଏ । ଦୁଃଖରେ ଆତ୍ମସମ୍ମାନ ଉପରେ ଆଘାତ ନ ଦେଇ ଅସମୀୟା ନାରୀ ନିଜ ମଥାକୁ ଉଚ୍ଚ କରି ରଖେ । ସେଥିପାଇଁ ଅତି ସ୍ନେହର ତନ୍ତଶାଳ ଅସମୀୟା ନାରୀର ସବୁଠୁ ପ୍ରିୟ ଜିନିଷ । (୩)

ଅସମୀୟା ନାରୀର ହାତବୁଣା ଗାମୁଛାର ମୂଲ୍ୟ ତା'ର ପ୍ରେମିକ ପୁରୁଷ ପାଇଁ ଜୀବନଠୁ ବଳି ମୂଲ୍ୟବାନ ଅଟେ । ଧଳା ଗାମୁଛାରେ ନାଲିସୂତାରେ ବୁଣା ହୋଇଥିବା ଫୁଲର ଗାମୁଛାକୁ ଅତି ସ୍ନେହ ଓ ଯତ୍ନରେ ପ୍ରେମିକାଟି ବିହୁର କିଛିଦିନ ଆଗରୁ ବହୁ ଆଗ୍ରହରେ ତନ୍ତରେ ତିଆରି କରି ପ୍ରେମିକ ପୁରୁଷ ପାଇଁ ରଖିଥାଏ । ବହାଗ ବିହୁର ପ୍ରଥମ

ଦିନ ପ୍ରେମିକକୁ ଦେଇଥିବା ଗୋଟି ଫୁଲର ଗାମୁଛାକୁ ମୁଣ୍ଡରେ ବାନ୍ଧି ପ୍ରେମିକ ପୁରୁଷ ଗାଁର ଖୋଲା ପଡିଆରେ ମୁକଳି ବିହୁରେ ପ୍ରେମିକା ସହିତ ନୃତ୍ୟଗୀତରେ ଯୋଗ ଦେଇଥାଏ । ତନ୍ତଶାଳରେ ଅସମୀୟା ନାରୀ ଗାମୁଛା ବୁଣିବା ସଂଗେ ସଂଗେ ନିଜର ବ୍ୟବହାର ପାଇଁ ମେଖଳା ଓ ଚାଦର ନିଜେ ବୁଣିଥାଏ । ଓଡ଼ିଶାରେ ଶାଢୀ ପରିଧାନ କଲାଭଳି ଅସମୀୟା ନାରୀମାନେ ମେଖଳା ଓ ଚାଦର ପିନ୍ଧିଥାନ୍ତି । ଧନୀ ଘରର ନାରୀମାନେ ମଧ ମେଖଳା ଚାଦର ନିଜେ ବୁଣି ହସ୍ତଶିଳ୍ପର ପରିଚୟ ଦେଇଥାନ୍ତି । ସେଥିପାଇଁ ବିହୁଗୀତ ଗୁଡିକରେ ତନ୍ତଶାଳର ବର୍ଣ୍ଣନା ସ୍ୱତନ୍ତ୍ର ଅଟେ । ସେଥିପାଇଁ ବିହୁଗୀତରେ ତନ୍ତଶାଳରେ ବ୍ୟବହୃତ ଛୋଟ ଛୋଟ ଦରକାରୀ ଜିନିଷ ଗୁଡିକ ପ୍ରତି ମଧ ଲୋକଗାୟକ ଦୃଷ୍ଟି ଦେଇଛନ୍ତି—

୧- ''ଅତି ସେନେହର ମୁଗାରେ ମହୁରା
ଅତି ସେନେହର ମାକୋ ।''
୨- ''ଆମାର ବିହୁ କାପୋର ନାଇ ।''
୩- ''ଏରୀୟା ଏଖନି, କପାହର ଏଖନି ।''
୪- ''ନାଚନୀର ମୂରରେ ଗୁଟି ଫୁଲର ଗାମୋଛା ।''
୫- ''ଲ'ଲେ ରଂଗା ରିହା ଗାତ'' ।
୬- ''ସରୁକୈ କାଟିବା ମୁଗାରେ ବଟାୟା ।''
୭- ''ମୁଗାରେ ମେଖେଲା ଭାଲ ଚାଇ କିନିବା ।''
୮- ''ଏରା ଐ ମାରିଲେ ଏରା ପାତ୍ ନାଲାଗେ ।''
୯- ''ବାରୀର ବାଁହ କାଟି ଦିୟାଓ ଛିରି ଶଲି
କଳିୟା ନାହରର ମାକୋ ।''
୧୦- ''ଏଡୁଖରି ଗାମୋଛା ବୈ ଥୈ ଆହିଛେ ।
ପଦୁମ ଫୁଲ ଏପାହି ବାଛି ।''
୧୧- ''ଦୀଘଲେ ଦୀଘଲେ କରୋ ତାଁତେ ବାଟି
ଲେଖେ ବୁଡ଼ୀ ଆୟେ ରିହା ।''
୧୨- ''ଲାଗେ ଫୁଲ ବଛା ରିହା ।''
୧୩- ''ବର ଘରର ମୂରତେ ତାଁତେ ବୈ ଆଛିଲୋ ।''
୧୪- ''କୋମଲ ଧୁତିରେ ବଟେଆଲ ମାରିଛା
ତୋମାରେ ହାଁଚଟି ଫଟା ।''
୧୫- ''ଏଖନି ହାଁଚଟି ଖୁଜିବ ଖୁଜିଛୋ ।''
୧୬- ''ବାନ୍ଧଲୈ ଟୋଲୋଠା ନାଇ ।''
୧୭- ''ଟୋଲୋଠା ବିଚାରି ଯାଓଁ ।''

୧୮- "ଉଜନି ବାଳତେ ଟୋଲୋଠା ପାଲୋଗୈ ।"
୧୯- "ଫାଟିଲ ସରୁ ସୂତାର ଛେଲେଂ ।"
୨୦- "ରାତିଟୋର ଭିତରତ କାଟେ ପାଞ୍ଚି ସୂତା
ପୁଆଲୈ ତରିଲେ ତାଁତ ।"
୨୧- "କାଁକାଳର ଗାମୋଛା କରେ ତିରବିର ।"
୨୨- "ଗାରେ ଛେଲେଂ କାପୋର ଛିରିଲି ଛିରିଲି ।"
୨୩- "ରଙ୍ଗାକୈ ଗାମୋଛା ମାଜେ ଶେଲଂ ଦିୟା ।"
୨୪- "ଅକୁଲ ବଗୀତରା, ସୋନର ଗିଲିପ ମରା ।"
୨୫- "ସୋନତେ ସୁଆଗା କଂକାଳର ମେଖେଳା ।"
୨୬- "କଙ୍କାଳର ଶୁଅନି ରିହା ।"
୨୭- "ଗାଟୋ ଚାଇ ଚୋଲା ।"
୨୮- "ବହି ତାଁତର ପାତର ଚାଉଁ ।"
୨୯- "ବିହୁ ବଁଟା ଦିଲା ରଂଗାକୈ ଗାମୋଛା ।"
୩୦- "ରଂଗା ଫୁଲର ଗାମୋଛା
ଆଗତ ଫୁଲ ବଛା ।"
୩୧- "ଆମାର ଖତି ହ'ଲ ତାଁତ ।"
୩୨- "ଆନିବ କପାହର ଜୋଲା ।"
୩୩- "ଥୋକଚି ଭାଙ୍ଗି ଯାଉଁ ରୂପହି ଯଁତରେଚି ।"
୩୪- "ଶାଲେ କଟା ଚୁରିୟା, ଗୁନା କଟା ଖନିୟା ।"
୩୫- "ଲାହିଁ କାପୋରର ପାହି ।"
୩୬- "ଅତି ସେନେହର ଗାମୋଛା ବ'ଲୋ ମଇ ।"
୩୭- "ଫୁଲାମକୈ ଗାମୋଛା କାଲି ଲଗାଇଛେ ।"
୩୮- "ଖନିୟା କାପୋର ଆନୋଗୈ ବୁଲି ।" (୪)

ବିହୁ ପର୍ବରେ ସମସ୍ତେ ନୂଆ ନୂଆ ବସ୍ତ୍ର ପିନ୍ଧି ଆନନ୍ଦରେ ସମୟ କଟାଇଥାନ୍ତି । ତନ୍ତଶାଳରେ ନାରୀମାନେ ନୂଆ ନୂଆ କପଡ଼ା ବୁଣି ସମସ୍ତଙ୍କୁ ଉପହାର ଦେଇଥାନ୍ତି । କେହି ନୂଆ ବସ୍ତ୍ର ଉପହାରସ୍ୱରୂପ ନ ପାଇଲେ ଆମର ନୂଆ କପଡ଼ା ନାହିଁ ବୋଲି ଅଭିମାନରେ କହିଥାଏ । ତନ୍ତରେ ବୁଣା ନାଲି ଫୁଲ ଧଳା ଗାମୁଛାକୁ ନାଚୁଣୀମାନେ ମୁଣ୍ଡରେ ବାନ୍ଧି ନାଚିଥାନ୍ତି । କେହି କେହି ହାତରେ ରିହା ବୁଣି ବିହୁ ସମୟରେ ବ୍ଲାଉଜ୍ ଭଳି ବକ୍ଷ ଦେଶରେ ରିହା ପିନ୍ଧିଥାନ୍ତି । ବଜାରରେ ହାତବୁଣା ମେଖଳା ଚାଦର ବିହୁ ସମୟରେ ବିକ୍ରି ହୁଏ । ଭଲ ମେଖଳା ଚାଦର ହଲେ ପସନ୍ଦ କରି କିଣିବା ପାଇଁ ବିହୁଗୀତରେ ମଧ୍ୟ କୁହାଯାଇଛି ।

ପ୍ରେମିକାମାନେ ପ୍ରେମିକକୁ ଦେଖା କରିବାକୁ ଯାଇ ସେହି ବିହୁଗୀତ ଭିତ୍‌ରେ ଗାମୁଛାଟିଏ ତନ୍ତରେ ବୁଣି ଥୋଇ ଆସିଛୁ ବୋଲି କହିଥାନ୍ତି । ଯେଉଁ ଗାମୁଛାରେ ସୁନ୍ଦର ପଦ୍ମଫୁଲଟିଏ ମଧ କରିଛନ୍ତି ବୋଲି ବର୍ଣ୍ଣନା କରନ୍ତି । କେହି କେହି ପ୍ରେମିକା ନିଜର ମନର ମଣିଷଟିଏ ସହିତ ଥଟ୍ଟା ପରିହାସ ଛଳରେ ତୁମର ହାଁଚଟି ଫଟା ବୋଲି କୁହନ୍ତି । ସେଥିପାଇଁ ସେ ତା'ର ଆପଣାର ଲୋକଟିଏ ପାଇଁ ନୂଆ ହାଁଚଟି ଏମଂ ଗାମୁଛା ଓ ଧୋତି ତନ୍ତରେ ବୁଣୁଥିଲା ବୋଲି କହିଥାଏ । କେହି କେହି ତନ୍ତଶାଳ ପାଇଁ 'ଟୋ ଲୋଠା' ବା ବଡ କାଠଗଡ଼ ପାଇଁ ବରାଦ ଦିଅନ୍ତି ତ କେହି କେହି ନାଲି ଗାମୁଛାରେ ବିଭିନ୍ନ ରଂଗର ସୂତାରେ ବୁଣା ହୋଇଥିବା ଫୁଲପକା ଗାମୁଛା ପାଇଁ ପ୍ରିୟାକୁ ବରାଦ ଦିଅନ୍ତି । ତନ୍ତଶାଳ ପ୍ରତି ଥିବା ଆନ୍ତରିକତା ବିହୁଗୀତରେ ସ୍ପଷ୍ଟ ହୋଇଥାଏ । ତନ୍ତଶାଳ ସେଥିପାଇଁ ପ୍ରତିଟି ଅସମୀୟାର ଅତିପ୍ରିୟ ।

**ବିହୁ ଗୀତରେ ହାଁଚଟି—** ଦୈନନ୍ଦିନ ଜୀବନରେ ବ୍ୟବହୃତ ବିଭିନ୍ନ ଘରକରଣା ଜିନିଷ ଠାରୁ ଆରମ୍ଭ କରି ନିଜର ଅତି ଦରକାରୀ ଜିନିଷର ବର୍ଣ୍ଣନା ବିହୁଗୀତରେ ଫୁଟି ଉଠିଛି । 'ହାଁଚଟି' ଏକ ଛୋଟ ଅଥଚ ଅତି ଦରକାରୀ ଜିନିଷ ଭାବେ ପ୍ରତ୍ୟେକ ଅସମୀୟାର ଅତି ପ୍ରିୟ । ଦୂରବାଟକୁ ଗଲେ ଗୋଟିଏ ସୁନ୍ଦର କପଡ଼ାରେ ପାନ, ଗୁଆ ଗୁଣ୍ଡି ଆଦି ବାନ୍ଧି ତା'କୁ ଗୋଟିଏ ପୁଟୁଳି ଭଳି କରି ମୋଡ଼ି ମୋଡ଼ି ପୁରୁଷମାନେ ହାତରେ ବାନ୍ଧି ଦିଅନ୍ତି । ଏହି କପଡ଼ାଟି ସାଧାରଣତଃ ରୁମାଲ ଠାରୁ ଟିକିଏ ବଡ଼ । ଏହା ଦେଖିବାକୁ ଏକ ସାଧାରଣ କପଡ଼ା ହେଲେ ହେଁ ବିହୁତଲିତରେ ବିହୁନାଚ ପରିବେଶଣ ବେଳେ ସମସ୍ତ ପୁରୁଷମାନେ ହାତରେ ହାଁଚଟି ବାନ୍ଧି ବିହୁ ନାଚିଥାନ୍ତି । ସେଥିପାଇଁ ବିହୁ ପୂର୍ବରୁ ପ୍ରତ୍ୟେକ ପୁରୁଷ ନିଜର ପ୍ରିୟତମା ଠାରୁ ଫୁଲପକା ସୁନ୍ଦର ହାଁଚଟି ଗୋଟିଏ ପାଇବାର ଆଶା ରଖିଥାନ୍ତି । ଯଦି ପ୍ରିୟତମା ଠିକ୍ ସମୟରେ ହାଁଚଟି ନ ଦିଏ ତା ହେଲେ ପୁରୁଷଟି ଅଭିମାନରେ କହେ ହାତ ବୁଣାକାମରେ ପାରଙ୍ଗମ ବୋଲି ସମସ୍ତେ କହନ୍ତି କିନ୍ତୁ ଭଲକରି ଫୁଲ ପକେଇ ସୁନ୍ଦର ହାଁଚଟି ନଦେଲେ ସେ କେତେ ପାରଙ୍ଗମ, ସେହିଦିନ ଜାଣିବ । ଭଲକରି ତା'କୁ ହଇରାଣ କରିବ ବୋଲି ସ୍ଥିର କରିଛି ।

ଇ ବୋଲେ ଶିପିନୀ        ସି ବୋଲେ ଶିପିନୀ
ଶିପିନୀ କିମାନର କାଜୀ;
ଫୁଲାମକୈ ହାଁଚଟି        ଉଲିୟାଇ ନିଦିଲେ
ଶିପିନୀକ ଠେକେଛିମ ଆଜି ।

ଏତେଦିନ ଧରି ଅପେକ୍ଷା କରି କରି ଶେଷରେ ବିହୁଦିନ ପ୍ରିୟତମା ଯେଉଁ ହାଁଚଟି ଦେଲା, ତାହା ପସନ୍ଦଯୋଗ୍ୟ ନୁହେଁ । ଏହା ଏକ ପତଳା ଏବଂ ଲମ୍ବା କପଡ଼ା ଖଣ୍ଡେ ।

ଶବ୍ଦାର୍ଥ : ଶିପିନୀ - ବୁଣାକାର, ଠେକେଛିମ-ହାୟରାଣ କରିବି, ମୋବାମାଛ-କରାଣ୍ଡିମାଛ ।

ସେଥିରେ କରାଣ୍ଡିମାଛ ଧରିଲେ ବେଶି ଭଲ ହେବ । ପ୍ରେମିକ ପୁରୁଷଟି ନିଜ ଆଖିରେ ଯେ କେବେଳ ଦେଖିଛି ପ୍ରେମିକା ବୁଣାବୁଣିରେ ପାରଙ୍ଗମ, ତା ନୁହେଁ, ସେ ଘରର ଆଗପଟେ ତଥା ପଛପଟେ ଦୁଇଟା ତନ୍ତଶାଳ ବସେଇଛି ମାତ୍ର ତା'ର ପ୍ରେମିକକୁ ଅତି ସ୍ନେହରେ ଯେଉଁ ହାଁଚଟି ଦେଇଛି ତାହା ପତଳାର ଜାଲି କପଡ଼ା ଖଣ୍ଡେ ମାତ୍ର ।

ଆଗପାଲେ ଏଖନି ପିଛପାଲେ ଏଖନି
ଶିପିନୀର ଦୁଖନି ଶାଳ;
ଆମାର ଶିପିନୀୟେ ହାଁଚଟି ଯାଚିଛେ
ମୋର୍ବା ମାଛ ଧରିବଲୈ ଭାଲ ।

କେହିଜଣେ ପ୍ରେମିକା କୃପଣତା ବଶତଃ ଖଣ୍ଡେ ବି ହାଁଚଟି ନିଜମନର ମଣିଷକୁ ଦେବାପାଇଁ ଇଚ୍ଛା କରିନି । ବିହୁ ପାଖେଇ ଆସିଛି । ଅନ୍ୟାନ୍ୟ ପୁରୁଷମାନେ ଗୋଟିଏ ହାଁଚଟି ଉପହାର ପାଇ ଅତି ଖୁସୀ ହେଲାବେଳେ ପ୍ରେମିକଟି ଦୁଃଖ ମନରେ ନିଜର ମନୋଭାବକୁ ପ୍ରକାଶ କରିଛି । ବାଉଁଶ ଅଗରେ ବଗୁଲି ନାଚିଲେ କିଭଳି ସୁନ୍ଦରଦିଶେ, ତାହା ଅବର୍ଣ୍ଣନୀୟ । ପ୍ରକୃତିର ନିୟମ ପାଖରେ ପଶୁପକ୍ଷୀର ଆନନ୍ଦ ଭିତରେ ମଣିଷ ନିଜର ଦୁଃଖକୁ କିଛି ସମୟ ପାଇଁ ହେଲେ ବି ଭୁଲିଯାଏ । ତା'ପରେ ପୁରୁଷଟିର ମନେ ପଡିଛି-ପ୍ରେମିକାର ଯୋଡ଼ା ଯୋଡ଼ା ତନ୍ତଶାଳ ଥାଇ ମଧ ସେ ତା'ର ପ୍ରେମିକକୁ ହାଁଚଟି ଗୋଟିଏ ବିହୁରେ ଉପହାର ଦେଲାନି ।

ବାଁହର ଆଗତେ ବଗଲୀ ନାଚେ ଐ
ବାଁହତେ ବଗଲୀ ନାଚେ ;
ଏ ଖନି ହାଁଚଟି ନି ଦିୟା କିୟନୋ
ଯୁରୀୟା-ତାଁତର ଶାଳ ଆଛେ ।

ଅଭିମାନ ବେଳକୁ ବେଳ ବଢ଼ି ଯାଇଥାଏ । କେବେକେବେ ପ୍ରେମିକାର ଉପହାର ଭିତରେ ସନ୍ଦେହ ଆସିଥାଏ । ପ୍ରେମିକା ଦେଇଥିବା ହାଁଚଟି ଖଣ୍ଡକ କଣିକିଆ, ଗୋଟାଏ ପଟ ଭଲ କରି ଧରିହେବ, ଅନ୍ୟପଟଟି ଭଲଭାବେ ଧରିହେବନି । ଦୈନନ୍ଦିନ ଜୀବନରେ ଘଟୁଥିବା ଅନେକ ସାଧାରଣ ଘଟଣା ଲୋକ ଚକ୍ଷୁରେ ଧରା ପଡଥାଏ । ସେ ତା'କୁ ଅତି ସହଜ ଭାବରେ ନିଜ ମନର ଭାବ ବ୍ୟକ୍ତ କଲାବେଳେ ବର୍ଣ୍ଣନା କରିଥାଆନ୍ତି । ସେ କୁହନ୍ତି କୁକୁଡ଼ା କକ୍ କକ୍ କରି ଡାକିଲେ ତାହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ତା ସହିତ କଥାକୁ କଥା ମିଳାଇ ଅଭିମାନରେ ପ୍ରିୟତମା ଆକ୍ଷେପ କରି କହିଛି ମୋର କଣିକିଆ କପଡ଼ା ଖଣ୍ଡେ ଦରକାର ନାହିଁ ବରଂ ତୋ'ର କେହି ସାଙ୍ଗବାହା ହେଲେ ତା'କୁ ଦେଇଦେବୁ । ବର୍ତ୍ତମାନଠୁ ତା'କୁ ଯତ୍ନକରି ବାକ୍ସରେ ରଖିଦେ ।

କୁକୁରାଇ କରିଲେ କକ୍ ସମନୀୟା
କୁକୁରାଇ କରିଲେ କକ୍ ;
ଏକଠୀୟା ହାଁଚଟି ଆମାକୋ ନେଲାଗେ
ସମନୀୟାର ବିୟା ଲୈ ଥକ ।

ସମୟ ସମୟରେ ବିହୁଗୀତ ଗୁଡ଼ିକରେ ଅଧିକ ହାସ୍ୟରସ ପ୍ରକାଶ ପାଇଥାଏ । ଲୋକକବି ନିଜର ମନୋଭାବକୁ ପ୍ରକାଶ କରିବାକୁ ଯାଇ ଗୀତ ସହିତ ସାମଞ୍ଜସ୍ୟ ରଖି ଏଭଳି କେତେଗୁଡ଼ିଏ କଥାର ଅବତାରଣା କରିଥାଏ, ଯାହା ଅଧିକ ଆନନ୍ଦ ଦେଇଥାଏ ।

ଯୋଆବଛର ଖୁଜିଲୋଁ ଏଖନି ହାଁଚଟି
ଏଇବେଲି କାଟିଛା ପାଜି ;
ସେଇଖନି ହାଁଚଟି ଆମାକୋ ନେ ଲାଗେ
ତିରୋତା ଆନିଲମ କାଜୀ ।

ଯୁବକଟି ଗତବର୍ଷ ହାଁଚଟି ପାଇଁ କହି କହି ପ୍ରେମିକାଟି ଏ ବର୍ଷ ଶାଳରେ ବା ତନ୍ତରେ ସୂତା ଲଗେଇଛି । ତା'ର ହାଁଚଟି ଦରକାର ନାହିଁ । ସେ ଗୋଟିଏ ମୁସଲମାନ ଘରର ଝିଅକୁ ବାହା ହେବ ଯିଏ ଆଦୌ ହାଁଚଟି ତିଆରି କରି ଜାଣି ନଥିବ ।

ବେଳେବେଳେ ବିହୁଗୀତ ମାଧମରେ ଯୁବକମାନେ ଅଧିକ ହାସ୍ୟରସ ପରିବେଶ ସୃଷ୍ଟି କରନ୍ତି । ବିହୁଗୀତ ମାଧମରେ କୁହନ୍ତି କୁକୁଡ଼ା ଅଣ୍ଡା ଫଟାଇବା ପାଇଁ କୁଡୁକି ବସିଲେ ଯେପରି ପାଖରେ ପାଖରେ ବସି ହଗିଥାଏ, ସେମିତି ଯୁବକଟିକୁ ହାଁଚଟି ଖଣ୍ଡେ ନ ଦେଲେ ସେ ସବୁ ଆଡ଼େ ଛେପ ପକେଇ ଅପରିଷ୍କାର କରିବ ।

ଉମନି କୁକୁରାର ଗୁସମନୀୟା
ଉମନି କୁକୁରାର ଗୁ ;
ଏ ଖନି ହାଁଚଟି ଦିବ ନୋ ଆରିଲେ
ବିହୁଆଇ ପେଲାବ ଥୁ ।

ବିହୁଗୀତ ଗୁଡ଼ିକରେ ଯେ କୌଣସି ପରିବେଶର ଘଟଣା ବା ଅନୁଭୂତିକୁ ସୁନ୍ଦର ଭାବେ ଉପସ୍ଥାପନା କରିବା ଅତ୍ୟନ୍ତ ସ୍ୱାଭାବିକ କଥା, ବିହୁବାନ ବିହୁରେ ହାଁଚଟି ଆଶା କରି ପାଇପାରିନି, ବିହୁ ପରିବେଶଣ କରୁଥିବା କୌଣସି ଲୋକଙ୍କୁ ହାଁଚଟି ଖଣ୍ଡେ କେହି ଯାଚିଲେନି, ତା'ର ହାଁଚଟି ବାକି ରହିଲା ବୋଲି ସେ କହିଛି ।

---

ଶବ୍ଦାର୍ଥ : ପାଜି - ବଦମାସ, କାଜୀ- ମୁସଲମାନ ପୁରୋହିତ, ତିରୋତା - ସ୍ତ୍ରୀ, ଉମନି- କୁଡୁକି ବସିବା, ଗୁ- ଘୁଅ, ଥୁ-ଛାପ; ରାଇଜ-ଲୋକ

ନାଚନୀ ନାଚିଲେ ପୃଥିବୀ ଲରି ଲେ
ମାଟିତ ବାର ଆଙ୍ଗୁଳି ଚିନ;
ଏ ଖନି ହାଁଚଟି ରାଇଜକ ନିଦିଲ ।
ବିହୁଆର ଥାକି ଗ'ଲ ରଣ ।

ଆଖୁ ପେଡ଼ା ଏକ କଷ୍ଟାଦାୟକ କାମ । ଏହି କାମ କରିବା ପାଇଁ କେବଳ ଯେ ପରିଶ୍ରମ ଦରକାର ତା ନୁହେଁ, ଧୈର୍ଯ୍ୟ ମଧ ଦରକାର କାରଣ ବହୁ ସମୟ ଧରି ଆଖୁରୁ ଗୁଡ଼ ବାହାର କରିବା ପ୍ରଣାଳୀଟି ଚାଲିଥାଏ । ସେଥିପାଇଁ ଲୋକମାନେ ଆଖୁରସରୁ ଗୁଡ଼ ତିଆରି କଲାବେଳେ ବିଭିନ୍ନ ପ୍ରକାର ମନୋରଞ୍ଜକ ଗୀତ ଗାଇଥାଆନ୍ତି । କଥା ପ୍ରସଙ୍ଗରେ ଆସାମରେ କୁଁହିୟାର ବା ଆଖୁପେଡ଼ା ଭଳି ମୁଁ ତତେ ପେଶିବି ବୋଲି ଲୋକମାନେ କୁହନ୍ତି । ତେଣୁ ବିହୁ ହୁଁଚରି ବା ବିହୁଗୀତ ଗାଉଥିବା ଲୋକଟିକୁ ତା'ର ପ୍ରିୟତମା ଯଦି ସ୍ନେହର ନିଦର୍ଶନ ସ୍ୱରୂପ ହାଁଚଟି ଟିଏ ନ ଦିଏ ତା ହେଲେ ସେ ଧମକେଇ କରି କୁହେ-

କୁଁହିୟାର ପେରା ଦି ପେରିମ ସମନୀୟା ।
କୁଁହିୟାର ପେରାଦି ପେରିମ,
ଏଖନି ହାଁଚଟି ନିଦିୟାମାନେ
ଆମି ଓ ସତକାଇ ନେରିମ ।

ଲୋକଗୀତରେ ହାସ୍ୟରସ ସୃଷ୍ଟି କରିବା ଲୋକକବିର ଏକ ସ୍ୱତନ୍ତ୍ର ଓ ବିଶିଷ୍ଟ୍ୟ ଅଟେ । ଯେ କୌଣସି ପରିବେଶରେ ଏକ ସାଧାରଣ ଜିନିଷକୁ ଆଖି ଆଗରେ ରଖି ପରିବେଶକୁ ଆନନ୍ଦମୁଖର କରି ଗଢ଼ି ତୋଳିବା ହିଁ ଲୋକକବିର କବିତ୍ୱର ପରିଚୟ ଅଟେ ଯାହାକୁ ନିତିଦିନିଆ ଘଟଣା କହି ଆମେ ତା'କୁ ଦୃଷ୍ଟି ଦେଇ ନଥାଉ ବରଂ ତାହା ଲୋକକବି ପାଇଁ ଏକ ଉପାଦାନ ଅଟେ । ରାସ୍ତାରେ ଚାଲି ଯାଉଥିବା ଯୁବକକୁ ଦେଖି ଲୋକକବି ଭାବିଛନ୍ତି ସେ ଅନ୍ୟ କେଉଁ ଗାଁର ପିଲା; ବୁଲିବା ପାଇଁ ସଉକରେ ଆଗଭର ହୋଇ ଆସିଛି, ଆଉ ଗୋଟିଏ ଗାଁ କୁ ଆସି ଲାଜରେ ନସର ପସର ହେଉଛି । ସୁନ୍ଦର କୌପୁନୀ ଖଣ୍ଡିଏ ମୋଡ଼ି ମୋଡ଼ି କରି ପିନ୍ଧିଛି କିନ୍ତୁ ଫଟା ହାଁଚଟି ହାତରେ ବାନ୍ଧିଛି ।

ବାଟ ବୁଲିବରେ ଲହରେ ପହରେ
ତୁମି କୋନ୍ ଗାଁଓରେ ଡେକା;
ଧୁନୀୟା ଚୁରିୟା ଥୁରିୟାଇ ପିନ୍ଧିଛ ।
ତୋମାଚେ ହାଁଚଟି ଫଟା ।

ଗୋଟିଏ ଗାଁରୁ ଅନ୍ୟ ଗୋଟିଏ ଗାଁକୁ ବୁଲି ଆସିବା ପଛରେ ଯୁବକଟିର ଏକ ମହାତ୍ ଉଦ୍ଦେଶ୍ୟ ଛପି ରହିଛି । ସେ ତା'ର ପ୍ରେମିକାକୁ ଖୋଜି ଆସିଛି । ଅନ୍ୟମାନେ ତାକୁ ଦେଖି ଥଟ୍ଟା କରନ୍ତୁ ବା ଯାହା କରନ୍ତୁ କିନ୍ତୁ ସେ ଗୋଟିଏ ହାଁଚଟି ପାଇବାର ଆଶା ରଖିଛି ।

'ପରୁଆ' କହିଲେ ସାଧାରଣତଃ 'ଇନ୍ଦାକୁ ବୁଝାଇଥାଏ·ମାତ୍ର ବିହୁଗୀତରେ 'ପରୁଆ' ନିଜର ପ୍ରିୟତମାକୁ ଆଖି ଆଗରେ ରଖିସମ୍ବୋଧନ କରାଯାଇଥାଏ । ସେହି ପରୁଆ ଅନ୍ୟାନ୍ୟ ପ୍ରିୟତମାମାନଙ୍କ ଭଳି ଅତି ନିରିମାଖି ନୁହେଁ । ସେ କଷ୍ଟ ସହିଷ୍ଣୁ, ତ୍ୟାଗୀ । ତା'ର ନିଜର ମଣିଷଟି ତା'କୁ ବହୁ ଦୂରରୁ ଚିହ୍ନି ନ ପାରି ଦ୍ୱନ୍ଦ ଭିତରେ ପଡ଼ି କହୁଛି -

ଦୟ କି ନହୟ    ହୟ ଐ ପରୁଆ
ଦୟ କି ନହୟ ହୟ;
ହାଁଚଟି ଏ ଖନି    ଖୁଜିବ ଖୁଜିଛୋଁ
ଦିୟା କି ନି ଦିବା ବୈ ।

ପ୍ରିୟତମା ତା'ର ପ୍ରିୟତମର ମନ କଥା ବୁଝିପାରିଛି ମାତ୍ର ସେ ତା'ର ଅକର୍ମଣ୍ୟତା ପ୍ରକାଶ କରିଛି । ହାଁଚଟି ବୁଣିବା ପାଇଁ ନାରୀମାନେ ସେତିକି ସିଦ୍ଧହସ୍ତା ହେବା ଦରକାର; ଏହି ଗୀତ ମାଧ୍ୟମରେ ଅସମୀୟା ନାରୀ ମାନଙ୍କର ହସ୍ତଶିଳ୍ପର ପରିଚୟ ମିଳିଥାଏ । ପ୍ରେମିକାଟି ଦୁଃଖରେ କହୁଛି - ତନ୍ତଶାଳର ସୂତା ଗୁଡେଇବା ପାଇଁ ସେ କାଠଟି ନାହିଁ । ସେ କେମିତି ହାଁଚଟି ବୁଣିବ ? ସେଥିପାଇଁ ଅତିଯତ୍ନରେ ମା ବାପା ବଢ଼ାଇ ଥିବା ଅଲିଅଳ ପୁଅପାଇଁ ଆଜି ପ୍ରେମିକାଟି ସାଧାରଣ ହାଁଚଟି ଗୋଟିଏ ତିଆରି କରି ଦେଇ ପାରୁନି । ସେ ଦୁଃଖ କରି କହୁଛି-

ହାଇଦି ତୁଲିବର    ଲାଇ ମୋର ସେନାଇ ଐ
ହାଇ ଦି ତୁଲିବର ଲାଇ;
ତୁମି ଯେ ଖୁଜିଲା    ଏ ଖନି ହାଁଚଟି
ବ୍ବଲେ ଚୋଲୋଠା ନାଇ ।

ବିହୁପୂର୍ବରୁ ଯୁବକମାନେ ଯୁବତୀମାନଙ୍କଠାରୁ ସୁନ୍ଦର ଫୁଲପକା ଗାମୁଛା ଏବଂ ସୁନ୍ଦର କପଡ଼ାରେ ତିଆରି 'ହାଁଚଟି' ଖଣ୍ଡେ ପାଇବା ପାଇଁ ଆଶା କରିବା ସ୍ୱାଭାବିକ ଅଟେ । ଯୁବତୀଟି ସେଥିପାଇଁ ଅତି ଯତ୍ନରେ ବହୁଦିନ ଆଗରୁ ଗାମୁଛା ଏବଂ ହାଁଚଟି ତିଆରି କରି ରଖିଛି । ସମୟ ଗଡ଼ି ଯାଇଛି । ଯୁବକଟି ଆସିବ ଆସିବ କହି ଆଉ ଆସିନାହିଁ । ଯୁବତୀଟିର ମନରେ ବିତୃଷ୍ଣା ଦେଖାଦେଇଛି । ଶେଷରେ ସେ ନିଜେ ଆତ୍ମହତ୍ୟା କରିବ ବୋଲି ସ୍ଥିର କରିଛି । ତା ପୂର୍ବରୁ ଶେଷଥର ପାଇଁ ଯୁବକଟି ପାଖକୁ ଖବର ପଠେଇଛି । ସବୁବେଳେ ତୁ ହାଁଚଟି ପାଇଁ କହୁ ଥିଲୁ । ମୁଁ ହାଁଚଟି ବୁଣି ଥୋଇଛି ଅଥଚ ଆସିଲୁନି । ପରେ ଆସିଲେ ତୁ ହାଁଚଟି ପାଇବୁ ହେଲେ ମୋତେ ଆଉ ପାଇବୁନି । ତୁ କେବଳ ହାଁଚଟିକୁ ଆଖି ଆଗରେ ରଖି ଆଖିରୁ ଲୁହ ଗଡ଼େଇବୁ । ମନର ବିଭିନ୍ନ ଅବସ୍ଥାର କଥା ଏହି ହାଁଚଟି ମାଧ୍ୟମରେ ପ୍ରକାଶ ପାଇଛି ।

ତୁଲିବା - ପାଳନ କରିବା, ଲାଇ-ଯତ୍ନରେ ବଢ଼ିଥିବା, ବ୍ବ-ବୁଣିବା, ଧୁନିୟା, ଚୁରିୟା-ସୁନ୍ଦର କୌପୁନି, ଥୁରିଆଇ-ମୋଡ଼ି ୨।

ହାଁଚଟି ହାତଟି କର ତଇ ହାଁଚଟି
ହାଁଚଟି ଥୈଛୋଁ ବୈ;
ହାଁଚଟି ପାବିତଇ ମୋକେହେ ନେ ପାବି
କାନ୍ଦିବି ଆଗତେ ଲୈ । (୫)

ବିହୁଗୀତରେ ଲୋକବାଦ୍ୟ - ପ୍ରକୃତିର କୋଳରେ ଗୋଟିଏ ଦିନ ମଣିଷ ସଙ୍ଗୀତର ସନ୍ଧାନ ପାଇଥିଲା । ପବନରେ କମ୍ପିଉଠୁଥିବା ଗଛ ପତ୍ରର ତାଳେ ତାଳେ ନାଚିବାର ଭଂଗୀ, ବାଉଁଶ ସହିତ ବାଉଁଶ ଘସି ହୋଇ ଶୁଭୁଥିବା ଶବ୍ଦରୁ ସେ ଅବା ବାଦ୍ୟର ସନ୍ଧାନ ପାଇଥିଲା । ସମୟ କ୍ରମେ ମଣିଷ ପ୍ରକୃତିର ସୃଷ୍ଟି ତଥା ଲୀଳାକୁ ଲକ୍ଷ୍ୟ କରି ବିଭିନ୍ନ ପ୍ରକାର ବାଦ୍ୟ ସୃଷ୍ଟି କଲା । ବିଶେଷ କରି ଆସାମରେ ବାଦ୍ୟ ସୃଷ୍ଟି କ୍ଷେତ୍ରରେ ବାଉଁଶର ଅବଦାନ ଉଲ୍ଲେଖନୀୟ । ଟକା, ପେଁପା, ଗଗନା ଆଦି ବାହାଗ ବିହୁରେ ଏକାନ୍ତ ଆବଶ୍ୟକୀୟ ଲୋକବାଦ୍ୟ । 'ବାଁହୀ' ବାଦ୍ୟ ମଧ୍ୟ ସମୟ ବିଶେଷରେ ବ୍ୟବହୃତ ହୋଇଥାଏ । ଗଗନା ବାଦ୍ୟ ମନକୁ ଦୂରଦେଶକୁ ଉଡ଼େଇ ନେଲାଭଳି ସ୍ୱର, ପେଁପାର ଜଙ୍ଗଲୀସ୍ୱର ସହିତ ବିହୁ ସ୍ୱରର ମଧୁର ମିଳନ ମନ ଭିତରେ ଅକୁହା ଆନନ୍ଦ ସୃଷ୍ଟି କରିଥାଏ । ସେତେବେଳେ ନାଁ ଘରେ ମନ ଲାଗେ ନାଁ ବାହାରେ ମନ ଲାଗେ । ଗଗନା ବାଦ୍ୟର ସ୍ୱର ଭିତରେ ସତେଅବା ପ୍ରେମିକାର ମଧୁର କଣ୍ଠଧ୍ୱନିର ସ୍ୱର ପ୍ରେମିକର କାନରେ ଆସି ବାଜିଯାଏ ।

ତା'ତେ ଶୁନିଲୋଁ ସୁରତେ ବୁଝିଲୋଁ
ମୋର ଧନେ ଗଗନା ବାୟ,
କିନୋ ଅମାତର ମାତେ ମୋର ସେନାଇ ଐ
ବୁକେ ଦି ସରକି ଯାୟ ।

ମନର ସମସ୍ତ ଆଶା ଆକାଙ୍କ୍ଷା ବୁଦ୍ ବୁଦ୍ ଭଳି ଛାତିଭିତରେ ଭାସି ଯାଏ । ତା'ର ପ୍ରତିଧ୍ୱନି ଗୁଡ଼ିକ ଗୁଣୁଗୁଣୁ ହୋଇ ମୁହଁରେ ଭାସିଆସେ । ଦୁଇଟି କୋମଳ ଓଠର ପରଶ ନେଇ ସଜୀବ ହୋଇ ଉଠିଥିବା ଗଗନାଟି ମନର କଥା ପ୍ରକାଶ କରେ ।

୧ - ଆଗଲି ବାଁହରେ ଲାହରି ଗଗନା
ବହି ତାଁତର ଘାଟତ ବାଓଁ;
ଆହେ କି ନାହେ ଐ ମୋର ଧନ ଲାହରୀ
ଚିରି ପାତି ମଙ୍ଗଲଖନ ଚାଓଁ ।

ତନ୍ତଶାଳରେ ବସି ପ୍ରିୟାଟି ପାଟସୂତାରେ କାପଡ଼ା ବୁଣୁଥାଏ ସେ ପ୍ରିୟାଟି ଅତି ସୁନ୍ଦର, ବାଉଁଶର ଅଗଭଳି ସବୁବେଳେ ହଲୁଥାଏ । ସେହି ପ୍ରିୟାଟି ପୁରୁଷର ପ୍ରାଣଠୁ ବଳି

ଢ଼ୋଲ-ଢ଼ୋଲ, ଟକା-ଫଟା ବାଉଁଶର ବାଦ୍ୟଯନ୍ତ୍ର, 'ପେଁପା-ଶିଙ୍ଗ, ବାୟ-ବଜାଏ, ସରକି, ଭେଦିଯାଏ, ଆଗଲି-ଅଗ ।

ପ୍ରିୟ, ଯାହାର ବାଟକୁ ସେ ଅନେଇଥାଏ । ବେଳେବେଳେ ପ୍ରିୟା ଆସିଲା ଭଳି ଯୁବକଟି ତା'ର ବାଟକୁ ଆସି ଅନାଁଏ ପୁଣି ଚାଲିଯାଏ । ପ୍ରେମିକାଟି ତା'ର ପ୍ରେମିକକୁ ଗଗନା ତିଆରି କରିବା ପାଇଁ କହିଥିଲା । ପୁରୁଣା ଗଗନାକୁ ବଜେଇ ବଜେଇ ଗଗନା ଫାଟିଯାଏ ତଥାପି ତା'ର ପ୍ରିୟତମ ଆସେ ନାହିଁ । ତା'ର ଆସିବା ବାଟକୁ ଅନେଇ ଅନେଇ ଗଗନା ବଜାଇ ବଜାଇ ଶେଷରେ ପ୍ରିୟତମାଟି ମଧ ତା'ର କୋହକୁ ଚାପି ରଖି ପାରେ ନାହିଁ । ଆଖିରୁ ଲୁହରଧାର ଗଡ଼ିଯାଏ ।

**ଲୋକବାଦ୍ୟ ଢ଼ୋଲ -** ଅସମୀୟା ଜନଜୀବନ ତଥା ସାଂସ୍କୃତିକ ଜୀବନଧାରାରେ ଢ଼ୋଲ ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଦଖଲ କରିଆସିଛି । ପ୍ରାଚୀନ କାଳରୁ ଆସାମର ଲୋକ ଜୀବନରେ ଢ଼ୋଲର ପ୍ରଚଳନ ଥିବା କଥା ଜଣାଯାଇଥାଏ । ଆସାମର ତେଜପୁରରେ ଥିବା ପ୍ରାଚୀନ ଭାସ୍କର୍ଯ୍ୟଗୁଡ଼ିକରେ ଢ଼ୋଲର ଚିତ୍ର ଖୋଦିତ ହୋଇଛି । ଭୂତିବର୍ମାଙ୍କ ଫଳିରେ ମିଳିଥିବା ବାରଗଂଗା ଅଞ୍ଚଳର ଢ଼ୋଲ୍ ତାଳ ବଜାଉଥିବା ମୂର୍ତ୍ତି, ଶିବସାଗରର ବିଭିନ୍ନ ବାଦ୍ୟଯନ୍ତ୍ର ସହିତ ଢ଼ୋଲବାଦ୍ୟର ଚିତ୍ର ମଧ ମିଳିଥାଏ । ପ୍ରାୟ ଏଗାର ବାରଶହ ଶତିକାରେ ରଚିତ କାଳିକା ପୁରାଣ, ତେରଶଶତିକାରେ ପୂର୍ବକବି ଅପ୍ରମାଦୀ ମାଧବ କନ୍ଦଳିଙ୍କ ଦ୍ୱାରା ରଚିତ ରାମାୟଣ ଏବଂ ପ୍ରାକ୍ ବୈଷ୍ଣବ କବି ହରିହର ବିପ୍ରଙ୍କ ଦ୍ୱାରା ରଚିତ, ବବ୍ରୁବାହନର ଯୁଦ୍ଧ ଆଦି ପୁସ୍ତକରେ ଢ଼ୋଲବାଦ୍ୟ ବିଷୟରେ ଉଲ୍ଲେଖ କରାଯାଇଛି । 'ଦେଓବୁରଞ୍ଜୀ' ଅନୁଯାୟୀ ଇନ୍ଦ୍ରବଂଶୀୟ ଆର୍ଯ୍ୟ ଅହୋମମାନେ 'ମୁଂରିମୁଂରାମ' ରେ ପ୍ରଥମେ ରାଜ୍ୟସ୍ଥାପନ କରିବା ସମୟରେ 'ଖୁନଲୁଂ' ଏବଂ ଖନଲାୟେ ଲେଂଦନରୁ ଚୋମଦେଓ, ହେଂଦାନ ଆଦି ସହିତ କୁକୁଡ଼ା ଏବଂ ଗୋଟିଏ ହଳ ଢ଼ୋଲ ପାଇଥିବା କଥା ଉଲ୍ଲେଖ କରିଛନ୍ତି ।

ତାଇ ଭାଷାରେ ଢ଼ୋଲକୁ 'କ୍ଲୁଚେଂରାଓ' କୁହାଯାଇଥାଏ । ତାଇ ଆହୋମମାନେ ଅତୀତରେ ଅନେକ ଢ଼ାଲ, ମାଦଳ, ଢ଼ୋଲ ଜାତୀୟ ଢ଼ୋଲ ବାଦ୍ୟ ବ୍ୟବହାର କରୁଥିଲେ ତାର ଅହୋମମାନଙ୍କ ଲୋକବିଶ୍ୱାସ ମତେ ବିହୁରେ ସଂଗୀତ ସହିତ ସଂଯୁକ୍ତ କରାଯାଉଥିବା ଢ଼ୋଲର ଉଦ୍‌ଭାବକ ହେଉଛନ୍ତି ଧାନକଲୀୟା । ଏହି ସଂପର୍କରେ ଅହମ୍‌ମାନଙ୍କ ଭିତରେ ଗୋଟିଏ ଆଖ୍ୟାନ ପ୍ରଚଳିତ ଅଛି ।

ଢ଼ୋଲ ଆସାମର ମୁଖ୍ୟ ଲୋକବାଦ୍ୟ । ଆସାମର ଜାତୀୟଜୀବନ ସହିତ ନିବିଡ଼ ଭାବେ ଏକାତ୍ମା ହୋଇଥିବା ଢୋଲବାଦ୍ୟର ପ୍ରଚଳନ ଅତି ପ୍ରାଚୀନ । ଆସାମରେ ଅତି ପ୍ରାଚୀନ କାଳରୁ ଲୋକଜୀବନରେ ଢ଼ୋଲର ବାଦ୍ୟର ସମାଦାର, ବ୍ୟବହାର୍ ଏବଂ ଅନୁଶୀଳନ ହୋଇ ଆସିଛି । ଢ଼ୋଲ କହିଦ୍ଲେ ଅସମୀୟାର ମାନସପଟରେ ଯେଉଁ ପ୍ରତିଛବି ଭାସିଉଠେ,

ତାହା ହେଉଛି ବହାଗ ବିହୁ ସମୟରେ ଆସାମର ବିହୁଗୀତ ହୁଁଚରି ସହିତ ପରିବେଷଣ କରାଯାଉଥିବା ଢ଼ୋଲର ପ୍ରତିଛବି । କୋକିଳର କୁହୁକୁହୁ ତାନ ନ ଶୁଣିଲେ, ଗଛ ଡ଼ାଳରେ କପୌଫୁଲ ନ ଫୁଟିଲେ ଯେପରି ଦେହ ଓ ମନରେ ବିହୁର ସ୍ପର୍ଶ ଲାଗିନଥାଏ, ସେହିପରି ଢ଼ୋଲର ଗୁଂଜରଣ ନ ଶୁଣିଲେ ଅସମୀୟାର ଲୋକର ଦେହରେ ପ୍ରକୃତ ବିହୁର ସ୍ପର୍ଶ ଆସିନଥାଏ । ବିହୁ କହିଲେ ମନକୁ ପ୍ରଥମେ ଢ଼ୋଲର କଥା ଆସିଥାଏ । ବିହୁ ଏବଂ ଢ଼ୋଲ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱଭଳି । ରଂଗାଲି ବିହୁମାନେ ଢ଼ୋଲର ଶବ୍ଦ, ଢ଼ୋଲର ଡ଼ାକରେ ବିହୁର ନାଚ । ବିହୁନାଚମାନେ ଆନନ୍ଦ ଉଲ୍ଲାସ । ଢ଼ୋଲର ତାଳେତାଳେ ମନ ପ୍ରାଣ ଯେମିତି ଥେଇକି ଥେଇକି ହୋଇଉଠେ । ଅସମୀୟା ଜନଜୀବନ ତଥା ସାଂସ୍କୃତି ଜୀବନଧାରାରେ ଢ଼ୋଲଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଛି ।

ବାହାଗ ବିହୁର ନାଚ ଓ ଗୀତରେ ପେଁପା, ଗଗନା, ଟକା ଆଦି ବାଦ୍ୟ ସହିତ ଢ଼ୋଲ ମୁଖ୍ୟ ଲୋକବାଦ୍ୟ ହିସାବରେ ବ୍ୟବହୃତ ହୋଇଥାଏ । ବିନା ଢ଼ୋଲରେ ବିହୁନୃତ୍ୟ ପରିବେଷଣ କରା ହୁଏନି । ଢ଼ୋଲିଆ ଢ଼ୋଲରେ ହାତର ଚାପୁଡ଼ା ମାରି ବିହୁତଳିରେ ବିହୁନାଚ ଆରମ୍ଭ କରିବା ପାଇଁ ନାଚୁଣୀକୁ ଆହ୍ୱାନ ଜଣାଇଥାଏ । ଏହାପରେ ଢ଼ୋଲ ବଜାଇ ବଜାଇ ଢ଼ୋଲିଆ ଦୁଇ ବା ତିନିଘେରା ବୁଲିଲା ପରେ ନାଚୁଣୀକୁ ବିହୁଗୀତ ଗାଇ ନାଚରେ ଯୋଗଦେବା ପାଇଁ ଆହ୍ୱାନ କରିଥାଏ । ଢ଼ୋଲର ଡ଼ାକଶୁଣି ନାଚୁଣୀର ପାଦ ଅସ୍ଥିର ହୋଇ ଉଠେ, ସେ ନିଜକୁ ଆଉ ସମ୍ଭାଳି ରଖି ପାରେନି । ସଂଗେ ସଂଗେ ବିହୁନାଚରେ ଯୋଗ ଦେଇଥାଏ । ସେଥିପାଇଁ ଅସମୀୟା ଲୋକ ସମାଜରେ ଢ଼ୋଲକୁ ବିଭିନ୍ନ ନାମରେ ନାମିତ କରାଯାଇଥାଏ । ଅଞ୍ଚଳ ଭେଦରେ ଢ଼ୋଲର ଗଣନାକୃତି ମଧ ଭିନ୍ନ ଭିନ୍ନ ଧରଣର ହୋଇଥାଏ । ଢ଼ୋଲ ଅସମୀୟା ପୁରୁଷ ତଥା ନାରୀର ଅତି ପ୍ରିୟ ଢ଼ୋଲର ଡ଼ାକ ଶୁଣି କେହି ତା'କୁ ହୁଲହୁଲି ତ କେହି ତାକୁ ଆନନ୍ଦର ସମାହାର କହିଥାଆନ୍ତି । କାରଣ ଢ଼ୋଲର ଶବ୍ଦେ ବିହୁର ପ୍ରକୃତ ଆନନ୍ଦ ସମସ୍ତେ ଉପଭୋଗ କରିବା ପାଇଁ ବିହୁତଳିରେ ଉପସ୍ଥିତ ହୋଇଥାଆନ୍ତି ।

ଢ଼ୋଲର ନାମ ଉରୁଲି ଢ଼ୋଲର ନାମ କୁରୁଲି
ଢ଼ୋଲତୋ ବିନ୍ଧିଲେ ଘୁନେ;
ମରାନର ମୁଚିୟେ ଘରତ ନାଇକିୟା
ଢ଼ୋଲେ ଛାଇଦିବ କୋନେ ?

ବହାଗ ବିହୁ ଆଗରୁ ଢ଼ୋଲ ଠିକ୍ ଠାକ୍ କରି ରଖିବା ନିହାତି ଦରକାର । ତେଣୁ ଢ଼ୋଲିଆର ଚିନ୍ତା ପଶିଲା ଯେ ମରାନର ମୋଚିକୁ ସେ ବାରମ୍ବାର ଖୋଜି ଆସିଲାଣି

ଶବ୍ଦାର୍ଥ : ଉରୁଲି-ହୁଲହୁଲି, ବିନ୍ଧିଲେ ଘୁନେ- ପୋକ ଫୁଟାକଲା, ଗଛକ - ଗୋଇଠା

ହେଲେ ତା'କୁ ତା'ଘରେ ଦେଖାପାଉନି । ଢ଼ୋଲ କିଏ ତିଆରି କରିଦେବ ? ବିନା ଢ଼ୋଲରେ ବିହୁତଳିରେ ବିହୁନାଚ ପରିବେଶଣ କରିବା ଅର୍ଥ ଲୋକହସା ହେବା କଥା ।

ବିହୁତଳିରେ ଯେତେବେଳେ ଢ଼ୋଲ ବାଜେ, ଢ଼ୋଲର ନାଚ ଶୁଣି ଅସମୀୟା ନାରୀମାନେ ନିଜର ପ୍ରିୟ ଯଁତର (କପଡ଼ାବୁଣାତନ୍ତ) କୁ ଭାଙ୍ଗିଦେଇ ବିହୁତଳିରେ ଯାଇ ଉପସ୍ଥିତ ହେବାପାଇଁ ଇଚ୍ଛା କରନ୍ତି ।

ଆଜି ବିହୁବିହୁ କାଲି ବିହୁ ବିହୁ
ନାହର ଫୁଲ ଫୁଲିବର ବତର;
ଫୂଲପାହି ଛିଗାତେ ଢ଼ୋଲର ମାତ ଶୁନିଲୋ
ଗଚକତ ଭାଙ୍ଗିଯାଓଁ ଯଁତର ।

ନିଜର ସମସ୍ତ କାମଧନ୍ଦାଛାଡ଼ି ନାରୀମାନେ ବିହୁତଳିରେ ଯାଇ ଉପସ୍ଥିତ ହୁଅନ୍ତି । ଢ଼ୋଲର ତାଳେ ତାଳେ ନାଚିବାପାଇଁ ଉପସ୍ଥିତ ହୁଅନ୍ତି । ଢ଼ୋଲର ତାଳେ ତାଳେ ନାଚିବା ପାଇଁ କେହି କେହି ଇଚ୍ଛା କରନ୍ତି । ଶେଷରେ ସମସ୍ତେ ବିହୁତଳିରେ ନାଚିଥାଆନ୍ତି । ଘରର କାମଧନ୍ଦା ଛାଡ଼ି ଆସିଥିବା ଯୋଗୁଁ ଅଭିମାନରେ କେହି କେହି ଢ଼ୋଲିଆକୁ ଗାଳି ଦେଇ କୁହନ୍ତି - ତମେ ଯେପରି ଢ଼ୋଲ ବଜାଉଛ, ଆମେ ନ ନାଚି କେମିତି ରହିବୁ ?

"ଢ଼ୋଲ ବଜାୟ ହେ ଯେନେକୈ
ନେ ନାଚିନୋ ଥାକୋଁ କେନେକୈ"

ଢ଼ୋଲର ଡ଼ାକଶୁଣି ଦେହ ଓ ମନରେ ଏକ ଅଫୁରନ୍ତ ଆନନ୍ଦ ଓ ଶିହରଣ ଜାଗିଥାଏ । ଖାଇବା ପାଇଁ ବାଢ଼ିଥିବା ଭାତ ସେମିତି ବଢ଼ା ହୋଇ ରହିଯାଏ ପୁଟୁଳିରୁ ଫିଟାଇଥିବା ସିନ୍ଦୁର ସେମିତି ପଡ଼ିରହେ । ନାରୀମାନେ ଢ଼ୋଲର ଆକର୍ଷଣରେ ଆକର୍ଷିତ ହୋଇ ବିହୁତଳିରେ ଉପସ୍ଥିତ ହୁଅନ୍ତି । ତନ୍ତରେ ଲୁଗା ବୁଣୁଥିବା ନାରୀଟି ମଧ୍ୟ ତନ୍ତଶାଳ ଛାଡ଼ି ବିହୁତଳିରେ ପହଞ୍ଚିଯାଏ ।

ଢ଼ୋଲତ ଚାପର ମାରି ଢୁଲିୟା ଓଲାଲେ
ବହି ବୈ ଆଛିଲୋଁ ତାଁତ;
ଟୋପୋଲାର ସେନ୍ଦୂର ଟୋପୋଲାତ ଥାକିଲେ
ଖାବଲୈ ନହେଲେ ଭାତ ।

ବିହୁତଳିରେ ଯୁବକ ଯୁବତୀମାନେ ମିଳି ବିହୁନାଚିଥାଆନ୍ତି । ଢ଼ୋଲିଆ ଢ଼ୋଲରେ ମନ ଧ୍ୟାନ ଦେଇ ଢ଼ୋଲ ବଜାଇଲା ବେଳେ ଖୋଳିଆ ଆନ୍ତରିକତାର ସହିତ ଖୋଳ ବଜାଇଥାଏ । ଏହି ସମୟରେ ନାଚୁନୀଟି ମନ ଖୁସୀରେ ନାଚିନାଚି ଢ଼ୋଲିଆର ପାଖକୁ ଚାଲିଆସେ । ତାକୁ ଲକ୍ଷ୍ୟକରି ଲୋକକବି ଢ଼ୋଲିଆର ମୁହଁରେ କହିଛନ୍ତି ।

ଢ଼ୋଲେ ବାଇ ଢୁଲିୟା ଖୋଲେ ବାଇ ଖୁଲିୟା
କା'ର ଘରର ନାଚନୀ ନାଚେ;
ଓଚର ଚାପି ଚାପି ନାହିବା ନାଚନୀ
ତୋମାର ଗାତ ମୋହିନୀ ଆଛେ ।

ଢ଼ୋଲ ହୁଁଚରି ବିହୁ ଏବଂ ମୁକଲିବିହୁରେ ମୁଖ୍ୟବାଦ୍ୟରୂପେ ପରିବେଶଣ କରାଯାଇଥାଏ । ଆସାମର ବିଭିନ୍ନ ସ୍ଥାନରେ ଢ଼ୋଲର ଆକାର କେଉଁଠିଟିକିଏ ଲମ୍ବା । ହୁଁଚରିବିହୁରେ ଢ଼ୋଲ ବିଭିନ୍ନ ତାଳରେ ବଜାଯାଇ ପରିବେଶଣ କରାଯାଇଥାଏ ଯେପରି କଚାରୀ ତାଳ, ଦୁମୁନୀ ତାଳ, ମିରି (ମିଶିଂ) ତାଳ, ଧେମେଲୀୟା ତାଳ (କୌତୁକିଆ), ନାଚନୀ ଓଲୋଆ (ନାଚୁଣୀ ଆସିବା) ତାଳ, କାଁହୀ ଘୁରୋଆ ଛେଓ, ଖରା ଛେଓ ଆଦି । କଚାରୀ ସଂପ୍ରଦାୟର ଲୋକମାନେ ବିହୁ ପରିବେଶଣ ବେଳେ ଏହି ତାଳରେ ଢ଼ୋଲ ବଜାଇ ଏହାର ନାମ କଚାରୀ ଛେଓ ରଖିଛନ୍ତି । ଏହା କେବଳ ହୁଁଚରିରେ ହିଁ ବଜାଯାଇଥାଏ । 'କଚାରୀତାଳ' ବଜାଇବା ପୂର୍ବରୁ ନାଚୁଣୀ ଆସିବା ପାଇଁ ତାଳ ବଜାଯାଇଥାଏ । ନାଚୁଣୀ କହିଲେ ହୁଁଚରିର ପୁରୁଷ ନର୍ତ୍ତକମାନଙ୍କୁ ଉଦ୍ଦେଶ୍ୟ କରାଯାଇଥାଏ କାରଣ ହୁଁଚରି ବିହୁରେ ନାରୀନର୍ତ୍ତକୀମାନଙ୍କର ସ୍ଥାନନଥାଏ । ନିମ୍ନରେ ନାଚୁଣୀ ଆସିବାର ତାଳ କିପରି ବଜାଯାଇଥାଏ ଆଲୋଚନା କରାଯାଇଛି ।

୧- ଦାଓଁ ଦାଓଁ ଥିତା, ଦାଓଁ ଦାଓଁ ଥିତା, ଦାଓଁ ଦାଓଁ ଥିତା ଘିନ (ଲମ୍ୱେଇ କରି)
ଘେନି ତାଥ ଘେନା, ଘେନି ତାଥ ଘେନା, ଘେନି ତାଥ ଘେନା ।
ଘେନି ତାଥ ଘେନି ତାଥ ଘେନି ତାଥ ଘେନା ଓ
ଗିରି ଗିରି ଗିନା ଗିର ଗିର ଗିନା ଗିର ଗିର ଗିନା ଘେଇ ।
୨- ଧୁରୁ ଧୁରୁ ଦାଓଁ ବେଟି ଲେଟେ କୁରୁ ଦାଓଁ ବେଟି ...(କେତେଥର କୁହାଯିବ)
ତାଳ ସହିତ ଗାଉଥିବା ଗୀତ -
ଆସନତେ ବିହ୍ନ ଚରାଇ
ଚରାଇତେ ମ'ରା ଚରାଇ
ପାତ ହେରା ସରୁ - ସରୁ
ଖରୁଆ ବେଙ୍ଗେନାତ ପାତ'। (୬)

ବିହୁନୃତ୍ୟଗୀତ ସହିତ ଢ଼ୋଲର ସଂପର୍କ ଏତେ ଘନିଷ୍ଠ ଯେ ବିହୁ ଉତ୍ପତ୍ତିର ସଂଗେ ସଂଗେ ଢ଼ୋଲର ଉତ୍ପତ୍ତି ନାଁ ଢ଼ୋଲର ଉତ୍ପତ୍ତିର ସଂଗେ ସଂଗେ ବିହୁର ଉତ୍ପତ୍ତି - ଏକଥା ସଠିକ ଭାବେ କହିବା କଷ୍ଟ । ତେବେ ତେଜପୁରରୁ ଉଦ୍ଧାର ହୋଇଥିବା ଭଗ୍ନାବଶେଷରୁ

ବାବି-ବଜାଇବି, ଖରକୈ-ଜୋର୍‌ରେ,କ ଲାହେ-ଧୀରେ, ଛେଓତେ-ତାଳରେ ।

ବିହୁନାଚ ଏବଂ ଢ଼ୋଲିଆର ମୂର୍ତ୍ତିଗୁଡ଼ିକୁ ଆଖି ଆଗରେ ରଖି ବିହୁ ନାଚ ଏବଂ ଢ଼ୋଲର ଉତ୍ପତ୍ତି ଏକ ସମୟରେ ହୋଇଥିଲା ବୋଲି କୁହାଯାଇପାରେ । ହୁଏତ ଅଳ୍ପ କେଇଦିନରେ ପାର୍ଥକ୍ୟ ଥାଇପାରେ ।

ଆଜିର ସମାଜରେ ବିହୁ କହିଲେ ଢ଼ୋଲ ଏବଂ ଢ଼ୋଲ କହିଲେ ବିହୁକୁ ବୁଝାଇଥାଏ । ବିହୁଗୀତ ଭିତରେ ଢ଼ୋଲର ସ୍ଥାନ କେତେ ଉଚ୍ଚରେ ତାହା ନିମ୍ନରେ ପ୍ରଦତ୍ତ ଗୀତରୁ ହିଁ ଜଣାଯାଇଥାଏ ।

୧- ଢ଼ୋଲଭାଲେ କରି ବାବି ଐ ଢୁଲୀୟା, ଢ଼ୋଲ ଭାଲେକରି ବାବି, ଖରକୈ ନା ବାବି, ଲାହେକୈ ନା ବାବି, ନାଚନୀର ଛେଓତେ ବାବି ।

ନାଚୁଣୀଟି ବିହୁ ନାଚିବା ପୂର୍ବରୁ ଢ଼ୋଲିଆକୁ ସତର୍କ କରାଇ କହେଢ଼ୋଲଟି ଠିକ୍ ତାଳରେ ବଜାଇବ । ଜୋରରେ ବଜାଇବନି କିଆସ୍ତେ ଆସ୍ତେ ବଜାଇବନି । ନାଚୁଣୀର ନାଚର ତାଳେ ତାଳେ ବଜାଇବ ।

୨- ଢ଼ୋଲରେ ନାଜାନ ଛେଓ ତଇ ଢୁଲୀୟା, ଖୋଲରୋ ନାଜାନ ଛେଓ, ନାଚନୀ ଛେଓକେ ବଜାବ ନାଜାନ, କାନ୍ଧେ ଦି ମାରି ଯାଉଁ ଦେଓ । କେହି ଜଣେ ଢ଼ୋଲିଆ ଠିକ୍ ତାଳରେ ଢ଼ୋଲ ନ ବଜାଇବା ଯୋଗୁ ନାଚୁଣୀଟି ତା'କୁ ଗାଳିଦେଇ କହୁଛି ତୁ ଢ଼ୋଲର ତାଳ ଜାଣିନୁ କି ଖୋଳ ଠିକ୍ ଭାବେ ବଜାଇ ଜାଣିନୁ, ମୁଁ ତୋ କାନପଟେ ଢିଅ ମାରିବି ।

୩- ଢ଼ୋଲ ଭାଲେ କରି ବାବି ଐ ଢୁଲିୟା ଢ଼ୋଲ ଭାଲେକରି ବାବି; ଢ଼ୋଲ ଭାଲେ କରି ବାବା ନୋ ଆରିଲେ ନାକଟି ଛିଙ୍ଗିବ ସାଜି ।

ଢ଼ୋଲିଆ ଯଦି ଠିକ୍ ତାଳରେ ଢ଼ୋଲ ନ ବଜାଏ, ନାଚୁଣୀରନାକଛିଣ୍ଡି ପଡ଼ିବ ଅର୍ଥାତ୍ ନାଚୁଣୀକୁ ଅପମାନ ହେବ ।

୪- ଢ଼ୋଲଟି କରିବ ଧିନିକ୍ଧିନ୍ ଦାଉଁ ମୃଦଙ୍ଗେ କରିବର ତାଓ;
କାଟନି ସୂତାଇ ଆମନି କରିଛେ ବିଦାୟେ ଦିୟା ଘରଲୈ ଯାଉଁ ।

ବିହୁନାଚ ହେବମାନେ ଢ଼ୋଲଟି ଧିନିକ୍ଧିନ୍ ଦାଉଁ ତାଳରେ ଏବଂ ମୃଦଙ୍ଗଟି 'ତାଓ' ତାଳରେ ବାଜିବ । ନାଚୁଣୀର ପାଦ ଆଉସ୍ଥିର ହୋଇ ରହିପାରିବନି । ସେ ନିଶ୍ଚୟ ବିହୁତଳିରେ ଯୋଗଦେବ । ଘରେ ସୂତା ତନ୍ତଶାଳରେ ଅଧାକଟା ହୋଇ ପଡ଼ିଛି ସେଥିପାଇଁ ବିହୁନାଚ ଆରମ୍ଭ ହେବା ପୂର୍ବରୁ ନାଚୁଣୀ ଢ଼ୋଲିଆଠୁ ବିଦାୟ ମାଗିଛି ।

୫- " ମାଖିର ମୂରକାଟି ଢ଼ୋଲ୍ଟି ସାଜିଲୋଁ ପିପରାର ଚାଲେରେ ଚାଲୋଁ, ଜେଲୁକର ଛାଲେରେ ବରତିକାଟିଲୋଁ ଫରିଙ୍ଗର ଠେଙ୍ଗରେ ବାଲୋଁ । ଢ଼ୋଲ ଅସମୀୟା ନାରୀ ଓ ପୁରୁଷର ଅତି ପ୍ରିୟ ହୋଇଥିବାରୁ ଢ଼ୋଲକୁ ଅତି ଯତ୍ନରେ ତିଆରି କରି ଅନ୍ତରର ସମସ୍ତ ଆଗ୍ରହଢ଼ୋଲ ସହିତ ଢ଼ାଳି ଦେଇ ଥାଆନ୍ତି । ତେଣୁ ସେମାନେ ଢ଼ୋଲ ତିଆରି ପାଇଁ କାଠ ସଂଗ୍ରହ କଲାବେଳେ ବହୁତ କଷ୍ଟ କରନ୍ତି । ଢ଼ୋଲକୁ ଅତି ଯତ୍ନରେ କାଟିବାଠୁ ଢ଼ୋଲ

ଗଢ଼ି ରଂଗ ଦେବା ପର୍ଯ୍ୟନ୍ତ ଅନ୍ତରର ସମସ୍ତ ସ୍ନେହ ମିଶାଇ ଦିଅନ୍ତି । ସେଥିପାଇଁ ଆସାମରେ ସେହି କଷ୍ଟକୁ ବର୍ଣ୍ଣନା କରିବାକୁ ଯାଇକୁହନ୍ତି ଆମେ ମାଛିର ମୁଣ୍ଡକାଟି ଢ଼ୋଲ ଗଢ଼ିଲୁ, ପିମ୍ପୁଡ଼ିର ଚମଡ଼ା ଦେଇ ବାନ୍ଧିଲୁ । ଗେଣ୍ଡାର ଚମଡ଼ାରେ ସୂତା କାଟିଲୁ ଏବଂ ଝିଣ୍ଟିକାର ଗୋଡ଼ରେ ତାକୁ ସିଲେଇ କରି ବାନ୍ଧିଲୁ । ଏହା କହିବାର ତାତ୍ପର୍ଯ୍ୟ ହେଉଛି ଢ଼ୋଲ ତିଆରି କରିବା ଏକ ସହଜ କଥା ନୁହେଁ । ଏଥିପାଇଁ ଯତ୍ନ ଓ ଆଗ୍ରହ ଦରକାର । ତା ସତ୍ତ୍ୱେ ପ୍ରତିଟି ପୁରୁଷ ବହାଗର ବିହୁ ପାଇଁ ନିଜ ଅନ୍ତରର ସମସ୍ତ ସ୍ନେହ ମମତାକୁ ଏକାଠି କରି ଢ଼ୋଲଟିଏ ତିଆରି କରିଥାଆନ୍ତି । ଏହିଭଳି ଭାବେ ଢ଼ୋଲକୁ ନେଇ ବିହୁଗୀତରେ ବହୁ ପ୍ରକାର ବର୍ଣ୍ଣନା କରାଯାଇଛି ।

୬- ଢ଼ୋଲ ବାଇ ଢୁଲିୟା, ଗାତ ନାଇ ଚୁରିୟା
ଗେଲା ମାଛ ପାତତ ଦି ଖାୟା,
ବୁକୁ ପିନ୍ଧାଇ ଢୁଲିୟାଇ ଢ଼ୋଲତ ଚାପର ମାରେ
ମୋର ମାନ ଢୁଲିୟା ନାଇ ।
୭- ଢ଼ୋଲରେ ବରତି ଲରିଲ ଐ ଢୁଲିୟା
ଢ଼ୋଲରେ ବରତି ଲରିଲ;
କାଲିରେ ପରା ଭାତ ନାଇକିୟା
କାଁଟଟି ସରକି ପରିଲ ।
୮- ଚାମଗୁରି ହାଟତେ ଢ଼ୋଲେ ଗରି ଗିରାଲେ
ଢ଼ୋଲର କି କି ନାଓ;
ଏଟା ଆମରେ ଏଟା ସାମରେ
ବାଁହର ମାଁରି ସାଜି ବାଓଁ ।
୯- ତାମେ ଲିଖୁଲଖୁ ପିତଳ ଲଖୁଲଖୁ
ଢୁଇରନୋ ଶାଲରେ ଛାଁଇ;
୧୦- ଢ଼ୋଲତ ଚାପର ମାରି ବିହୁଟି ଯାବଗୈ
ଧନ ଦି ରାଖୋଁତା ନାଇ ।
୧୧- ଢ଼ୋଲତ ଚାପର ମାରି ଢୁଲିୟା ଓଲାଲେ
ନାଚନୀର ମୁଖଲୈ ଚାଇ;
ମୁଖର ମିଶିକିନି ଚକୁର ଢିଲିକିନି
ଢେଉତି ଢିଲିକା ନାଇ ।

ଢେଲୁକା - ଗେଣ୍ଡା, ବରତା - ପାସ,

୧୨- ଆଜି ବାର ମାହେ ହୁଁଚରି ଗୋଆ ନାଇ
ଡ଼ିଙ୍ଗିଂ ଚେରଚେର କରେ;
ଢୋ଼ଲତ ଭାଲେ କରି କୋବକେ ନପରେ,
କାଷରେ ପାଁଜରେ ପରେ ।

୧୩- ଓଜାୟେ ଆହିଲେ ମାଛେ କି ମଗରେ,
ଓଜାୟେ ଆହିଲେ ଶିହୁ;
କାନ୍ଧତେ ଢୋ଼ଲଟି ମୁଖତେ ପେଁପାଟି
ପାରେ ହିଁ ବହାଗର ବିହୁ ।

**ବିହୁଗୀତରେ ପେଁପା** - ଢୋ଼ଲ ଭଳି ଅସମୀୟା ସମାଜରେ ଲୋକ ବାଦ୍ୟ ପେଁପାର ମୂଲ୍ୟ ବହୁତ ବେଶି ଅଟେ। ପେଁପା ବିନା ବିହୁତଳିରେ ନାଚ ଜମେ ନାହିଁ। ପେଁପାର ସ୍ୱର ବହୁଦୂରକୁ ଭାସିଯାଏ। ଏହା ମୂର୍ଚ୍ଛନାରେ ଲୋକମନ ଓ ଲୋକପ୍ରାଣ ବହାଗବିହୁର ଖୁସୀର ବାର୍ତ୍ତା ପାଇଥାଏ। ପେଁପା ଭଳି ଲୋକବାଦ୍ୟ ତିଆରି କରିବାରେ ଅସମୀୟାର ହସ୍ତଶିଳ୍ପର ପରିଚୟ ମିଳିଥାଏ। ମନ ଓ ପ୍ରାଣଦେଇ ଅତି ଆଗ୍ରହ ସହକାରେ ବହାଗବିହୁ ପାଇଁ ପେଁପା ବାଦ୍ୟର ତିଆରି ଚାଲିଥାଏ। ଏହି ବାଦ୍ୟର ଏକ ସ୍ୱତନ୍ତ୍ର ଆକର୍ଷଣ ରହିଛି। ତୋଲିଆ ଢୋଲ ବଜେଇ ବିହୁନାଚର ଆହ୍ୱାନ ଦେଇଥାଏ। ପେଁପାର ଶବ୍ଦ ଶୁଣି ନାଚୁଣୀର ଆଗମନ ହୋଇଥାଏ। ଢୋ଼ଲ ସହିତ ଗିନି ମଧ ତାଳେ ତାଳେ ବାଜେ। ପେଁପାର ଶବ୍ଦ ଯେ ପର୍ଯ୍ୟନ୍ତ ନାଚୁଣୀ ଶୁଣି ନ ଥାଏ ସେହି ପର୍ଯ୍ୟନ୍ତ ସେ ଅପେକ୍ଷା କରି ରହିଥାଏ। ଢୋ଼ଲ ଓ ତାଳ ବା ଗିନି ସହିତ ପେଁପାର ଶବ୍ଦ ନ ଶୁଣିଲେ ନାଚୁଣୀ ଅଧୈର୍ଯ୍ୟ ହୋଇ କହେ -

ଢୋ଼ଲର ମାତ ଶୁନିଲୁ ତାଲର ମାତ ଗୁନିଲୁ
ଐ ଶୁନାନାଇ ପେଁପାର ମାତ;
ମହଶିଙ୍ଗର ପେଁପାଟି ବଜାଇ ଦିଆ କକାଇଟି
ଐ ନାଚୁନାଚୁ ଲାଗିଛେ ମନ।

ତଥାପି ଯଦି ପେଁପାର ଶବ୍ଦ ଶୁଣି ନ ପାରନ୍ତି। ସେମାନଙ୍କର ଧୈର୍ଯ୍ୟଚୁତିଘଟେ। ନିଜର ଭାଇ ବା ଦାଦାକୁ ପେଁପା ବଜାଇବା ପାଇଁ ଅନୁରୋଧ କରନ୍ତି। ଦୁଃଖରେ ସେମାନଙ୍କ ଭିତରୁ କେହି ଜଣେ କୁହେ - ଦାଦା, ଭାଇ ସମସ୍ତେ ପେଁପା ବଜାଇବାରେ ନିପୁଣ କିନ୍ତୁ କେହି ଜଣେ ପେଁପା ବଜାଉନାହାନ୍ତି। ଅନାଉ ଅନଉ ଲାଜକୁଳୀ ଲତା ଭଳି ଅତି ଲାଜୁଆ ବିହୁଟି ଚାଲିଯିବ ଅଥଚ ସେ ନାଚି ପାରିବନି।

---

ଶବ୍ଦାର୍ଥ : ଚୁରିୟା-ଲୁଗା, ଗେ଼ଲା-ପଚା, ବରତି-ବ୍ରତୀ, କାଁଚି-ଚିନାମାଟିର ବାସନ, ଖିରକି-ଖସିପଡ଼ିବା, କୋବକେ-ବଜାଇବା, ମହ-ମଇଁଷୀ,

ପେଁପୁଆ କକାଇ ଐ ପେଁପୁଆ ଦଦାଇ ଐ
ପେଁପାଟି ଲୈ ଆନ ନାଚୋଁ;
କାନ୍ଧତେ ଢୋଲଟି ମୁଖତେ ପେଁପାଟି
ଯାବଗୈ ନିଲାଜୀ ବିହୁ ।

ପେଁପା ବାଦ୍ୟ ପ୍ରତି ଥିବା ଆନ୍ତରିକତା ଭିତରେ ବହାଗବିହୁର କଥା ବର୍ଣ୍ଣନା କରାଯାଇଛି । ତା' ମାଧ୍ୟମରେ ସମାଜର ଚିତ୍ର ମଧ୍ୟ ପରିବେଷଣ କରାଯାଇଛି । ଆସାମ ଏକ କୃଷିପ୍ରଧାନ ରାଜ୍ୟ । ଲୋକମାନେ ମୁଖ୍ୟ ଜୀବିକା ରୂପେ କୃଷି ଉପରେ ନିର୍ଭର କରିଥାଆନ୍ତି । ଧାନ ଚାଷ କରି ଭଲ ଫସଲ ପାଇବାର ଆଶା ରଖି କେହି କେହି ଲୋକ ଭଲ ଫସଲ ପାଇନଥିଲେ ମନରେ ବହୁତ ଦୁଃଖ କରନ୍ତି । ବର୍ଷକ ପାଇଁ କେଉଁଠୁ ଧାନ ଯୋଗାଡ଼ କରିବ, ଘର ସଂସାର କେମିତି ଚଳିବ ଆଦିର ଚିନ୍ତାରେ ଭାଙ୍ଗି ପଡ଼ନ୍ତି । ଦୁଃଖରେ ମନରେ ବିଷାଦଭରିଯାଏ । ପେଟ ପାଇଁ ସବୁନାଟ-ପେଟ କେମିତି ପୂରଣ ହେବ - ସମସ୍ତଙ୍କର ଚିନ୍ତା ଆସିବା ସ୍ୱାଭାବିକ କଥା । ଅନଉଁ ଅନଉଁ ମାଘବିହୁ ଯାଇ ବହାଗବିହୁ ଆସି ପହଞ୍ଚିଲା । ଘରେ ଖାଇବା ପାଇଁ ଚାଉଳ ନାହିଁ । ବିହୁରେ ବା କି ଆନନ୍ଦ ଅଛି ? ଆହୁଧାନ ଚାଷ କରିଥିଲା ପାଣି ପଶି ସବୁ ଧାନଗଛ ମରିଗଲା ତଥାପି ସେ ନିଜ ମନକୁ ଶାନ୍ତ୍ୱନା ଦେଉଛି । ଏବର୍ଷ ଯଦି ଧାନ ଫସଲ ଭଲ ନହେଲା, ଆରବର୍ଷକୁ ଧାନ ଫସଲ ଭଲ ହେବ । ତେଣୁ ବହାଗବିହୁରେ ମନ ଦୁଃଖ ନ କରି ମଇଁଷୀଶିଙ୍ଗର ପେଁପା ନେଇ ସେ ବିହୁତଳିକୁ ଯିବ, ସେଠାରେ ମନଖୁସୀରେ ପେଁପା ବଜାଇ ନାଚିବ । ସେ ନିଜର ଗୃହିଣୀର ରାଣ ପକେଇ କହୁଛି । ସେ ଆଉ ମନଦୁଃଖ କରିବନି । ଏ ପେଁପା ନେଇ ନିଶ୍ଚୟ ବିହୁତଳିକୁ ଯିବ ।

ଏଇବେଲି ଆହୁଧାନ ପାନିୟେ ମାରିଲେ
ଅହାବେଲି ଆହୁଧାନ ପାମ;
ମହର ଶିଙ୍ଗର ପେଁପାଟି ବନକିୟାଇ ଆନାଗୈ
ତୋମାର ଶପତ ବିହୁଲୈ ଯାମ ।

ମଇଁଷୀ ଶିଙ୍ଗର ପେଁପା ବିହୁର ଆନନ୍ଦ ଉଚ୍ଛ୍ୱାସର ମଧୁର ସଂଗୀ । କାଳିଆ ରଂଗରପେଁପାର କଳିଷସ୍ୱର ଦୂରରେ ଥିବା ଲୋକମନରେ ବିହୁର ମାଦକତା ଭରିଦେଇଥାଏ । କଥା ହେବା ପାଇଁ ସୁଯୋଗ ପାଉନ ଥିବା ଯୁବକଟି କେବଳ ଚାହିଁ ଚାହିଁ ହୃଦୟର ଯନ୍ତ୍ରଣା, ମନର ଅନେକ ଆଶା ତଥା ଦେହର ଅତୃପ୍ତ ଇନ୍ଦ୍ରିୟର ପରିଣତିର ଜ୍ୱାଳାକୁ କେବଳ ପେଁପାର ସ୍ୱର ବହୁଦୂରକୁ ଉଡ଼ିଯାଏ । ପେଁପାର ଡ଼ାକଶୁଣି ମନ ଉଚ୍ଛନ୍ନ ହୋଇ ଉଠେ, କାମ କରୁଥିବା ଜାଗରେ ହାତ ଅଟକି ରହେ । ବିହୁତଳିକୁ ଯିବା ପାଇଁ ମନ ଉଚ୍ଛନ୍ନ ହୁଏ ।

---

ଶବ୍ଦାର୍ଥ : ମହ-ମଇଁଷୀ, ନିଲାଜୀ- ଲାଜକୁଳୀ

ମ'ହର ଶିଙ୍ଗର ପେଁପାଟି ନ ବଜାବା ଜକାଇଟି
ମୋରେ ମନ ଉରୁକା କରେ;
ପେଁପାର ମାତ ଶୁନି ରବକେ ନୋଆରି
ହାତର ବନ ସରି ପରେ ।

କେହି କେହି ନାରୀମାନେ ପେଁପାର ଡ଼ାକଶୁଣି ତା'ର ତାଳେ ତାଳେ ଅଣ୍ଟାଭାଙ୍ଗି ଭାଙ୍ଗି ନାଚିବା ପାଇଁ ବହୁତ ପସନ୍ଦ କରନ୍ତି । ସେଥିପାଇଁ ପେଁପା ବାଦକକୁ କହନ୍ତି -

''ତୋମାର ପେଁପାର ସୁରେ ସୁରେ
କଁକାଲ ଭାଙ୍ଗି ଭାଙ୍ଗି ନାଚିବଲୈ ଖୁବ ଭାଲ ଲାଗେ''

ପେଁପାର ଡ଼ାକରେ ଅଧୈର୍ଯ୍ୟ ହୋଇ ଯୁବତୀମାନେ ଭାତକଂସା ପାଖରୁ ଉଠି ଯାଆନ୍ତି । ପେଁପାର ସ୍ୱରରେ ସେହିଭଳି ଆକର୍ଷଣ ଭରି ରହିଛି ।

''ପେଁପାର ମାତେ ଶୁନି
ଏରି ଯାଉଁ ପେଟରେ ଭାତ'' (୭)

**ବିହୁଗୀତରେ ଗଗନା -** ଲୋକବାଦ୍ୟ ହିସାବରେ ଢ଼ୋଲ ଓ ପେଁପା ସହିତ ଗଗନାର ଆବଶ୍ୟକତା ବିଷୟରେ ବିହୁଗୀତଗୁଡ଼ିକରେ ବର୍ଣ୍ଣିତ ହୋଇଛି । ଗଗନା ଏକ ସ୍ୱକ୍ଷବାଦ୍ୟ । ବାଉଁଶ ଆଗକୁ ଭଲଭାବେ ଚାଞ୍ଛି ସରୁ କରାଯାଇ ଏହି ବାଦ୍ୟ ତିଆରି କରାଯାଇଥାଏ । ଏହାକୁ ମୁଖ୍ୟତଃ ଯୁବତୀମାନେ ବଜାଇଲେ ହେଁ ସମୟ ସମୟରେ ବିହୁ ନାଚରେ ଯୁବକମାନେ ମଧ ବଜାଇଥାଆନ୍ତି । ଏହି ବାଦ୍ୟକୁ ଆସାମର ନାରୀମାନଙ୍କର ପ୍ରିୟବାଦ୍ୟରୂପେ ପରିଗଣିତ କରାଯାଇଥାଏ । ଗଗନା ତିଆରି କରିବାକୁ ହେଲେ ସବୁ ବାଉଁଶକାଠିକୁ ଭଲଭାବେ ପାଲିସ କରି ଦୁଇଫାଳ କରାଯାଇଥାଏ । ତା ମଝିରେ ସୂତା ବାନ୍ଧି ଦିଆଯାଏ । ଗଗନାର ମଝି ଅଂଶକୁ ଯୁବତୀମାନେ ପାଟିରେ ଧରି ଗୋଟିଏ ପଟର ଅଂଶକୁ ବାଁ ହାତରେ ଧରି ଅନ୍ୟ ପଟର ଶେଷ ଅଂଶକୁ ଡ଼ାହାଣ ହାତରେ ବଜାଇଥାଆନ୍ତି । ଗଗନା ମଝିରେ ବନ୍ଧା ଯାଇଥିବା ପାଟସୂତାର ସୂକ୍ଷ୍ମ ତଥା କୋମଳ ଶବ୍ଦ ଯେ କୌଣସି ଲୋକର କାନକୁ ଅତି ଶ୍ରୁତି ମଧୁର ହୋଇଥାଏ । ଗଗନା ବାଦ୍ୟ ଅତି ଉଚ୍ଚସ୍ୱରରେ ଡ଼ାକ ଦେଇ ନ ପାରିଲେ ହେଁ ଏହାର କୋମଳତା ବିହୁତଳିର ଲୋକମାନଙ୍କୁ ଆକର୍ଷିତ କରି ରଖିଥାଏ । ଜଣେ ଅନ୍ୟଜଣକୁ ଗଗନା କିପରି ତିଆରି କରାଯାଏ ବୋଲି ପ୍ରଶ୍ନ କରିଛି । କେଉଁଠୁ ବା କିଣିଛି କି ? ତା'ର ଉତ୍ତରରେ ନାରୀଟି କହୁଛି -

ଗଗନା ଆରଣି ଗଗନା ପୁରଣି
ଗଗନା କିହେରେ କିନାଓଁ,
ଦୁଫାଳେ ଦୁଟଟି ମାଝତେ ଏଟଟି
ମୁଗା ସୂତା ଲଗାୟେ ବାଓଁ ।

ଅର୍ଥାତ୍ ଗଗନା ଅତି ପ୍ରାଚୀନ ବାଦ୍ୟ ଅଟେ । ଏହାକୁ ତିଆରି କରିବା କୌଣସି କଷ୍ଟସାଧ କଥା ନୁହେଁ । ଦୁଇପଟେ ଦୁଇଟି ମୁଗାପାଟର ସୂତା ବାନ୍ଧି ମଝିରେ ଆଉ ଖଣ୍ଡିଏ ପାଟସୂତା ବାନ୍ଧିଦେଲେ ଗଗନା ତିଆରି ହେଲା । ଛୋଟ ବାଉଁଶ କଣି ଖଣ୍ଡକରେ ଗଗନା ତିଆରି ହେଲେ ହେଁ ବହାଗ ବିହୁରେ ଗଗନାର ଆଦର ବହୁତ ବେଶି ।

ଗଗନା ତିଆରି କରିବା କଷ୍ଟ କାମ ନୁହେଁ ତଥାପି ଏହାକୁ ତିଆରି କରିବାରେ ଆଗ୍ରହ ଓ ଇଚ୍ଛା ଦରକାର ନହେଲେ ବିନା ଯତ୍ନରେ ଏହା ଅଧିକ ସୃଷ୍ଟ ହୋଇ ନଥାଏ । ସେଥିପାଇଁ ପ୍ରେମିକାଟି ଆଗାମୀ ବହାଗ ବିହୁ ପାଇଁ ନିଜର ପ୍ରେମିକକୁ ଗଗନା ତିଆରି କରିଦେବା ପାଇଁ କହି ରଖିଛି । ସମୟକ୍ରମେ ବିହୁ ଆସିଛି ମାତ୍ର ପ୍ରେମିକା ପାଇଁ ଗଗନା ତିଆରି କରିଦେବା ପାଇଁ ପ୍ରେମିକଟି ଭୁଲିଯାଇଛି । ଆରବର୍ଷକୁ ତିଆରି କରିଦେବ କହି ନିଜର ଭୁଲ୍‌ପାଇଁ କ୍ଷମା ମାଗିଛି । ସମୟ କ୍ରମେ ପୁଣି ପରବର୍ଷ ବିହୁକୁ ମଧ ଗଗନା ତିଆରି ହୋଇ ପାରିନି ପ୍ରେମିକାର ମନରେ ଅଭିମାନ ବଢ଼ିଯାଇଛି । ସେ କହୁଛି ମୋର ଗଗନା ଦରକାର ନାହିଁ । ତୁ ଅନ୍ୟ କାହାପାଇଁ ଯଦି ଗଗନା ତିଆରି କରିଛୁ ତା'କୁ ନେଇ ଦେ । ସିଏ ତୋ'ର ସବୁଠୁ ପ୍ରିୟ, ତୋ ଗଗନା ନେଇ ମୁଁ ବିହୁତଳିକୁ ଯିବି ନାହିଁ । ଏଥିରୁ ଗଗନା ବାଦ୍ୟ ପ୍ରତି ଥିବା ଆନ୍ତରିକତାର କଥା ସହଜରେ ବୁଝିହୁଏ ।

ଯୋଆଟୋ ବିହୁତେ ଗଗନା ଖୁଜିଲୋଁ
ଏଇବେଲିତ ନିଦିଲାସାଜି;
ତୋମାରେ ଗଗନା ଆମାକୋ ନେଲାଗେ
ଦିୟା ଗୈ ସିଜନୀକ ସାଜି ।

କୌଣସି ଜଣେ ପ୍ରେମିକା ଲୁଗା ବୁଣା ହେବା ପାଇଁ ତନ୍ତଶାଳରେ ଲାଗି ଥିବା ପାଟସୂତା ଉପରେ ବସି ବିଜୁଳୀ ବାଉଁଶ (ଏକ ପ୍ରକାର ବାଉଁଶ) ରେ ଅତି ଆଗ୍ରହରେ ଗଗନା ବଜାଉଛି । ମନରେ ଅନେକ ଆଶା ଓ ଆକାଙ୍କ୍ଷା । ଅଦିନରେ ତା'ର ଗଗନାର ଡ଼ାକ ଶୁଣି ତା'ର ଜୀବନର ଧନ ନିଶ୍ଚୟ ଆସିବ । ବିହୁ ଯେତିକି ଯେତିକି ପାଖେଇ ଆସୁଛି ମନ ସେତିକି ଉଚ୍ଛନ୍ନ ହେଉଛି । ମନ ବୁଝୁନି, କେତେବେଳେ ବା ଆସିବ ? କାହାଠୁ ବା ଖବର ପାଇବ ? ଗଗନା ବଜାଇବା ସଂଗେ ସଂଗେ ମଝିରେ ମଝିରେ ସେ ପଛକୁ ଫେରି

ଆରଣି- ଅତି ପ୍ରାଚୀନ, ପୁରଣି-ପୁରୁଣା, ଖୁଜିଲୋଁ - ମାଗିଲି ।

ଚାହୁଁଛି । ସେ ତା' ପ୍ରିୟର ଖବର ପାଇବ କି ନାହିଁ । ଏହି କଥା ଚିନ୍ତା କରି ମନ ଭିତରେ ଦୁଃଖ ଆସିଛି । ସୁଖଦୁଃଖ ଜଞ୍ଜାଳ ଭିତରେ ଦିନ କଟାଉଥିବା ସରଳ ଗାଉଁଲିଆ ଲୋକମାନରେ ବିହୁ ପ୍ରତି ଥିବା ସ୍ନେହ ଓ ଆନ୍ତରିକତା ଏକ ପ୍ରେମମୟୀ ନାରୀ ଭଳି ବର୍ଣ୍ଣିତ ହୋଇଛି ।

ବିଜୁଲି ବାଁହରେ ଲାହରୀ ଗଗନା
କିନୋ ଅମାତରେ ମାତ;
ପାଓଁ କି ନେ ପାଓଁ ଶେନାଇରେ ବାତରି
ଉଲଟି ଉଭତି ଚାଓଁ ।

ପ୍ରେମିକା ବସି ଚିନ୍ତାକଲାଭଳି ଆଉଜଣେ ପ୍ରେମିକା ମଧ୍ୟ ତା'ର ପ୍ରେମିକର ଆଗମନକୁ ଅପେକ୍ଷା କରି ବସିଛି । ଦିନଦିନ ବିତିଯାଉଛି । ଦୂରଦେଶରୁ ସେ ଠିକ୍ ସମୟରେ ଆସି ପାରିନି । ପ୍ରେମିକା ଗଗନାଟିକୁ ବସି ଦେଖୁଛି । ଗଗନା ପୁରୁଣା ହୋଇ ଫାଟି ଯାଉଛି । ତଥାପି ସେ ପ୍ରେମିକର ଆଗମନକୁ ଅପେକ୍ଷା ରଖିଛି । ପ୍ରେମିକଦେଇଥିବା ଗଗନାକୁ ସେ ବରଗଛ ତଳେ ବସି ବେଳେ ବେଳେ ବଜାଉଛି ଏବଂ ତା'ର ଆସିବା ପଥକୁ ଅନେଇଛି ।

ଧନେ ସାଜିଦିୟା ଲାହରୀ ଗଗନା
ବହିବଡ଼ର ତଲତ ବାଓଁ;
ଧନୋ ନାହିଲେ ଗଗନା ଫାଟିଲେ
ଖରିକା ମଂଗଲତ ଚାଓଁ ।

ଗଗନା ବଜାଇ ମୁଗା କପଡ଼ା ପିନ୍ଧି ବିହୁ ନାଚୁଥିବା ବେଳେ ତା'ର ରୂପ ଓ ସୁଢ଼ଳ ଶରୀର ଯେତିକି ଆକୃଷ୍ଟ ନ କରିଛି ତା'ଠୁ ବେଶି ଗଗନା ବଜାଇବାର ଶୈଳୀ ହିଁ ଆକୃଷ୍ଟ କରିଛି । କେହି ଜଣେ ବାଦ୍ୟ ଶୁଣି ମନେ ମନେ ବେଶ୍ ଆନନ୍ଦିତ ହୋଇଛି । ତା'ପରେ ଝିଅଟିକୁ ଚିହ୍ନିବା ପାଇଁ ଆଗ୍ରହ ପ୍ରକାଶ କରିଛି । ସମୟକ୍ରମେ ଉଭୟଙ୍କର ପରିଚୟ ହୋଇଛି । ଆନ୍ତରିକତା ମଧ୍ୟ ବଢ଼ିଛି । ସେ କୋମଳ କଣ୍ଠରେ ପୁଣି ଝିଅଟିକୁ ଡ଼ାକୁଛି । ନିଜେ ନିଜେ ଲାଜପାଇ ପୁଣି ଚୁପ୍ ରହୁଛି । ମନ ଭିତରେ ସେ ଡାକଟା ପ୍ରତିଧ୍ୱନୀତ ହେଉଛି ।

ତ'ତେ ଶୁନିଲୋ ଇୟାତେ ଚିନିଲୋଁ
ଲାହରୀୟେ ଗଗନା ବାୟ;
ଲାହରୀ ମାତେରେ ମାତିଲି ମଇନା
ଶରୀରେ ସରକି ଯାୟ ।

ଶେଷର ପ୍ରେମିକଟି ଗଗନାର ଶବ୍ଦଶୁଣି ଆଉ ରହି ପାରୁନି । ସେ ଭାବୁଛି ଏହି ଗଗନା ବାଦ୍ୟ ଭିତରେ ତା'ର ପ୍ରେମିକା ତାକୁ ତୁହାଇ ତୁହାଇ ଡ଼ାକୁଛି । ଏହି କୋମଳ ମଧୁର ଡ଼ାକ ତା'ର ହୃଦୟକୁ ଦୋହଲାଇ ଦେଉଛି । ମନ ଓ ପ୍ରାଣକୁ ଛୁଇଁ ଯାଉଛି । ବହୁଦୂରରୁ

ତା'ର ପ୍ରିୟତମାର ଗଗନାର ଡ଼ାକ ବୋଲି ସେ ଗଗନା ବଜାଇବା ଶୈଳୀ ଓ ସ୍ୱରରୁ ବୁଝିପାରୁଛି । ତେଣୁ ସେ କହୁଛି ଅଦିନରେ କାହିଁକି ଏ ଗଗନାର ଡ଼ାକ ? ଯେଉଁ ଡ଼ାକ ଅତ୍ୟନ୍ତ କରୁଣ ତଥା ହୃଦୟ ବିଦାରକ । ଏହା ହୃଦୟ ଭିତରେ ଭେଦ କରିଯାଉଛି ।

ତ'ତେ ଶୁନିଲୋଁ ସୁରତେ ବୁଝିଲୋଁ
ମୋର ଧନେ ଗଗନା ବାୟ,
କିନୋ ଅମାତରେ ମାତେ ମୋର ସେନାଇ ଐ
ବୁକେ ଦି ସରକି ଯାୟ ।

**ବିହୁଗୀତରେ ଟକା** – ଗୋଟିଏ ହାତ ବାଉଁଶରେ ନିର୍ମିତ 'ଟକା' ଏକ ଆକର୍ଷଣୀୟ ଲୋକବାଦ୍ୟ । ଛୋଟ ବାଉଁଶ ଖଣ୍ଡକୁ ମଝିରୁ ଅଧା ପର୍ଯ୍ୟନ୍ତ ଫଟାଇ ଦିଆଯାଇଥାଏ । ବିହୁଗୀତର ତାଳେ ତାଳେ ଏହାକୁ ବଜାଯାଇଥାଏ । 'ଟକା' ବାଦ୍ୟର ସ୍ୱର ଅତ୍ୟନ୍ତ ଛୋଟ । ଦୁଇହାତରେ ଅଧା ପର୍ଯ୍ୟନ୍ତ ଫଟା ଯାଇଥିବା ଗୋଟିଏ ବାଉଁଶର ଦୁଇଫାଳକୁ ଧରି ତାଳି ମାରିଲା ଭଳି ବଜାଯାଇଥାଏ । ବହାଗବିହୁରେ ଏହି ବାଦ୍ୟର ଆଦର ସବୁଠାରୁ ଅଧିକ । ଢ଼ୋଲ ଭଳି ଏହା ଉଚ୍ଚସ୍ୱରରେ ଡ଼ାକ ନ ଦେଲେ ହେଁ ଏହାର ଛୋଟ ଛୋଟ ଡ଼ାକଶୁଣି ବିହୁତଳିକୁ ଭାତ କଂସା ପାଖରୁ ଉଠି ଯିବାପାଇଁ ମନ ଉଚ୍ଛନ୍ନ ହୁଏ ।

ଟକାର ସରୁ ସରୁ ମାତେ ହରି ହରି
ଯକାର ସରୁ ସରୁ ମାତ;
ଟକାର ମାତେ ଶୁନିବ ରବକେ ନୋଆରି
ଏରିଯାଉଁ ପେଟରେ ଭାତ ।

ଟକାବାଦ୍ୟର ସ୍ୱର ଭିତରେ ହରିନାମର ଆଭାସ ମିଳିଥାଏ ବୋଲି ଅସମୀୟା ମନରେ ଧାରଣା ରହିଆସିଛି । ଲୋକକବି ନିଜର ଭାବପ୍ରବଣତା ଭିତରେ ବେଳେବେଳେ ଜୀବନର ଅନ୍ତିମଲକ୍ଷ୍ୟ ଶ୍ରୀ ଭଗବାନଙ୍କ ଚରଣରେ ଶରଣ ନେବାର ଅଭିଳାଷ ପୋଷଣ କରି ଥାଏ । ଆନନ୍ଦମୁଖର ସମୟ ଭିତରେ ଭଗବାନଙ୍କର ଅବଦାନକୁ ମନେ ପକାଇ ମନେ ମନେ ତାଙ୍କର ପଦବନ୍ଦନା କରିଥାଏ । ସେଥିପାଇଁ ଟକାର ବାଦ୍ୟ ଭିତରେ ହରିନାମ ଡ଼ାକ ତାକୁ ଶୁଣାଯାଇଥାଏ । ଟକା ବାଦ୍ୟ ପ୍ରତି ଥିବା ଆକର୍ଷଣକୁ ସମ୍ଭାଳି ନ ପାରି କେହି ଜଣେ ନାତି ଟୋକା ତା ପାଇଁ ଗୋଟିଏ ଟକା ତିଆରି କରି ଦେବା ପାଇଁ ତା'ର ଅଜାକୁ କହିଛି । ବାଉଁଶର ଟକା ନେଇ ସେ ବିହୁତଳିକୁ ଯିବ, ସେଠାରେ ବିହୁନାଚିବ । ଲୋକକବିର କଳ୍ପନା ସମୟ ସମୟରେ ସୁଦୂରପ୍ରସାରୀ ହୋଇଉଠେ । ସେ ସଂଗେ ସଂଗେ କଳ୍ପନା ରାଜ୍ୟରେ ଘୁରି ବୁଲେ । ଓଉଗଛରେ ମହୁମାଛି ବସା ବାନ୍ଧିଲାଭଳି ପ୍ରକୃତିର ଚିରନ୍ତନ ନିୟମ ଲୋକକବିର ଆଖିରେ ଧରା ପଡିଥାଏ । 'ଟକା' ତିଆରି କରିବା ପ୍ରସଙ୍ଗରେ ସେହି ପ୍ରାକୃତିକ ଛବିକୁ ଆଖି ଆଗକୁ ଆଣି ଥାଆନ୍ତି ।

ଔରେ ଗଛତେ ମୌୟେ ବାଁହ ଲଲେ
ଜକାଇ ପାରି ଦିୟା ଖାଓଁ ;
ବାଁହରେ ଟକାଟି ସାଜିଦିୟା ଜକାଇଟି
ବିହୁ ମାରିବ ଲୈ ଯାଓଁ ।

ବିହୁଗୀତରେ ଶରାଇ - ଶରାଇ ଆସାମର ଲୋକସଂସ୍କୃତିର ପ୍ରତୀକ । ବୈଷ୍ଣବଗୁରୁ ଶଙ୍କରଦେବ ପ୍ରତିଷ୍ଠା କରିଥିବା ନାମଘରେ 'ଶରାଇ' ଉପରେ ଗାମୁଛା ଢ଼ାକି ଏକ ସଂଗେ ଶରାଇ ଓ ଭାଗବତ ପୂଜା ମଧ୍ୟରେ ପ୍ରତ୍ୟେକ ଅସମୀୟାର ଭଗବତ୍ ପ୍ରୀତିର ନିଦର୍ଶନ ମିଳିଥାଏ । ବୈଷ୍ଣବଧର୍ମ ପ୍ରତି ଥିବା ଅଗାଧଭକ୍ତିର ନିଦର୍ଶନ ସ୍ୱରୂପ ନାମଘରେ ଶରାଇ ପୂଜା ପାଇଥାଏ । ପ୍ରତ୍ୟେକପୂଜାପାଠ ଆଦିରେ ଶରାଇରେ ପ୍ରସାଦ ରଖି ପୂଜା କରାଯାଇଥାଏ । ଶରାଇରେ ପ୍ରସାଦ ଅର୍ପଣ କରିବା ଏକ ପାରମ୍ପରିକ ବିଧି । ଦେବାଦେବୀଙ୍କ ନିକଟରେ କଞ୍ଚାବିରି, କଞ୍ଚା ଗୋଟା ମୁଗ ତଥା ବିଭିନ୍ନପ୍ରକାର ଫଳମୂଳ ଆଦି ପିତଳରେ ନିର୍ମିତ ଶରାଇରେ ରଖାଯାଇ ପ୍ରସାଦ ରୂପେ ଅର୍ପଣ କରାଯାଇଥାଏ । ସେହି ସମୟରେ ଭକ୍ତିପୂତ ହୃଦୟରେ ନିଜର ତଥା ପରିବାରର ମଂଗଳ କାମନା କରାଯାଇଥାଏ । ବିହୁଗୀତରେ ବିହୁନାଚୁଥିବା ଯୁବକମାନେ ମା ସରସ୍ୱତୀ ଏବଂ ଦେବୀପାର୍ବତୀଙ୍କର ବନ୍ଦନା ଗାଇବା ସଂଗେ ସଂଗେ ତାଙ୍କ ପ୍ରତି ଭକ୍ତି ଜଣାଇ ବିହୁଗୀତକୁ ମନେ ପକାଇ ଦେବାପାଇଁ କହିଥାଆନ୍ତି । ଏହି ପ୍ରସଙ୍ଗରେ ସେମାନେ ମା ସରସ୍ୱତୀ ଏବଂ ଦେବୀ ପାର୍ବତୀଙ୍କୁ ଶରାଇ ଦେବେ ବୋଲି ଗାଇଥାଆନ୍ତି ।

ଆଇ ସରସ୍ୱତୀ ଦେବୀ ପାରେବତୀ
ତୋମାଲୈ ବଢ଼ାଇ ଯାଓଁ ଶରାଇ ;
ପାହରା ଗୀତକେ ସୋଁବ୍ରାଇ ଦି ଯାବା
ଯେନେ ପାଞ୍ଜିକଟା ଶଳାଇ ।

ଅତିଥିସତ୍କାର କରିବା ପାଇଁ ପ୍ରତ୍ୟକ ଅସମୀୟା ଭଲ ପାଆନ୍ତି । ଅତିଥିଙ୍କୁ ଅସନ୍ତୁଷ୍ଟ କଲେ ଭଗବାନଙ୍କୁ ଅସନ୍ତୁଷ୍ଟ କରାଯାଏ ବୋଲି ଲୋକ ବିଶ୍ୱାସ ରହିଛି । ଘରକୁ ଅତିଥି ଆସିଲେ ଶରାଇରେ ପାନ ଗୁଆ-ଚୁନ ଆଦି ଦେଇ ଅତିଥିଙ୍କୁ ସମ୍ଭାଷଣ କରିବା ଏକ ପରମ୍ପରାଗତ ବିଧି । ବିବାହ, ବ୍ରତ ଘର ତଥା କୌଣସି ଆନୁଷ୍ଠାନିକ କାର୍ଯ୍ୟରେ ଶରାଇରେ ପାନ ଗୁଆ ରଖି ଅତିଥିଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଏହା ଭିତରେ ଅସମୀୟାର ଅତିଥିସତ୍କାର ଜନିତ ଉଚ୍ଚମନାର ପରିଚୟ ଆମେ ପାଇଥାଉ । ସେଥିପାଇଁ ଶରାଇର ମୂଲ୍ୟ ପ୍ରତ୍ୟେକ ଅସମୀୟା ପାଇଁ ଯଥେଷ୍ଟ ଅଧିକ । ବହାଗବିହୁଦିନ କେହି କାହାକୁ ଶରାଇ ଉପହାର ଦିଏ, ତା ହେଲେ ତା'ର ବୈକୁଣ୍ଠ ପ୍ରାପ୍ତି ହୁଏ ବୋଲି ବିଶ୍ୱାସ କରାଯାଇଥାଏ ।

---

ମୌ- ମହୁ, ବାଁହ - ବସା

ଚ'ତର ଚକରୀ ବହାଗତ ବଗରୀ
ଜେଠତେ ଆମନା ଧାନ,
ଚ'ତର ବିହୁର ଦିନା ଖନ ଶରାଇଖନ ଯାଚିବା
ତେହେ ପାବା ବୈକୁଣ୍ଠର ଥାନ ।

ଲୋକକବିର କଳ୍ପନା ସବୁବେଳେ ସୁଦୂର ପ୍ରସାରୀ । ସେଥିପାଇଁ ବିହୁ ଦିନ ଶରାଇ ଉପହାରର ମୂଲ୍ୟ ସବୁଠୁ ଅଧିକ ବୋଲି କହିବା ପ୍ରସଙ୍ଗରେ ଚୈତ୍ରରେ କରାଣ୍ଡିମାଛ, ବୈଶାଖରେ ବରକୋଳି ଏବଂ ଜ୍ୟେଷ୍ଠମାସରେ ଆମନାଧାନ ଖାଇବାର ନିୟମ ରହିଛି । ସେହିଭଳି ବୈଶାଖମାସ ବିହୁରେ ଶରାଇଦେଲେ ବୈକୁଣ୍ଠ ପ୍ରାପ୍ତି ହୋଇଥାଏ ବୋଲି ସମସ୍ତେ ବିଶ୍ୱାସ କରିଥାଆନ୍ତି ।

ବିହୁ ହୁଁଚରି ବିହୁପର୍ବର ଏକ ଅବିଚ୍ଛେଦ୍ୟ ଅଂଶ । ଏହି ସମୟରେ ଯୁବକ ତଥା ବୟସ୍କ ଲୋକମାନେ ଏକାଠି ହୋଇ ଘରଘର ବୁଲି ହୁଁଚରି ଗାଇଥାଆନ୍ତି । ସେମାନଙ୍କୁ ଗୃହସ୍ଥ ଶରାଇରେଁ ପାନଗୁଆ ତଥା କିଛି ପଇସା ଉପହାର ସ୍ୱରୂପ ଦେଇ ତାଙ୍କର ସମ୍ମାନ କରନ୍ତି । ତା'ପରେ ସେମାନଙ୍କଠାରୁ ଆଶୀର୍ବାଦ ମଧ କାମନା କରିଥାଆନ୍ତି । ପିତଳ ଶରାଇରେ ପଇସା ତଥା ପାନଗୁଆ ରଖି ତା' ଉପରେ ନାଲିଫୁଲ ବା ନାଲିଧଡ଼ିଥିବା ଧଳା ଗାମୁଛା ଖଣ୍ଡିଏ ଢ଼ାକିଦେଇ ଶରାଇ ସହିତ ସମସ୍ତ ଜିନିଷ ହୁଁଚରିଦଳଙ୍କୁ ଉପହାର ସ୍ୱରୂପ ଦେଇଥାଆନ୍ତି । କେହି ଶରାଇଟି ଆଣିବା ପାଇଁ ଡେରିକଲେ ହୁଁଚରି ଦଳ ହୁଁଚରି ମାଧ୍ୟମରେ କୁହନ୍ତି; ଖୁଣ୍ଟିରେ କଙ୍କିପଡି ଯେମିତି ସ୍ଥିର ହୋଇ ରହେ; ତମେ ସେମିତି ତଳକୁ ମୁଣ୍ଡ କରି କ'ଣ ହିସାବ କରୁଛ ?- ଆମର ସମୟ ନଷ୍ଟ ନକରି ଶରାଇଟିଏ ଆମ ପାଇଁ କାଢ଼ିଦିଅ । ଆମେ ଶରାଇ ନେଇ ତୁମଠୁ ବିଦାୟ ନେବୁ ।

*ଖୁଟିତେ ପରିବର ଜୀୟାଁ ସମନୀୟା
ଖୁଟିତେ ପରିବର ଜୀୟାଁ
ତଳକେ ମୂରକେ ଗୁଣିବ ନେଲାଗେ
ଶରାଇ ଖନ ଉଲିୟାଇ ଦିୟା ।

ଶରାଇପ୍ରତି ଥିବା ଆନ୍ତରିକତାକୁ କେହି ଏଡ଼ିଦେଇ ପାରନ୍ତି ନାହିଁ । ସେଥିପାଇଁ ହୁଁଚରି ଗାୟକମାନେ ଶରାଇ ଗୋଟିଏ ପାଇବା ଆଶାରେ ବିଭିନ୍ନ ପ୍ରକାର କଥାର ଉଦାହରଣ ଦେଇ ପ୍ରକୃତ କଥାକୁ ତା ମାଧ୍ୟମରେ ଉପସ୍ଥାପନା କରିଥାଆନ୍ତି ।

ବାରୀରେ ଟାପରେ ଏଜାର ସମନୀୟା
ବାରୀରେ ଟାପରେ ଏଜାର୍;
ଆମାରେ ଶରାଇଖନ ଦିୟା ଐ ଉଲିୟାଇ
ମନତ ନ କରିବା ବେଜାର ।

---

ଖୁଟି-ଖୁଣ୍ଟି, ଜୀୟାଁ-କଙ୍କି, ଏଜାର-ଏକ ପ୍ରକାର ଫୁଲ ଗଛ

ବାଡ଼ିରେ ଏଙ୍କାର ଗଛଟି ହେଲେ ସତରେ ତା'ର ଫୁଲଗୁଡ଼ିକ କେତେ ସୁନ୍ଦର ଦେଖାଯାଏ । ପ୍ରକୃତିର ସୁନ୍ଦରତା ନିକଟରେ ଭାବବିହ୍ୱଳ ହୋଇ ହୁଁଚରିଗାୟକଟି ଗୃହସ୍ଥକୁ ଅନୁରୋଧ କରି କହେ ଆମ ଶରାଇଟି ବାହରକୁ କାଢ଼ି ଆଣି ଆମକୁ ବିଦାୟ ଦିଅ ।

ବ୍ହାଗବିହୁ ସମୟରେ ମନଖୁସୀରେ କେହି କେହି ନିଜର ଅତି ଆପଣାର ଲୋକକୁ ଶରାଇ ଉପହାର ଦେଇଥାଆନ୍ତି । ଆସାମରେ ନାଲିଫୁଲ ପଡ଼ିଥିବା ଧଳାଗାମୁଛା, ଶରାଇ ତଥା ହୁଁଚଟି (ପାନଗୁଆ ଆଦି ରଖିବା ପାଇଁ ତିଆରି ହୋଇଥିବା ଏକ ସୁନ୍ଦର କପଡ଼ା) ଆଦି ଉପହାର ଦେଇଥାଆନ୍ତି । ଶରାଇ ଓ ଗାମୁଛା ସହିତ ଯଦି କେହି ହୁଁଚଟି ଉପହାର ଦେଇନଥାନ୍ତି ତା'ହେଲେ ସେମାନଙ୍କୁ ଲକ୍ଷ୍ୟ କରି ଯୁବକମାନେ ବିହୁଗୀତରେ ଗାଇଥାଆନ୍ତି -

ତୋମାଲୈ ଲାଗିଲେ ମରମ ସମନୀୟା
ପେଟତୋ ଲାଗିଲେ ବେଥା;
ଶରାଇର ଲଗତେ ହାଁଚଟି ନାନିଲା
ତାତେହେ ଲଗାଲା ଲେଠା ।

ପ୍ରେମିକା ପ୍ରତି ଥିବା ଆନ୍ତରିକତାକୁ ଯୁବକଟି ବିହୁଗୀତରେ ବର୍ଣ୍ଣନା କରିଥାଏ । ପ୍ରିୟା ପ୍ରତିଥିବା ସ୍ନେହ କଥା ଭାବିଭାବି ପେଟ ଭିତରେ କଷ୍ଟ ହୁଏ । ଦିନରାତି ତା'କଥା ଭାବିଭାବି ଯୁବକଟି ଭୋକଶୋଷ ଭୁଲି ଯାଏ । ଶରାଇ ସହିତ ହାଁଚଟି ନଦେଇ ସେଇଠି ହିଁ ଉପହାର ର ମର୍ଯ୍ୟାଦା କମିଲା । ହାଁଚଟି ନ ଦେଇ କେବଳ ଶରାଇ ବା ଗାମୁଛା; ଦେଲେ ଯୁବକଟିର କାମ ପୂରଣ ହେବନି । ତେଣୁ ଆସାମରେ ଶରାଇର ଆଦର ଯଥେଷ୍ଟ ବେଶି । ପିତଳ ନିର୍ମିତ ଶରାଇର ଦାମ୍‌ଠୁ ଏହା ପ୍ରତି ଥିବା ଆନ୍ତରିକତା, ଭାକ୍ତିକ ମନୋଭାବ ତଥା ପରମ୍ପରା ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନର ମୂଲ୍ୟ ଅଧିକ ।

**ବିହୁଗୀତରେ ପାନଗୁଆ** - ଋକ୍‌ବେଦରୁ ଆରମ୍ଭ କରି ପ୍ରାଚୀନ ସଂସ୍କୃତ ସାହିତ୍ୟରେ ପାନ ଖାଇବା ପ୍ରଥା ତଥା ତାମ୍ବୁଲଶବ୍ଦର ଅନେକ ବର୍ଣ୍ଣନା ରହିଛି । ମୋଗଲ ସମ୍ରାଟମାନଙ୍କ ସମୟରେ ପାନଗୁଆର ବ୍ୟବହାର ହେଉଥିଲା । ସମ୍ରାଟ ଆଉରଙ୍ଗଜେବ ପାରସ୍ୟ ସାହେବର ଆକ୍ରମଣରୁ ରକ୍ଷା କାଇବା ପାଇଁ ପାନଗୁଆ ଉପହାର ଦେଇଥିଲେ ବୋଲି ଜଣାଯାଇଥାଏ । ବରାହମିହିର 'ବୃହତ୍ ସଂହିତା' ରେ ପାନର ବିଭିନ୍ନ ଗୁଣାବଳୀ ବିଷୟରେ ବର୍ଣ୍ଣନା କରିବା ସଂଗେ ସଂଗେ ମାଲବାର ଉପକୂଳରେ ଏହାର ପ୍ରାଚୁର୍ଯ୍ୟର ବର୍ଣ୍ଣନା କରିଛନ୍ତି ।

ଅସମୀୟା ଲୋକବିଶ୍ୱାସରେ ପାନଗୁଆ ଲୋକସମାଜ ପ୍ରତି ଦେବର୍ଷି ନାରଦଙ୍କର ଏକ ବିଶିଷ୍ଟ ଅବଦାନ ଅଟେ । ଆସାମର ପ୍ରତ୍ୟେକ ଜାତି-ଜନଜାତି ମଧ୍ୟରେ ହୋମ,

ନୈବେଦ୍ୟ ପୂଜା ସମୟରେ , ନାମ ସଂକୀର୍ତ୍ତନ ସମୟରେ ଏବଂ ନାମ ଘର ସ୍ଥାପନା ଆଦି କ୍ଷେତ୍ରରେ ପ୍ରାସାଦ ସହିତ ପାନଗୁଆ ଦେବାର ନିୟମ ରହିଛି । କୌଣସି ଲୋକଙ୍କୁ ଦାନଦେଲାବେଳେ ତା ସହିତ ଯୋଡ଼ିଏ ପାନ ମଧ ଦାନ କରାଯାଇଥାଏ । ବିବାହ, ବ୍ରତ ଆଦିରେ ପାନ ଗୁଆର ଆର୍ବଶ୍ୟକତା ହୋଇଥାଏ । ଆସାମର ଜାତୀୟ ଉତ୍ସବ ବିହୁରେ ଝିଅବୋହୂମାନେ ଗୁରୁଜନମାନଙ୍କୁ ପାନ ଗୁଆର ବଟା ଅଥବା ଶରାଇ ଦେଇ ସେମାନଙ୍କୁ ନିଜର ଭକ୍ତି ଜଣାଇଥାଆନ୍ତି । ବିହୁ ଗୀତରେ ପାନଗୁଆ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ପାନ ସହିତ ରୂପବତୀ ଯୁବତୀର ଅଙ୍ଗୁଳିଗୁଡ଼ିକର ସାମଞ୍ଜସ୍ୟର ବର୍ଣ୍ଣନା ଅତ୍ୟନ୍ତ ସୁନ୍ଦର ଭାବେ କରାଯାଉଛି । ବିହୁଗୀତରେ ପାନକୁ ମୁଖ୍ୟତଃ ପ୍ରେମର ପ୍ରତୀକ ରୂପେ ଗ୍ରହଣ କରାଯାଇଛି । ଆସାମର ବିଭିନ୍ନ ଜନଜାତିମାନଙ୍କ ମଧ୍ୟରେ ପାନ ଖାଇବା ପ୍ରଥାର ବ୍ୟାପକ ପ୍ରଚଳନ ରହିଛି । ପ୍ରତ୍ୟେକ ଅସମୀୟା ବାଡ଼ିରେ ଗୁଆଗଛ ଦୁଇଧାଡ଼ି ଲଗାଇ ତା ଉପରକୁ ପାନଗଛ ମଡ଼ାଇ ଦେବାରେ ଯେଉଁ ଆନନ୍ଦ ପାଆନ୍ତି ତାହା ଅବର୍ଣ୍ଣନୀୟ । ଗାଁ ଗହଳରେ ଏମିତି ଅସମୀୟା ଲୋକ ନାହାନ୍ତି, ଯାହା ବାଡ଼ିରେ ଗୁଆଗଛ ଓ ପାନ ଗଛ ନଥିବ । ସେମାନଙ୍କ ମତରେ ଘର ଯେତେ ସୁନ୍ଦର ହେଲେ ବି ଯଦି ଘରର ଆଗ ପଟେ ଯଦି କାକିନୀ ଗୁଆଗଛ ଦୁଇଧାଡି ନଥିବ, ତା ହେଲେ ସେ ଘରର ପ୍ରକୃତ ସୌନ୍ଦର୍ଯ୍ୟ ହାନି ହେବ । ସେଥିପାଇଁ ଘରର ଆଗପଟର ସୌନ୍ଦର୍ଯ୍ୟ କାକିନୀ ଗୁଆଗଛ ଏବଂ ପଛପଟ ବାଡ଼ିର ସୌନ୍ଦର୍ଯ୍ୟ ପାନଗଛ ବଢ଼ାଇଥାଏ । ସୁନ୍ଦର ଘରକୁ ଝିଅ ବା ଯୁବତୀମାନେ ସୁନ୍ଦର ଦେଖାଯାଆନ୍ତି । ସେଥିପାଇଁ ବିଭାଘର ସମୟରେ ସେମାନଙ୍କୁ ଘରୁ ବିଦା କରିବା ପାଇଁ ମନରେ କଷ୍ଟ ହୋଇଥାଏ । ଝିଅମାନଙ୍କୁ ଅସମୀୟା ସମାଜରେ କିପରି ସ୍ନେହ-ମମତା ଭିତରେ ଲାଳନ ପାଳନ କରି ରଖିଥାଆନ୍ତି; ତାହା ବିହୁ ଗୀତରୁ ଜଣାପଡ଼େ । ଛୋଟବେଳୁ ଅତି ଆଦରରରେ ବଢ଼ାଇଥିବା ଝିଅକୁ ଦିନେ ପରଘରକୁ ପଠେଇବାକୁ ହେବ; ଏ କଥା ଭାବିଲେ କେତେ କଷ୍ଟ ଲାଗେ । ଆଉ ଝିଅକୁ ବିଦାକଲାବେଳେ ହୃଦୟ ଯେମିତି ଫାଟିଯାଏ ତାହା ଭାବିଲେ ପ୍ରତ୍ୟେକ ମା ବାପାର ଆଖିରୁ ଲୁହ ଝରିପଡ଼େ, ଏକଥା ବିହୁଗୀତରେ ଅତି ସୁନ୍ଦର ଭାବେ ବର୍ଣ୍ଣିତ ହୋଇଛି ।

ଆଗଫାଲ ଶୁଅନି କାକିନୀ ତାମୋଲ
ପାଛଫାଲ ଶୁଅନି ପାନ;
ବରଘରର ଶୁଅନି ଜୀୟରି ଶୁଆଲି
ଉଲିୟାଇ ଦିବଲୈ টান ।

---

ଶୁଅନି-ସୁନ୍ଦର, କାକିନୀ ତାମୋଲ-ଏକ ପ୍ରକାର ଗୁଆ, ଶୁଆଲି-ଝିଅ, ଉଲିଯାଇ-ବିଦା, ଦୁଖନି-ଦୁଇଟି, ବଲିୟା- ପାଗଳ

ବିହୁଗୀତ ଗୁଡ଼ିକରେ ପାନକୁ ପ୍ରେମର ପ୍ରତୀକରୂପେ ବର୍ଣ୍ଣନା କରାଯାଇଛି । ଅସମୀୟା ସମାଜ ବ୍ୟବସ୍ଥାରେ ବିବାହ ପରେ ନାରୀମାନେ ପ୍ରଥମେ ନିଜର ସ୍ୱାମୀକୁ ପାନଗୁଆର ବଟା ଉପହାର ଦେଇଥାଆନ୍ତି । ପ୍ରେମିକାମାନେ ସ୍ନେହରେ ପ୍ରେମର ନିଦର୍ଶନ ସ୍ୱରୂପ ଲମ୍ୱା ଲମ୍ୱା କରି ପାନ କାଟି ତା ସହିତ ଲବଙ୍ଗ ଆଦି ବିଭିନ୍ନ ମସଲା ଦେଇ ପ୍ରେମିକର ଆସିବା ବାଟକୁ ଅନେଇ ରହିଥାଆନ୍ତି । ସମୟ ସମୟରେ ଘରର କାମ ବ୍ୟସ୍ତତା ଭିତରେ ଆଉ ନିଜେ ପାନ ଦେବାକୁ ଆସି ନ ପାରି ଲୁଗା ସଫା କରିବା ଆଳରେ ବା ପାଣି ଆଣିବା ଆଳରେ ନଦୀତୁଠକୁ ଯାଇ ପ୍ରେମିକକୁ ଅପେକ୍ଷା କରି ରହନ୍ତି । ମନରେ ଅନେକ ରଂଗର ସ୍ୱପ୍ନ ନେଇ ସେମାନେ ନଦୀଘାଟକୁ ଯାଆନ୍ତି-

ଥୁରିୟାର ଥୁରିୟାଇ ତାମୋଲ କାଟିଛିଲା
ତା'ର ମାଜତ ଦିଛିଲା ଲଂ;
ମୋଲୈ ଆହିମ ବୁଲି କାପୋର ଧୁଇ ଦିଛିଲା
ମନତ ଲଗାଇଛିଲା ରଂ ।

ପ୍ରେମିକାର ପାନ ଖାଇ ପ୍ରେମିକ ତା'କୁ ପାଇବା ପାଇଁ ପାଗଳ ଭଳି ହୁଏ । ବିଭିନ୍ନ ମସଲାଯୁକ୍ତ ପାନ ଖାଇଲା ପରେ ପୁରୁଷଟି ଆପେ ଆପେ ନାରୀଟି ପ୍ରତି ଆକୃଷ୍ଟ ହୋଇ ତା'କୁ ପାଇବା ପାଇଁ ଇଚ୍ଛା କରେ । କୋମଳ ହାତରେ ଭାଙ୍ଗିଦେଇଥିବା ପାନର ସୁଆଦକୁ ପୁରୁଷଟି ଭୁଲିପାରେ ନାହିଁ । ମନର ଭାବ ସେ ସିଧାସଳଖ ଭାବେ ପ୍ରକାଶ କରେ ।

କିନୋ ତାମୋଲଖନି ଦିଲି ଐ ଲାହରୀ
ଦୁଖନି ହାତେରେ ଲଲୋଁ;
ସେଇନୋ ତାମୋଲଖନି ଖାବରେ ଏ୍ ପରା
ତୋମାର ଲଗତ ବଲିୟା ହଲୋଁ ।

ଗାଉଁଲିଆ ସମାଜ ବ୍ୟବସ୍ଥାରେ ବିଭିନ୍ନ ପ୍ରକାର ନୀତିନିୟମ ଭିତରେ ଲୋକମାନେ ନିଜର ଜୀବନ ଅତିବାହିତ କରନ୍ତି । ବିଦ୍ୟାଳୟ ଶିକ୍ଷାଠାରୁ ଦୂରରେ ରହିଲେ ମଧ୍ୟ ସମାଜର ଭଲମନ୍ଦ, ଉଚିତ-ଅନୁଚିତ ଏବଂ ସୂର୍ଯ୍ୟୋଦୟ - ସୂର୍ଯ୍ୟାସ୍ତ ଆଦି ସମସ୍ତ ବିଷୟରେ ସେମାନେ ବିଜ୍ଞ ଅଟନ୍ତି । ଗୋରୁ ଚରାଇବା ପାଇଁ ଢ଼ିପଜମି ଅଧିକ ଉତ୍କୃଷ୍ଟ, ଯେଉଁଠି ଧାନତଳି ଭଲ ହୁଏ । ମଇଁଷୀକୁ ଦଳଥିବା ଯାଗାରେ ଚରାଇଲେ ଭଲ । ଏହିକଥା କହି ତା ହାତରେ ଭଂଗାପାନ ଖଣ୍ଡେ ମୁଠିରେ ରଖି ନିଜର ମଣିଷଟିକୁ ଅପେକ୍ଷା କରି କରି ପାନ ଶୁଖିଲା ଅଥଚ ଲୋକଟିକୁ ପାନଦେବାପାଇଁ ସମୟ ଓ ସୁଯୋଗ ପାଇଲାନି । ପାନ ଓ ଗୁଆର ଆବଶ୍ୟକତା ଓ ଆଦର ଆସାମରେ କେତେବେଶି ତାହା ବିହୁ ଗୀତରୁ ଜଣାଯାଇଥାଏ ।

ଗରୁଚରାବରେ କଠୀୟା ତଲିଖନ
ମ'ହ ଚରାବରେ ଦଲ;
ମୂଠିର କଟା ତାମୋଲ ମୂଠିତେ ଶୁକାଲେ
ଦିବଲୌ ଜନ ପାଲୌଁ ଚଲ ।

ପାନଗୁଆ ଗଛକୁ ନେଇ ପ୍ରକୃତିର ସୌନ୍ଦର୍ଯ୍ୟ କେମିତି ଦ୍ୱିଗୁଣିତ ହୁଏ ତାହା ଲୋକକବି ବିହୁଗୀତରେ କହିବା ପାଇଁ ଭୁଲିନାହାନ୍ତି । କାକିନୀ ନାମ ଗୁଆ ଗଛରେ କପୋତ ବସା ବାନ୍ଧିଛି । ଏହା କବିର ଆଖିରେ ଧରା ପଡ଼ିଛି । ତା'ର ବସାଟି ପବନରେ ସବୁ ବେଳେ ହଲୁଥାଏ । କବିଙ୍କ କଳ୍ପନାରେ ଏହା ପ୍ରକୃତିର ପ୍ରାକୃତିକ ସୌନ୍ଦର୍ଯ୍ୟ ଅଟେ । ବସାଟି ପଡ଼ିବ ପଡ଼ିବ ଯେମିତି ଲାଗେ, କିନ୍ତୁ ପଡ଼େ ନାହିଁ । ପ୍ରେମିକଟିର ମନେ ପଡ଼ିଛି ତା'ର ପ୍ରିୟତମା ବହୁ ଦିନରୁ ରୋଗାକ୍ରାନ୍ତ ହୋଇ ଘରେ ପଡ଼ିଛି । ତା'ର ଶରୀର ଦିନକୁ ଦିନ କ୍ଷୀଣ ହୋଇ ଯାଉଛି । ସେ, ଯେମିତି ମରିଯିବ, ଆଉ ବଞ୍ଚିବନି ଲାଗୁଛି ।

" କାକିନୀ ତାମୋଲତ କପୌବାହେ ଲଲେ
ପରେ ଯେନ ପରେଯେନ ଦେଖୌଁ;
ସରୁଟି ସେନାଇ ଐ ନରୀୟା ପରିଲ
ମରେ ଯେନ ମରେ ଯେନ ଦେଖୌଁ ।

ପ୍ରେମିକ-ପ୍ରେମିକାଙ୍କ ନିକଟରେ ଭଙ୍ଗାପାନ ଖଣ୍ଡିଏର ମୂଲ୍ୟ ସବୁଠୁ ଅଧିକ ଅଟେ । ଏହା ମଧ୍ୟରେ ଆନ୍ତରର ସ୍ନେହ ଓ ପ୍ରେମ ବିଜଡ଼ିତ ହୋଇଥାଏ । ସେଥିପାଇଁ ସ୍ନେହରେ ପ୍ରେମିକାଟି ପ୍ରେମିକ ପାଇଁ ପାନଭାଙ୍ଗି ତା'କୁ ଦେବାପାଇଁ ଘରବାଡ଼ି ଖୋଜି ଖୋଜି ଶେଷରେ ଚାଷ ଜମି ପାଖରେ ଯାଇ ପହଞ୍ଚିଯାଏ । ଜମିରେ ସେ ଧାନ କାଟୁଥିବା କଥା ଅନ୍ୟଠୁ ଶୁଣି ତା'କୁ ବହୁତ ଖୋଜିଛି । ଖଣ୍ଡିଏ ଗୁଆକୁ କାଟିଦୁଇ ଖଣ୍ଡ କରି ରଂପୁର ବଜାରର ପାନ ଆଣି ସ୍ନେହରେ ତାକୁ ଦେବା ପାଇଁ ଏଜମିରୁ ସେ ଜମିକୁ ଖୋଜି ବୁଲିଛି । ଶେଷରେ ପ୍ରେମିକାଟିକୁ ଦେଖାପାଇ କହୁଛି -

ତାମୋଲଟି କାଟିଲୌଁ ଦୁଖନି କରିଲୌଁ
ରଂପୁର ବଜାରର ପାନ;
ପଥାରେ ପଥାରେ ବିଚାରି ଫୁରିଲୌଁ
କ'ତେ ଦାଇ ଆଛିଲା ଧାନ ?

ନାରୀର ରୂପକୁ ଦେଖି ପୁରୁଷର ମନ ଉପମା ଜଗତରେ ଘୁରି ବୁଲେ । ଏହା ପ୍ରକୃତିର ସ୍ୱାଭାବିକ ନିୟମ । ପ୍ରକୃତିରୁ ପୁରୁଷ ଉପମା ଗୋଟାଇ ଥାଏ । ତା'ର ପ୍ରିୟା ଅତି

ଶବ୍ଦାର୍ଥ - ଚଲ - ଉପଯୁକ୍ତ ସମୟ, ନରୀୟା - ରୋଗାକ୍ରାନ୍ତ, କପୌ - କପୋତ ଚଢ଼େଇ, ବାହ - ବସା, ତାମୋଲ - ଗୁଆ, ପଥାରେ - ଜମି, ଦାଇ - ଦାଆରେ କାଟିବା ।

ସୁନ୍ଦର । ଯେପରି କି କାକିନୀ ଗୁଆର ଏକ ପେଛା । ପ୍ରେମିକାଟି ଅତି ସରଳିଆ ହାଉଳି ଝିଅଟିଏ । ଭଗବାନ୍ ତା'କୁ ଗୁଆପେଛା ଭଳି ଗୋଲଗାଲିଆ କରିଛନ୍ତି । ମୁହଁର ସରୁ ହସ, ଦାନ୍ତର ଉଜ୍ଜ୍ୱଳତା ଯେ କୌଣସି ଲୋକକୁ ଆକୃଷ୍ଟ କରିଥାଏ । ସେ ମୁହଁକୁ କେମିତି ବା କିଏ ଭୁଲି ରହିବ ?

ଏଙ୍ଗନି ଜେଙ୍ଗନି ଦେଖିବ ଲୈ ଶୁବ୍‌ନି
କାକିନୀ ତାମୋଲର ଥୋକ;
ମୁଖର ମିଛି କିନି ଦାଁତର ଢିଲ୍‌କିନି
କେନେକୈ ପାହରୋଁ ତୋକ ।

ଭଙ୍ଗାପାନ ଖଣ୍ଡେ ଖାଇ ପୁରୁଷଟି ବଶୀଭୂତ ହୋଇଛି । ଭଙ୍ଗାମାନ ଖଣ୍ଡେ ଦେଇଥିବା ଝିଅଟିକୁ ଦେଖା କରିବା ପାଇଁ ସେ ଘାସବଣ ଭିତରେ ଲୁଚି ଲୁଚି ଯିବା ଆସିବା କରୁଛି । ଥରେ ଘାସ ବଣ ଭିତରେ ଘାସ ଲାଗି ତା' ଦେହ ହାତ ସବୁ କଟି ରକ୍ତ ବାହାରିଲା । ତଥାପି ଯୁବକଟି ପାନ ଖାଇ ଏପରି ବଶୀଭୂତ ହୋଇଛି ଯେ ସେ ଝିଅ ବ୍ୟତୀତ ଆଉ କିଛି ତାକୁ ଭଲ ଲାଗୁ ନାହିଁ । ଦେହରୁ ତାପମାତ୍ରା ବେଳକୁ ବେଳ ବଢ଼ିଯାଉଛି । ସେ ପାଣିରେ ପଡ଼ି ମଧ ଦେହରେ ଥଣ୍ଡା ଅନୁଭବ କରୁନାହିଁ । ମାନସିକ ଉତ୍ତେଜନା ସହିତ ଶରୀରର ତାପମାତ୍ରା ବେଳକୁ ବେଳ ବଢ଼ି ବଢ଼ି ଯାଉଛି ।

ଆହୋଁ କେୟାଁବନେ ଯାଉଁ କେୟାଁ ବନେ
କେୟାଁ ବନେ କାଟିଲେ ଗା;
ଥୁରୀୟା ତାମୋଲତ ଆହୁଦି କରିଲା
ପାନୀତ ପରି ନୁଜୁରାୟ ଗା ।

ମାନସିକ ଅଶାନ୍ତି ତଥା କୌଣସି ପ୍ରକାର ଦୁଃଶ୍ଚିନ୍ତା କିମ୍ବା ମନଟି ଭାରାକ୍ରାନ୍ତ ହେଲେ ଅସମୀୟା ଲୋକ ପାନଖଣ୍ଡେ ଖାଇ ମନକୁ ଟିକିଏ ହାଲ୍‌କା କରିଥାଏ । ମନର ଦୁଃଖ କଷ୍ଟକୁ କିଛି ସମୟ ପାଇଁ ପାଶୋରିବା ପାଇଁ ସେ ପାନ, ଚୂନ, ଗୁଆ ଦେଇ ପାନଖଣ୍ଡେ ଖାଇବା ପାଇଁ ଇଚ୍ଛା କରିଥାଏ । ପାନ ଚୂନ ଓ ତାମୋଲ ବା ଗୁଆ ଦେଉଥିବା ନାରୀଟିକୁ ସ୍ନେହରେ ପାନ ଦେ, ଗୁଆ ଦେ ଓ ତାମୋଲ ଦେ ଆଦି ବିଭିନ୍ନ ନାଁରେ ଡ଼ାକି କହୁଛି ମୋତେ ଖଣ୍ଡେ ପାନ ଦେ । ମୋର ମନ ସମସ୍ତ କଷ୍ଟକୁ ପାନଖଣ୍ଡେ ଖାଇ ଭୁଲିବି । ହାଲ୍‌କା ମନ ନେଇ ମୁଁ ଘରକୁ ଯିବି ।

---

ଏଙ୍ଗନିଜେଙ୍ଗନି - ହାଉଳି ବାଉଳି, ଥୋକ- ପେଛା, ନୁଜୁରାୟ - ଥଣ୍ଡା ନହୁଏ, ଗା-ଦେହ ।

ପାନେ ଦିୟା ପାନ ଦୈ    ଚୂନ ଦିୟା ଚୂନ ଦୈ
ତାମୋଲଦିୟା ତାମୋଲ ଦୈ ଖାଓଁ,
ମନର ଦୁଃଖ କଷ୍ଟ    ମନତେ ମାରିବା
ଏତିୟା ଘରଲୈ ଯାଓଁ

ତାମୋଲ କହିଲେ ଆସାମରେ ଗୁଆକୁ ଏବଂ ଡଂଗାପାନକୁ ମଧ୍ୟ ବୁଝାଇଥାଏ । ତେଣୁ ବିହୁଗୀତରେ ଉଭୟ ଅର୍ଥରେ ତାମୋଲ ଶବ୍ଦର ପ୍ରୟୋଗ କରାଯାଇଛି ।

ବିବାହ ସମୟରେ ଅସମିୟା ସମାଜ ବ୍ୟବସ୍ଥାରେ ପୁଅକୁ ଝିଅଘରର ସମସ୍ତ ଦାବୀ ପୂରଣ କରିବାକୁ ହୋଇଥାଏ । ସେହି ସମାଜ ବ୍ୟବସ୍ଥାର କଥା ବିହୁଗୀତରେତାମୋଲପାନ ଉଦାହରଣ ସହିତ ପଦକୁ ପଦ ମିଳାଇ କୁହାଯାଇଛି । ପୁଅଟି କହୁଛି ତା ବାଡ଼ିରେ ମାମୈ ଗୁଆର ପେଁଛା ଭର୍ତ୍ତି ହୋଇଛି । ମାମୈ ଏକ ପ୍ରକାର ଜଙ୍ଗଲି ଗୁଆଗଛ । ସେ ଗଛର ଗୁଆପେଛାଗୁଡ଼ିକ ସବୁତଳକୁ ଝୁଲି ବହୁତ ସୁନ୍ଦର ଦେଖାଯାଉଛନ୍ତି । ଦରକାର ହେଲେ ପୁଅଟି ଝିଅଘରର ଦାବୀ ପୂରଣ କରିବାକୁ ଯାଇ ଚାରିକୋଡ଼ି ଅର୍ଥାତ୍ ଅଶୀଟଙ୍କା ଦେବ କିନ୍ତୁ ଝିଅଟିକୁ ନିଶ୍ଚୟ ବିଭାହୋଇ ନିଜର ଜୀବନସାଥି କରି ରଖିବ । କାହିଁକି ନାଁ ସେ ତାକୁ ଛାଡ଼ି ବଞ୍ଚି ପାରିବନି ।

ଓପରର ପରା    ତଳେଲୈ ହାଲିଲେ
ମାମୈ ତାମୋଲରେ ଥୋକ;
ଲାଂଗେ ଚାରିକୁରି    ଭରିବ ପାରୋଁ ମଇ
ଏରିବ ନୋଆରୋଁ ପାରୋଁ ତୋ'କ ।

ସମାଜ ବ୍ୟବସ୍ଥାରେ 'ଜାତିପ୍ରଥା' ବିବାହ ଭଳି ଏକ ପବିତ୍ର ବନ୍ଧନକୁ ମଝିରେ ପ୍ରାଚୀର ସଦୃଶ ଛିଡ଼ା ହୋଇ ସବୁଦିନ ପାଇଁ ଛିଣ୍ଡେଇ ଦେଇଥାଏ । ଜାତିଗତ ଭେଦଭାବ ଭିତରେ ଛୋଟଜାତି, ବଡ଼ଜାତି ଆଦି ବିଭିନ୍ନ ଧାରଣା ଲୋକମନକୁ ଗ୍ରାସ କରି ରଖିଛି । ଜଣକର ହାତରୁ ଅନ୍ୟଜଣେ ପାନ ଖାଇଲେ ତା'ର ଜାତି ଯିବ ବୋଲି ଯେଉଁ ଭୟ ରହିଛି, ସରଳ ଗାଉଁଲିଆ ଲୋକମାନେ ସାଧାରଣତଃ ଏହି ଧାରଣାର ଶୀକାର ହୋଇଥାଆନ୍ତି । ଯୁବକଟି ଝିଅଟିର ହାତରୁ କଟାଗୁଆନେବା ପାଇଁ ମନା କରିଛି । ଜାତିଯିବା ଭୟରେ ସେ କହୁଛି ତୋ ହାତ ଭଙ୍ଗା ପାନ ଓ କଟାଗୁଆ ମୁଁ ଖାଇବିନି । ସେ ପୁଣି ଜାତିଗତ ମନୋଭାବକୁ ଦୂରେଇ ଦେଇ କହିଛି ମୁଁ ଅଜାତି କି ବିଜାତି ନୁହେଁ, ତୁ ମଧ୍ୟ ଅଜାତି ନୁହଁ । ସମସ୍ତେ ଗୋଟିଏ ଜାତିର ଲୋକ ।

ତୋମାର କଟାତାମୋଲ ନେଖାଓଁ ଐ ଲାହରୀ
ଆମାରେ ମରିବ କୁଲ;
ଅଜାତି ନ ହଓଁ ମଇ ବିଜାତି ନ ହଓଁ ମଇ
ତୋମାଇ ଆମର ଏକୋଟି କୁଲ ।

ପାନ ଏବଂ ଗୁଆର ମହତ୍ତ୍ୱ ଅସମୀୟା ନାରୀପୁରୁଷଙ୍କ ପାଇଁ ଅତି ପ୍ରିୟ । ପ୍ରେମିକ ପାଇଁ ପ୍ରେମିକାର ହାତଭଂଗାପାନ ଖାଇଲାବେଳେ ପ୍ରେମିକଟି ତାକୁ ଭେଟିଛି । ତା'ପ୍ରିୟାର ହାତଭଙ୍ଗା ପାନ ଖଣ୍ଡେ ଖାଇବା ପାଇଁ ବିକଳ ହୋଇ ତା'ର ଭାଇକୁ କାକୁତି ମିନତି କରି କହିଛି ତମେ ଗୁଆ କାଟି ଖାଅ, ମୋ ଲାହରୀ ହାତର ଭଙ୍ଗାପାନ ଖଣ୍ଡିକ ମୋତେ ଦିଅ । ଅସମୀୟା ସମାଜରେ ପାନର ଯେତିକି ଆଦର କଞ୍ଚାଗୁଆର ମଧ୍ୟ ସେତିକି ଆଦର । ତା' ସହିତ ନାରୀମାନେ ବିଭିନ୍ନ ପ୍ରକାର ମସଲା ଦେଇ ସୁନ୍ଦର ଭାବେ ମୋଡ଼ି ମୋଡ଼ି ପାନ ଭାଙ୍ଗି ପାରନ୍ତି । ତା'ର ଉଦାହରଣ ବିହୁଗୀତରୁ ମିଳେ ।

ରଙ୍ଗାକୈ ଗାମୋଛା ମାଜେଶେଲ ଦିୟା
ତୁମି ତାମୋଲ କାଟି ଖୋଆ;
ଲାହରୀ ହାତେରେ ଥୁରିୟାଇ ଥୁରିୟାଇ
ଆମାକୋ ଏଖନି ଦିୟା ।

ନାଲିଗାମୁଛା ମଝିରେ ଅନ୍ୟରଂଗର ଚିକ୍‌ମିକିଆ ସୂତାରେ ତିଆରି ଦୁଇଧାର ଫୁଲ ଯେ କେତେ ସୁନ୍ଦର ଦିଶୁଛି ଏବଂ ସେହି ଗାମୁଛାକୁ କାନ୍ଧରେ ପକେଇ ବସିଥିବା ପିଲାଟି ପ୍ରେମିକାର ଭାଇ ବ୍ୟତୀତ ଆଉ କେହି ନୁହେଁ । ତାକୁ ଲକ୍ଷ୍ୟକରି ଯୁବକଟି ଏହି କଥା କହିଛି ।

ଭଙ୍ଗାପାନ ଖାଇବାର ଏକ ନିୟମ ଅଛି । ପାନରେ ଚୂନ ଦେଇ ବା ଗୁଆ ଦେଇ ଖାଇଲେ ତା'ର ସ୍ୱାଦ ଭଲ ହୁଏ ନାହିଁ । ପାନ ସହିତ ଚୂନ, ଗୁଆ, ଗୁଣ୍ଡି ଏବଂ ଅଳେଇଚ, ଲବଙ୍ଗ ଆଦି ଦେଇ ଖାଇଲେ ତା'ର ପ୍ରକୃତ ସ୍ୱାଦ ଜାଣିହୁଏ । ଲବଙ୍ଗଦିଆ ପାନ ଖାଇ ପ୍ରେମିକଟି ତା'ରପ୍ରିୟାକୁ ଭୁଲିପାରୁ ନାହିଁ । ଏପଟେ ସମାଜର ଅନେକ ପ୍ରକାର ବାଧାବନ୍ଧନ, ଝିଅ ଘର ତରଫରୁ ଧନ ଦାବୀ ଆଦି ପ୍ରଥା ରହିଛି ତଥାପି ଯୁବକଟି ପଛ ଘୁଞ୍ଚା ଦେଉନାହିଁ । ସେ ଛେଳି ବିକି ଝିଅର ବାପକୁ ଧନ ଦେବା ପାଇଁ ରାଜି ଅଛି କେବଳ ତା'ର ବାପା କେତେ କୋଡ଼ି ଧନ ଦାବୀ କରୁଛି ସେଇଟା ଜାଣିବା ପାଇଁ ସେ କହୁଛି ତୁ ମୋତେ ଯେଉଁପାନ ଦେଇ ଥିଲୁ ତା ଭିତରେ କ'ଣ ଯେ ଯାଦୁ କଲୁ, ମୁଁ ଖାଇଲାବେଳେ, ଶୋଇଲାବେଳେ, ବସିଲାବେଳେ ତୋ'କଥା ମୋର ମନେ ପଡୁଛି । ତତେ ଘରକୁ ସବୁଦିନ ପାଇଁ ଜୀବନ ସାଥି କରି ନଆଣିଲେ ମୋ ମନରେ ଶାନ୍ତି ନାହିଁ ।

୧- କି କଥା କରିଲା କି ବୁଦ୍ଧି କରିଲା
ଥୁରୀୟା ତାମୋଲର ଲଗତ
ଖାଓଁତେ ଶୋଓଁତେ ଉଠୋଁତେ ବହୋଁତେ
ସଦାୟ ପରିଥାକେ ମନତ ।
୨- ତାମୋଲତ ଖାବରେ ଲଂ ଐ ସେନାଇଟି
ତାମୋଲତ ଖାବରେ ଲଂ;
ତୋମାରନୋ ବାପେରେ ଲବ କେଇ କୁରି
ଛାଗଲୀ ବେଚାବେ ଧନ ।

ଛୋଟବେଳୁ ଝିଅଟି ଅନେକ ଦୁଃଖ କଷ୍ଟ ସହି ବଢ଼ିଛି । ଘରର କାମଧନ୍ଦା ଭିତରେ କାହାକୁ ଦେଖିବାକୁ ସୁଯୋଗ ପାଉନାହିଁ । ଦିନସାରା କାମ କରି କରି ଯେତେବେଳେ ବିରକ୍ତି ଲାଗେ, ହାଲିଆ ହୋଇ ଟିକିଏ ବସିଯାଏ, ଏତିକିବେଳେ ନିଜ ପ୍ରିୟଧନ କଥା ମନେ ପଡ଼ି ମନଭିତରେ ବହୁତ କଷ୍ଟ ହୁଏ । କାର୍ଯ୍ୟବ୍ୟସ୍ତତା ଭିତରେ ତା'ର ପ୍ରିୟତମର କୋମଳ ହାତରେ ପାନଖଣ୍ଡେ ଦେବାର ସୁଯୋଗ ପାଇଲାନି । ଏ ଜୀବନ ତା'କୁ ତୁଚ୍ଛପରି ଲାଗୁଛି । ସେ ଖଣ୍ଡିଏ ପରେ ଖଣ୍ଡିଏ ପାନ ତା'ର ଧନ ପାଇଁ ଭାଙ୍ଗି ଭାଙ୍ଗି ରଖୁଛି । ଶେଷରେ ଭଙ୍ଗାପାନର ଛୋଟ ପୁଟୁଳିଟିଏ ବାନ୍ଧିଛି । ତା'ର ପ୍ରାଣଠୁ ବଳି ପ୍ରିୟତମ ଆସିଲେ ତା' ହାତରେ ପାନ ଦେଇ ମନର ସମସ୍ତ ଦୁଃଖକଷ୍ଟକୁ ଭୁଲିଯିବ, ଏହି ଆଶାରେ ସେ ବଞ୍ଚିରହିଛି ।

କାମେ କରି କରି ଆମନି ଲାଗିଲେ
ମନତ ପରି ପରି କାନ୍ଦୋ
ତୋମାରେ ସନ୍ତାପତ ଥାକିବ ନୋଆରୋଁ
ତାମୋଲତ ଟୁପଲି ବାନ୍ଧୋ ।

କେବେ କେବେ ପ୍ରିୟତମର କଥା ମନେ ପଡ଼ିଲେ ନିଜମନକୁ ନିଜେ ଆୟତ୍ତ କରିପାରେ ନାହିଁ । ଧନଟି ନଦୀ ଭିତରେ ନାଆ ମେଲି ପାଣି ମଝିରେ ଯାଉଥିଲେ ହେଁ ଯୁବତୀଟି ହାତରେ ପାନଖଣ୍ଡିଏ ଓ କଟାଗୁଆ ଖଣ୍ଡେ ନେଇ ନଦୀଘାଟକୁ ଦୌଡ଼ିଦୌଡ଼ି ଯାଏ । ଯୁବକଟି ନଦୀମଝିରେ ନାଆ ମେଲି ଯାଉଥାଏ । ଯୁବତୀଟି ନଦୀର ଧାରେ ଧାରେ ଦୌଡ଼ିଦୌଡ଼ି ଯାଏ, ଶେଷରେ ହାଲିଆ ହୋଇ ପଡ଼େ । ଦେହସାରା ଝାଳ ବୁଡ଼ିଯାଏ, ହାତ ମୁଠିରେ ପାନ ଶୁଖିଯାଏ, ତଥାପି ମନର ଅଭିଳାଷକୁ ସେ ଦମନ କରିପାରେ ନାହିଁ ।

---

ଛାଗଲି - ଛେଳି, କୁରି - କୋଡ଼ି, ଲଂ - ଲବଙ୍ଗ, ଆମନି - ବିରକ୍ତି ।

ପାନୀୟେ ପାନୀୟେ ଧନେ ନାଓ ମେଲେ
ଆମି ଲରି ମରୋ ବାମେ;
ମୁଠିର କଟା ତାମୋଲ ମୁଠିତେ ଶୁକାଲେ
ଗା-ନୋ ତିତିଲେ ଘାମେ ।

ଆସାମର ଲୋକ ବିଶ୍ୱାସରେ ପାନ ପ୍ରେମ ଓ ପ୍ରୀତିର ଚିହ୍ନ ସ୍ୱରୂପ ଜଣେ ଅନ୍ୟଜଣକୁ ଦେଇଥାଏ । ପାନ ଖାଇ ଅସମୀୟା ନାରୀମାନେ ଓଠନାଲି କରି ନିଜର ପ୍ରେମିକ ପାଖକୁ ଯାଇଥାଆନ୍ତି । ପାନଦ୍ୱାରା ଜଣେ ଅନ୍ୟ ଜଣକୁ ବଶୀଭୂତ କରିଥାଏ । ଆସାମରେ ପାନ ଲୋକ ଔଷଧିରୂପେ ମଧ ବ୍ୟବହୃତ ହୋଇଥାଏ । ପାନ ଖାଇଲେ ପେଟର ବେମାର, ଦାନ୍ତରୋଗ ଏବଂ ବିନ୍ଧା ଆଦି ଭଲ ହୁଏ ବୋଲି ଲୋକ ବିଶ୍ୱାସ କରନ୍ତି । ପାନଗୁଆର ଅଲୌକିକ ଶକ୍ତିର କଥା ବିଶ୍ୱାସ କରି ଗୋରୁ ମଇଁଷୀଙ୍କର ବେମାରରେ ପାନପିକକୁ ଔଷଧି ରୂପେ ବ୍ୟବହାର କରାଯାଇଥାଏ । 'କାମରତ୍ନତନ୍ତ୍ର'ରେ ପାନଗୁଆର ଗୁଣାବଳୀ ସଂପର୍କରେ ମଧ ଅନେକ କଥା କୁହାଯାଇଛି । କଞ୍ଚାଗୁଆକୁ ମାଟିରେ ପୋତି ଭବିଷ୍ୟତ ପାଇଁ ସଞ୍ଚିବା ନିୟମ ଅସମୀୟାର ନିଜସ୍ୱ । ସେଥିପାଇଁ ବିହୁଗୀତ ଗୁଡ଼ିକରେ ପାନ ଓ ଗୁଆକୁ ନେଇ ବହୁତ ଗୀତ ଶୁଣିବାକୁ ମିଳେ । ପାନକୁ ମୁଖ୍ୟତଃ ପ୍ରେମ ଓ ପ୍ରଣୟର ସନ୍ତକରୂପେ ପ୍ରେମିକ ପ୍ରେମିକା ପରସ୍ପରକୁ ଦେଇ ପ୍ରେମଭାବରେ ଆଦାନ ପ୍ରଦାନ କରିଥାଆନ୍ତି ।

**ବିହୁଗୀତରେ ତନ୍ତଶାଳ ଓ ଚା ବଗିଚା-** ଆସାମର ପ୍ରାଚୀନ ଲୋକଗୀତ ଗୁଡ଼ିକ ମଧରେ ବିହୁଗୀତ ଶ୍ରେଷ୍ଠସ୍ଥାନ ଅଧିକାର କରିଛି । ଦୈନନ୍ଦିନ ଜୀବନର ପ୍ରତିଟି କଥାକୁ ବିହୁଗୀତରେ ବର୍ଣ୍ଣନା କରାଯାଇଛି । ଜୀବନର ସୁଖଦୁଃଖ, ଭଲମନ୍ଦ, ଜୀବିକାର୍ଜନର ପନ୍ଥା, ଭଲ ପାଇବା, ରାଗ, ଅଭିମାନ, ହିଂସା ଭାବ ଅଥବା ଦୟାଧର୍ମର ବିଚାର ବିହୁଗୀତରେ ପ୍ରକାଶ ପାଇଛି । ପ୍ରକୃତିର ରୂପବର୍ଣ୍ଣନା, ଋତୁ ପରିବର୍ତ୍ତନ ସହିତ ବିଭିନ୍ନ ଫୁଲଫଳ, ପଶୁ ପକ୍ଷୀ ଆଦିଙ୍କର ବର୍ଣ୍ଣନା, ପକ୍ଷୀର କୋକିଳ କଣ୍ଠର ସ୍ୱର ଅତି ନିପୁଣଭାବେ ଲୋକକବି ବିହୁଗୀତରେ ଗାଇଛନ୍ତି । ଆସାମର ଚା ବିଗିଚାରେ ଅସମୀୟା ପୁରୁଷ ଓ ନାରୀମାନେ କାମ କରିବା ପାଇଁ ପସନ୍ଦ କରୁନଥିଲେ କାରଣ ବିଦେଶୀ ସରକାରଙ୍କ ଅଧିନରେ ଥିବା ଚା ବଗିଚା ଗୁଡ଼ିକରେ କାମ କରି ବ୍ରିଟିଶ୍ ସରକାରର ଅଧିନତା ସ୍ୱୀକାର କରିବା ପାଇଁ ଅସମୀୟା ଘୃଣା କରୁଥିଲ । କେହି ଜଣେ ଅଧେ ଯଦି ପେଟ ପୋଷିବା ପାଇଁ ଚା ବଗିଚାରେ କାମ କରୁଥିଲ, ଅନ୍ୟମାନେ ତାକୁ ଲଭ ପାଉ ନଥିଲେ । ନିଜେ ତନ୍ତରେ ଲୁଗାବୁଣି ବିକ୍ରୀ କରି ନିଜ ଗୁଜରାଣ ମେଣ୍ଟାଇ ସ୍ୱାଧିନ ଭାବେ ବଞ୍ଚିରହିବା ପାଇଁ ଇଚ୍ଛା କରୁଥିଲେ । ତା ବ୍ୟତୀତ ଅସମୀୟା ଯୁବକମାନେ ନିଜର ପ୍ରେମ ଓ ପ୍ରୀତିକୁ ବଜାୟ ରଖିବା ଉଦ୍ଦେଶ୍ୟରେ ଅଧିକ

---

ଲରି - ଢଳି ୨, ତିତିଲେ - ଭିଜିଲେ, ଘାମ - ଝାଳ ।

ସ୍ୱାଧୀନ ଜୀବନ ଯାପନ କରିବା ପାଇଁ ଇଚ୍ଛା କରୁଥିଲେ ମାତ୍ର ଚା ବଗିଚାରେ କାମ କଲେ ବଗିଚାରୁ ବାହାରକୁ ବେଶିଦିନ ପାଇଁ ଆସି ହେବନି, ସେହି ଆଶଙ୍କାରେ ସେମାନେ ବଗିଚା କାମକୁ ପସନ୍ଦ କରୁନଥିଲେ । କେହି ଜଣେ ଯୁବକ ବଗିଚାରୁ ପତ୍ର ଛିଣ୍ଡେଇ ଚଟାଇ ଉପରେ ବିଛାଇ ଦେଇଥିଲେ । ପତ୍ରଗୁଡ଼ିକ ଶୁଖି ଶୁଖି ତେନ୍ତୁଳିପତ୍ର ଭଳି ଝୁଣା ହୋଇଗଲା । ସେ ଠିକ୍ ସମୟରେ ପତ୍ରକୁ ଉଠେଇବା ପାଇଁ ଭୁଲିଗଲା । ତା'ର ବେଉଷାର ମୁଖ୍ୟ ସମ୍ବଳ ମଇଁଷୀ ଥିଲା ଯାହାକୁ ବିଭାଘରର ଅଳ୍ପଦିନ ଆଗରୁ ଝିଅବାପର ଧନଦାବୀ ପାଇଁ ବିକ୍ରିକରି ଦେଇଛି । ଏପଟେ ଚା ବଗିଚାରେ କାମ କରି ପାରବନି କାରଣ ବଗିଚାରେ ଠିକ୍‌ଭାବେ କାମ ନ କଲେ ସନ୍ଧ୍ୟାବେଳକୁ ମଜୁରି ମିଳିବନି । ଏହି ଚିନ୍ତାରେ ପଡ଼ି ଯୁବକଟି ଚିନ୍ତିତ ହୋଇ କହୁଛି -

ଚାହ ପାତ ଛିଙ୍ଗିଲୋଁ ଚଟାଇତ ମେଲିଛିଲୋଁ
ତେତେଲୀ ମତୀୟା ହ'ଲ;
ଶହୁରର ଜୀୟେକକ ଆନିବରେ ପରା
ଖୁଟିର ମ'ହ ବିକରେ ଗଲ ।

ଆସାମର ଚା ବଗିଚାରେ ଅନେକ ବିଦେଶୀ ସାହେବ ଆସି ମଦ ଖାଇଲେ । ଯାହାର ପ୍ରଭାବ ଅସମୀୟା ଲୋକଙ୍କ ଉପରେ ପଡ଼ିଲା । ସେମାନେ ମଦଖାଇ କାଚର ବୋତଲ ଫୋପାଡ଼ିଲେ । ତାଙ୍କର ପଇସାରେ ଅଭାବ ନଥିଲା ମାତ୍ର ଗରୀବ ଅସମୀୟା ଯୁବକଟି ଏ ଅଭ୍ୟାସର ବଶବର୍ତ୍ତୀ ହୋଇ ଦୁଃଖ ଭୋଗ କଲା । ହେଲେ ଅସମୀୟାର ହାତରେ ପଇସା ନଥିଲେ ମଧ୍ୟ ମନରେ ଦୁଃଖ ନଥାଏ ଏହା ବିହୁଗୀତରୁ ଜଣା ଯାଇଥାଏ । ମନର ବଳ ସବୁଠୁ ବଡ଼ ଧନ । ବେଶି ଧନ ହେଲେ ଲୋକ କ'ଣ ବା କରିବ ? ମଣିଷ ବଞ୍ଚିବା ପାଇଁ ଧନର ଆବଶ୍ୟକତା ନିଶ୍ଚୟ ଅଛି ମାତ୍ର ବେଶି ଧନ ଥାଇ ଜୀବନର କିଛି ମୂଲ୍ୟ ନାହିଁ ଯଦି ନିଜ ସାଙ୍ଗରେ ସଙ୍ଗିନୀଟିଏ ନାହିଁ, ଧନ ଭୋଗ କରି କ'ଣ ହେବ ? ବିହୁଗୀତରେ ଏହିଭଳି ଭାବେ ପ୍ରେମର ଜୟଗାନ କରାଯାଇଛି । ପ୍ରେମ ଓ ପ୍ରୀତି ବିନା ଜୀବନ ଯେ ତୁଚ୍ଛ, ଏକଥା ସ୍ପଷ୍ଟ ହୋଇ ଉଠିଛି ।

ଉଳାଇ ଆସିଲେ ବଗିଚାର ସାହାବଟି
ସେରାପ ଖାଇ ପେଲାଲେ ଶିଶା;
ଅନେକ ଧନବସ୍ତୁ କେଲେଇ ଲାଗିଲେ
ଶୋଆଲି ନ ହେଲେ ମିଛା ।

---

ଖୁଁଟି - ଗୁହାଳ ।

କେତେଗୁଡ଼ିଏ ଅସମୀୟା ଯୁବକ ବଗିଚାରେ କିରାନୀ ଭାବେ କାମ କରୁଥିଲେ । ସେମାନେ ଏହି ଚାକିରୀକୁ ପସନ୍ଦ କରୁ ନଥିଲେ ତଥାପି ଶ୍ରମିକଠୁ ଏହା ଭଲ ଚାକିରୀ ଭାବି ଯଥା ତଥା ମନକୁ ବୁଝାଇ ରହୁଥିଲେ, ମାତ୍ର ପ୍ରେମିକାଠୁ ଦୂରରେ ରହିଥିବାରୁ ଝିଅଟି ଦିନରାତି ତା'କୁ ଝୁରି ଝୁରି ଝଡ଼ିଯାଉଥିଲେ । ଆଷାଢ଼ ତଥା ଶ୍ରାବଣ ମାସରେ ଆମ୍ବପଣସ ପାଚିଛି ଓ କାଳିଆ ମାଙ୍କଡ଼ ସେସବୁ ଖାଉଛି । ତା'ର ପ୍ରାଣର ଧନ ପାଖରେ ନଥିବାରୁ ଝିଅଟିର ଖାଇବାକୁ ଆଦୌ ଇଚ୍ଛା ନାହିଁ । ତା'ର ପ୍ରିୟତମ ବଗିଚାର ଚାକିରୀ କରି ବହୁଦୂରରେ ଅଛି ।

ଆହାରେ ଶାଓନେ ଆମ କଠାଲ ଲାଗିଛେ
କଲୀୟା ହଲୌୟେ ଖାୟ,
ମୋର ଧନ ଆଛେଗୈ ବାଗିଚାର ଚାକରିତ
ମୋରେ ବହେ ବତର ଯାୟ ।

ଝିଅଟିର ମନରେ ଅଭିମାନ ଆସିଛି । ସେ ତା'ଠୁଦୂରରେ ରହିଥିବା ଲୋକ ଟିକୁ ଆଉ ପାଖରୁ ଛାଡ଼ିବାକୁ ରାଜି ହୋଇନାହିଁ । ସେ ରାଗରେ କହୁଛି ଆମର ବଗିଚାର ଚାକିରୀ ଦରକାର ନାହିଁ । କମ୍ପାନୀର ଧନ ମଧ ଦରକାର ନାହିଁ । ଘରେ ରହି ସବୁବେଳେ ଭାଗବତ, ରାମାୟଣ ଆଦି ପାଠ କରି ଠାକୁରପୂଜା କରିବା ପାଇଁ ତରୁଣୀଟି କହିଛି । ଦିନସାରା କର୍ମମୟ ଜୀବନ ଭିତରେ ବ୍ୟସ୍ତ ରହି ମଣିଷ ଦିନକୁ ଦିନ କିପରି ବସ୍ତୁବାଦୀ ହୋଇ ପଡୁଛି ତାହା ବହୁ ପ୍ରାଚୀନ କାଳରୁ ମଣିଷ ଅନୁଭବ୍ କରିଥିଲା । ସେଥିପାଇଁ ସୁଖଶାନ୍ତିରେ ସମୟ କଟାଇବା ପାଇଁ ପୂଜା ପାଠ ଆଦିରେ ମନଦେବା ପାଇଁ ନାରୀମାନେ ନିଜର ପୁରୁଷଙ୍କୁ ଉପଦେଶ ଦିଅନ୍ତି ।

ବାଗିଚାର ଚାକିରୀ ନେଲାଗେ କରିବ
ନେଲାଗେ କୋମ୍ପାନୀର ଧନ;
ଘରତେ ଥାକିବା ରାମାୟଣ ପଢିବା
ଶୁନି ଥାକିବରେ. ମନ ।

ନିଜ ମନର ଦୁଃଖ ଓ ବିରହ ବେଦନାକୁ ପ୍ରକାଶ କରିବା ପାଇଁ ପ୍ରେମିକାଟି ଉପମାର ପ୍ରୟୋଗ କରିଛି । ପଞ୍ଜୁରୀରେ ଶାରୀ ବନ୍ଦୀ ହୋଇ ରହିଲେ ତା'ର ସଂଗୀ ପାଖକୁ ଯାଇ ପାରେ ନାହିଁ । ହାତୀ ଶାଳରେ ହାତୀ ବନ୍ଦୀ ହୋଇଥିଲା ଭଳି କମ୍ପାନୀ କାମରେ ତା'ର ସେନାଇ ବନ୍ଦୀହୋଇ ରହିଯାଇଛି । କମ୍ପାନୀ ଚାକିରୀରେ ନିଜର ସ୍ୱାଧୀନତା ନାହିଁ । ତାହା ଏହି ଗୀତ ଭିତରେ କୁହାଯାଇଛି । ବିରହ ବେଦନାରେ ଛଟପଟ ହେଉଥିବା ଯୁବାମନରେ ଯନ୍ତ୍ରଣା ଆସିଛି । ଆଖିକୁ ନିଦ ଆସିନାହିଁ ।

ସେରାପ - ମନ, କଠାଲ - ପଣସ, କଲୀୟା - କାଳିଆ, ହଲୌ - ମାଙ୍କଡ଼ ।

ସଜାତ ବନ୍ଦୀ ହେଲେ ସଜାରେ ମଇନା
ଶାଳତ ବନ୍ଦୀ ହଲ ହାତୀ;
କୋମ୍ପାନୀର କାମତେ ସେନାଇ ବନ୍ଦୀ ହଲେ
ଚୋପନି ନ ଧରେ ରାତି ।

କମ୍ପାନୀର ଚାକିରୀରେ ଛୁଟି ମିଳେ ନାହିଁ ତଥାପି ପେଟପୋଷିବା ପାଇଁ ଅନ୍ୟ ଉପାୟ ନ ପାଇ ସେହି ଚାକିରୀ କରିବା ପାଇଁ ଯୁବକଟି ଯାଏ । ତା'ର ଯୁବତୀର ଭବିଷ୍ୟତ କଥା ଚିନ୍ତା କରି ସେ ଚାକିରୀରେ ଶାନ୍ତି ପାଇ ପାରିନି । ଦିନରାତି କେବଳ ବଗିଚା ଭିତରେ ବନ୍ଦୀ ଭଳି ରହିବ, ଏକଥା ଭାବିଭାବି ଲୋକଟି ଆଗକୁ ପାଦେ ପକାଇ ପୁଣି ପଛକୁ ପାଦେ ପକାଏ । ଚା ବଗିଚାରେ ଦିନସାରା ରହିରହି ଦେହ କଳାକାଠ ପରି ହୋଇଯାଏ ତଥାପି ଉପାୟ ଶୂନ୍ୟ ହୋଇ ଯୁବକଟି କହେ -

କୋମ୍ପାନୀର କାମଲୈ ଓଲାଲୋଁ ଲାହରୀ
ତୋମାରେ ମୁଖଲୈ ଚାଇ;
ଆଗଲୈ ଏ ଖୋଜ ଯାଓଁ ପିଛଲୈ ଏ ଖୋଜ ଯାଓଁ
ଦେହା କ'ଲା ପରି ପାୟ ।

ବଗିଚାର କାମ ବ୍ୟସ୍ତତା ଭିତରେ ଯୁବକଟି ନିଜର ମନ କଥା ଜଣାଇ କେବଳ ପ୍ରଣୟିନୀ ପାଖକୁ ଚିଠିଦିଏ । ଚିଠି ଭିତରେ ପ୍ରେମିକାଟି ତା'ର ଆପଣାର ମଣିଷକୁ ଯେପରି ଭୁଲି ନଯାଏ, ସେ କଥା ପୁରୁଷଟି ଦୁଃଖରେ ଲେଖିଥାଏ । ବିହୁଗୀତ ଗୁଡ଼ିକରେ ଚା ବଗିଚାର କଷ୍ଟପୂର୍ଣ୍ଣ ଜୀବନର କଥା ବର୍ଣ୍ଣନା କରାଯାଇଛି । ଏହା ସହିତ ଅଜ୍ପିତା ଘିତାଫୁଲ, ଜୋରହାଟର ଗୋଲାପଫୁଲ ଅତି ପ୍ରଶଂସନୀୟ ହେଲାଭଳି ଚେନିମରା ବଗିଚାରେ କାମ କରୁଥିବା ଯୁବକମାନଙ୍କର ଚିଠିରେ ସ୍ନେହ ଓ ଆନ୍ତରିକତା ଭରି ରହିଥାଏ ଏକଥା କୁହାଯାଇଛି । ଚେନିମରା ବଗିଚାରେ ଚାକିରୀ କରୁଥିବା କେତେଜଣ ଅସମୀୟା ଯୁବକମାନଙ୍କର ବିରହ ବେଦନାର କଥା ବିହୁଗୀତରେ ବର୍ଣ୍ଣିତ ହୋଇଛି ।

ତିତିକି ତିତା ଫୁଲ ଜୋରହାଟର ଗୋଲାପଫୁଲ
ଚେନିମରା ବାଗିଚାର ଚିଠି,
ଚିଠିରେ ଭିତରତ କଥା ଦି ପିଠିୟାମ
ଆମାଲୈ ନିଦିବା ପିଠି ।

ବିହୁଗୀତ ଗୁଡ଼ିକରେ ଆସାମର ଚା ବଗିଚାର ପରାଧିନପୂର୍ଣ୍ଣ ଜୀବନର କଥା ବର୍ଣ୍ଣନା କରାଯାଇଛି । ଚା ବଗିଚାରେ କାମ କରୁଥିବା ଶ୍ରମିକମାନଙ୍କୁ ବଗିଚାର ବାହାରକୁ ଆସିବା ପାଇଁ କୌଣସି ପ୍ରକାର ସୁଯୋଗ ଦିଆଯାଏ ନାହିଁ । ଅନ୍ୟାନ୍ୟ ଦେଶରୁ ଆସିଥିବା ଶ୍ରମିକମାନେ କିପରି ମୁଣ୍ଡରେ ଚା ପତ୍ର ରଖିଥିବା ଟୋକେଇ ନେଇ ଏକାସାଂଗରେ ଧାଡ଼ିକରି ବଗିଚାକୁ ଯାଆନ୍ତି ତାହା ସୁନ୍ଦର ଭାବେ ବର୍ଣ୍ଣିତ ହୋଇଛି । ବଗିଚାରେ କାମ କରୁଥିବା ଶ୍ରମିକମାନେ ଥରେ ଲୁଚି ଲୁଚି ବାଁଛୀପାତ ଛିଣ୍ଡେଇଲା ବେଳେ ଥାନାର ଦାରୋଗା ଶ୍ରମିକମାନଙ୍କୁ ଧରିନେଇ କିପରି ଜୋରିମାନା କରିଥିଲେ ତା'ର ଚିତ୍ର ବିହୁଗୀତରୁ ମିଳିଥାଏ ।

ଲାଲୀ ଲାଲୀ କରି ବଙ୍ଗାଲୀ ନାମିଲେ
ମୂରତେ ଟୁକୁରୀ ଲୈ;
ବରତଲର ଦାରୋଗାଇ ଜରିମନା କରିଲେ
ବାଁଛୀପାତ ଛିଙ୍ଗାରେ ହୈ ।

ଶବ୍ଦାର୍ଥ – ଲାଲି ୨ – ଧାଡ଼ି ୨, ବଙ୍ଗାଲି - ବାହାରର ଶ୍ରମିକ

## ଚତୁର୍ଥ ପରିଛେଦ

ସଙ୍କେତ ସୂଚୀ -

୧) ଅସମର ଲୋକ ସଂସ୍କୃତି - ନିର୍ମଳ ପ୍ରଭା ବରଦଲୈ- ପୃ - ୧୫୪-୧୫୭ ।
୨) ଅସମର ଲୋକସଂସ୍କୃତି - ପୃ - ୧୫୫ - ୫୬ - ନିର୍ମଳ ପ୍ରଭାବର୍ଦଦଲୈ
୩) 'ବହାଗୀ' - ନକୁଳ ଚନ୍ଦ୍ର ଭୂୟାଁ - ପୃ - XXi
୪) 'ବହାଗୀ - ନକୁଳ ଚନ୍ଦ୍ର ଭୂୟାଁ - ପୃ - XX - XXii
୫) 'ବିଭାଦାସି' - ଲୋକ ମୁହଁରୁ ସଂଗୃହୀତ ' ନଗାଓଁ,
୬) ହୁଁଚରି - 'ମୁକଲି ବିହୁ ଆରୁ ବିହୁନାଚ' - ପୃ - ୨୭ ଜୟକାନ୍ତ ଗନ୍ଧୀୟା ।
୭) 'ବିହୁରେ ବିରିନା ପାତ' - ଆଜିର ବାତ୍ରରି - ୧୯୯୬-୧୩- ଏପ୍ରିଲ 'ଇମରାନ ଶ୍ୱାହ' ।



# ପଞ୍ଚମ ପରିଚ୍ଛେଦ
## ବିହୁଗୀତରେ ପ୍ରାକୃତିକ ସୌନ୍ଦର୍ଯ୍ୟ

ବିହୁଗୀତ ମୁଖ୍ୟତଃ ଶୃଙ୍ଗାରଭାବ ପ୍ରଧାନ ହେଲେ ହେଁ ଏଗୁଡ଼ିକ ଭିତରେ ଆସାମର ପ୍ରାକୃତିକ ଚିତ୍ର ସୁନ୍ଦର ଭାବେ ପ୍ରକାଶ ପାଉଛି । ଡ଼ଃ ବିରଞ୍ଚି କୁମାର ବରୁଆ ତାଙ୍କ ରଚିତ ବିହୁଗୀତରେ ଆସାମର ପ୍ରକୃତିର ପ୍ରଧାନତଃ ଚାରିଟା ରୂପ ପ୍ରକାଶ ପାଇଛି ବୋଲି ମତ ଦେଇଛନ୍ତି । ସେଗୁଡ଼ିକ ହେଉଛି ୧- ଆସାମର ନଦନଦୀ ୨- ନଦୀପଠା ଏବଂ ଜମି ତଥା ପଡ଼ିଆ ୩- ପାହାଡ଼ - ପର୍ବତ, ଗଛ - ଫୁଲ - ଫଳ ୪- ପଶୁ-ପକ୍ଷୀ ସମୂହ ।

**ନଦନଦୀ -** ଆସାମର ନଈକୂଳିଆ ସଭ୍ୟତାକୁ କେନ୍ଦ୍ରକରି ସମଗ୍ର ଜାତିର ସାହିତ୍ୟ ଏବଂ ସଂସ୍କୃତି ପରିପୁଷ୍ଟି ଲାଭ କରିଛି । ଆସାମର ସଭ୍ୟତା, ସଂସ୍କୃତି ଭିତରେ ବ୍ରହ୍ମପୁତ୍ର, ଭୋଗଦଈ, ଦିଖୌ , ଦିହିଂ, କାକଜାନ, ଧନଶିରି, କଲଂ, କପିଲୀ, ସୋବ୍‌ନଶିରି ଆଦି ନଦୀ ଅସମୀୟା ଲୋକଚକ୍ଷୁରେ ଦେଖା ଦେଇଛି । ବିଶେଷ କରି ବ୍ରହ୍ମପୁତ୍ରକୁ କେନ୍ଦ୍ର କରି ଆସାମର ସଂସ୍କୃତିର ଧାରା ଚିରପ୍ରବହ ମାନ । ବିହୁଗୀତରେ ବ୍ରହ୍ମପୁତ୍ର ନଦୀର କଥା ବହୁ କ୍ଷେତ୍ରରେ ଉଲ୍ଲେଖ କରାଯାଇଛି । ବ୍ରହ୍ମପୁତ୍ର ଅସମୀୟା ପାଇଁ ଦେବତା ସ୍ୱରୂପ ଅଟେ । ବିହୁଗୀତରେ ଅସମୀୟାଟି ବ୍ରହ୍ମପୁତ୍ର ଦେବତାକୁ ପ୍ରଣାମ ଜଣାଇ ଗାଇଛି -

" ଉଟୁବାଇ ନିନିବା ବ୍ରହ୍ମପୁତ୍ର ଦେବତା,
ତାମୋଲ ଦି ମାତୋତା ନାଇ"

ଯୁବକଟି ନିଜର ଭକ୍ତି ଜଣାଇ ବ୍ରହ୍ମ ପୁତ୍ରକୁ କହୁଛି ହେ ବ୍ରହ୍ମ ପୁତ୍ର ଦେବତା ତୋ କୋଳରେ ମୁଁ ନାଆ ବାହି ଗଲାବେଳେ ମୋତେ ଭସାଇ ନେବନି, ମୁଁ ତୁମକୁ ପାନଗୁଆ ଦେଇ ପୂଜା କରି ପାରୁନି କାରଣ ପୂଜାର ସାମଗ୍ରୀ ସଜାଡ଼ିବା ପାଇଁ ମୋର ଘରଣୀ ନାହିଁ । ତେଣୁ ମୁଁ ତୁମକୁ କେବଳ ପ୍ରଣାମ କରି ମୋର ଭକ୍ତି ଜଣାଉଛି ।

ଜାତିର ସ୍ନାୟୁକେନ୍ଦ୍ର ସ୍ୱରୂପ ଲୁଇତନଦୀକୁ ଅସମୀୟା କୃଷି ସଂସ୍କୃତିର ମୂଳାଧାର ବୋଲି କୁହାଯାଇପାରେ । ଇତିହାସ ଲେଖା ପୂର୍ବରୁ ବିଭିନ୍ନ ଜନଗୋଷ୍ଠୀ ଏବଂ ଭାଷା ସଂପ୍ରଦାୟର ଲୋକମାନେ ଲୁଇତର ଝିପକୂଳରେ ବସତି ସ୍ଥାପନ କରିଥିଲେ । ଅନ୍ନର ସନ୍ଧାନରେ ତଥା ନିରାପଦରେ ବଞ୍ଚି ରହିବାର ଆଶା ପୋଷଣ କରି ସେମାନେ ଆସିଥିଲେ । ଲୋହିତ ନଦୀ ସେମାନଙ୍କୁ ବଞ୍ଚିରହିବାର ସୁଯୋଗ ଦେଇଥିଲା । ଲୋହିତର ବନ୍ୟା ବିଧୌତ ପଟୁମାଟିରେ ପ୍ରତ୍ୟେକ ଜନଗୋଷ୍ଠୀ ନିଜର କୃଷିର ବୀଜ ସିଞ୍ଚିବାର ସୁଯୋଗ ପାଇଥିଲେ ।

---

ଉଟୁବାଇ - ଭସାଇ, ଲୁଇତ - ଲୋହିତ-ବ୍ରହ୍ମପୁତ୍ର ।

ଏହି କୃଷି ବିକଶିତ ହୋଇ କାଳକ୍ରମେ ସଂସ୍କୃତିର ବଟବୃକ୍ଷର ରୂପନେଲା । ସେହି ସଂସ୍କୃତି ଲୁଇତପରୀୟା ସଂସ୍କୃତି, ଲୌହିତ୍ୟ ସଂସ୍କୃତି । ଲୁଇତକ ବାଦ୍ ଦେଇ ଏହି ଭୂଖଣ୍ଡର କଳା କୃଷ୍ଟିର ଇତିହାସ କଳ୍ପନା କରାଯାଇ ପାରେନି । ଏହି ନଦୀ ଅତି ପ୍ରାଚୀନ । ବହୁଧାରା ଏହାର ବିଶାଳ ବକ୍ଷରେ ପ୍ରବାହିତ ହେଉଛି । ମହାଭାରତର ସଭା ପର୍ବରେ ଲୌହିତ୍ୟର ନାମ ଉଲ୍ଲେଖ କରାଯାଇଛି ।

ଏବଂ ବହୁବିଧାନ୍ ଦେଶାନ୍‌ବିଜିତା ପର୍ବ୍ନାମ୍ବଜ;
ବସ୍ତୁତେଭ୍ୟ ଉପାଦାୟ ଲୌହିତ୍ୟ ମଗଦ୍ଧୁଲୀ''

ମହାଭାରତର ଶାନ୍ତିପର୍ବ, କାଳିଦାସର ରଘୁବଂଶ ଆଦିରେ ଲୌହିତ୍ୟ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ପ୍ରାଚୀନ ଆସାମରେ ମହାପ୍ରତାପରେ ରାଜତ୍ୱ କରୁଥିବା ବନମାଳୀ ବର୍ମା, ବନବର୍ମା, ରତ୍ନପାଳ, ଇନ୍ଦ୍ରପାଳ ଆଦିଙ୍କର ତାମ୍ରର ଫଳି ସମୂହରେ ଲୌହିତ୍ୟର ରୂପାଶ୍ରୟୀ ବର୍ଣ୍ଣନା ଉଜ୍ଜ୍ୱଳ ହୋଇଉଠିଛି । ବୈଷ୍ଣବ କବିମାନଙ୍କ ଲେଖନୀରେ ଲୁଇତ ବା ଲୌହିତ୍ୟ ବିରାଜ୍ୟମାନ । ଆସାମର ଇତିହାସର ଭଂଗାଗଢ଼ାରେ ଲୁଇତର ଅବଦାନ ଅନସ୍ୱୀକାର୍ଯ୍ୟ । ଏଇ ବୁଢ଼ା ଲୁଇତ୍‌ରେ ଗୋଟିଏ ଦିନ ମୋଗଲମାନେ ଆସାମକୁ ମାଡ଼ି ଆସୁଥିଲେ ପୁନର୍ବାର ଶୋନିତର ଆଦେଶ ମାନି ଫେରି ଯାଇଥିଲେ । ଲୁଇତର ବକ୍ଷରେ ଶରାଇ ଘାଟର ଯୁବକ ଥରେ ନିଜ ଜୀବନକୁ ଉତ୍ସର୍ଗ କରି ନିଜର ଦେଶ ଏବଂ ଦେଶବାସୀର ଗୌରବ ଅକ୍ଷୁର୍ଣ୍ଣ ରଖିଥିଲେ । ଥରେ ଲୁଇତର ବକ୍ଷରେ କମ୍ପାନୀ ଜାହାଜ ନିଜର ପାଦ ରଖିଥିଲା । ପଶ୍ଚିମୀୟା ସଂସ୍କୃତି ଲୁଇତର ଜଳଧାରାରେ ନୂତନତାର ଜୁଆର ତୋଳିଥିଲା । ତା'ଭିତରେ କୌଣସି ଅଜଣା ଯୁବକ ଲୁଇତର ଚିକିମିକି ବାଲିରେ କଇଁଚକୁ ଅଣ୍ଡା ଦେବାର ଦେଖିଥିଲା ।

ବିହୁଗୀତର ମୂଳକଥା କହିବାକୁ ଗଲେ ତୁଳନା ମୂଳକ ଚିତ୍ର ଅଙ୍କନ କଲାବେଳେ ବିଭିନ୍ନ ନଦୀଗୁଡ଼ିକର ସ୍ୱତନ୍ତ୍ର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଧାରା ପଡ଼ିଛି । ଧନଶିରୀର ବକ୍ଷ, ବ୍ରହ୍ମପୁତ୍ର ସେପାରିର ଦୃଶ୍ୟ, ଲୁଇତର ବାଲି, ରଂଗା ନଇ ମାଛ, ଦିଖୌନଦୀରେ ପାଣି କାଟି କାଟି ଆସୁଥିବା କମ୍ପାନୀର ଜାହାଜ, ଦିହିଙ୍ଗିନଦୀର ବର୍ହମ ଥୁରି, ଜାଁଜି ନଈର ଜାଁଜରି, ଭୋଗଦୈ ନଦୀର ମଇଳା ପାଣି, ଦିବରୁ ନଦୀର ସମ୍ମୁଖ ଭାଗ ଆଦି କାବ୍ୟିକ ବର୍ଣ୍ଣନାରେ ଉଚ୍ଛଳିତ ହୋଇ ଉଠିଛି । ତେଣୁ ପ୍ରେମର ଗୁଣଗାନ ସମ୍ବନ୍ଧରେ ସ୍ୱତଃ ପ୍ରବୃତ୍ତ ଭାବେ ନଦୀ ଏହାଁ ଭିତରକୁ ଧସେଇ ହୋଇ ସତେ ଅବା ପଶି ଆସେ ।

ଧନରେ ବାଁତରି ବେୟାଟୋ ଶୁନିଲୋଁ
କଠିୟା ତଲିଲୈ ଗୈ;
ଟରାଇ ହୋଆ ହଲେ ଉରି ଗଲୋହେଁତେନ
ମାଜତ ଧନଶିରୀ ନୈ ।

ପ୍ରିୟାଟି ଧାନତଳି ଉଠାଇବାକୁ ଯାଇ ସେଠାରେ ପ୍ରେମିକର ଅଶୁଭଖବର ଶୁଣିଲା । ତା' ଘରଠୁ ପ୍ରେମିକର ଘର ବେଶୀଦୂର ନୁହେଁ । ମଝିରେ କେବଳ ଧନଶିରୀ ନଦୀ ଅଛି । ସେ ଚଢ଼େଇ ହୋଇଥିଲେ ନଦୀ ପାର ହୋଇ ଉଡ଼ିଯାଇଥାଆନ୍ତା କିନ୍ତୁ କ'ଣ କରିବ ? ଭଗବାନ୍ ତା'କୁ ପକ୍ଷୀ ଦେଇ ନାହାନ୍ତି ମାତ୍ର ସେହି ଭଗବାନ୍ ତା'କୁ ଅପରୂପ ଯୌବନ ଦେଇ ମନରେ ପ୍ରେମର ଭଣ୍ଡାର ଢ଼ାଳିଦେଇଛନ୍ତି ।

ଧନଶିରୀ ଭେଟିଲେ ଢେଙ୍ଗେ ଐ ଢାବରେ
ଶୋବ୍‌ନଶିରୀ ଭେଟିଲେ କିହେ;
ଭଙ୍ଗା ଖୋଲାକଟି କମାରେ ଗଢ଼ିଲେ
ଯୌବନ ଗଢ଼ିଦିଲେ ଯିହେ ।

ସେହି ଭଗବାନ୍ ଧନଶିରୀ ନଦୀକୁ କଣ୍ଟାଳିଆ ଗଛ ଏବଂ ବିଭିନ୍ନ ପ୍ରକାର କାଠିକୁଟା ଓ ଦଳରେ ଭର୍ତ୍ତିକରି ଦେଲେ କିନ୍ତୁ ଶୋବନଶିରୀ ନଦୀକୁ କେଉଁଥିରେ ଭର୍ତ୍ତିକଲେ, ଏହା ଏକ ପ୍ରଶ୍ନବାଚୀ ! ଭଂଗାମାଟିର ଛୋଟ ପାତ୍ରଟିଏ ସେହି ବଡ଼ କୁମ୍ଭାର ଜଣକ ଗଢ଼ିଛନ୍ତି ଯିଏ ଯୌବନ ଗଢ଼ି ଦେଇଛନ୍ତି । ସେହି କୁମ୍ଭାରର ସୃଷ୍ଟିରେ ଭଲ ଓ ମନ୍ଦ, ସୁନ୍ଦର ଓ ଅସୁନ୍ଦର ସବୁକିଛି ରହିଛି । ସେଥିପାଇଁ ଧନଶିରୀର ଆବର୍ଜ୍ଜନାମୟ ରୂପ ସହିତ ଶୋବନଶିରୀର ଘାଟର ଚିକିମିକିଆ ବାଲି ଓ ସ୍ୱଚ୍ଛ ଜଳରାଶି ସେହିଜଣେ ସ୍ରଷ୍ଟାର ସୃଷ୍ଟି ।

ବ୍ରହ୍ମପୁତ୍ର ନଦୀର ଆରପଟେ ବର୍ହିମଥୁରି ଗଛଟିଏ ଅଛି । ସେହି ପଟକୁ ଯୁବକଟି ସବୁଦିନ କାଠ ଆଣିବା ପାଇଁ ଯାଏ । ବ୍ରହ୍ମପୁତ୍ରରେ ବନ୍ୟା ଆସିଲେ ଏପଟରୁ ସେପଟକୁ ଅନେଇଲେ ଆଖି ପାଏ ନାହିଁ, ସ୍ରଷ୍ଟାର ସୃଷ୍ଟିକୁ ଦେଖିଲେ ଲୋମ ଟାଙ୍କୁରି ଉଠେ । ଭଗବାନଙ୍କ ସୃଷ୍ଟି ପାଖରେ, ତାଙ୍କର ଇଚ୍ଛା-ବିରୁଦ୍ଧରେ ନଗଣ୍ୟ ଜୀବ ମଣିଷଟିଏ କ'ଣ ବା କରିପାରିବ ? ସେଥିପାଇଁ ସେ ବ୍ରହ୍ମପୁତ୍ର ଦେବତାଙ୍କୁ ପ୍ରଣାମ କରି କହୁଛି ହେ ଦେବତା; ତମେ ମୋତେ ଭସେଇ ନେବନି, ମୋ ଘରେ ଘରଣୀ ନାହିଁ ତୁମର ପୂଜା କରିବା ପାଇଁ ।

ବ୍ରହ୍ମପୁତ୍ରର ପାରରେ ବର୍ହିମଥୁରି ଏ ଜୁପ୍ପି
ଆମିନୋ ଖରି ଲୁରା ଠାଇ;
ବ୍ରହ୍ମପୁତ୍ର ଦେବତା ଉଟୁଆଇ ନିନିବା
ତାମୋଲ ଦି ମାତୋତା ନାଇ ।

ଯିଏ ବ୍ରହ୍ମପୁତ୍ର, ସେହି ଦିନେ ପୁରାଣ ଯୁଗରେ ଲୋହିତ୍ୟ ନଦୀ ନାମରେ ବିଖ୍ୟାତ ଥିଲେ । ସେ ପୁଣି ମହାବାହୁ ଅଟନ୍ତି । ତାଙ୍କୁ ଅନେଇଲେ ଆଖି ପାଏନି । କେତେ ଯେ ଜନଜାତିଙ୍କୁ ତା'ର କୂଳରେ କେଉଁ ଯୁଗରୁ ସେ ଆଶ୍ରୟ ଦେଇଛି, ନିଜର ଉପକୂଳରେ

---

ଢେଙ୍ଗ-ଜାବର୍-ବଣ୍ଟା-ଝଟା, ମାତା- ଡାକିବା (ପୂଜା ଦେବା), ଖରି- କାଠ, ଲୁରା-ସଂଗ୍ରହ ।

ବିଭିନ୍ନ ପ୍ରକାର ଫସଲ କରି ଅନେକ ଜନଜାତି ଆନନ୍ଦମୟ ଜୀବନ ଅତିବାହିତ କରି ଆସିଛନ୍ତି, ତା'ର ହିସାବ ନାହିଁ । ସେହି ଲୁଇତ ନଦୀ ତୁଠରେ ପ୍ରେମିକାଟି କପଡ଼ାକୁ ଚଡ଼୍‌ଚଡ଼୍ କରି କାଚି ଧୋଇଲା ବେଳକୁ ତା' ପ୍ରେମିକାଟି ନାଆ ମେଲି କାତ ମାରି ମାରି ଯିବାର ଦେଖିଲା । ଏହା ଦେଖି ତା' ଦେହ ସୋରିଷ ଫୁଟିଲା ଭଳି ତାତି ଯାଇଛି । ଏଠାରେ କବି ନଦୀର ଅନ୍ୟ ଏକ ଅବଦାନର କଥା କହିଛନ୍ତି । କଇଁଚ ଲୁଇତନଦୀର ଚିକ୍‌ମିକିଆ ବାଲି ତଳେ କେମିତି ଗଣି ଗଣି ଅଣ୍ଡା ଦେଇଥାଏ, ତାହା କେବଳ ସେହି କଇଁଚ ଜାଣେ । ଏଠାରେ ପ୍ରେମିକା ଦେହରେ ଉଠିଥିବା ତାପର ମାତ୍ରା କେବଳ ପ୍ରେମିକା ହିଁ ଜାଣେ ।

୧ - ଚିରିପ୍ ଚିରିପ୍ କରି କାପୌର ଧୁଇ ଆଛିଲୋଁ
ଚିରୀ ଲୁଇତ ଲୈ ଚାଇ;
ଚିରୀ ଲୁଇତତେ କିରିଲି ମାରିୟେ
ସେନାଇ ନାଓଏ ମେଲି ଯାୟ ।

୨ - ଲୁଇତରେ ବାଲି ବଗୀ ଚକେଟକୀ
କାଛଇ କନୀ ପାରେ ଲେଖି;
ଗା'ତ ଜୁଇ ଜ୍ୱଲିଛେ ସରିୟହ ଫୁଟିଛେ
ଧନକ ପାନୀ ଘାଟତ ଦେଖି ।

ନଦୀର ଆକର୍ଷଣ ପ୍ରତ୍ୟେକ ଅସମୀୟା ପାଇଁ ଅଧିକ । ନଦୀରୁ ମାଛ ଧରିବାଠୁ ଆରମ୍ଭ କରି ପାଣି ଆଣିବା ପାଇଁ କଳସୀ ନେଇ ଯାଇଥିବା ନାରୀଟି ସହିତ ନଦୀ ତୁଠରେ ପ୍ରେମାଳାପ କରବାରେ ଅସମୀୟା ପୁରୁଷ ଅଧିକ ଆନନ୍ଦ ପାଏ । ସେଥିପାଇଁ ନଦୀଗୁଡିକ ଆସାମର ପ୍ରତିଟି ଲୋକଗୀତରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ନଦୀ ତା'ର ଉପକୂଳରେ ଫସଲ ଉତ୍ପାଦନରେ ପାଣି ଯୋଗାଇଥାଏ । ବର୍ଷ ସାରା ମାଛ ଯୋଗାଇଥାଏ । ଗାଧୋଇବାକୁ ଆରମ୍ଭ କରି ନଦୀର ପାଣିକୁ ନିଜର ବିଭିନ୍ନ କାମରେ ଲୋକମାନେ ବ୍ୟବହାର କରିଥାନ୍ତି । ଆସାମରେ ସେଥିପାଇଁ ନଦୀଗୁଡିକୁ ପୂଜା କରି ଦେବତା ବୋଲି ଲୋକମାନେ କହିଥାନ୍ତି । ନଦୀଠୁ ଅଧିକ ପ୍ରିୟ ନିଜର ପ୍ରିୟତମା ଯାହାଙ୍କୁ କି ପ୍ରେମିକଟି ଛାଡି ରହିପାରିବନି ବୋଲି ସ୍ୱୀକାର କରିଛି । ଜଣେ କୃଷିଜୀବି ଗାଉଁଲିଆ ଲୋକ ପାଇଁ ପାଣି ସର୍ବସ୍ୱ ଅଟେ, ମାତ୍ର ତା'ର ଜୀବିକାର୍ଜନର ପନ୍ଥାକୁ ସେ ଛାଡିବା ପାଇଁ ରାଜିଅଛି ମାତ୍ର ପ୍ରେମିକାର ପ୍ରେମରେ ପାଗଳ ହୋଇ ତା' ସହିତ ଚିରଦିନ ରହିବାର ଅଭିଳାଷ ପୋଷଣ କରି କହୁଛି–

---

କିରିଲି - କଲ୍ଲୋଳ, ବଗୀ - ଧଳା, କାଛ - କଇଁଚ, କନୀ- ଅଣ୍ଡା, ସରିୟହ-ସୋରିଷ ।

ଦିଖୌ ନୈ ଏରିବ ପାରୌଁ ମଇ ଲାହରୀ
ଝାଁଜୀ ନୈ ଏରିବ ପାରୌଁ;
ତୋମାକ ଐ ଲାହରୀ ଏରିବ ନୋଆରୌଁ
ନେ ଖାୟୋ ମରିବ ପାରୋ ।

ପ୍ରେମିକଟି ନ ଖାଇ ବରଂ ଶୁଖି ଶୁଖି ମରିଯିବ, ଦିଖୌ ନଈ ଏବଂ ଝାଁଜୀ ନଈକୁ ଛାଡି ରହିପାରିବ ମାତ୍ର ତା'ର ସେନେହୀଠୁ ଦୂରରେ ରହି ପାରିବନି । ନଦୀର ବର୍ଣ୍ଣନା ପ୍ରସଙ୍ଗରେ ଲୁଇତ ନଦୀର ବାଲି ଏତେ ଗଭୀର ଓ ଏତେ ବେଶୀ ଦୂର ପର୍ଯ୍ୟନ୍ତ ବ୍ୟାପିଥାଏ ଯେ ପ୍ରେମିକଟି ତା ପ୍ରେମିକାକୁ କହିଛି–

''ଲୁଇତେ ନେ ଯାବା ବାଲି ଐ ଲାହରୀ
ଲୁଇତେ ନେ ଯାବା ବାଲି'' ।

ବାର୍ଲିରେ ଉର୍ଦ୍ଧି ଲୁଇତ ନଦୀ ଭିତରକୁ ଯିବା ପାଇଁ ବାରଣ କରି ସବୁଠୁ ଅପରିଷ୍କାର ନଦୀର କଥା ପ୍ରେମିକାଟି ତା' ପ୍ରେମିକାକୁ ଏହିଭଳି ଭାବେ କହିଛି–

ନୈରେ ଲେତେରା ଖୁଲୀୟା ଖୁବୀୟା
ଭୋଗଦୈ ଲେତେରା ପାନି;
ଶୋଆଲୀ ଲେତେରା ବିଜୁଲୀ ଚକୁଆ
ମୁଖତ ମିଶିକିୟା ହାଁହି ।

ଭୋଗଦୈ ନଈର ପାଣି ଅଧିକ ଅପରିଷ୍କାର । ବିଜୁଳୀ ଭଳି ଆଖି ଦୁଇଟି ସବୁବେଳେ ଚଳଚଞ୍ଚଳ ହେଉଥିବା ଝିଅଟି ମଧ୍ୟ ଅତି ଅପରିଷ୍କାର । ତଥାପି ଯୁବକଟି ତା' ଆଖିର ଚଞ୍ଚଳତା ଓ ହସହସ ମୁହଁର ଆକର୍ଷଣରେ ଆକର୍ଷିତ ହୋଇଯାଇଛି । ଝିଅଟି ଯେ କୌଣସି ଲୋକକୁ ଦେଖିଲେ ପ୍ରଥମେ ମୁହଁରେ ହସଟିଏ ଆଙ୍କିଦିଏ । ନଦୀର ବର୍ଣ୍ଣନା ଓ ଗୁଣାବଳୀ ବର୍ଣ୍ଣନା ସହିତ ପ୍ରେମିକାର ଗୁଣର ବର୍ଣ୍ଣନା ବାସ୍ତବରେ ଲୋକକବିର ଏକ ସୁନ୍ଦର କଳ୍ପନା ।

ଦିଖୌ ନଦୀରେ ସବୁବେଳେ କଂପାନୀର ଜାହାଜ ଯିବା ଆସିବା କଲାବେଳେ ନଦୀର ପାଣି ଉଛୁଳି ପଡ଼େ । ନଦୀ ମଝିରେ ଏକ ପ୍ରକାର ଆଲୋଡ଼ନ ସୃଷ୍ଟି ହୁଏ ଯେମିତି କି ଢିଙ୍କିରେ କୁଟିଲା ବେଳକୁ ଢିଙ୍କି ଭରାଣ୍ଡିରେ ଏକ ପ୍ରକାର କଂପନ ସୃଷ୍ଟି ହୋଇଥାଏ । ଏହା ସ୍ୱାଭାବିକ ଅଟେ । ସେମିତି ଦିନେ ଯୁବତୀଟି ଯୁବା ବୟସରେ ପଦାର୍ପଣ କଲାଦିନୁ ତା'ର ହୃଦୟରେଏକ ପ୍ରକାର ଆଲୋଡ଼ନ ସୃଷ୍ଟି ହୋଇଛି । ମନ ଭିତରେ କୌତୁହଳ ଦେଖାଦେଇଛି । ଏହି ଭାବ ଯୌବନ ପ୍ରାପ୍ତି ସଂଗେ ସଂଗେ ସ୍ୱତଃ ପ୍ରବୃତ୍ତ ଭାବେ ଆସିଥାଏ । ଯୁବତୀର ମନର କଥା ଖୋଲାଖୋଲି ଭାବେ ବନଘୋଷାରେ ପ୍ରକାଶ ପାଇଛି ।

---

ଲେତେରା - ଅପରିଷ୍କାର ।

ଦିଖୌ ଗୁମେ ଗୁମାଇ କୋମ୍ପାନୀର ଜାହାଜ ଐ
ଢେଁକୀ ଗୁମେ ଗୁମାଇ ଥୋରା;
ବୁକୁ ଚମେ ଚମାଇ ମନେ କୁରୁଲିୟାଇ
ଗାଭରୁ ହବରେ ପରା ।

ଯୌବନର ଉଦାମତାରେ ମଣିଷ ବେଳେବେଳେ ଭୁଲ୍ କରି ବସେ । ଏହା ଏକ ଶତ୍ରୁ ସମୟ ବୋଲି କେହି କେହି ମନ୍ତବ୍ୟ ଦେଇଥାନ୍ତି କାରଣ ଏହି ସମୟରେ ମଣିଷ ଅଧିକ ଉଶୃଙ୍ଖଳିତ ହୋଇଥାଏ । ଗୁରୁଜନମାନଙ୍କର ଉପଦେଶକୁ ଏ କାନରେ ପଶେଇ ସେ କାନରେ ବାହାର କରିଦିଏ । ସ୍ଥିର ମସ୍ତିଷ୍କରେ କୌଣସି କଥା ନ ଭାବି ବିଚଳିତ ଭାବେ ଯେ କୌଣସି ସିଦ୍ଧାନ୍ତ ନେଇଥାଏ । ଏହି ଯୌବନରେ ଲୁଇତ ନଦୀ ନିକଟରେ ଥିବା ଶିମିଳି ଗଛର ଡାଳଗୁଡ଼ିକୁ ଗୋଡ଼ରେ ମାରି ମାରି ଭାଙ୍ଗି ପକାଇଥାଏ, ଦୁଆରବନ୍ଧକୁ ମଧ୍ୟ ସେ ଗୋଡ଼ରେ ମାରି ଭାଙ୍ଗିଦିଏ । ସେଥିପାଇଁ ଯୌବନକୁ ବେଳେବେଳେ ମଣିଷ ଦୋଷାରୋପ କରି କହେ—

ଲୁଇତର କାଷରେ ଗୋଧାକୈ ଶିମଲୁ
ଗୋର ମାରି ଭାଙ୍ଗି ଯାଓଁ ଡାଳ;
ଗୋର ମାରି ଭାଙ୍ଗି ଯାଓଁ ବାଟରେ ଜପନା
ଇଓ ଏକ ଶତ୍ରୁର କାଳ ।

ଦିଖୌ ନଦୀରେ ମାଛ ମାରିବାର ଦୃଶ୍ୟ ଅତ୍ୟନ୍ତ ଆନନ୍ଦଦାୟକ ହୋଇଥିବାରୁ ଝିଅଟିକୁ ନଦୀର ଆରପଟ ଗାଁରେ ବିଭାଦେବାରୁ ଝିଅଟି ଦୁଃଖ କରି କହୁଛି— ଛୋଟବେଳେ ତା'ର ବାପା ମାଛଧରି ରଖିବା ପାଇଁ ଖାଳେଇ ଠିକ୍ କରି ଦେଇଥିଲେ । ସେ ଖାଳେଇ ଆଜି ପର୍ଯ୍ୟନ୍ତ ଅଛି କିନ୍ତୁ ତା' ମୁହଁ ପଟେ ପୋକ ଲାଗି ତା'କୁ ଅଧା ଖାଇ ଶେଷ କଲେଣି, ତଥାପି ବାପର ସ୍ନେହର ସନ୍ତକ ସ୍ୱରୂପ ସେ ଖାଳେଇଟିକୁ ଝିଅଟି ଆଜି ପର୍ଯ୍ୟନ୍ତ ନିଜ ପାଖରେ ସାଇତି ରଖିଛି । ଦିଖୌ ନଦୀକୁ ପାର କରିଦେଇ ତାକୁ କେଉଁ ଏକ ଦୂର ରାଇଜରେ ବିଭା କରି ଦେଉଛନ୍ତି । ସେ ଆଉ ମାଛ ମାରିବା ପାଇଁ ସୁଯୋଗ ପାଇବନି । ଅସମୀୟା ନାରୀର କର୍ମ ପ୍ରେରଣାର ଭାବ ନିମ୍ନ ଗୀତରେ ପ୍ରକାଶ ପାଇଛି ।

ସରୁତେ ପିତାଦେଓ ଜକାଇ ସାଜିଦିଲା
ନାଲତୋ ଖିନ୍ଧିଲେ ଘୁନେ;
ଦିଖୌ ପାରେ କରି ଦିୟା ବିୟା କରି
ଧିରୁ ମାଛ ମାରିବ କୋନେ ?

ଗାଭରୁ-ଯୁବତୀ, ଗୋର-ଗୋଇଠା, ଜପନା-ଦୁଆର ବନ୍ଧ, କାଷରେ-ନିକଟରେ, ସରୁତେ-ଛୋଟବେଳେ ।

ଲୋକକବି ଭାବପ୍ରବଣ ହୋଇ ବେଳେବେଳେ କଳ୍ପନା ଜଗତରେ ଘୁରି ବୁଲନ୍ତି । ତା'ରି ମାଧ୍ୟମରେ ସେ ଉପମାର ପ୍ରୟୋଗ କରିଥାନ୍ତି । ଲୋକକବିର କଳ୍ପନାରେ ଘରକୁ ଘରଣୀ ସୁନ୍ଦର ଦିଶିଲା ଭଳି ସ୍ଥାନ ଭେଦରେ ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ଉପମା ଲୋକଦୃଷ୍ଟିରେ ସୁନ୍ଦର ଭାବେ ପ୍ରତିଫଳିତ ହୋଇଥାଏ । ଲୁଇତ ନଦୀର ସୌନ୍ଦର୍ଯ୍ୟ ହେଉଛି ତା'ର 'ଚର' ବା 'ପଠା' କାରଣ ଏହାର ଚାରିପଟେ ପାଣି ଘେରି ରହିଥାଏ । ସମୁଦ୍ରର ସୌନ୍ଦର୍ଯ୍ୟ ସେହିଭଳି ଏହାର ଉପଦ୍ୱୀପ ଅଟେ । ଆକାଶର ସୌନ୍ଦର୍ଯ୍ୟ ଏହାର ଛୋଟ ଛୋଟ ଅସଂଖ୍ୟ ତାରାଗୁଡିକ ହିଁ ବଢ଼ାଇଥାନ୍ତି । ସେହିଭଳି ଜଣେ ପୁରୁଷର ଜୀବନରେ ନାରୀଟିଏ ଆସି ତା'କୁ ସମସ୍ତ କ୍ଷେତ୍ରରେ ପ୍ରେରଣା ଯୋଗାଇବା ସଂଗେ ସଂଗେ ଘରର ସୌନ୍ଦର୍ଯ୍ୟ ବଢ଼ାଇଥାଏ ମାତ୍ର ପରିସ୍ଥିତିରେ ପଡ଼ି ଯଦି କେହି ପୁରୁଷ ତା'ର ସ୍ତ୍ରୀଠୁ ଦୂରରେ ରହିଥାଏ, ନାରୀଟି ମନଦୁଃଖରେ ବିଭିନ୍ନ ଉପମାର ଅବତାରଣା କରି ଶେଷରେ କହେ– କେମିତି ନିଷ୍ଠୁର ହୃଦୟ, ମୋଠୁ ବହୁ ଦୂରରେ ରହି କେବଳ ଚୂଡ଼ାଭଜା ଖାଇ ଯେମିତି ସେମିତି ସମୟ କଟାଇ ଦେଉଛନ୍ତି । ତେଣୁ ବିହୁଗୀତ ମାଧ୍ୟମରେ ଏହିଭଳି ସାଂସାରିକ ଜୀବନର ସୁଖଦୁଃଖର ଛବି ଫୁଟି ଉଠିଛି ।

ଲୁଇତର ଶୁଅନି ମାଜୁଲି ଚାପରି
ସରଗର ଶୁଅନି ତରା;
କୋନଟୋ ଚିତେରେ ଆମାକେ ଏରିଥୈ
ଖାଲି ଦୋଆ-ଭଜା ଚିରା ।

ଦିହିଙ୍ଗ ନଦୀର ପାଣିରେ ଲୁଗାପଟା ପରିଷ୍କାର ଭାବେ ସଫା ହୁଏ ବୋଲି ଲୋକମାନେ କହିଥାନ୍ତି । ସେଥିପାଇଁ ଧୋବଣୀଗୁଡିକ ସାଧାରଣତଃ ଦିହିଙ୍ଗ ନଦୀରେ ଲୁଗା ସଫା କରନ୍ତି । 'ମିରି' ଜାତିର ଲୋକମାନେ ଲୁଇତ ନଦୀକୂଳରେ ଚାଷବାସ କରି ନିଜର ଜୀବିକା ଅର୍ଜନ କରିଥାନ୍ତି । ବିହୁଗୀତରେ ଅସମୀୟା ସମାଜରେ ଥିବା ବିଭିନ୍ନ ଜାତିର ଲୋକମାନଙ୍କର ନିର୍ଦ୍ଦିଷ୍ଟ କର୍ମର ଉଦାହରଣ ମଧ୍ୟ ମିଳିଥାଏ, ଯେପରି ଧୋବଣୀ କପଡ଼ା ଧୋଇବା କାମରେ ନିଯୁକ୍ତା ଅଟେ, ବାରିକ ବା କେଉଟ ଆଦିଙ୍କର ସମାଜରେ ନିର୍ଦ୍ଦିଷ୍ଟ କାମ କରିବା ପାଇଁ ସାମାଜିକ ବ୍ୟବସ୍ଥା ରହିଛି ତା'ର ଚିତ୍ର ବିହୁଗୀତ ଗୁଡିକରେ ବର୍ଣ୍ଣିତ ହୋଇଛି । ଏହା ସହିତ ଅସମୀୟା ପୁରୁଷର ନାରୀ ବିନା ମାନସିକ ପରିସ୍ଥିତିର କଥା କୁହାଯାଇଛି । ଆସାମରେ ନାରୀର ସ୍ଥାନ ବହୁ ଉଚ୍ଚରେ । ନାରୀକୁ ଅସମୀୟା ପୁରୁଷ ନିଜର ସହଧର୍ମିଣୀ ଓ ସହକର୍ମିଣୀ ରୂପେ ଆଦର ଓ ସମ୍ମାନ ଦେବା ସହିତ ସ୍ତ୍ରୀ ଓ ପୁରୁଷକୁ ସମଦୃଷ୍ଟିରେ ଦେଖିଥାନ୍ତି । ସେଥିପାଇଁ ସେ ଭାତ ନ ଖାଇ, ପାଣି ନ ପିଇ ମରିଯିବ, ତା'ର ଘରଦ୍ୱାର ବା କୌଣସି ଆସବାସ

ମାଜୁଲି ଚାପରି - ମାଜୁଲି ନଦୀଦ୍ୱୀପ, ଚିରା - ଚୂଡ଼ା ।

ପତ୍ରରେ ମନନାହିଁ କାରଣ ତା' କପାଳରେ ବିଧାତା ସ୍ତ୍ରୀ ଭୋଗ, ଦେଇନାହିଁ । ଏହା ଅସମୀୟା ପୁରୁଷର ମାନସିକ ଦୁଃଖର କାରଣ, ବିହୁଗୀତରେ ତା'ର ଆଭାସ ସ୍ପଷ୍ଟ ।

ଦିହିଙ୍ଗର ଘାଟତେ ଧୁବୁନୀ ନାମିଲେ
ନାମେ ଲୁଇତତେ ମିରି;
ନେ ଖାଓଁ ଭାତେ ପାନି ନଲଓଁ ଘରେବାରୀ
କପାଲତ ନାଇକିୟା ତିରୀ ।

ଆସାମରେ 'ମିରି' 'ମିଶିମ' ଆଦି ଜନଜାତି ବସବାସ କରିବା କଥା ବିହୁଗୀତରେ ବର୍ଣ୍ଣିତ ହୋଇଛି । ନଦୀର ବର୍ଣ୍ଣନା ପ୍ରସଙ୍ଗରେ 'ମିରି' 'ମିଶିମ୍' ଆଦି ଜନଜାତିର ଭାଷା ଅସମୀୟା ଯୁବକଟି ବୁଝିପାରେ ଅଥଚ ତା' ପ୍ରେମିକା ବିଷୟରେ କୌଣସି ଖବର ସେ ଚେଷ୍ଟାକରି ମଧ୍ୟ ପାଇପାରୁନି, ସେଥିପାଇଁ ଦୁଃଖରେ କହୁଛି ନଦୀ ସେପଟେ ଶିମିଳି ଗଛଟିଏ ଅଛି, ସେହି ଗଛରେ ମାଛରଙ୍କା ପକ୍ଷୀଟିଏ ବସା ବାନ୍ଧି ଶାନ୍ତିରେ ଅଛି କାରଣ ନଦୀରୁ ମାଛ ଧରି ସେ ଖୁସିରେ ଖାଏ ଓ ଗଛରେ ଶାନ୍ତିରେ ତା' ଛୁଆଙ୍କ ସହିତ ରହେ । ଏକଥା ଯୁବକଟି ବହୁଦିନ ଆଗରୁ ଜାଣିଛି । ଯୁବକଟି ସବୁକଥା ଜାଣେ ଅଥଚ ନିଜ ପ୍ରିୟାର ଖବର ସେ ଚେଷ୍ଟାକରି ମଧ୍ୟ ପାଇପାରୁନି ।

ନୈରେ ସିପାରେ ନାରାୟଣ ଶିମଳୁ
ତା'ତୋ ଲଲେ କୁରୁଆଇ ବାହ;
ମିରି ମିଶିମିର ଦୋଆନୋ ବୁଜିବ ପାରୋଁ ମଇ
ତେଓ ନେପାଓଁ ତିରୋତାର ଆଶ ।

ସ୍ନେହ ଓ ପ୍ରେମରେ ଭଲମନ୍ଦ ବା ଧନୀ ଦରିଦ୍ର ଅଥବା ଜାତିଭେଦର ଭାବ ମନକୁ ଆଣିବା ଉଚିତ ନୁହେଁ କାରଣ ଭଗବାନ ନାରୀ ପୁରୁଷଙ୍କୁ ସୃଷ୍ଟି କଲାବେଳେ ଏସବୁ ବାଛବିଚାର କରି ନଥିଲେ, ଏହା କେବଳ ମଣିଷ ସୃଷ୍ଟି କରିଛି । ଏହି କଥା କହିବାକୁ ଯାଇ ଜଣେ ଯୁବକ ଦୈନନ୍ଦିନ ଜୀବନର ଚିତ୍ରକୁ ତା' ମାଧ୍ୟମରେ ପ୍ରକାଶ କରିଛି । ଭୋଗଦୈ ନଦୀର ମାଛ ଅଧିକ ସ୍ୱାଦଯୁକ୍ତ ଏବଂ ଉକ୍ତ ନଦୀରେ ପ୍ରଚୁର ପରିମାଣରେ ମାଛ ମିଳେ ବୋଲି ସମସ୍ତେ କୁହନ୍ତି । ତେବେ ସେ ନଦୀରୁ ମାଛ ଧରିବା ପାଇଁ ଯୁବକଟି ଖଇଁଚି ବସାଇ ଅତି ଆଗ୍ରହରେ ଅପେକ୍ଷା କରି ଶେଷରେ କଇଁଚଟିଏ ଖଇଁଚି ଭିତରୁ ପାଇଛି । ସେ ସଂଗେ ସଂଗେ ଭାବପ୍ରବଣ ହୋଇ କହିଛି ସେହି ଗୋଟିଏ ଈଶ୍ୱର ଯିଏ ନାରୀ ଓ ପୁରୁଷକୁ ସୃଷ୍ଟି କରିଛନ୍ତି, ଯାହା

---

ଧୁବୁନୀ - ଧୋବଣୀ, ତିରୀ - ସ୍ତ୍ରୀ, କୁରୁଆଇ - ଚିଲପରି ପକ୍ଷୀ, ଦୋଆନୋ - କଷ୍ଟ ଭାଷା, ଆଶ - ସଂକେତ ।

ସୃଷ୍ଟିରେ ଭଲମନ୍ଦ, ସୁନ୍ଦର-ଅସୁନ୍ଦରର ବାଛ ବିଚାର କରିବା ଉଚିତ ନୁହେଁ କାରଣ ଏ ଦୁଇଦିନିଆ ରୂପର କୌଣସି ସ୍ଥାୟୀ ମୂଲ୍ୟ ନାହିଁ । ଏ ମର ଶରୀର ଦିନେ ନା ଦିନେ ମାଟିରେ ମିଶିବ, ତେଣୁ ଭଗବାନଙ୍କ ସୃଷ୍ଟିରେ ସବୁକିଛି ସୁନ୍ଦର ।

ଭୋଗ ଦୈ ନୈତେ ପଲ ବାଇଛିଲୋଁ
ଚାବତ ପାଇ ଚାଲୋଁ କାଛ;
ଏକେଜନେ ଈଶ୍ୱରେ ତୋମାକ-ମୋକ ସ୍ରଜିଲେ
କିନୋ ଭାଲ-ବେୟା ବାଛ ।

ପ୍ରେମିକଟି ଅନେକବାର ନଈ କୂଳେ କୂଳେ ତା'ର ସ୍ନେହର ମଇନାକୁ ଖୋଜି ଖୋଜି ଯାଇଛି । ଅନେକ ସମୟ ଅପେକ୍ଷା କରିଛି, ପୁଣି ନଦୀ କୂଳେ କୂଳେ ବହୁତ ବାଟ ପର୍ଯ୍ୟନ୍ତ ଯାଇଛି । ଥରେ ପ୍ରେମିକାକୁ ଦୂରରେ ଦେଖି 'ମଇନା' 'ମଇନା' ବୋଲି ଡାକିଛି, ଘରକୁ ଫେରିଆସି ପୁଣି ତା' ପରଦିନ ଯାଇ ଡାକିଛି ଅଥଚ ତା'ଠାରୁ କୌଣସି ଜବାବ ପାଇନି । ଏପରିକି ଝିଅଟି ଟିକିଏ ସମୟ ଛିଡ଼ା ହୋଇ ପଛକୁ ଫେରି ମଧ୍ୟ ଅନେଇନି । ପ୍ରେମର ଯନ୍ତ୍ରଣାରେ ଛଟପଟ ହେଉଥିବା ଯୁବକଟି କହୁଛି, ଦିନସାରା ଡାକି ଡାକି, ଅପେକ୍ଷା କରି କରି ଶେଷରେ ସେ ଭୋଗଦୈ ନଈରେ ମାଛ ଧରିବା ପାଇଁ ଜାଲ ବସେଇ ପ୍ରେମିକାକୁ ଅପେକ୍ଷା କରି ରହିଲା । ଜାଲରେ ବହୁତ କରାଣ୍ଡି ମାଛ ପଡିଲେ । ସ୍ନେହର ସେନାଇଟି କି ପ୍ରକାର ମାୟା ଜାଲରେ ପଡି ଥରଟିଏ ପାଇଁ ମଧ୍ୟ ନଦୀକୂଳକୁ ଆସୁନାହିଁ । ବ୍ୟର୍ଥ ମନ ନେଇ ଯୁବକଟି କହୁଛି ସକାଳଠୁ ସନ୍ଧ୍ୟା ପର୍ଯ୍ୟନ୍ତ ବସି ବସି ମଧ୍ୟ ତା'କୁ ଦିନଟିଏ ଭିତରେ ଥରଟିଏ ପାଇଁ ଦେଖିଲାନି ।

୧ - ନୈର ଧାରେ ଧାରେ ଗଲି ଐ ମଇନା
ପାନୀର ଧାରେ ଧାରେ ଗଲି;
ମଇନା ମଇନା ବୁଲି ମାତୋଁ ତିନିବେଲି
ଉଭତି ନୋଚୋଆ ହଲି ।

୨ - ଭୋଗଦୈ ଦାଁତିତେ ପାତୋଁ ଲାଙ୍ଗୀ ଜାଲ
ଉଭତି ଲାଗିଲେ ମୋଆ;
କିନୋ ମାୟାଜାଲଁତ ପରିଲି ସେନାଇଟି
ନେ ଦେଖୋଁ ଗଧୂଲି ପୁଆ ।

ପ୍ରେମିକାକୁ ପ୍ରେମିକଟି ମନେ ମନେ ଖୋଜୁଥିଲା ବେଳେ ପ୍ରେମିକା ମଧ୍ୟ ବହୁଦୂରରେ ଥାଇ ତା'ର ମନର ମଣିଷଟିକୁ ନିଜ ପାଖରେ ଖୋଜୁଥାଏ । ପ୍ରକୃତିର ରୂପରେ ଆକୃଷ୍ଟ

ପଲ - ଖଇଁଚି, ଉଭତି - ଫେରି, ମୋଆ - କରାଣ୍ଡି ମାଛ, ପୁଆ - ସକାଳ ।

ହୋଇଥିବା ଯୁବତୀଟି ଜଙ୍ଗଲରେ ନିଆଁ ଲାଗିବା ଦେଖି ଦୁଃଖ କରି କହୁଛି ଜଙ୍ଗଲରେ କିଏ ବା ନିଆଁ ଲଗାଇଲେ, ଜଙ୍ଗଲ ପୋଡ଼ି ଯିବାରୁ ଆକାଶକୁ ପାଉଁଶ ଉଡିଯାଉଛି । ତା'ସହିତ ପ୍ରେମିକାଟିର ହୃଦୟରେ କିଏ ବା ନିଆଁ ଲଗେଇ ଦେଇଛି । ସେ ନିଆଁ ଲିଭେଇବା ପାଇଁ ଯାହାର ଆବଶ୍ୟକ, ସେ ଲୋକଟି ପାଖରେ ନାହିଁ । ଏଠାରେ ଏକ ତୁଳନାତ୍ମକ ପରିବେଶର ସୃଷ୍ଟି ହୋଇଛି । ପ୍ରେମିକାଟିର ଭାଷାରେ ମନରେ ନିଆଁ ଲାଗିଛି ଅଥଚ ବିଞ୍ଚଣା ଧରି ବିଞ୍ଚିବା ଲୋକଟି ପାଖରେ ନାହିଁ ।

ଯୌବନ କ୍ଷଣସ୍ଥାୟୀ ଅଟେ । କାଲିର ରକ୍ତ ପରି ଲାଲ୍ ଗାଲରେ ଆଜି ବାର୍ଦ୍ଧକ୍ୟର ସହସ୍ର ରେଖା । କାହାକୁ ବା ଅପେକ୍ଷା କରି କରି ନିରାଶାର ଜ୍ୱାଳାରେ ଦଗ୍ଧ ହୋଇ କେହି ଯୁବକ ଦିନକୁ ଦିନ କ୍ଷୀଣ ହୋଇ ଦୁର୍ବଳ ହୋଇଯାଉଛି । ସେଥିପାଇଁ କ୍ଷୀଣସ୍ରୋତା ଲୁଇତକୁ ପୁରୁଷଟି ପ୍ରଶ୍ନ କରିଛି—

ରଙ୍ଗାନୈ ଶୁକାଇଛେ ମାଛରେ ବେଜାରତ
ଲୁଇତ ଖନ ଶୁକାଇଛେ କିୟ;
ମଇ ସେନାଇ ଶୁକାଇଛୋ ତୋମାରେ ବେଜାରତ
ତୁମିନୋ ଶୁକାଇଛା କିୟ ?

ଯୌବନର ଦୂର ଦେଶରେ ପ୍ରବେଶ କଲେ ହିତାହିତ ଜ୍ଞାନ ଲୋପ ପାଇଥାଏ । ନିଜର ଦେହକୁ ଲୁଇତରେ ଜମା ହୋଇଥିବା ମାଟି କାଦୁଅ ସହିତ ତୁଳନା କରି କହେ—

ଦେହ ହ'ଲ ଆଲିୟା ଦେହ ହ'ଲ ବଲିୟା
ଦେହ ହ'ଲ ଲୁଇତର ଗରା;
ତୋମାରେ ଲଗତେ ହ'ଲୋ ମଇ ବଲିୟା
ଚିନାକି ହ'ବରେ ପରା ।

ଯୁବକଟି ନିଜର ଶରୀର ପ୍ରତି ଧ୍ୟାନ ଦେଇନାହିଁ । ସେ ନିଜକୁ ନିଜେ କହୁଛି- ଯେଉଁ ଦିନଠୁ ପ୍ରିୟା ସହିତ ଦେଖା ହୋଇଛି, ସେବେଠୁ ସେ ପାଗଳ ଭଳି ହେଉଛି । ପ୍ରିୟାକୁ ପାଇବା ପାଇଁ ବିଭୋର ହୋଇଛି । ସତେଅବା ତା'ର ଦେହ ଲୁଇତ ନଦୀର କୂଳ ଭଳି ଯୌବନର ମାଦକତାରେ ଅସ୍ଥିର ହୋଇଉଠୁଛି ।

ବ୍ରହ୍ମପୁତ୍ରର ବିଶାଳତାକୁ ଲକ୍ଷ୍ୟକରି ଯୁବକଟି କହିଛି ବହୁତ ବଡ଼ ଲମ୍ବା ଜମିକୁ ହୁଏତ ମୁଁ ଡେଇଁପାରିବି କିନ୍ତୁ ବିଶାଳ ବ୍ରହ୍ମପୁତ୍ରକୁ କେମିତି ଡେଇଁବି ?

"ଲରୁଆ ବିଲଖନ ଜାପ ମାରି ଡେଇଁ ଯାମ
ବ୍ରହ୍ମପୁତ୍ର କେନେକୈ ପାର ହମ"

---

ବଲିୟା - ପାଗଳ, ଗରା - ଗଡ଼ା, ଆଲିୟା - ବିଭୋର, ଜାପ - Jump .

ଲୁଇତର ବିଶାଳତା ଭିତରେ ଏହାର ସୌନ୍ଦର୍ଯ୍ୟ, ଚିକମିକ ରୂପାଲି ବାଲିର ଚମକ, ଦୂରକୁ ସ୍ୱର୍ଣ୍ଣରଂଗ ଭଳି ଜଳୁଥିବା ଲହଡିକୁ ଦେଖି ପ୍ରେମିକ ତା'ର ପ୍ରେମିକାର ହସକୁ ମନେ ପକାଇଛି । ପ୍ରେମିକାର ଡାଳିମ୍ବ ମଞ୍ଜି ଭଳି ସୁନ୍ଦର ଦାନ୍ତ ଦୁଇଧାଡି ସହିତ ହସ ହସ ମୁହଁଟି ଅତି ଆକର୍ଷଣୀୟ ଅଟେ ।

ଲୁଇତର ଶୁଅନି ବରକୈ ଚାପରି
ଚୋତାଲତ ଶୁଅନି ତାଁତ;
ଲାହରୀର ଶୁଅନି ମିଶିକି ହାଁହିଟି
ରେଖା ଲଗାଇ ଯୋଆ ମାତ ।

ବିହୁଗୀତ ଗୁଡିକରେ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ପ୍ରସଙ୍ଗରେ ବିଭିନ୍ନ ନଦ ନଦୀର ରୂପବର୍ଣ୍ଣନା ତଥା ଅବଦାନର କଥା ସ୍ମରଣୀୟ । କୃଷିଜୀବି ଅସମୀୟାର ପ୍ରାଣଠୁ ବଳି ପ୍ରିୟ ଆପଣାର-ନଦୀ ।

**ଚାଷଜମି ଓ ପଡିଆ—** ଜାତୀୟ ଉତ୍ସବ ବହାଗ ବିହୁରେ ଯୁବକ ଯୁବତୀମାନେ ଉତ୍ତାଳ ହୋଇ ଉଠିଲେ ହେଁ ସ୍ୱର୍ଣ୍ଣବର୍ଣ୍ଣର କିଆରୀ ଏବଂ ପ୍ରାଣଧାରଣର ଅନ୍ନ ମୁଠିକର କଥା ପାଶୋରି ପାରନ୍ତି ନାହିଁ । ବିହୁଗୀତରେ ଅଂଗଭଂଗୀ କରି ନାଚିଲାବେଳେ ତାହା ହିଁ ପ୍ରକାଶ ପାଇଥାଏ ।

୧- "ନାମରେ କଠୀୟା ଈଶ୍ୱରେ ସରଜା"
୨- "ଏରା ବାରୀର ନହରୁ ଏରା ବାରୀର ପନରୁ
ଏରା ବାରିର ଖୁଟୁରା ଶାକ"
୩- "ଭେଠତେ ଆମନା ଧନ"
୪- "ତିତା ଧାନ ଖେରର ଛାଇ"
୫- "ଶାଳି ଧାନର ମରଣା ମାରିଲୋ
କଠିୟାର ନ ଥଲୋ ସଁଚ"
୬- "ଚାଉଳର ଟିଂକୁଣ ଖୁଦ"
୭- "ପଥାରର ମାଜତେ ଜାକୈ ବାଇ ଆଛିଲୋ"
୮- "ଆଜି ରୁଇ ଗ'ଲୋ କାଚି ରୋଆ ଡରା"
୯- "ହାଲେ ବାଇ ଏଚାରି"
୧୦- "ଦଁ କୈ ପଥାରତ ଧାନ ଦାଇ ଆଛିଲେ ।
ଘିଲା ଚକଲୀୟା ମୁଠି"

କଠିଆ - ତଳି, ନହରୁ - ରସୁଣ, ଖୁଟୁରା - ଶାଗ, ପଥାର - ଜମି, ଜାକୈ - ଖଇଁଚି ପରି, ଏଚାରି - ପାଞ୍ଚଣ, ଆଖୈ - ଖଇ, ଦଁଲନି - ଦଳଜମି, ପନରୁ - ପିଆଜ ।

୧୧- "ଧାନ ଦାଇ ଗଲୋ ଲିରିକି ଲିରିକି"
୧୨- "କଠୀୟା ତଲିତେ ପାନି ଚଲୁ ଚଲୁ"
୧୩- "ହାଲରେ ବେଚିମ ମଇ କ'ଲା କମଲା"
୧୪- "ଆହୁ ଧାନର ମରଣା"
୧୫- "ଶାଲିଧାନେ ମେଲିଲେ ଥୋର"
୧୬- "ଚଲ ଚାଇ କଠୀୟା ପାରିବା
ପଁତାତ ନିସିଚିବା ଧାନ"
୧୭- "ବଙ୍କୁଲବରା ଧାନର ଆଖୈ
ଭାଙ୍ଗିଛିଲୋ"
୧୮- "ଧାନବହାବରେ"
୧୯- "ପଥାରେ ପଥାରେ ବିଚାରି ଫୁରିଲୋ
କ'ତେ ଦାଇ ଆଛିଲି ଧାନ"
୨୦- "ଦଲନିତ ଦାଇଛିଲୋ ଧାନ"
୨୧- "ଦଲନି ପଥାରତ ଖେତି କରିଛିଲୋ"

କୃଷି ଉପରେ ନିର୍ଭର କରୁଥିବା ଅସମୀୟାର ଚାଷଜମି, ପଡିଆ ଓ ଗଛଲତା ଅତି ପ୍ରିୟ । ବିହୁଗୀତ ଗୁଡିକରେ ତା'ର ସ୍ୱର ସ୍ପଷ୍ଟ ହୋଇ ଉଠିଛି । କୃଷିର ମୁଖ୍ୟ ସରଞ୍ଜାମ ହଳ ଓ ମୁଖ୍ୟ ସହାୟକ ବଳଦ ଯୋଡିଏ ତା'ର ଅତି ପ୍ରିୟ । ତେଣୁ ସେ ବିହୁଗୀତର ମଝିରେ ମଝିରେ ଏହିଭଳି ଭାବେ ଗାଇଥାଏ ।

୧- "ଗରୁଚରାବରେ କଠୀୟା ତଳିଖନ,
ମହ ଚରାବରେ ଦନ"
୨- "କଲବାରୀ ପତା"
୩- "ଲାଓ ହେଁଦାଲି ଦିୟା"
୪- "ଧାନ ବନା"
୫- "ତା ମୋଲତ ଢାଲୁକ ବଗୋଓଆ"
୬- "ମଦାରତ ପାନ ବଗୋଓଆ"
୭- "ଗରୁ ଛାଗଲୀ ବେଚା-କିନା କରା"
୮- "ଭୂଇଁ ରୋଆଁ"
୯- "ଶାକ ବୋଟଲା"
୧୦- "ଭାତ ରନ୍ଧା"
୧୧- "ବାରୀର ପିଛଫାଳେ ଆରୈ ଧାନ"

୧୨- ''ଖାଉଁ ତେ ହାଁହ ଖେଦା''

୧୩- ''ଭାଟୌ ଧରା''

୧୪- ''କୁମ୍ପାନୀର ଦେଶଲୈ ଗୈ

ସରକାରି ଚାକିରି କରି ଧନ କମେଇବା ଆଦି ଗାଉଁଲିଆ ଆର୍ଥିକ ଏବଂ ସାଂସ୍କୃତିକ ଜୀବନର ନିଖୁଣ ପରିଚୟ ବିହୁଗୀତ ଗୁଡ଼ିକରେ ଅଛି । ତେଣୁ ଗୋରୁ ଚରାଇବାଠାରୁ ପାନଚାଷ ପର୍ଯ୍ୟନ୍ତ ଏବଂ ଶୁଆଶାରୀ ଆଦି ପକ୍ଷୀ ଧରିବା ପର୍ଯ୍ୟନ୍ତ ତଥା ସରକାରି ଚାକିରୀ କରିବା ଆଦି କାମର ବର୍ଣ୍ଣନା ରୂପାୟିତ ହୋଇଛି । ନଈପୋଖରୀ ଅସମୀୟାର ଯେପରି ଅତି ଆପଣାର, ସେହିପରିନଈର ପଠା ବା ନଦୀଚର, ଚାଷଜମି ଓ ପଡିଆ ଅତି ଆପଣାର । ଏଗୁଡ଼ିକ ଭିତରେ ନୈସର୍ଗିକ ଶୋଭା ଜୀବନ୍ତ ହୋଇ ଉଠିଛି । ବିହୁଗୀତରେ ଏଗୁଡ଼ିକର ବର୍ଣ୍ଣନା ସ୍ପଷ୍ଟ ।

**ପାହାଡ ପର୍ବତ** - ପାହାଡ ପର୍ବତ, ଗଛ-ଲତା ତଥା ପ୍ରକୃତିର ବିଭିନ୍ନ ଜିନିଷ ସହିତ ଅସମୀୟା ଲୋକର ଅତୀତ କାଳରୁ ଘନିଷ୍ଠ ସଂପର୍କ ରହିଆସିଛି । ଅସମୀୟା ଯୁବକ ପର୍ବତରେ ଚଢ଼ି ଜାଳେଣୀ କାଠ ସଂଗ୍ରହ କରେ, ଖାଦ୍ୟ ଖୋଜେ, ଶିକାର କରେ । ସେଇକଥା ବିହୁ ଗୀତ ଆମକୁ କହିବା ପାଇଁ ଭୁଲିନାହିଁ ।

୧- ''ପର୍ବତେ ପର୍ବତେ ବଗାବ ପାରୋ ମଇ''

୨- ''ପର୍ବତେ ପର୍ବତେ ଖାଲୋ ନଗା ଟେଙ୍ଗା''

୩- ''ପର୍ବତତ ମାରିଲୋ ନୋଦୋକା ଗାହରି''

ଓଡିଆ ଅନୁବାଦ -

୧- ''ପର୍ବତରୁ ପର୍ବତକୁ ମୁଁ ଉଠି ପାରିବି''

୨- ''ପର୍ବତରୁ ପର୍ବତ ବୁଲି ମୁଁ ନଗା ଲେମ୍ବୁ ଖାଇଲି''

୩- ''ପର୍ବତରେ ମୁଁ ବୋଦୋକା ଘୁଷୁରି ମାରିଲି''

ଲୁଇତ ଭଳି ଆସାମର ଚଟାଇ ପର୍ବତ ସ୍ୱଭାବକବିର କଳ୍ପନାରେ ରଞ୍ଜିତ ହୋଇଉଠେ । ଗାଢ଼ ସବୁଜରଂଗର ବା ଫିକା ନୀଳ ରଂଗରେ ଝଲସି ଉଠୁଥିବା ଚଟାଇ ପର୍ବତଟି ପ୍ରକୃତ ପର୍ବତ ନୁହେଁ, ଏହା କଳ୍ପନାର ପର୍ବତ । ବିହୁଗୀତରେ ଚଟାଇ ପର୍ବତ, ଲୁଇତ ବା ବ୍ରହ୍ମପୁତ୍ର ନଦୀ କାବ୍ୟିକ ପରଶରେ ଝଲସି ଉଠୁଛି ।

---

ଭାଟୌ - ଶୁଆ, ବଗାବ - ଉଠିବା, ନଗାଟେଙ୍ଗା - ଏକପ୍ରକାର ଲେମ୍ବୁ, ନୋଦକା ଘାହରି - ମୋଟା ଘୁଷୁରୀ ।

୧ - ଚଟାଇ ପରେବ୍ତ ଧୁଁଅଲୀ କୁଅଁଲି
କୋନେ ଭାତ ରାନ୍ଧି ଖାଏ ;
ମାକ ନାଇ ମାଉରା ତିରୀ ନାଇ ବରଲା
ହାତୀ ଧରିବଲୈ ଯାଏ ।
୨ - ଚଟାଇ ପରେବତତ ପହୁଜାଲ ପାତିଲୌଁ
ଚଟାଇତେ ଗଧୂଲି ହ'ଲ ;
ସମନୀୟାଇ ସୁଧିଲେ କମେ କି ଏ ବୁଲି
ଜାଲ ଫାଲି ହରିଣା ଗଲ ।

ଓଡ଼ିଆ ଅନୁବାଦ-
୧ - ଚଟାଇ ପରବତରେ ଧୂଆଁ ଓ କୁହୁଡ଼ି
ଭାତରାନ୍ଧି କିଏ ଖାଏ ;
ମା ନାହିଁ ମା'ଛେଉଣ୍ଡ ସ୍ତ୍ରୀ ନାହିଁ ବାଉଁଅ
ହାତୀ ଧରିବାକୁ ଯାଏ ।
୨ - ଚଟାଇ ପରବତରେ ହରିଣ ପାଇଁ ଜାଲ ବସେଇଲୁ
ଚଟାଇରେ ସଞ୍ଜ ହେଲା ;
ସାଥି ମୋର ପଚାରିଲେ କହିବ କି କଥା
ଜାଲ ଫଟେଇ ହରିଣ ଗଲା ।

ଚଟାଇ ପର୍ବତରେ ଜାଲ ପଟେଇ ହରିଣ ଚାଲିଯିବାଭଳି ହୃଦୟକୁ ଆଘାତ ଦେଇ କେହି ଦୂରଦେଶକୁ ଚାଲିଯିବାର ଭିତରେ ବଳିଷ୍ଠ ଚିତ୍ରଧର୍ମୀ ପ୍ରତୀକ ସ୍ପଷ୍ଟ ହୋଇଛି ।

**ଗଛଲତା, ଫୁଲଫଳ-** ଅତୀତରୁ ପରମ୍ପରାଗତ ଭାବେ ଚଳିଆସୁଥିବା କେତେଗୁଡ଼ିଏ ସାମାଜିକ ରୀତିନୀତି, ଜନବିଶ୍ୱାସ, ଆଚାର ବ୍ୟବହାର, ଆମର ଜନ ମାନସରେ ପ୍ରଭାବ ବିସ୍ତାର କରି ଆସିଛି । ଠିକ୍ ସେହିଭଳି ତିନିଟି ବିହୁ ମଧ୍ୟରେ ରଂଗାଲି ବିହୁରେ ବିଭିନ୍ନ ଗଛଲତା, ଫଳପୁଲ, ପରିବା ପତ୍ର ତଥା ଅନ୍ୟାନ୍ୟ ବ୍ୟବହୃତ ବନଜାତୀୟ ଦ୍ରବ୍ୟର ବ୍ୟବହୃତ ହେବାର ଆମେ ଦେଖି ଆସିଛୁ । ସେଥିପାଇଁ ରଂଗାଲି ବିହୁରେ ପ୍ରତିବର୍ଷ ଏହିଭଳି ଭାବେ ବନୌଷଧି ଗୁଡ଼ିକ ବ୍ୟବହାର କରାଯାଇଥାଏ ।

ରଂଗାଲିବିହୁରେ 'ଗୋରୁବିହୁ' ଏବଂ ''ମଣିଷ ବିହୁ'' ଦିନ ବ୍ୟବହୃତ ହେଉଥିବା ହଳଦୀ ଏକ ଔଷଧ ରୂପେ ଗ୍ରହଣ କରାଯାଇଥାଏ । ଅତୀତ କାଳରୁ ସମାଜରେ ହଳଦୀ ବିବାହ-ବ୍ରତ ତିଥି ଆଦିରେ ଏକ ଆବଶ୍ୟକୀୟ ଦ୍ରବ୍ୟରୂପେ ବ୍ୟବହୃତ ହୋଇଥାଏ ।

---

ପଇ - ଅଞ୍ଜଳି ।

ଗୋରୁବିହୁଦିନ ଗୋରୁମାନଙ୍କ ଦେହରେ ହଳଦୀ ଓ ବିରିବାଟି ତା ସହିତ ସୋରିଷ ତେଲ ମିଶେଇ ଲଗାଇ ଦେଇଥାଆନ୍ତି । ଲୋକମାନେ ମଧ୍ୟ ଏହିଦିନ ଦେହରେ ହଳଦୀ ଲଗାଇଥାଆନ୍ତି । ଏହାଦ୍ୱାରା ଫୋଡ଼ା ତଥା ଅନ୍ୟାନ୍ୟ ଚର୍ମରୋଗ ନ ହେବା ସହିତ ଉକୁଣି, ଟିଙ୍କ ତଥା ଅନ୍ୟାନ୍ୟ ପୋକ ଜୋକ ଲାଗନ୍ତି ନାହିଁ । ତେଣୁ ଚର୍ମର ବୀଜାଣୁ ଏବଂ କୀଟାଣୁ ନାଶ ହେବା ସଂଗେ ସଂଗେ ଛାଲ ସତେଜ ତଥା ଟାଣ ହୋଇଥାଏ । ଯଦି କୌଣସି ଚର୍ମରୋଗ ବା ଘା' ହୁଏ ତା' ହେଲେ ଶିଘ୍ର ଶୁଖିଯାଏ ।

ବାଉଁଶ ଗଛ ସହିତ ଅସମୀୟା ଲୋକର ସମ୍ବନ୍ଧ ବହୁ ପ୍ରାଚୀନ କାଳରୁ ରହି ଆସିଛି । ବାଉଁଶରୁ ଅସମୀୟା ଗୃହସ୍ଥିଜୀବନର ପ୍ରୟୋଜନୀୟ ସରଞ୍ଜାମ ତିଆରି କରାଯାଇଥାଏ । ପରର ପାନିଆ, ଟୋକେଇ, କୁଲ୍‌ହା, ଡାଲାଠୁ ଆରମ୍ଭ କରି ବାଉଁଶ ବାଡ଼ ପର୍ଯ୍ୟନ୍ତ ଏବଂ ବିଭିନ୍ନ ପ୍ରକାର ସୂକ୍ଷ୍ମ ହାତକାମ, ଘର ସଜାଇବା ପାଇଁ ବିଭିନ୍ନ ଛୋଟ ଛୋଟ ଜିନିଷ ତିଆରି କରାଯାଇଥାଏ । ଅନ୍ୟପଟେ ଯୁବକ ଯୁବତୀର ପ୍ରଣୟ ସଂଗଠିତ ହେବାର ଅନ୍ୟ ଏକ ପ୍ରଧାନ ସ୍ଥାନ ହେଉଛି ଗଛତଳ । ଏହି କଥା ବିହୁଗୀତରେ ଯୁବକ ଯୁବତୀମାନେ ଗାଇ ଥାଆନ୍ତି ।

୧- ''ଆହୋଁ ବରଗଛର ତଳେ, ଯାଉଁ ବରଗଛର ତଳେ
ବରଗଛର ଟପଲା ପାତ;
ବରଗଛର ତଳତେ ମୋକେ ନୋଜୋକାବି
ଓଲାବ ମଇନା ମାତ'

୨- 'ବିରିନାର ଆଗତେ ତାମୋଲ ଥୈ ଆହିଛେ ।
ହେରାଇ ପାଲୋ ବୁଲି ଖାବି'

୩- 'ବାଁହର ତଳେତଳେ ବାଁହୀଟୋ ବଜାଲୋ'

ରଂଗାଲୀ ବିହୁରେ ହଳଦୀ ଭଳି ବ୍ୟବହୃତ ଅନ୍ୟଏକ ପ୍ରକାର ବନୌଷଧି ହେଉଛି ଜେତୁକା । ଚୈତ୍ରର ଦୋମାସି ଦିନ ଉପରବେଳା ହାତର ଆଙ୍ଗୁଠି, ନଖ, ପାଦନଖରେ ଜେତୁକା (ମଞ୍ଜୁଆତି ପତ୍ର) ଘସିଲେ ବହୁତ ଉପକାର ମିଳିଥାଏ । ଏହି ଜେତୁକା କେବଳ ନାରୀର ପ୍ରସାଧନର ସାମଗ୍ରୀ ନୁହେଁ, ପୁଅପିଲା ତଥା ବୁଢ଼ାବୁଢ଼ୀ ସମସ୍ତେ ଏହାକୁ ବ୍ୟବହାର କରିଥାଆନ୍ତି କାରଣ ଏହା ମନ ପ୍ରାଣକୁ ଉତ୍ତେଜିତ ଏବଂ ପ୍ରଫୁଲ୍ଲିତ କରିଥାଏ । ମଞ୍ଜୁଆତି ଗଛର କଅଁଳିଆ ପତ୍ରକୁ ବାଟି ତା' ସହିତ ଡାଳିମ୍ବ ମଞ୍ଜିକୁ ପୋଡ଼ି ମିଶାଇ ଏକ ସଂଗେ ହାତ ପାପୁଲିରେ ଲଗେଇଲେ ଚର୍ମ ବେମାର ଦୂର ହେବା ସଂଗେ ସଂଗେ ହାତ ସହଜରେ ପାଣି

---

ଜୋକାବି - ଚିଢ଼େଇବା, ଓଲାବ - ବାହାରିବଃ ମାତ - କଥା, ବିରିନା - ବେଣା, ବାଁହୀ - ବଇଁଶୀ ।

ଖାଇ ନଥାଏ । ଏହା ସହିତ ଚର୍ମର ସୌନ୍ଦର୍ଯ୍ୟ ବୃଦ୍ଧି ହୋଇଥାଏ । ତେଣୁ ମଞ୍ଜୁଆତି ପତ୍ରର ଔଷଧୀୟ ଗୁଣ ଯୋଗୁ, ଏହାକୁ ବ୍ୟବହାର କରିବା ପାଇଁ ବିହୁଗୀତଗୁଡ଼ିକରେ ଯୁବକ ଯୁବତୀମାନେ ଗାଇଥାଆନ୍ତି ।

ଉଲ୍ଲେଖ ଯୋଗ୍ୟ ଯେ ବହାଗବିହୁରେ ଗୋରୁ ବିହୁଦିନ ରାତିରେ ଏକଶହ ଏକ ପ୍ରକାର ଗୁଣ ସଂପନ୍ନ ପନିପରିବା ଓ ବନୌଷଧି ଗାଈଗୋରୁମାନଙ୍କୁ ଖୁଆଇବା ନିୟମ ରହିଛି । ଏହି ଭଳି ଏକ ଶହ ପ୍ରକାର ପରିବା ପତ୍ର ଖାଇଲେ ମନରେ ନୂଆ ନୂଆ ଉଦ୍ୟମ, ଉତ୍ସାହ - ଉଦ୍ଦୀପନା, କର୍ମପ୍ରେରଣା ଏବଂ ରୋଗ-ବ୍ୟାଧି ଆଦି ନିରାମୟ ହୋଇଥାଏ । ଏହି ଭଳି ଜଙ୍ଗଲର ଔଷଧ ପରଂପରାଗତ ଭାବେ ଆସାମର ଜନବିଶ୍ୱାସ ଅନୁସରି ବିହୁରେ ପ୍ରଚଳିତ ହୋଇ ଆସୁଛି ।

ଅନ୍ୟପଟେ ଗୋରୁ ବିହୁଦିନ ସନ୍ଧ୍ୟାରେ ଗୁହାଳ ସମ୍ମୁଖରେ ବା ଯିବା - ଆସିବା ରାସ୍ତାରେ ବିଭିନ୍ନ ଔଷକ୍ଷ ଗୁଣ ଯୁକ୍ତ ଗଛରର ଡ଼ାଳ ଓ ପତ୍ର ମିଶାଇ ଧୂଆଁ ଦିଆଯାଇଥାଏ । ସେହି ଗଛଗୁଡ଼ିକ ହେଉଛି ଲାଉଜାବାରୀ, ଦୀଘଲତି, ବିହଲଙ୍ଗନିର ଡ଼ାଳ, ମାଖିୟାତି ଆଦି, ଏଗୁଡ଼ିକରେ ବିଭିନ୍ନ ପ୍ରକାର ଔଷଧୀୟଗୁଣ ରହିଛି । ମଶା, ଡ଼ାଆଁସ ଆଦି ଗୁହାଳରେ ହୁଅନ୍ତି ନାହିଁ । ଏହା ସହିତ ସିଜୁଗଛ, ଘାସଗଛ ଆଦି ମିଶାଇ ଗୋରୁ ଗୁହାଳ ଭିତରେ ବା ସମ୍ମୁଖରେ ଧୂଆଁ ଦିଆଯାଇଥାଏ । ଏହି ଧୂଆଁ ଯେ କୌଣସି ଚର୍ମର ବୀଜାଣୁ ବା କୀଟାଣୁ ଦୂର କରିବାରେ ସାହାଯ୍ୟ କରିଥାଏ ।

ଫୁଲ ଅସମୀୟା ନାରୀମାନଙ୍କର ଅତ୍ୟନ୍ତପ୍ରିୟ । ସେବତୀ, ମାଳତୀ, ଖରିକାଜାଇ, ଟଗର, କପୌଫୁଲ, କେତକୀ, ଶେଫାଳୀ, ଧଳାଚଂପା, କାଞ୍ଚନ, ମନ୍ଦାର, ମଲ୍ଲୀଫୁଲ ଆଦିର ଅସଂଖ୍ୟ ବର୍ଣ୍ଣନା ବିହୁଗୀତରେ ଅଛି । ଯୁବତୀମାନେ ମୁଣ୍ଡରେ ଫୁଲ ଖୋଷିବା ପାଇଁ ବହୁତ ଭଲ ପାଆନ୍ତି । ସେଥିପାଇଁ ମୁଣ୍ଡଖୋଷାରେ କି କି ଫୁଲ ଖୋଷିଲେ ଅଧିକ ସୁନ୍ଦର ଦିଶେ, ସେହି ବିଷୟରେ ବିହୁଗୀତରେ କୁହାଯାଇଛି ।

" ସେବତୀ ପିନ୍ଧୋମଇ, ମାଳତୀ ପିନ୍ଧୋମଇ,
ପିନ୍ଧୋ ମଇ ଖରିକାଜାଇ ।

କେବଳ ସେବତୀ ବା ମାଳତୀ ଫୁଲ ନୁହେଁ । ଖରିକାଢାଇ ଫୁଲ ମଧ ନାରୀଟି ମୁଣ୍ଡ ଖୋଷାରେ ପିନ୍ଧିବାକୁ ଭଲ ପାଏ ।

ନାରୀମାନେ ଫୁଲ ପ୍ରିୟ ହୋଇଥିବାରୁ, ପ୍ରେମିକମାନେ ପ୍ରେମିକାଙ୍କୁ ପ୍ରଣୟର ଚିହ୍ନ ସ୍ୱରୂପ ଫୁଲ ଉପହାର ହେଇଥାଆନ୍ତି । ସେହି ଫୁଲକୁ ନାରୀମାନେ ବାକ୍ସରେ କପଡ଼ା ଭିତରେ ଲୁଚାଇ ରଖନ୍ତି । କେବେ କେବେ ପ୍ରେମିକ କଥା ମନେ ପଡ଼ିଲେ ନିଜକୁ ନିଜେ କୁହନ୍ତି ତମେ କି ଫୁଲ ଲୁଚାଇ ଦେଇଗଲ, ଯାହାକୁ ଦେଖି ମୋର ସବୁବେଳେ ତୁମ କଥା ମନେ ପଡୁଛି ।

" କି ନୋ ଫୁଲ ଦି ଗଲି ଲୁକାଇ ଐୟ ସେନାଇଚି
କିନୋ ଫୁଲ ଦି ଗଲି ଲୁକାଇ"

ବିହୁରେ ଯୁବତୀ ତଥା ନାରୀମାନେ ବିଭିନ୍ନ ପ୍ରକାର ଫୁଲ ସୌନ୍ଦର୍ଯ୍ୟ ପ୍ରସାଧନ ହିସାବରେ ବ୍ୟବହାର କରିଥାଆନ୍ତି । ଏହି ଫୁଲ ଗୁଡ଼ିକ ନାରୀମନରେ ପ୍ରେମର ଜୁଆର ତୋଳିବା ସଂଗେ ସଂଗେ ରୋଗ ପ୍ରତିରୋଧ କରିବାରେ ସାହାଯ୍ୟ କରିଥାଆନ୍ତି । ବିଶେଷ କରି ରଂଗାଲି ବିହୁରେ କପୌଫୁଲ, କେତକୀ ଫୁଲ, ନାହରଫୁଲ ଏବଂ ଟଗର ଫୁଲ ଆଦି ବ୍ୟବହାର କରାଯାଇଥାଏ ।

"କପୌଫୁଲ (Orchid) ପ୍ରଜନନର ପ୍ରତୀକ ହିସାବରେ ଆମର ସମାଜରେ ଆଦର ପାଇ ଆସିଛି । ବିଛା ବା ମୂଷା କାମୁଡ଼ିଲେ କପୌଫୁଲର ରସ ବ୍ୟବହାର କଲେ ବିଷକୋପ ନାଶ ହୋଇଥାଏ । କାନ ବିନ୍ଧିଲେ ଏହି ଫୁଲର ରସକୁ କାନରେ ପକେଇଲେ କାନବିନ୍ଧା କମିଯାଇଥାଏ । ବିହୁ ନାଚ ପୂର୍ବରୁ ଓଠ ଏବଂ ଦାନ୍ତରେ ଲଗାଉଥିବା ଓଥରେଙ୍ଗୁ (କୋଳିଜାତୀୟ ଏକ ପ୍ରକାର ଫଳ) କେବଳ ଦାନ୍ତ ଏବଂ ଓଠକୁ ନାଲି କରିବା ପାଇଁ ନୁହେଁ, ଏହା ଦ୍ୱାରା ଓଠର ଚମଡ଼ା ଚିକ୍କଣ ରହେ ଏବଂ ବିଭିନ୍ନ ପ୍ରକାର ରୋଗରୁ ଏହା ଓଠକୁ ରକ୍ଷା କରିଥାଏ । (୧୦)

କପୌଫୁଲରେ ମନ୍ଦାରଫୁଲର ଲାଲ୍ ତୀବ୍ରତା ନାହିଁ, ପଲାଶଫୁଲର ରକ୍ତିମ ଉନ୍ମାଦନା ନାହିଁ । ଶିମିଳି ଫୁଲର ଉଡ଼ିବାର ଚଞ୍ଚଳତା ନାହିଁ । ଏଥିରେ ମଲ୍ଲୀଫୁଲର ମତୁଆଲା ଉଗ୍ରତା ମଧ୍ୟ ନାହିଁ । ଏଥିରେ କେବଳ ଏକ କୋମଳ ସୁରଭି, ଧୂପର ସୁରଭି ଗଭୀର ପ୍ରେମ ସଦୃଶ କେବଳ ଏକ କୋମଳ ସନ୍ଦେଶ, ଅଜସ୍ର ସନ୍ଦେଶର ଅଭିଲେଖ - ମୁଁ ବସନ୍ତ, ମୁଁ ବସନ୍ତ ମୋର ଖେିତି ଅନିରୁଦ୍ଧ । କପୌଫୁଲର ଆଗମନ ପାଇଁ କେହି ଘରର ଅଗଣା ବା ବାଡ଼ି ବଗିଚାକୁ ପାଣି, ସାର୍ ଦେଇ ଅପେକ୍ଷା ରଖି ନଥାନ୍ତି କାରଣ ସେ ମାଟିରେ ଫୁଟେନି । କୋମଳ କଦଳୀ ପତ୍ରର ସଜୀବତା ନେଇ ହଠାତ୍ ଦିନେ କପୌଫୁଲ ନୂତନ ରୂପବତୀ ହୁଏ । ସତେ ଯେପରି ଏକ ଟଳମଳ, ରଂଗୀନ୍ ଋତୁର ଜୀବନ୍ତ ପ୍ରତିଶ୍ରୁତି । ସେ ଯେପରି ବସନ୍ତ, ଗୋପନ ବସନ୍ତ ।

ପଲାଶ, ଶିମିଳି ଫୁଲ, ଭେରେଲି ଲତା ଆଦି ବସନ୍ତର ଆଗମନରେ ଆସିବା ପାଇଁ ପ୍ରତିଶ୍ରୁତି ବଦ୍ଧ । କୌଣସି ଏକ ଉଚ୍ଚଗଛର ଡ଼ାଳରେ ଯୁବତୀର ଅସଂଖ୍ୟ ସ୍ୱପ୍ନର ବାର୍ତ୍ତା ନେଇ କପୌଫୁଲ ଆସିଥାଏ । ବିହୁର ଗୋଟିଏ ମାସ ଆଗରୁ ନଈ ଆରପଟେ ଯିବା ଆସିବା ବାଟରେ, କୃଷି ଜମିର ପାଖା ପାଖି ଥିବା କୌଣସି ଗଛର ଡ଼ାଳରେ ଆମ୍ବ, ଜାମୁ, ପଣସ ତଥା ବାଡ଼ି ପଛପଟ କୋଉ ଗଛରେ ବା କପୌଫୁଲ ଫୁଟିଥାଏ, ତା'ର ସନ୍ଧାନରେ

---

ଲୁକାଇ - ଲୁଚେଇ

ଯୁବତୀମାନେ ଘୁରିବୁଲନ୍ତି । ଏହି ଫୁଲକୁ ଖୋଷାରେ ଗୁଡ଼େଇ ଗୁଡ଼େଇ ଯେତେ ସୁନ୍ଦର ଓ ସହଜ ଭାବରେ ବନ୍ଧା ଯାଇପାରେ, ଅନ୍ୟ କୌଣସି ଫୁଲକୁ ବନ୍ଧାଯାଇପାରେ ନାହିଁ । ସେଥିପାଇଁ ଅସମୀୟା ଯୁବତୀ କହିଥାଏ ହାତରେ ଗାମଖଡୁ ପିନ୍ଧିଲି, ପାଦକୁ ସୁନ୍ଦର ଭାବରେସଜାଇଲି, ଗଳଧନକୁ ଫୋପାଡ଼ି (ଗଳାହାର) ଖୋପାଂବାନ୍ଧିଲି, ହାତରେ ହାତେଲମ୍ବା କେଶକୁ ମୁଠାଏ କରି ବାନ୍ଧିଲି ।

''ହାତରେ ଲାହରେ  ଖାରୁବୋର ପିନ୍ଧିଛୋ ।
 ଭରିରେ ଲହାରେ ପାରି;
ଗଳଧନତ ପେଲାଇ  ଖୋପାଟି ବାନ୍ଧିଛୋ ।
 ଏ ହାତ ଏ ମୁଠନ କରି'' ।

ହାତମୁଠାରେ ମୁଠିଏ କରି ଧରିବା ଫୁଲ କେବଳ କପୌଫୁଲ ଅଟେ । ସେବତୀ, ମାଳତୀ, ନାଗେଶ୍ୱରୀ, କାମନୀ, କାଞ୍ଚନର ସେ ଯୋଗ୍ୟତା ନାହିଁ । କପୌଫୁଲ-ପାଇଁ ପ୍ରେମିକା ତା'ର ପ୍ରେମିକ ପାଖକୁ ଆଗରୁ ଖବର ପଠାଇଥାଏ । ହାତରେ ଲବଙ୍ଗର ମଞ୍ଜି ଆଣିବ, ହାତ ଟିପରେ କପୌଫୁଲ ଆଣିବ, ମୁଁ ମନର କଥା ଖୋଲି ତୁମକୁ କହିବି ।

''ଲଂ ଗୁଟି ଆନିବା ଲମ
ହାତରେ ଟିପତେ କପୌଫୁଲ ଆନିବା
 ଭାଙ୍ଗିକଥାଷାରି କମ'' ।

କପୌଫୁଲ କେତକୀ ଫୁଲ ଆଦି ଅଙ୍ଗରାଗ ସହିତ ପୂର୍ବରାଗର ମନୋରମ ସଂପର୍କ । ଅତି ଆନନ୍ଦ ଓ ଉତ୍ସାହ ସହକାରେ ଜଙ୍ଗଲରୁ ଆଣିଥିବା କପୌଫୁଲକୁ ନିଜ ପ୍ରେୟସୀର ଖୋଷାରେ ପିନ୍ଧାଇଦେବାର ଆଗ୍ରହ ଓ ଆନନ୍ଦ ସ୍ୱତନ୍ତ୍ର ଧରଣର । ପ୍ରେୟସୀ ପାଇଁ ଯୋଡ଼ିହାତୀଙ୍କୁ ଆୟତ୍ତ କରିବା ପାଇଁ ସାହାସ ବାନ୍ଧିଥିବା ପୁରୁଷ ପ୍ରେମିକ ପକ୍ଷରେ ଜଙ୍ଗଲର ପଶୁପକ୍ଷୀଙ୍କ ଗହଣରୁ କପୌଫୁଲ ଖୋଜି ଆଣିବା କ'ଣ ବା ଅଧିକ କଷ୍ଟକର !

ପ୍ରେମିକର ଭାଷାରେ-

ରିଙ୍ଗେକୈ ପହୁରେ  ଶିଙ୍ଗେ ମୋର ମଇନା
 ରିଙ୍ଗେକୈ ପହୁରେ ଶିଙ୍ଗ;
ଚତାଇ ପରେବତର  କପୌଫୁଲ ଆନିଛୋଁ
 ଖୋପାତେ ପିନ୍ଧାୟେ ଦିମ ।

---

ଲାହ - ଲାଖ, ଭରି - ଗୋଡ଼, ଭାଙ୍ଗି - ଖୋଲିକରି, ପହୁ - ହରିଣ, ରିଙ୍କେକୈ - ହରିଣର କୋମଳ ଡାକ୍ ।

ହରିଣର ଶିଙ୍ଗ ଗୁଡ଼ିକ ଯେତିକି ସୁନ୍ଦର ଦେଖାଯାଏ, ତାଠୁ ତା'ର କୋମଳ ଡ଼ାକ ଅଧିକ ସୁନ୍ଦର । ଜଙ୍ଗଲକୁ ଯାଇ ପ୍ରିୟା ପାଇଁ ଚଟାଇ ପର୍ବତରୁ କପୌଫୁଲ ଅତି କଷ୍ଟରେ ଯୁବକଟି ଆଣିଛି କେବଳ ତା ଖୋଷାରେ ପିନ୍ଧେଇ ଦେବା ପାଇଁ । ଏହା ସହିତ ଜଙ୍ଗଲରେ ଦେଖି ଆସିଥିବା ହରିଣର ରୂପ ଓ କୋମଳକଣ୍ଠର କଥା ବର୍ଣ୍ଣନା କରିଛି ।

ସମୟ ସମୟରେ ବିହୁଗୀତ ମାଧମରେ ନିଜ ମନର ଭାଷାକୁ ବୁଝାଇବା ପାଇଁ ଯୁବକମାନେ ଚେଷ୍ଟା କରି ବାର ଆକୁଳତା ପ୍ରକାଶ ପାଇଥାଏ । ପ୍ରିୟାର କେଶର ଅନ୍ଧକାର ଭିତରେ ବାଟ ହରାଇ ପୁଣି ଖୋଜିବାର ଚେଷ୍ଟା ଯେପରି ସମସ୍ତ କାଳର ବନ୍ୟତା ଅଟେ ।

ଟାପର କାନକଟା ଏଜ୍ଜୁ
ଏଇ ପୀହ କପୌଫୁଲ ଦିବା ଗୌ ମଇନାକ
ଖୋପାତେ ଖାଇଯାବ ରିଜ୍ଜୁ ।

ପ୍ରେମିକଟି କପୌଫୁଲର ଗୁଛଟି ଜଣକୁ ଦେଇ କହୁଛି ଏ ଫୁଲ ନେଇ ମଇନା ବା ପ୍ରେମିକାକୁ ଦେବ । ତା' ଖୋଷାରେ ଏକଦମ୍ ସୁନ୍ଦର କରି ସାଜିବ । ଏହା ସହିତ ଟାଣ କାନକଣ୍ଟା ସିଜୁ ଗଛର କଥା ଗୀତ ସହିତ ସୁନ୍ଦର ଭାବେ ମିଳାଇ ଅବତାରଣା କରାଯାଇଛି । ଯୌବନର ମାଦକତାରେ ବିଭୋର ହୋଇ ଉଠିଥିବା କୋମଳ ମତି ନାରୀଟି କେତେପ୍ରକାରର ଖୋଷା ବାନ୍ଧିଥାଏ ଯେପରି ଧମନୀୟା ଖୋଷା, ନେଘେରୀ ଖୋଷା, ଲିଗିରୀ ଖୋଷା, କଲଜିଲୀୟା ଖୋଷା ଆଦି ପ୍ରଧାନ ମାତ୍ର ସେ ସବୁ ଖୋଷା ପାଇଁ ଅନ୍ୟାନ୍ୟ ଫୁଲଠୁ କପୌଫୁଲ ଅଧିକ ସୁନ୍ଦର ଦେଖାଯାଇଥାଏ । ଘରର କାମବ୍ୟସ୍ତତା ଭିତରେ ପ୍ରେମିକଟି ଆଣିଦେଇଥିବା ଫୁଲ ଗୁଚ୍ଛ ଗୁଡ଼ିକୁ ବ୍ୟବହାର କରିବା ପାଇଁ ଡ଼େରି ହେବାରୁ ପ୍ରେମିକା ଅଭିମାନରେ କହିଛି -

ସେଉତୀ ନିପିନ୍ଧୋ ମାଳତୀ ନିପିନ୍ଧୋ
ନିପିନ୍ଧୋ ଖରିକା ଜାଁଇ ।
ତୁମି ଆନିଦିୟା କପୌଫୁଲର ପାହି
କରଣିତ ଲେରେଲି ଯାଇ ।

କପୌଫୁଲକୁ ସେ ଖୋଲା ବାକ୍ସରେ ପକଡ଼ା ଉପରେ ରଖିଦେଇଛି । ଫୁଲ ଶୁଖି ଶୁଖି ଯାଇଛି । ସେ ତାକୁ ବ୍ୟବହାର କରିବା ପାଇଁ ସମୟ ନାହିଁ । ତା'ର ଅନେକ କାରଣ ରହିଛି ।

କିନା ଫୁଲ ଦି ଗଲି ଲୁକାଇ ଐ ସେନାଇଟି
କିନୋ ଫୁଲ ଦି ଗଲି ଲୁକାଇ;
ସମନୀୟାର ଆଗତ ପିନ୍ଧିବ ନୋଆରେ
ବାହ ଲଗରୀୟେ ଜୋକାଇ ।

---

ସିଜୁ - ସମାନଭାବେ ମିଶ୍ରିଯିବ, ପାହି - ଗୁଚ୍ଛ, ଲେରେଲି - ଶୁଖିଯାଏ, କରଣୀ - କପଡାର ବାକ୍ସ ।

କି ଫୁଲ ପ୍ରେମିକଟି ଲୁଚେଇ ଦେଇଗଲା ଯେ ସେ ନିଜର ସମାସ୍କନ୍ଧ ଲୋକଙ୍କ ଆଗରେ ପିନ୍ଧି ପାରିବନି କାରଣ ଏକ ବୟସର ସାଙ୍ଗମାନେ ବିଭିନ୍ନ ପ୍ରକାର ଥଟ୍ଟା ଟାପରା କରିଥାଆନ୍ତି ।

ଆସାମରେ ନାଲି ରଂଗର ରିହା, ମଥାରେ ସୁନ୍ଦର ଟିପ୍ପା, ଯେପରି ଭାବେ ରତୁମତୀ ଯୁବତୀର ରତୁପ୍ରାପ୍ତିର ପ୍ରତୀକ, ସେହିପରି କପୌଫୁଲ, କେତକୀ ଫୁଲ ପୁରୁଷାଙ୍ଗର ପ୍ରତୀକ । ଠିକ୍ ବହାଗବିହୁର ଆଗରୁ ଫୁଟିଥିବା କପୌଫୁଲ, କେତେକୀ ଫୁଲ କେବଳ ପ୍ରେମିକ ପ୍ରେମିକାର ଗୋପନ ପ୍ରେମର, ସ୍ନେହର ଦୂତ ନୁହେଁ, ବିହୁଦିନ ସ୍ୱାମୀମାନେ ସ୍ତ୍ରୀମାନଙ୍କୁ କପୌଫୁଲ ଏବଂ କେତକୀ ଫୁଲ ବିହୁର ବିଶେଷ ଉପହାର ଭାବେ ଦେବା ଭଳି ଏକ ମଧୁର ନିୟମ ଉଚ୍ଚନି ଆସାମର କୌଣସି କୌଣସି ସ୍ଥାନରେ ଅଛି । ବିହୁଦିନ ଉପହାର ପାଇଥିବା କେତକୀଫୁଲକୁ କପଡ଼ା ଭିତରେ ଅଳଙ୍କାର ରଖିଥିବା ବାକ୍ସ ବା ନିଜର ପ୍ରିୟ ଲୁଗାପଟା ଭିତରେ ରଖାଯାଇଥାଏ । ତା'ର ସୁରଭି ବହୁଦିନ ପର୍ଯ୍ୟନ୍ତ ବିଚ୍ଛୁରିତ ହୋଇ ରହିଥାଏ ।

'Chinese civilization ' ନାମକ ପ୍ରଖ୍ୟାତ ଗ୍ରନ୍ଥରେ କପୌଫୁଲର ଅର୍ଥ ବ୍ୟଞ୍ଜକ ତାତ୍ପର୍ଯ୍ୟ ଲିପିବଦ୍ଧ ହୋଇଛି ।

During the spring festivals of the land of cheng, young men and girls met in a place where scented orchids grew. They plucked them and waving them on the waters, they callled upon the ancestral souls to come and be reincarnated. The belief they were summoning a soul breath (Hun) which is not distinguishable from the personal name when the game of rivalry was finished, the girl received a flower(orchid) as pledge from the boy to whom she was united. The orchid of the holy place thus served to procure births for all the people of ching. It ended by becoming a primary emblem. Duke wen of ching had a wife of the second rang whose name was yen Ki. She dreamt that a messanger from heaven gave her an orchid (lan) saying to her I am to you, I am thy ancestor. Make the son of that. Because the orchid has a princely perfume (or alternatively because the orchid has the perfume of the country). He will recognise to be a prince of ching and people will love him. Thereupon, Duke men came to see her. He gave her an orchid and lay with her. Asking the pardon, she said, ' Your servant has no talent. If by your favour I have a son, people will not believe me, dare I take this orchid as a proof' ? The Duke said, Yes, she bade him the Duke Mu whose personal name was lan (orchid) .... when Duke mu fell ill, he said ' When the orchid dies, behold, I shall die also, for by it I live (atternatively for it I was born)', When they cut the orchid the Duke died.

ଦକ୍ଷିଣ ପୂର୍ବ ଏସିଆର ଦେଶସମୂହରୁ ଆସିଥିବା ଖାଦ୍ୟରେ ବାଉଁଶର ଗଜା, ବେତର ଗଜା, ନାନା ପ୍ରକାର ଖଟାଜାତୀୟ ଦ୍ରବ୍ୟ, ଲିଚୁ, ପଣସ ଆଦି ଫଳ ଅନ୍ତର୍ଭୁକ୍ତ ହେବା ଭଳି କିଏ ବା ଜାଣେ ବ୍ରହ୍ମ, ଚୀନ, ତିବ୍ବତ ଆଦି ଦେଶର ସାଂସ୍କୃତିକ ପ୍ରଭାବ ବା ପ୍ରବାହ ଆସାମରେ ପଡ଼ି କପୌଫୁଲକୁ ଏକ ବିଶିଷ୍ଟ ମର୍ଯ୍ୟାଦା ଦେଇଛି ।

ବିହୁ ଆସିବ , ବିହୁ ଆସିବ ଭାବୁ ଭାବୁ ବହାଗର ବିହୁ ପ୍ରକୃତିର ଋତୁ ପରିବର୍ତ୍ତନର ସଂଗେ ତାଳଦେଇ ଆସି ପହଞ୍ଚିଯାଏ । ତା ସହିତ ପ୍ରକୃତି ନିଜକୁ ବିଭିନ୍ନ ରଂଗର ଫୁଲ ଓ ଫଳରେ ମଣ୍ଡିତ କରିଥାଏ । ବିହୁର ସମ୍ବାଦ ନେଇ ନାହର ଫୁଲ, କପୌଫୁଲ ଫୁଟିଥାଆନ୍ତି । ପ୍ରେୟସୀର ମନ ଭିତରେ ଏକ ମଧୁର ଆନନ୍ଦ ଆସିଯାଇଥାଏ । ସେ ଗୁଣୁଗୁଣ କରି ଗାଏ ।

ଆଜି ବିହୁ ବିହୁ          କାଲି ବିହୁ ବିହୁ
ନାହର ଫୁଲ ଫୁଲିବର ବତର;
ଫୁଲପାନୀ ଛିଗାତ ଐ ଢୋଲର ମାତେ ଶୁନି
ଗରକି ଭାଙ୍ଗିଯାଓଁ ଯଁତର ।

ବିହୁ ଆସିଲେ ସବୁଆଡ଼େ ନାହର ଫୁଲର ବାସ୍ନା କଂପି ଉଠେ । ବିହୁର ନିଶା ସମସ୍ତଙ୍କୁ ଲାଗିଯାଏ । ବିହୁତଳିରେ ଢୋଲ ବାଜି ଉଠେ । ଯୁବକର ଢୋଲ ବଜାର ଶବ୍ଦ ଶୁଣି ଯୁବତୀଟି ତନ୍ତଶାଳ ଛାଡ଼ି ବିହୁତଳିକୁ ଧାଏଁ । ତେଣୁ ବିହୁଗୀତ ଗୁଡ଼ିକରେ ପ୍ରକୃତିର ରୂପବର୍ଣ୍ଣନା ପ୍ରସଙ୍ଗରେ ବିଭିନ୍ନ ପ୍ରକାର ଫୁଲର ବର୍ଣ୍ଣନା ଅତ୍ୟନ୍ତ ଆକର୍ଷଣୀୟ ଅଟେ । ଲୋକ କବିର ଭାଷାରେ ଲାହରୀ ବା ପ୍ରେମିକାଟି ନାହର ଫୁଲର ବାସ୍ନାପାଇ କପଡ଼ା ବୁଣା ଯଁତରଟିକୁ ଗୋଡ଼ରେ ମାରି ଭାଙ୍ଗି ଚାଲିଯାଏ ।

ନାହର ଫୁଲର ଗୋନ୍ଧପାଇ ଲାହରୀର ତତନାଇ
ଗରକି ଭାଙ୍ଗିଯାୟ ଯଁତର ।

**ପଶୁପକ୍ଷୀ, ଜୀବଜନ୍ତୁ-** ଆସାମର ସୁବିସ୍ତୀର୍ଣ୍ଣ ଜଙ୍ଗଲରେ ଥିବା ବିଭିନ୍ନ ପ୍ରକାର ପଶୁପକ୍ଷୀ ତଥା ଜୀବଜନ୍ତୁ ଗୁଡ଼ିକ ସହିତ ଅସମୀୟାର ସଂପର୍କ ଅଛି ପ୍ରାଚୀନ କାଳରୁ ଓତଃପ୍ରୋତ ଭାବେ ଜଡ଼ିତ । କୃଷିଜୀବି ଗାଉଁଲୀଆ ସମାଜରେ ମୁଖ୍ୟତଃ ଗାଈଗୋରୁ, ମଇଁଷୀ ତଥା ଅନ୍ୟ କେତେଗୁଡ଼ିଏ ଗୃହପାଳିତ ପଶୁପକ୍ଷୀର ସ୍ଥାନ ଉଲ୍ଲେଖ ଯୋଗ୍ୟ । ବିହୁଗୀତରେ ସେହି କଥା ବେଶୀଭାଗରେ ଉଲ୍ଲେଖ କରାଯାଇଛି ।

୧- ହାଁଫଲୁର ଆଁରତେ ଚରେ କ'ଲା ଗୋରୁ
ଘାଁହ କୁମଲୀୟା ଖାଇ ।
୨- ''ସରୁ ହେ ଆଛିଲୋ ଗରୁ ଚରାଇଛିଲୋ''

---

ଗୋନ୍ଧ- ଗନ୍ଧ, ବାସ୍ନା, ତଜୁ - ସମୟ, ଗରକି - ଗୋଡମାରି, ଯଁତର - ତନ୍ତ ।

୩- " ମହରେ ଗୋଆଲଟି କାତିରାମ କକାଇ ଐ"

ଓଡ଼ିଆ ଅନୁବାଦ -

୧- ଉଇ ହୁଙ୍କା ଆଢୁଆଳରେ ଚରେ କଳା ଗୋରୁ
କଅଁଳିଆ ଘାସ ଖାଇ

୨- ଛୋଟ ହୋଇଥିଲି, ଗୋରୁ ଚରାଉଥିଲି ।

୩- ଗୁହାଳରେ ଗୁହାଳେ ମଇଁଷୀ
କାତିରାମ ଦାଦା ହୋଇ ।

ଗୋରୁ ମଇଁଷୀ ସହିତ ଅନ୍ୟାନ୍ୟ ଜୀବଜନ୍ତୁର କଥା ବିହୁଗୀତରେ ଶୁଣାଯାଇଥାଏ । ସେମାନଙ୍କ ମଧ୍ୟରେ ଛେଳି, ହରିଣ, ହାତୀ, ବିଲେଇ, ବାଘ, ଠେକୁଆ ଆଦି ପ୍ରଧାନ । ଛେଳି ତଥା ହରିଣର ମାଂସ ସମସ୍ତେ ଖାଆନ୍ତି । ଏକଥା କହିବା ପ୍ରସଙ୍ଗରେ ଛେଳି ଓ ହରିଣର ଚମଡ଼ା ଛେଲିବା ପାଇଁ କିପରି ସ୍ୱତନ୍ତ୍ର ଧରଣର କଟୁରୀ ଦରକାର ତାହା ବିହୁଗୀତରେ ଗାୟକ ଗାୟିକାମାନେ ବର୍ଣ୍ଣନା କରି ଥାଆନ୍ତି ।

୧- ଛାଗର ଛାଲ ଛେଲାବର ଉବୁଆ କଟାରୀ
ପହୁର ଛାଲ ଛେଲାବର ମିଟ ।

୨- ହାତୀ ଚାଇ କିନିବା ହାତୀରେ ଲେଙ୍ଗେଛି
ଘୋଁରା ଚାଇ କିନିବା ଜିନ ।

୩- ପର୍ବତର ଢ଼େକୀୟା ଲିହିରି ପତୀୟା
ମେକୁରୀ କରିବର ମ୍ୟାଓଁ

୪- ଗଧୂଲି ଗଧୂଲି ମାଇଁ ଯାଓଁ ପଦୂଲି
ବାଘେ ଖାୟ ଘୋଙ୍ଗେଂ ଖାୟ ଖକ

ଓଡ଼ିଆ ଅନୁବାଦ

୧- ଛେଳିର ଚମଡ଼ା ଛେଲିବା ପାଇଁ ଧାରୁଆ କଟୁରୀ
ହରିଣ ଛାଲ ଛେଲିବା ପାଇଁ ସ୍ୱତନ୍ତ୍ର କଟୁରୀ ।

୨- ହାତୀର ଲେଙ୍ଗେଛି ଦେଖି ହାତୀ କିଣିବ
ଘୋଡ଼ାର ଜିନ ଦେଖି ଘୋଡ଼ା କିଣିବ ।

୩- ପର୍ବତରେ ଢ଼େକିୟାର ମୋଡ଼ି ମୋଡ଼ି ପତର
ବିଲେଇ ମ୍ୟାଁଉଁ ମ୍ୟାଓଁ କରେ ।

୪- ଉପରବେଳା ମୁଁ ଚାଲି-ଚାଲି ରାସ୍ତାରେ ଯାଏ
ବାଘ ହମ୍ବାଳି କରେ, ଗର୍ଜନ କରେ ।

---

ହାଁଫଲୁ - ଉଇ ହୁଙ୍କା, ଆଁର - ଉଢାଳ, ଘାଁହ - ଘାସ, ଉବୁଆ - ଧାରୁଆ, ମିଟ୍ - ସ୍ୱତନ୍ତ୍ର କଟୁରୀ ।

ଶିଆଳ ବା ବିଲୁଆ ଆସାମର ଲୋକଗଳ୍ପ ଓ ଲୋକଗୀତଗୁଡ଼ିକରେ ସ୍ୱତନ୍ତ୍ର ସ୍ଥାନ ନେଇଛନ୍ତି । ସନ୍ଧ୍ୟା ହେଲେ ଶିଆଳ ଯେ ହୁକେ ହୁଆ୍ କରେ, ଏହା ସମସ୍ତେ ଜାଣନ୍ତି ମାତ୍ର ପ୍ରେମ ତଥା ମିଳନରେ ଶିଆଳର ହୁକେ-ହୁଆ ସମୟକୁ ପ୍ରେମିକ ପ୍ରେମିକାମାନେ ଘଣ୍ଟାର ସମୟଭଳି ମାନିଥାଆନ୍ତି । ବିଲୁଆର ଏହି ଶବ୍ଦ ଶୁଣିବା ମାତ୍ରେ ପ୍ରଣୟି-ପ୍ରଣୟିନୀ ମିଳିତ ହୁଅନ୍ତି । ପ୍ରେମିକାଟି ତା'ର ପ୍ରିୟତମକୁ ସ୍ନେହରେ ପାନ ଓ କଟା ଗୁଆ ଖଣ୍ଡେ ଦେଇଥାଏ । କେବେବେଦିନେ ବିଲୁଆର ଡ଼ାକଶୁଣି ପ୍ରେମିକାଟି ଆସି ନ ପାରିବାରୁ ତା'ର ପ୍ରିୟତମ ଅପେକ୍ଷା କରି କରି ନିରାଶ ହୋଇ ଘରକୁ ଫେରିଛି । ଏହି ଅନୁଭୂତି ବିହୁଗୀତରେ ପ୍ରକାଶ ପାଇଛି ।

ଶିଆଳେ କରିବର    ହୋଆ ଐ ଲହାରୀ
ଶିଆଳେ କରିବର ହୋଆ;
ତୁମି ଯେ ଲାହରୀ    ଓଲାଇ ଦେଖା ନି ଦିଲା
ନିଦିଲା କାଟନି ଗୁଆ ।

ବିହୁଗୀତ ଗୁଡ଼ିକରେ ଏହିଭଳି କେତେଗୁଡ଼ିଏ ଗୃହପାଳିତ ତଥା ଜଙ୍ଗଲି ଜୀବଜନ୍ତୁର କଥା ଉଲ୍ଲେଖ କରାଗଲେ ହେଁ ପ୍ରକୃତିର ପରିବର୍ତ୍ତନ ସହିତ ବିଭିନ୍ନ ପକ୍ଷୀମାନଙ୍କର କୋକିଳକଣ୍ଠର ଧ୍ୱନୀ, ବିଭିନ୍ନ ରଂଗ ଲୋକମନରେ ଆନନ୍ଦ ବାଣ୍ଟି ଦେଇଥାଏ । ବିହୁଗୀତଗୁଡ଼ିକରେ ସେହି ପକ୍ଷୀମାନଙ୍କର ବର୍ଣ୍ଣନା ଅତି ଚମତ୍କାର ଅଟେ । ନାରୀତଥା ପୁରୁଷର ଦୈନନ୍ଦିନ ଜୀବନର ସୁଖଦୁଃଖର ଚିତ୍ର, ପ୍ରେମ ଓ ବିରହ ବର୍ଣ୍ଣନା ପ୍ରସଙ୍ଗରେ ପକ୍ଷୀଗୁଡ଼ିକର ବର୍ଣ୍ଣନା ଅତି ଜୀବନ୍ତ ହୋଇଛି ।

**ବିହୁଗୀତରେ ଚଢ଼େଇ** - ବିହୁଗୀତ ଗୁଡ଼ିକ ମୁଖ୍ୟତଃ ଯୌବନୋଦ୍ଦୀପକ ଗୀତ । ଏହି ଗୀତିରେ ଲୋକମନର ସରଳ ପ୍ରାଣ ପ୍ରକୃତି ମଧ୍ୟ ରହିଛି । ବିଭିନ୍ନ ପକ୍ଷୀମାନଙ୍କର କୋମଳ୍ ମଧୁର କଣ୍ଠର ଧ୍ୱନୀ, ଯୁଗେ ଯୁଗେ କବିପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଆସିଛି । ବିହୁଗୀତରେ କବିପ୍ରାଣ କେବଳ ରୋମାଞ୍ଚିତ ହୋଇଛି ତା ନୁହେଁ, ଲୋକମନଟି ନିଜର ସୁଖଦୁଃଖରେ ପକ୍ଷୀଗୁଡ଼ିକୁ ସମଭାଗୀ କରିବା ପାଇଁ ଅନୁରୋଧ କରିଛି । ସେ ନିଜମନକୁ ପ୍ରଶ୍ନ କରିଛି ବିଭିନ୍ନ ପକ୍ଷୀମାନେ ମୁକ୍ତ ଆକାଶରେ ସ୍ୱାଧିନ ଭାବେ ପ୍ରେମ କରୁଛନ୍ତି କିନ୍ତୁ ଜୀବଶ୍ରେଷ୍ଠ ମଣିଷର ସେ ଭାଗ୍ୟ କାହିଁକି ? ନିଜର ପ୍ରାଣ ସର୍ଶୀ ଭାଷାରେ କହିଛି ଏଥରକ ଆହୁଧାନ କିଆରୀରେ ପାଣି ପଶି ଧାନ କିଆରୀଟି ନଷ୍ଟ ହେଲା , ତା'ପରେ କେବଳ କଣ୍ଠାଧାନ ଗଜିଲା ବିଭିନ୍ନ ପ୍ରକାରର ଚଢ଼େଇମାନେ ଆନନ୍ଦରେ ସେ କିଆରୀରେ ପ୍ରେମ କଲେ । ଅଥଚ ଆମ୍ଭେ ସେମାନଙ୍କ ଭଳି ସ୍ୱାଧିନ ମନରେ ପ୍ରେମ କରିବାର ସୁଯୋଗ ପାଉନାହୁଁ ।

---

ଗୋଞ୍ଚେଛି - ଗଳାରୁ ଲାଞ୍ଜ ପର୍ଯ୍ୟନ୍ତ ବନ୍ଧା ରଶି ।

ଏଇବୋଲି ଆହୁଧାନ ପାନିୟେ ମାରିଲେ
ଓପରେ ଗଳିଲେ ମାମି;
ଚରାଇ ଚରିକାତି ପୀରିତି କରିଲେ
ତାରୋ ମାନ ନ ହେଲୋଁ ଆମି ।

ଯୌବନ ମଣିଷ ଜୀବନରେ ଥରେ ଆସିଥାଏ । ସେ ଏହି ସମୟରେ ନିଜର ଗାଥା ଗାଇଥାଏ । ମଣିଷ ର ଅଂଗ ପ୍ରତ୍ୟଙ୍ଗରେ ଭିନ୍ନ ଅନୁଭୂତି ଉଦ୍ରେକ ହୋଇଥାଏ । ଅନୁଭୂତିର ଆନନ୍ଦ ଭିତରେ ନିଜକୁ ହଜାଇଦେବାରେ ଏକ ଭିନ୍ନ ସ୍ୱାଦ ରହିଛି । ସେଥିପାଇଁ ଯୌବନର ବଶବର୍ତ୍ତୀ ହୋଇ ମଣିଷ ପ୍ରେମ ଓ ପ୍ରୀତି କରିବା ନିହାତି ସ୍ୱାଭାବିକ ଅଟେ । ଏହାଠୁ ଦୂରରେ ରହିବା ମଣିଷ ଜୀବନରେ ଏକ ବ୍ୟତିକ୍ରମ ଭଳି ବୋଧ ହୋଇଥାଏ । ଏହି ଅନୁଭୂତି ପ୍ରତ୍ୟେକର ଜୀବନରେ ଆସିଥାଏ । ଗଛଲତା, ପଶୁପକ୍ଷୀଙ୍କୁ ଆରମ୍ଭ କରି ନିହାତି କ୍ଷୁଦ୍ର ଜୀବର ଜୀବନରେ ଯୌବନର ଆଗମନ ଅପରିହାର୍ଯ୍ୟ । ଲତା ଯୌବନରେ ପୁଷ୍ପିତ ହୋଇ, ବୃକ୍ଷମାନେ ଫଳରେ ଭାରାକ୍ରାନ୍ତ ହୋଇ ଏକ ପ୍ରକାର ଆନନ୍ଦ ପାଇଥାଆନ୍ତି । ହଳଦି ବସନ୍ତର ପକ୍ଷୀଗୁଡ଼ିକ ଅତି ସୁନ୍ଦର । ସେ ଏକ ନିର୍ଦ୍ଦିଷ୍ଟ ସମୟରେ ଆସି ମଧୁର ସଂକେତ ଦେଇଥାଏ । ଆଖି ଆଗରେ ଏ ଡ଼ାଳରୁ ସେ ଡ଼ାଳକୁ ଡ଼େଇଁଥାଏ ତା'ର କିଛି ଦିନ ପରେ ଦୂର ଜଙ୍ଗଲକୁ ଉଡ଼ିଯାଏ । ନିଜର ସ୍ୱାଧିନ ମନନେଇ ସ୍ୱାଧିନ ଜୀବନଯାପନ କରିବା ପାଇଁ । ତେଣୁ ଯୌବନ ଆସିଲେ ପ୍ରେମ କରିବା ହିଁ ବିଧିର ନିୟମ, କାରଣ ଯୌବନ ଅତିବାହିତ ହେବା ପରେ ଆଉ ଇଚ୍ଛା କଲେ ବି ଯୌବନ ଫେରିଆସେ ନାହିଁ ।

ଚରାଇ ହାଳଧିୟା ପାଖି ବିନନ୍ଦୀୟା
ଉରିଲେ ପାବଲେଁ ନାଇ;
ଯୌବନ ଥାକେମାନେ ପୀରିତି କରିବା
ଯୌବନ ଗଲେ ପାବଲେଁ ନାଇ ।

ମଣିଷ ପ୍ରେମ କରି ମଧ ଖୋଲାଖାଲି ଭାବେ ପ୍ରେମର ଜୟଗାନ କରିପାରେ ନାହିଁ । ସେ ସମାଜ ଆଗରେ ନିଜର ପ୍ରେମ ବାର୍ତ୍ତା ଶୁଣାଇବା ପାଇଁ, ମନକଥା କହିବା ପାଇଁ ବାଧା ପାଏ । ଭଗବାନଙ୍କୁ ସାକ୍ଷୀରଖି ସେ ନିଜର ପସନ୍ଦ ମୁତାବକ ଜୀବନସାଥି ବାଛେ ସତ ମାତ୍ର ସମାଜର କାଇଦା କଟକଣା ଭିତରେ ମନଖୋଲି କଥାବାର୍ତ୍ତା ବି କରି ପାରେନି । ଜୀବନସାଥିଟି ଥାଇ ମଧ ସମାଜ ଭୟରେ ସେ ନିଃସଂଗ ଜୀବନଯାପନ କରିବାକୁ ବାଧ୍ୟ ହୁଏ । ଚଢ଼େଇ ହୋଇଥିଲେ ସେ ଉଡ଼ି ଯାଇପାରି ଥାଆନ୍ତା । ଆନନ୍ଦରେ ପ୍ରେମ କରି ପାରିଥାଆନ୍ତା ମାତ୍ର ଭଗବାନ ତାଙ୍କୁ ଚଢ଼େଇ ଭଳି ପକ୍ଷୀ ଦେଇଥାଆନ୍ତି ।

ତୁମିଯେ ଆମିଯେ ପୀରତି କରିଲୋଁ
ଈଶ୍ୱରକ କରିଲୋଁ ସାକ୍ଷୀ;
ଚରାଇ ହୋବା ହଲେ ଉରିଚାଲୋଁହେଁତେନ
ତାଲେ ଢୋ ନାଇକିୟା ପାକ୍ଷୀ ।

ବିଭିନ୍ନ ପକ୍ଷୀର ରୂପ ଓ ମଧୁରକଣ୍ଠର ବର୍ଣ୍ଣନା ବନଘୋଷା ଗୀତ ଗୁଡ଼ିକରେ ବାସ୍ତବରେ ଅତ୍ୟନ୍ତ ସୁନ୍ଦର । ଚିଲପକ୍ଷୀ ଆକାଶରେ ଉଡ଼ିବା ପ୍ରାୟ ସମସ୍ତେ ଦେଖିଥାଆନ୍ତି ମାତ୍ର ଲୋକକବି ତା'ର ଉଡ଼ିବାରୁ ଏକ ଆନନ୍ଦ ଅନୁଭବ କରିଛି । ସେ ଅତି ସୁନ୍ଦର ଭାବେ ପକ୍ଷୀ ମେଲି ଏକ ଦୃଷ୍ଟିରେ ଆକାଶରେ ଉଡୁଥାଏ, ବୋଧହୁଏ ତଳୁ କୌଣସି ଗୋଟିଏ ଛୋଟ ପକ୍ଷୀକୁ ଆହାର କରିବା ପାଇଁ ଏକ ଲକ୍ଷ୍ୟରେ ତଳକୁ ଅନାଇଥାଏ । କବି ଅନୁଭୂତିରେ ପ୍ରେମିକ ପ୍ରେମିକା ସେମିତି ଚିଲଭଳି ଏକ ଲକ୍ଷ୍ୟରେ ପରସ୍ପରକୁ ଅନେଇଲା ବେଳକୁ କେହି ଜଣେ ଆସି ସେମାନଙ୍କ ଆନନ୍ଦ ଭିତରେ ବାଧା ସୃଷ୍ଟି କଲା, ସେ ଜଣକ ସେମାନଙ୍କ ପାଇଁ ଶତ୍ରୁ । ଆକାଶରେ ଚିଲ ନିଜର ସ୍ଥାନ ପରିବର୍ତ୍ତନ ନ କରି ଗୋଟିଏ ନିର୍ଦ୍ଦିଷ୍ଟ ସୀମିତ ସ୍ଥାନ ଭିତରେ ଘୁରିଲା ଭଳି ଏମାନଙ୍କର ଆଖି ପରସ୍ପର ପ୍ରତି ଯେମିତି ଲାଗି ରହିଥିଲା । ଶତ୍ରୁ ତାଙ୍କ ମନ ବଳକୁ ଭାଙ୍ଗି ଦେଲା ।

ଓପରେ ଉରିଲେ ଗଙ୍ଗାକୈ ଚିଲନୀ
ପାଖିଯେ ନଲଲେ ଘୋର;
ତୁମିଯେ ଆମିଯେ ଏକେଟି ଆଛିଲୋଁ
ଶତ୍ରୁରୁଯେ ଭାଙ୍ଗିଲେ ଯୋର ।

ଲଳିତା କିଆରୀରେ କଜ୍ଜଳପାତି ଚଢ଼େଇ ତା'ର ସାଥି ଖୋଜି କାନ୍ଦେ, ସେଥି ପାଇଁ ତା'ର ଡ଼ାକଶୁଣି ବହୁଦୂରରେ ଥିବା ସାଥି କଜ୍ଜଳପାତି ଉଡ଼ିଆସେ । ଉଭୟ ଆନନ୍ଦରେ ଲଳିତା କିଆରୀର ଘଞ୍ଚତା ଭିତରେ ପ୍ରେମ କରିଥାଆନ୍ତି ଅଥଚ ପ୍ରେମିକର କଥା ମନେ ପଡ଼ିଲେ ପ୍ରେମିକାଟିର କାମ ଯେଉଁଠି ସେଇଠି ପଡ଼ିଥାଏ, ସେ ସେମିତି ମୁହଁ ଉପରକୁ କରି ଗୋଟିଏ ଜାଗାରେ ପଡ଼ିରହେ ।

ନଲନିତ କାନ୍ଦିଲେ ହେଟୁଲୁକା ଟିରାଇଟି
ହେଟୁଲୁକ କରିଲେ ବନତ;
ହାତର ବନେ ସରି ଚିତନି ଧରେ ହି
ଧନର କଥା ପରିଲେ ମନତ ।

ନ୍‌ଯନ୍ନି - ନଳିତା କିଆରୀ, ହେଟୁଲୁକା - କଜଳପାତି, ବନ - କାମ, ଚିତନି - ଚିତ୍ ହୋଇ, ।

ଭାବୁକ କବିର ଭାଷାରେ - ବାଉଁଶ ଆଗରେ କପୋତ ହଳେ ବସି ଆନନ୍ଦରେ ହଲୁଛନ୍ତି, ତାଙ୍କୁ ଶର ମାରିବା ଉଚିତ ନୁହେଁ । ପ୍ରତ୍ୟେକ ଜୀବର ନିଜ ଇଚ୍ଛା ମତେ ବଞ୍ଚିବାର ଆନନ୍ଦ ଅନୁଭବ କରିବାର ଅଧିକାର ଅଛି । ତେଣୁ ଶର ମାରି ତାଙ୍କର ଜୀବନ ନଷ୍ଟ କରିବା ଉଚିତ ନୁହେଁ । ଶତ୍ରୁର ଝିଅକୁ ଯଦି ପ୍ରେମ କରିବ ତା ହେଲେ ନିଜର ମନ ଓ ଶରୀରକୁ ପଥର କରିବାକୁ ହେବ । ସେଥିପାଇଁ ଲୋକକବି ପରିସ୍ଥିତିକୁ ଆଖି ଆଗରେ ରଖି ଗାଇଛନ୍ତି ଯଦି ଶତ୍ରୁର ଝିଅକୁ ପ୍ରେମ କରିବ ତେବେ ଦେହକୁ ପାଣି କରିବ ।

ବାଁହରେ ଆଗତେ କପୌଚରାଇ ହାଲି;
ଧେନୁ ନେମାରିବା ଟାନି
ଶତୁରୁ ଶୋଆଲୀତ ଚକୁ ଐ ନିଦିବା
ଦେହାକ ନ କରିବା ପାନି ।

ଚକୁଆ ଚକୋଇ ବହୁପ୍ରାଚୀନ କାଳରୁ ବିଭିନ୍ନ ଦେଶର ଲୋକକବିର କଳ୍ପନାରେ ଧରା ପଡ଼ିଲା ଭଳି ବିହୁଗୀତରେ ମଧ୍ୟ ସ୍ଥାନ ପାଇଛନ୍ତି । ଚକୁଆ ଚକୋଇ ନିଜର ବିଚ୍ଛେଦ ସମୟରେ ରହି ରହି କାନ୍ଦିଥାଆନ୍ତି । ଏହି କାନ୍ଦ ଭିତରେ ପରସ୍ପରକୁ ଆହ୍ୱାନ କରିଥାଆନ୍ତି । ପ୍ରେମିକ ପ୍ରେମିକାର ବିଚ୍ଛେଦ ହେଲେ ଜଣେ ଅନ୍ୟ ଜଣଙ୍କୁ ମନେ ପକାଇ ଆଖିରୁ ଲୁହ ଝରାଇଥାଆନ୍ତି, ତା ସହିତ ବିଚ୍ଛେଦ ଯନ୍ତ୍ରଣାର କଥା ବର୍ଣ୍ଣନା କରିଥାଆନ୍ତି । ଦୂରରେ ରହିବାର ଯନ୍ତ୍ରଣାଠୁ ଟିକିଏ ସମୟ ପାଇଁ ମୁହଁ ଦେଖାଇ ଚାଲିଯିବାର ଯନ୍ତ୍ରଣା ଅଧିକ କଷ୍ଟଦାୟକ ଅଟେ । ଦେଖାହେଲେ ହେଁ କିଛି କହିବା ପୂର୍ବରୁ ପୁଣି ଦୂରେଇ ଯିବାର ଦୁଃଖ ଓ ଯନ୍ତ୍ରଣା ଭିତରେ ପ୍ରେମିକାଟି ମନସ୍ତାପ କରି କରି ମଲାଭଳି ହୋଇଯାଏ । ଠିକ୍ ଚକୁଆଚକୋଇ ଭଳି ବିଚ୍ଛେଦ ଯନ୍ତ୍ରଣାରେ ଛଟପଟ ହୋଇ ନାରୀଟି କହେ -

ରୈନୋ ରୈ କାନ୍ଦିଲେ ଚାକୈ - ଚକୋଆ
ରୈନୋ ରୈ କାନ୍ଦିଲେ ଛିଲି;
ଏନେୟେ ମ୍ନିଛୋଁ ତୋରେ ଐ ସନ୍ତାପତ
ଆକୌ ଗା ଦେଖା ଦି ଗଲି ।

କପୋତୀ ଚଢ଼େଇ କୁକ୍ କୁକ୍ କରି କପୋତକୁ ଡ଼ାକି ଡ଼ାକି କାନ୍ଦେ, ଡ଼ାହୁକ ତା'ର ଅନ୍ତରଂଗ ସାଥିକୁ ଖୋଜି ରହି ରହି କାନ୍ଦେ । ସ୍ନେହ ଓ ପ୍ରେମରେ ଆବଦ୍ଧ ପକ୍ଷୀମାନେ ମଧ୍ୟ ପରସ୍ପରଠୁ ଦୂରରେ ରହି ଉଭୟଙ୍କୁ ଖୋଜି ଖୋଜି କାନ୍ଦନ୍ତି । ଏହା ପ୍ରକୃତିର ଚିରନ୍ତନ ନିୟମ ଅଟେ । ମା'ର ଗଳକୁ ଧରି ଝିଅଟି ବିକଳରେ କଇଁ କଇଁ ହୋଇ କାନ୍ଦୁଛି । ତା'ର କାରଣ ହେଉଛି ସେ ତା'ର ଧନଠାରୁ ଦୂରରେରହି ବହୁତ ମାନସିକ କଷ୍ଟ ପାଉଛି । ନିଜର ଦୁଃଖକୁ ମା' ଆଗରେ କହି ମନକୁ ଶାନ୍ତ୍ୱନା ଦେବାପାଇଁ ଚେଷ୍ଟା କରୁଛି ।

---
ହାଲି - ହଳେ । ରୈ - ରହି । ଚକୁଆ-ଚକୋଇ - ଚକୋର ଚାକୋରୀ

କୁହୁ କୁହୁ କରି କପୌଟି କାନ୍ଦିଲେ
ଡାହୁକେ କାନ୍ଦିଲେ ରଇ ;
ମା' କର ଡିଙ୍ଗିତ ଧରି ଝୀୟେକେ କାନ୍ଦିଲେ
ଧନେରେ ଆଟାରି ହରି ।

ବେଳେବେଳେ ବିରହର ଯନ୍ତ୍ରଣା ସହିବାର ସୀମା ଅତିକ୍ରମ କରିଥାଏ । ପ୍ରେମିକ ପ୍ରେମିକା ଅତୀତକୁ ପାଶୋରିବାକୁ ଚେଷ୍ଟା କରିବାକୁ ଯାଇ ବରଂ ବେଶି ମନେପକାଇ ମାନସିକ କଷ୍ଟ ପାଇଥାଆନ୍ତି । ଅତୀତରେ ଜଣକର କଣ୍ଠର ମଧୁର ଡାକ ଅନ୍ୟକୁ ଆକୃଷ୍ଟ କରିଥିଲା । ଏହି ଡାକ କୋଇଲିର ଡାକ ଭଳି କୋମଳ ଅଟେ, ଯେଉଁ ଡାକ ଅନ୍ୟ ଜଣକୁ ସଂପୂର୍ଣ୍ଣ ଭାବେ ମୋହିତ କରିଥିଲା । କିନ୍ତୁ ଆଜି ସେ ପାଖରେ ନାହିଁ, ତା' କଣ୍ଠର ଡାକ କାନରେ ବାରମ୍ବାର ଗୁଞ୍ଜରି ଉଠୁଛି । ଆଗର କଥା ଗୁଡିକ ମନେ ପଡିଲେ ଦୁଃଖ ଓ ବେଦନାରେ ଦେହ ଜଳିଯାଏ । ଦୁଃଖ ଦେହକୁ ଜାଳି ପାଉଁଶ କରିଦେବ ଅବା ? ବିରହର ଯନ୍ତ୍ରଣାରେ ଛଟପଟ ହୋଇ, ଏହିଠାରେ ଯୌବନର ଉଦ୍ଧାମତାର ଗୀତ ଗାଇବାକୁ ଯାଇ ଲୋକକବି ବିଭିନ୍ନ ପକ୍ଷୀମାନଙ୍କୁ ବିହୁଗୀତରେ ସୁନ୍ଦର ଭାବରେ ଚିତ୍ରିତ କରିଛନ୍ତି । କୋଇଲିର ମଧୁର ଡାକକୁ ସମସ୍ତେ ଭଲପାଆନ୍ତି । ଲୋକମନରେ କୋଇଲି ଏକ ଆଦର ପକ୍ଷୀ ଅଟେ । ତାହା ଲୋକକବିର ଭାଷାରେ ପ୍ରେମିକ ଓ ପ୍ରେମିକାର ମଧୁର କଣ୍ଠ ସହିତ ଅତି ଜୀବନ୍ତ ଭାବେ ତୁଳନା କରାଯାଇଛି ।

ତୋମାର ମାତେ ଷାରି କୁଲିରେ ମାତେ ଯେନ
ମାତେରେ ମୁହିଲା ମୋକ ;
ଆଗରେ କଥାଲେ ମନତ ପରିଗଲେ
ଏନେଇ କୁଲି ଆହେ ଶୋକ ।

ପ୍ରେମିକା ରୂପରେ କେବଳ ଅତି ଆପଣାର ଲୋକଟିକୁ ପାଇବା ପାଇଁ ପ୍ରେମିକ ଇଚ୍ଛା କରେ ନାହିଁ । ଚିରଦିନ ପାଇଁ ତା'କୁ ଜୀବନସାଥି ଭାବେ ପାଇବାର ଅଭିଳାଷ ରଖିଥାଏ । ଜୀବନର ସୁଖଦୁଃଖରେ ସମଭାଗୀ ହୋଇଥାଏ । ସେଥିପାଇଁ ପ୍ରେମିକମାନେ ଉପମା ଜଗତରୁ ବିଭିନ୍ନ ଶବ୍ଦ ଗୋଟାଇ ଆଣି ଉପଯୁକ୍ତ ସ୍ଥାନରେ ଠୁଳକରି ମନର ଇଚ୍ଛାକୁ ବ୍ୟକ୍ତ କରିଥାଆନ୍ତି । ନଈକୂଳକୁ ସୁନ୍ଦର ଚିଲପକ୍ଷୀ, ପର୍ବତକୁ ସୁନ୍ଦର ମିରି ଜନଜାତି ଦେଖାଯାଆନ୍ତି । ନଈକୂଳ ଭଳି ଖୋଲାଫାଙ୍କା ଜାଗାରେ ଚିଲମାନେ ଦଳଦଳ ହୋଇ ଆକାଶରେ ପକ୍ଷୀମେଲି ଉଡିଲାବେଳେ ବହୁତ ସୁନ୍ଦର ଦେଖାଗଲା ଭଳି, ପର୍ବତରେ ବାସ କରୁଥିବା ମିରି ଜନଜାତିମାନେ ପାହାଡକୁ ଅତି ଆପଣାର ବୋଲି ଭାବି ଥାଆନ୍ତି । ପାହାଡ଼

କୁଲି - କୋଇଲି ।

ପର୍ବତରେ ଜୀବନ କଟାଉଥିବା ମିରି ଜନଜାତିମାନେ ବହୁ ପ୍ରକାର କଷ୍ଟ ସ୍ୱୀକାର କରିଥାଆନ୍ତି, ପର୍ବପର୍ବାଣୀଗୁଡିକର ଆନନ୍ଦ ଉତ୍ସାହ ମଧ୍ୟରେ ବିଭିନ୍ନ ଋତୁର ଆହ୍ୱାନ କରି ଭିନ୍ନଭିନ୍ନ ଉତ୍ସବ ପାଳନ କରି, ନାଚି ଗୀତଗାଇ ଦିନ କଟାଇ ଥାଆନ୍ତି । ସେମାନଙ୍କର ସଂପର୍କ ପାହାଡ଼ ପର୍ବତ ସହିତ ଅତି ନିବିଡ଼ ଅଟେ । ନଦୀକୂଳକୁ ଚିଲ, ପର୍ବତକୁ ମିରିଜାତି ସୁନ୍ଦର ଦେଖାଗଲା ଭଳି ଯୁବକମାନଙ୍କ ପାଦରେ କଲାଫୁଲ ଅତି ସୁନ୍ଦର ଦେଖାଯାଏ । ଗାଁରେ ନାରୀମାନଙ୍କର ସମାବେଶ ହିଁ ଅଧିକ ସୁନ୍ଦର ଦେଖାଯାଏ । ଘରକୁ ଘରଣୀ ଭଳି ଗାଁକୁ ନାରୀମାନେ ନିଜର ମଧୁର କର୍ମମୟ ଜୀବନ ଭିତରେ ସୁନ୍ଦର କରି ଗଢ଼ି ତୋଳିବାକୁ ଚେଷ୍ଟା କରନ୍ତି ।

ନୈରେ ଶୁଅନୀ ଗଙ୍ଗାକୈ ଚିଲନୀ
ପର୍ବତର ଶୁଅନୀ ମିରି ;
ଡେକାରେ ଶୁଅନୀ ଭରିରେ କଲାଫୁଲ
ଗାଁ ଓ ରେ ଶୁଅନୀ ତିରୀ ।

ଏହି କଥା କହି ପ୍ରେମିକ ପୁରୁଷ ନିଜ ମନକଥାକୁ ବ୍ୟକ୍ତ କଲାବେଳେ ନଦୀ ତୁଠରେ ଲୁଗା ଧୋଉଥିବା ନାରୀଟି କିଛିକ୍ଷଣ ପାଇଁ ଭାବବିହ୍ୱଳ ହୋଇ ଦୂରରେ ଥିବା ନିଜ ପୁରୁଷର କଥା ମନେ ପକାଇ ଆକାଶକୁ ଚାହିଁ ରହିଛି । ଆକାଶରେ ଟୁନି ଚଢେଇ ଖୁସୀ ମନରେ ଉଡୁଛି । ପ୍ରେମିକାଟି ଚଦ୍ ଚଦ୍ କରି କପଡ଼ା ଧୋଉ ଧୋଉ ହଠାତ୍ ଚଢେଇକୁ ଦେଖି ତା'ର ବି ଇଛା ହେଉଛି ଚଢେଇ ସହିତ ଆଉ ଗୋଟିଏ ଚଢ଼େଇ ହୋଇ ଉଡ଼ିବା ପାଇଁ, କିନ୍ତୁ ପର ମୁହୂର୍ତ୍ତରେ ବାସ୍ତବତା ଭିତରକୁ ଫେରି ଆସୁଛି । ନିଜ ମନକୁ ନିଜେ ସାନ୍ତ୍ୱନା ଦେଇ କହୁଛି ଏ ସମୟରେ ତମେ ପାଖରେ ନାହଁ, ମୁଁ କେବଳ ମନସ୍ତାପ ଭିତରେ ହିଁ କାଳ କାଟୁଛି । ତା'ର ଏହି ଆବେଗମୟ ମୁହୂର୍ତ୍ତର କଥା ବିହୁ ଗୀତରେ ସୁନ୍ଦର ଭାବେ କୁହାଯାଇଛି-

ଚିରିପ୍ ଚିରିପ୍ କରି କାପୋର ଧୁଇ ଆଛିଲୋଁ
ଓପରେ ଉରିଲେ ଟୁନି ;
ଟୁନିରେ ଲଗତେ ଉରିମ ଯେନ ଲାଗିଲେ
ଓ ଚରତ ନହଲା ତୁମି ।

ସମୟ ଓ ପରିସ୍ଥିତିକୁ ଦେଖି ବହୁକଥା କହିବାକୁ ଥିଲେ ହେଁ କିଛି କହି ହୁଏନି । ସମୟକ୍ରମେ ସେ କଥାଗୁଡିକୁ ଭୁଲିବାକୁ ଯାଇ ବରଂ ମନ ଭିତରେ ଗୋଳେଇ ଘାଣ୍ଟି ହୁଏ, କେମିତି ଅବା ଦେଖାପାଇଲେ ସବୁକଥା ଏକାବେଳକେ କହିଦେବ । ଦିନ ପରେ ଦିନ ବିତିଯାଏ, କଥାଗୁଡିକ ସେମିତି ମନ ଭିତରେ ଥାଏ, ହଠାତ୍ ଦିନେ ଆକାଶରେ ଉଡୁଥିବା ବଗ, କରଚନ କଟୁଆକୁ ଦେଖି ଆପଣାର ପୁରୁଷର କଥା ମନେ ପଡିଯାଏ ।

---

ଡେକା - ଯୁବକ, କଲାଫୁଲ - ଆଣ୍ଠୁତଳର ମାଂସ, ଚିଲନୀ - ଚିଲ, ମିରି-ମିଶିଂ - ଏକ ଜନଜାତି, ଟୁନି - ବାୟାଭଳି ଚଢ଼େଇ, ଓଚରତ - ପାଖରେ ।

ଓପରେ ଉରିଲେ କରଚନ କଟୁଆ
ତା'ର ଲଗତ ଉରିଲେ ବଗ ;
ମନରେ କଥାଟି ମନତେ ଘୁରିଲେ
କବଲୌ ନେପାଲୌଁ ଲଗ ।

ଜଙ୍ଗଲରେ ସ୍ୱାଧିନଭାବେ ଜୀବନଯାପନ କରୁଥିବା ପଶୁପକ୍ଷୀଙ୍କ ଉପରେ ବେଳେବେଳେ ବିପଦ ଆସିଥାଏ । ଏହା ପ୍ରକୃତିର ଏକ ପ୍ରକାର ଲୀଳା ବୋଲି ଧରାଯାଇଥାଏ । ଜଙ୍ଗଲରେ ସମୟ ସମୟରେ ନିଆଁ ଲାଗେ, ଅନେକ ଗଛବୃକ୍ଷ ପୋଡିଯାଏ । ତା ସହିତ ସରଳ ନିରୀହ ପଶୁପକ୍ଷୀ ଓ କୋମଳ ଶାବକମାନେ ମଧ୍ୟ ପୋଡ଼ିହୋଇ ମରିଯାଆନ୍ତି । ଅନେକ ପକ୍ଷୀ ସେମାନଙ୍କର ବସା ଓ ଶାବକମାନଙ୍କୁ ହରାଇଥାଆନ୍ତି । ଏହି ସମୟରେ କୁକୁଡ଼ା ଆଦି ପକ୍ଷୀମାନେ ଭୟରେ ଉଡିଉଡି ବହୁଦୂରକୁ ଚାଲିଯାଆନ୍ତି । ପଶୁଗୁଡିକ ଯୁଆଡ଼େ ସିଆଡ଼େ ପ୍ରାଣରକ୍ଷା କରିବା ପାଇଁ ଦୌଡ଼ାଦୌଡ଼ି କରନ୍ତି ମାତ୍ର ବିପଦ ସମୟରେ ମଧ୍ୟ ପଶୁମାନେ କୁଆଡ଼େ ଗଲେ ହେଁ ନିଜର ସାଥିକୁ ପୁଣି ଖୋଜି ଖୋଜି ଏକାଠି ହୁଅନ୍ତି । କୁକୁଡ଼ା ଗୁଡିକ ବିପଦରୁ ରକ୍ଷାପାଇବା ପାଇଁ ବହୁଦୂରକୁ ଉଡିଗଲେ ହେଁ ସେମାନେ ମଣିଷର ଆହାର ହୁଅନ୍ତି । ଜୀବନସାଥି ଖୋଜିବା ସୃଷ୍ଟିର ଏକ ନିୟମ ଅଟେ । ସେଥିପାଇଁ ପ୍ରେମିକାଟି ସିଧାସଳଖ ଭାବେ ବିବାହ କରିବା ପାଇଁ ନ କହି ସେମାନଙ୍କୁ ବିଧାତା କାହିଁକି ଗୋଟିଏ ଯୋଡ଼ି କରୁନାହାନ୍ତି କହି ଦୁଃଖ କରିଛି ।

ହାବିତ ଜୁଇ ଲାଗିଲେ କୁକୁରା ଉରିଲେ
ଦରିକେ ଖୁଚରି ଖାୟ ;
ବନର ପଶୁପକ୍ଷୀ ଫୁରେ ଯୋରେ ପାତି
ଆମାର ଯୋରା ପାତୌଁତା ନାଇ ।

ପ୍ରେମରେ ପାଗଳ ହୋଇଥିବା ଯୁବମନ ବେଳେବେଳେ ସ୍ୱାଧିନ ଜୀବନ ଯାପନ କରିବାର ଅଭିଳାଷ ପୋଷଣ କରି ଯଦି ଅନୁମତି ନ ପାଆନ୍ତି, ତେବେ ସମାଜକୁ ଦୋଷ ଦିଅନ୍ତି, ତା ସହିତ ଜନ୍ମ ଦେଇଥିବା ମା ବାପକୁ ମଧ୍ୟ ଦୋଷ ଦିଅନ୍ତି । ଜନ୍ମଦାତା ଓ ଜନ୍ମଦାତ୍ରୀ ସବୁବେଳେ ସନ୍ତାନର ଶୃଙ୍ଖଳିତ ଜୀବନଯାପନକୁ ହିଁ ପସନ୍ଦ କରନ୍ତି ମାତ୍ର ଯୌବନର ମାଦକତାରେ ମନ ବେଳେବେଳେ ସମାଜର ପ୍ରତ୍ୟେକ ଲୋକଙ୍କୁ ଦୋଷୀ ବୋଲି ଭାବିନିଏ । କାଉ ଯେପରି ଏଣ୍ଡିପୋକର ଶତ୍ରୁ, ସେମାନେ ଡାଳରେ ଲାଗୁ ଲାଗୁ ତାଙ୍କୁ ଖାଇଦିଅନ୍ତି, ସେଥିପାଇଁ ଏଣ୍ଡିପୋକଙ୍କୁ ନେଇ ସୂତା କାଟିବା କାମରେ ଲଗାଉଥିବା ଲୋକପାଇଁ ଏହା ଏକ ବିପଦ, ଠିକ୍ ସେମିତି ଯୁବତୀର ମା'ବାପ ତା ପାଇଁ ଯୁବା ବୟସରେ ସବୁଠୁ ବଡ଼ ଶତ୍ରୁ

---

କନଚନ କଟୁଆ - ଏକପ୍ରକାର ଛୋଟ ଚଢ଼େଇ, ହାବି - ଜଙ୍ଗଲ,

କାରଣ ଝିଅଟିକୁ ତା' ମନର ମଣିଷଟିର ହାତରେ ନଦେଇ ବରଂ ଘରେ ରଖି କଷ୍ଟ ଦେଉଛନ୍ତି । ବାସ୍ତବରେ ପ୍ରେମ ଓ ପ୍ରୀତିର ଗୁଣଗାନ କରିବାକୁ ଯାଇ ସରଳ ଗାଉଁଲିଆ ଲୋକମନରେ ଯେଉଁ ଭାବ ଯେତେବେଳେ ଆସିଛି, ସେ ସେହି ଦୃଷ୍ଟିରୁ ତା'କୁ ବିହୁଗୀତରେ ଗାଇଛନ୍ତି ।

କାଉରୀ ଶତ୍ରୁରୁ ମୁଗାକେ ଚୁଙ୍ଗୀୟ ।
ପରିବ ନିଦିୟେ ତାଳତ,
ତୋମାରେ ଶତ୍ରୁରୁ ମା'ରେ ବାପେରେ
ନିଦିୟେ ଗାଭରୁ କାଳତ-

ବିରହ ଯନ୍ତ୍ରଣାକୁ ଲୋକକବି ବିଭିନ୍ନ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ ପରିବେଶରେ ଓ ପରିସ୍ଥିତିରେ ସେମିତି ଭାବ ଓ ଭାଷା ଦେଇ ଜୀବନ୍ତ କରିବାକୁ ଚେଷ୍ଟା କରିଛନ୍ତି । ମିଳନର ଆନନ୍ଦକୁ ତା'ଠୁ ଅଧିକ ମଧୁର ଗଢ଼ିବାର ପ୍ରୟାସ କରିଛନ୍ତି । ପ୍ରେମ ଓ ପ୍ରୀତି ବିରହରେ ଯେତିକି ଯନ୍ତ୍ରଣା ଦିଏ, ମିଳନରେ ତା'ଠୁ ଅଧିକ ଆନନ୍ଦ ଦିଏ । ଏହି ଆନନ୍ଦକୁ କବି ବିଭିନ୍ନ ପ୍ରକାର ଶବ୍ଦ ଚୟନ କରି ବର୍ଣ୍ଣନା କରିଛନ୍ତି । ବଣି ଚଢ଼େଇ ମାଟିରୁ ମଞ୍ଜି ଟୋକି ଟୋକି ଖାଇବାର ଆନନ୍ଦରେ ବିଭୋର ହୁଏ । ସେମିତି ଆପଣାର ପ୍ରିୟତମର ଭଲମନ୍ଦ ଖବର ପାଇ ପ୍ରିୟାଟି କୁରୁଳି ଉଠିଛି ।

ଶାଲିକୀ ଚରାୟେ କିରିଲି ମାରିଲେ
ଗଛର ଗୁଟି ଖାବଲେ ପାୟ ;
ଆମାର ସେନେହୀୟେ କିରିଲି ମାରିଲେ
ସେନାଇରେ ବାତରି ପାଇ ।

ପ୍ରେମିକ ଆସିବାର ଖବର ପାଇ ପ୍ରେମିକାର ମନରେ ଉତ୍କଣ୍ଠା ବଢ଼ି ବଢ଼ି ଯାଉଛି । ଶେଷରେ ପ୍ରେମିକ ଆସି ଯିବାର ସମୟ ହୋଇଛି । ପ୍ରେମିକାଠୁ ବିଦାୟ ନେଲାବେଳକୁ ପ୍ରେମିକାଟି ତା'କୁ ଯିବାକୁ ଦେଉନି । ଯେତେପ୍ରକାର ବୁଝାଇଲେ ବି ଝିଅଟି ଆଦୌ ବୁଝୁନି । ପ୍ରେମିକଟି ତା'କୁ ବୁଝାଇବାକୁ ଚେଷ୍ଟାକରି ଶେଷରେ କହୁଛି ବଣି ଚଢ଼େଇ ମଞ୍ଜି ଖାଇବାକୁ ଯାଇ ବେଳେବେଳେ ଫାଶରେ ପଡିଯାଏ, ତୁ ସେମିତି ମୋର ଦେହର ଭଲମନ୍ଦ ଖବର ଜାଣିବା ପାଇଁ ବାରମ୍ବାର ଖବର ଦେବାରୁ ମୁଁ ନିଜେ ଆସିଲି ଅଥଚ ଖବର କ'ଣ ଦେବି ତୁ ନିଜେ ଦେହର ଆକର୍ଷଣରେ ଆବଦ୍ଧ ହୋଇଗଲୁ ।

---

ମୁଗାକେ ଚୁଙ୍ଗୀୟା - ଏଣ୍ଡିପୋକ, ଗାଭରୁ - ଯୁବତୀ, ଶାଲିକା - ବଣି, ଗୁଟି - ମଞ୍ଜି, କିରିଲି - କୁରୁଳି, ବାତରି - ଖବର ।

ଶାଲିକୀ ପରିଲେ ଫାନ୍ଦତ ଐ ଲାହରୀ
ଶାଲିକୀ ପରିଲେ ଫାନ୍ଦତ ;
କିନୋ କୈ ଯାମ ଦେହାର ବାତରି
ତୁମି ଓ ପରିଲା ବାନ୍ଧତ ।

ପ୍ରେମିକଟି ତା'କୁ ବୁଝାଇବାକୁ ଚେଷ୍ଟାକରି କହୁଛି, ତା'ର ମଧ ଯିବାର ଇଚ୍ଛା ନାହିଁ କିନ୍ତୁ କର୍ମ ଓ କର୍ତ୍ତବ୍ୟବୋଧ ତା'କୁ ଯିବାପାଇଁ ବାଧ କରୁଛି । ପ୍ରେମିକଟି ତାକୁ ଯେତିକି ଭଲପାଏ ଯେତିକି ସେ ଝିଅଟି ତା'ର ପ୍ରେମିକକୁ ଭଲପାଏ । ତା'ର ବି ବେଳେବେଳେ ଆକାଶର ବଗୁଲୀକୁ ଦେଖି ପ୍ରେମିକାର ସ୍ମୃତି ତା' ମନ ଭିତରକୁ ଆସିଥାଏ । ସେଥିପାଇଁ ସେ ବଗୁଲୀ ତା'ର ପ୍ରେମିକା ଭାବି ତା' ସହିତ ଉଡିଯିବା ପାଇଁ ଇଚ୍ଛା କରେ । ସେ ତା'କୁ ଏତେ ବେଶି ଭଲପାଏ ଯେ ଚାରିବେଳା ନଖାଇ ମଧ ତା' ସହିତ ଖୁସୀ ମନରେ ରହିପାରିବ, ମାତ୍ର କର୍ତ୍ତବ୍ୟର ଆହ୍ୱାନକୁ ଏ ସଂସାରରେ ଏଡିଦେବା ଏତେ ସହଜ ନୁହେଁ । ସେଥିପାଇଁ ସେ ପ୍ରେମିକାଠୁ ବିଦାୟ ନେଲାବେଳେ ଯଥାସାଧ ବୁଝେଇବାକୁ ଚେଷ୍ଟା କରି କହୁଛି-

ଉରି ଯାଓଁ ବଗଲୀର ଲଗତ ଐ ଲାହରୀ
ଉରିଯାଇଁ ବଗଲୀର ଲଗତ ;
ନେ ଖାଇ ଚାରିସାଜି ଥାକିବ ପାରୋଁ ମଇ
ତରାଦୈ ଗାଭରୁର ଲଗତ ।

ଶେଷରେ ବୁଝାଇ ବୁଝାଇ ପ୍ରେମିକଟି ନିଷ୍ଫଳ ହୋଇ ସମାଜର ସମସ୍ତ ବାଧା ବନ୍ଧନକୁ ଏଡାଇ 'ତରାଦୈ'କୁ ସାଙ୍ଗରେ ନେଇ ଗାଁ ମୁଣ୍ଡରେ ଥିବା ଧାନଜମିକୁ ବୁଲିଯାଇଛି । ଆନନ୍ଦରେ ବିଭୋର ହୋଇଥିବା ତରାଦୈ ସହିତ ଗାଁ ମୁଣ୍ଡରେ ଦୁଇଜଣ ଖୁସୀରେ ବୁଲୁଛନ୍ତି । ବତକ ରାସ୍ତାରେ ଲଣ୍ଡଭଣ୍ଡ ହୋଇ ବୁଲୁଥାଏ, ପାରା ରହି ରହି ବୁଲେ କିନ୍ତୁ ଏଠାରେ ସେନାଇ ବା ପ୍ରେମିକ ପୁରୁଷ ନିଜର ସାଥିକୁ ନେଇ ଧାନକିଆରୀ ମଝିରେ ଥିବା ବନ୍ଧରେ ଖୁସୀ ମନରେ ବୁଲୁଛି ।

ହାଁହେ ବାଟେ ବୁଲେ ଲୁଡୁରେ ପୁଡୁରେ
ପାରଇ ବାଟେ ବୁଲେ ରଇ ;
ସେନାଇ ବାଟେ ବୁଲେ ସେଉନୀ ଆଲିତେ
ଲଗର ସମନୀୟଃ ଲଇ ।

ତରାଦୈର ପ୍ରେମରେ ବାନ୍ଧିହୋଇ ଯୁବକଟି ଗାଁରେ କିଛିଦିନ ପାଇଁ ରହିବ ବୋଲି ସ୍ଥିର କରିଛି । ଦିନସାରା ତା ସହିତ ଗାଁ ଜମି, ପଡିଆ, ଆଦି ଜାଗାରେ ବୁଲି ଗପିଛି ତଥାପି

ବାନ୍ଧ - ଆବଦ୍ଧ ହେବା, ସାଜ - ଏବେଳାର ଖାଦ୍ୟ, ତରାଦୈ - ଗୋଟିଏ ଝିଅ ।

ମନଶାନ୍ତି ପାଇନାହିଁ । ଜୀବନସାରା ନିଜର ସେନାଇକୁ ପାଖରେ ରଖିବାକୁ ଇଚ୍ଛା କରିଛି । ଦିନସାରା କାମ କରି କରି ଯେତେ କଷ୍ଟ ହେଲେ ବି ଥରେ ସେନାଇକୁ ଦେଖିଲେ ସବୁ କଷ୍ଟ ଭୁଲି ହୋଇଯାଏ । ସେନାଇକୁ ଦିନରେ ଥରେ ନ ଦେଖିଲେ ଭୋକଶୋଷ ମଧ୍ୟ ଭୁଲିଯାଏ । ହଳଦୀଆ ରଂଗର ଚଢେଇର ପକ୍ଷୀଗୁଡିକ ଅତି ସୁନ୍ଦର ଭାବେ ସଜ୍ଜିତ ହୋଇ ମନକୁ ଆକର୍ଷିତ କରିବା ସଂଗେ ସଂଗେ ବହୁଦୂରକୁ ହଳଦିଆ ରଂଗର ଚଢେଇ ଅରଣ୍ୟ ସୁନ୍ଦରୀର ମଥାରେ ଟୋପାଟିଏ ଭଳି ଦେଖାଯାଇଥାଏ । ଏହା ପ୍ରକୃତିର ମଧୁର ଅବଦାନ ଅଟେ । ଏହା କଳ୍ପନା କରୁ କରୁ ପ୍ରେମିକାଟି ଭାବପ୍ରବଣ ହୋଇ ନିଜ ପ୍ରେମିକକୁ ମାନସିକ ସ୍ତରରେ ଏତେ ବେଶି ଭଲପାଇ ବସିଛି ଯେ ସବୁବେଳେ ଆଖି ଆଗରେ ରଖିବା ପାଇଁ ଇଚ୍ଛା କରି କହୁଛି-

ଚରାଇ ହାଲଧିୟା ପାଖି ବିନଦୀୟା
ଅରଣ୍ୟର ଭିତରତ ଟୋପ ;
ଦିନଟୋର ଭିତରତ ଏବାର ନେଦେଖିଲେ
ପେଟତୋ ନେଲାଗେ ଭୋକ ।

କେହି କେହି ପ୍ରେମିକା ଆପଣାର ମଣିଷକୁ ନିଜ ପାଖରେ ନପାଇ ଦୁଃଖରେ ଭାଙ୍ଗିପଡନ୍ତି । ମନର କଥା ମା' ହିଁ ବୁଝେ । ସେଥିପାଇଁ ମା'ର ବେକକୁ ଧରି କାନ୍ଦି କାନ୍ଦି ଆପଣାର ଲୋକଟିକୁ ସବୁବେଳେ ପାଖରେ ଦେଖିବା ପାଇଁ କହିଥାଆନ୍ତି । ବିଚ୍ଛେଦ ଯନ୍ତ୍ରଣା ଅତ୍ୟନ୍ତ କଷ୍ଟଦାୟକ ଅଟେ । ଏହା ପଶୁପକ୍ଷୀ ଆଦିଙ୍କ କ୍ଷେତ୍ରରେ ମଧ୍ୟ ଯନ୍ତ୍ରଣାଦାୟକ ହୋଇଥାଏ । କପୋତଟି କୋଳିଗଛର ଡାଳରେ ବସି ବହୁଦିନରୁ କାନ୍ଦୁଛି, ତା' ପାଇଁ ବିଚ୍ଛେଦ ଯନ୍ତ୍ରଣା ଅଧିକ କଷ୍ଟଦାୟକ ହୋଇଉଠିଛି, ତଥାପି କପୋତୀଟି ଫେରୁନାହିଁ, ଦୂର ଜଙ୍ଗଲକୁ ଯାଇଛି, ବୋଧହୁଏ ବାଟ ହୁଡି ଯାଇଛି । କୋଇଲିଟି 'ଲୟେଇ ଲୟେଇ ବାହୁନୁଛି କେତେଦିନରୁ, ତା'ର ସାଥିକୁ ଏହି କାନ୍ଦଣା ଭିତରେ ଆହ୍ୱାନ କରୁଛି ହେଲେ କାନ୍ଦିବାର ଅନ୍ତ ନାହିଁ । ମା'ର ଗର୍ଚିକୁ ଧରି ଝିଅଟି ତା'ର ଆପଣାର ମଣିଷଟିକୁ ପାଖରେ ପାଇବା ପାଇଁ କାନ୍ଦୁଛି । ମା' କେବଳ ଜନ୍ମ ଦେଇଥିବା ଝିଅର ବେଦନାକୁ ଭଲଭାବେ ହୃଦୟଙ୍ଗମ କରିପାରିବ, ଏହା ବିହୁଗୀତର ବନଘୋଷାରେ ପ୍ରତିପାଦିତ ହୋଇଛି ।

'ବଗରୀର ଡାଲତେ କପୌଟି ବିନାଲେ
ଠେଓ ଧରି ବିନାଲେ କୁଲି ;
ମା' କର ଡିଙ୍ଗିତ ଧରି ଜୀୟେକେ ବିନାଲେ
ଲାଗେ ଲଗରୀୟା ବୁଲି ।

---

ସେଉନୀ ଆଲି - ଦାନ କିଆରୀର ବନ୍ଧ, ବିନାଲେ -'ବାହୁନିଲେ, ଠେଓ - ଲୟେଇ ୨, ଡିଙ୍ଗି- ବେକ ।

ପ୍ରେମର ଅନ୍ତ ନାହିଁ । ଯୁଗେ ଯୁଗେ ପ୍ରଣୟୀ ଓ ପ୍ରଣୟୀନି ମିଳନ ଓ ବିରହରେ ମଧ୍ୟ ପ୍ରେମର ଜୟ ଜୟ ଗାନ କରିଛନ୍ତି । ସେଥିପାଇଁ ପ୍ରେମ ବିନା ମାନବର ସ୍ଥିତି କଳ୍ପନା କରିହୁଏ ନାହିଁ । ଦୁଃଖ ଓ ଦାରିଦ୍ର୍ୟତା ଭିତରେ ମଣିଷ ପ୍ରେମ ମାଧ୍ୟମରେ ଆନନ୍ଦ ପାଇଥାଏ, ପ୍ରେମ ମଣିଷକୁ ସୁଖରେ ବଞ୍ଚିବାର ଖୋରାକ ଯୋଗାଇଥାଏ । ସୃଷ୍ଟିର ସ୍ଥିତି ପ୍ରେମକୁ ଆଧାର କରି ରହିଛି । ବିହୁଗୀତର ବନଘୋଷାରେ ପ୍ରେମିକ ପ୍ରେମିକା ଅଧିକ ଭାବପ୍ରବଣ ହୋଇ ବେଳେବେଳେ ଅଶ୍ଳୀଳ ଭାଷାର ପ୍ରୟୋଗ ମଧ୍ୟ କରିଛନ୍ତି । ମଧୁମୟ ଜୀବନର ନିଛକ ରୂପଟିକୁ ଖୋଲାଖୋଲି ଭାବେ ଗୀତଗୁଡ଼ିକରେ ବର୍ଣ୍ଣନା କରାଯାଇଛି । ସରଳ ଗାଉଁଲିଆ ଲୋକମାନେ ଜଟିଳ ଭାଷାର ପ୍ରୟୋଗ କରି କଥାକୁ ବୁଲେଇ ବଙ୍କେଇ କହି ଜାଣି ନଥିବାରୁ ଏହା ସିଧାସଳଖଭାବେ ଯୁବକର ମୁହଁରେ ପ୍ରକାଶ ପାଇଛି ।

କୋନେ ନୋ ମାରିଲେ ହାରୋଆ କପୌଟି
କୋନେ ଉଘାରିଲେ ନେଜ ;
ମଇନାର ଗାଲତେ କୋନେ ଆଁଚୁରିଲେ
ଦୁଗାଲେ ଦୁଧାରି ତେଜ ।

ଏଇଠି ପ୍ରେମିକଟି ବାସ୍ତବତା ଆଡ଼କୁ ଲକ୍ଷ୍ୟରଖି ମନର ଭାବ ପ୍ରକାଶ କରି ନିଜକୁ ନିଜେ ପଚାରିଛି କିଏ ଏହି ହାରୋଆ କପୋତକୁ ମାରିଲେ । ତା'ର ଲାଞ୍ଜକୁ ଏକଦମ୍ ଛିନ୍ନଭିନ୍ନ କରି ଛିଣ୍ଡେଇ ପକାଇଲେ । ସେମାନେ ଅତ୍ୟନ୍ତ ନିଷ୍ଠୁର ହୃଦୟର ଲୋକ । ଏ କପୋତଟି କାହାର ବା କ'ଣ କରିଥିଲା ? କିଏ ମୋର ମଇନାର ଗାଲକୁ ଆଞ୍ଚୁରିଲା ଦୁଇଗାଲରେ ଦୁଇଧାର ରକ୍ତ ବୋହି ଯାଉଛି । ସେ କାହାର ବା କ'ଣ କରିଥିଲା ? ପ୍ରେମିକର ପ୍ରେମିକା ପ୍ରତି ଏହି ପ୍ରକାର ଆନ୍ତରିକତା ପ୍ରକାଶ ପାଇଲାବେଳେ ପ୍ରେମିକାଟି ନିଜ ମନର ଭାବକୁ ବଗୁଲୀ ଆଗରେ ପ୍ରକାଶ କରି କହୁଛି । ମୁଁ ହାଁଚଟି ତିଆରି କରି ମୋ ପ୍ରେମିକ ପାଇଁ ଶରାଇରେ ରଖିଥିଲି, ସେ ହାଁଚଟିଟି ଆକାଶରେ ଉଡୁଥିବା ବଗୁଲୀ ସଂଗରେ ଆକାଶକୁ ଉଡିଗଲା । ପ୍ରେମିକାର ମନର ଅସଲ କଥାଟି ଏହା ସହିତ ପ୍ରକାଶ ପାଉଛି । ସେ ଆଉ ସମ୍ଭାଳି ନ ପାରି କହୁଛି ମୁଁ ଚାରିବେଳା ନଖାଇ ମୋ ସେନାଇ ସହିତ ରହିପାରିବି କିନ୍ତୁ ଯେତେ ସୁଖ ବା ଆନନ୍ଦ ଭିତରେ ରହିଲେ ବି ସେନାଇଠୁ ଦୂରରେ ରହି ମୁଁ ଆଦୌ ବଞ୍ଚି ପାରିବିନି ।

ହାଁଚଟି ବଲୌଁ ମଇ ଶରାଇତେ ଥଲୌଁ ମଇ
ଉରିଗଲ ବଗୁଲୀଟି ଲଗତ ;
ନେ ଖାଇ ଚାରି ସାଜି ଥାକିବ ପାରୌଁ ମଇ
ସେନେହର ସେନାଇରେ ସଂଗତ ।

ହାରୋଆ କପୌ-ଏକପ୍ରକାର କପୋତ, ଉଘାରିଲେ - ଉପାଡିଲେ, ନେଜ - ଲାଞ୍ଜ ।

ବିହୁଗୀତର 'ବନଘୋଷା' ଗୁଡିକ ଯଥାର୍ଥରେ ଯୌନ ଜୀବନର ଅଭିବ୍ୟକ୍ତି । ତେଣୁ ମଇନା, ସେନାଇ, ଲାହରୀ, ବହନା, ଧନ ଆଦି ସମ୍ବୋଧନଗୁଡ଼ିକର ବ୍ୟବହାର ଅତିମାତ୍ରାରେ ଦେଖାଯାଇଥାଏ । ତା ସହିତ ପ୍ରଣୟାତ୍ମକ ଗୀତର ପ୍ରାଚୁର୍ଯ୍ୟ ମଧ୍ୟ ଅଧିକ । ଯୌନ ଜୀବନର ଆବେଗ-ଅନୁଭୂତି ପ୍ରକାଶ ପାଇବା ସଂଗେ ସଂଗେ ବହୁପ୍ରକାର ସାମାଜିକ ବୈଷମ୍ୟର କଥା ମଧ୍ୟ ପ୍ରକାଶ ପାଇଛି । ଯେପରି ମୁଁ ଦୁଃଖିର ଝିଅ, 'ହାତରେ ନାହିଁ ଧନ' 'କ'ଣ କରିବ ଅଜାତିର କୁଳେ', 'ମତା ମଇଁଷୀ (male buffalo) ରଖିବାକୁ ଦେଲେ', 'ତୁମକୁ ଓ ମୋତେ ଏକାଠି ଏ ସମାଜ ଦେଖିଲା', 'ନଇ ଘାଟରେ ନାବ ସେବା କରୁଛି' ଆଦି ଖଣ୍ଡକାବ୍ୟ ଗୁଡିକ ମାଧ୍ୟମରେ ସାମାଜିକ ବୈଷମ୍ୟ ଏବଂ ଅର୍ଥନୈତିକ ଅବସ୍ଥାର କଥା ଜଣାଯାଇଥାଏ ।

ବନଘୋଷା ଗୁଡିକରେ ସମୟର ଛାପ ରହିଛି । ତା' ସହିତ ପରିବେଶ ଦ୍ୱାରା ମଧ୍ୟ ଏହା କବଳିତ ହୋଇଛି ଏବଂ ପ୍ରକୃତିର ମଧୁର ପରଶ ମଧ୍ୟ ସମନ୍ୱିତ ହୋଇଛି । ଚଢେଇର ଉଡୁଥିବା ସମୟର ଦୃଶ୍ୟ, ନଇର ଚିକ୍‌ମିକ୍ ବାଲି, ବିଭିନ୍ନ ରଂଗର ଫୁଲ, କାଶତଣ୍ଡୀ ଫୁଲରେ ମଣ୍ଡିତ ଅରଣ୍ୟ ସୁନ୍ଦରୀର ଉଜ୍ଜ୍ୱଳ ଛବି ସହିତ ନଇ, ପର୍ବତ, ଚାଷଜମିର ବର୍ଣ୍ଣନା ରହିଛି ।

ବିହୁଗୀତର ବନଘୋଷାରେ ମୁଖ୍ୟତଃ ପ୍ରେମର ଜୟଗାନ କରାଯାଇଛି । ପ୍ରେମର ଜୟଗାନ କରିବା ପାଇଁ ନଦୀ ପର୍ବତ, ବୃକ୍ଷଲତା, ବିଭିନ୍ନ ପ୍ରକାର ପଶୁପକ୍ଷୀ ତଥା ସେମାନଙ୍କର ରୂପ ଓ ଗୁଣବର୍ଣ୍ଣନା ତଥା ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟର କଥା ବନଘୋଷାରେ ପ୍ରକାଶ ପାଇଛି । ଏହାର ମୁଖ୍ୟ ଆକର୍ଷଣ ହୋଇଛି ବିଭିନ୍ନ ଦୃଷ୍ଟିକୋଣରୁ ବିଭିନ୍ନ ରୂପରେ ପ୍ରେମର ମହତ୍ତ୍ୱ ବର୍ଣ୍ଣନା କରିବା । ତେଣୁ ପ୍ରେମରେ 'ଚିନ୍ତା'ର ବା ବେଦନାର ସ୍ଥାନ ଅକ୍ଷୁର୍ଣ୍ଣ ରହିଛି ।

ନୈଲୈ ହାଲିଲେ ନଦାଲି ଭଲୁକା
ପଥାରଲୈ ହାଲିଲେ କାକ ;
ବୁକୁର ହାଡ଼ ଓଲାଲେ ଡାଲି ଡାଲି କରି
କାଲୈ ଚିନ୍ତା କରି ଥାକ ।

ଏଠାରେ ପ୍ରକୃତିର ବର୍ଣ୍ଣନା କରାଯାଇ ନିଜର ମାନସିକ ଅବସ୍ଥାର କଥା କୁହାଯାଇଛି । ନଇରେ ଅଗଥିବା ବାଉଁଶ ହଲି ପଡିଲା ଭଳି, ଜମିରେ କାଉ ପଡ଼ି ଚରିଲେ କିନ୍ତୁ ଏଠାରେ ସେନାଇର ମାନସିକ ଅବସ୍ଥା ଦିନକୁ ଦିନ ଖରାପ ଆଡକୁ ଗତିକରୁଛି କାରଣ ସେ କାହାପାଇଁ ଦିନରାତି ଚିନ୍ତା କରୁଛି ! ସେଥିପାଇଁ ତା ଛାତି ପଞ୍ଜରା ହାଡ଼ ଖଣ୍ଡ ଖଣ୍ଡ କରି ଗଣି ହୋଇ ଯାଉଛି । ଏହି ଭାବନା ଜଣେ ଗାଉଁଲିଆ ଲୋକମନରେ ଅଧିକ ଉଦ୍ରେକ ହୋଇଥାଏ ।

---

ନଦାଲି ଭାଲୁକା - ଅଗ ଝାମ୍ପୁଲା ଥିବା ବାଉଁଶ, ହାଲିଲେ - ହଲି ପଡ଼ିଲା, କାଲୈ - କାହା ପାଇଁ ?

ବିଭିନ୍ନ ପ୍ରକାର ପଶୁପକ୍ଷୀଙ୍କର ସ୍ୱରରୁ ସମୟ ତଥା ଶୁଭ ଅଶୁଭ ମୁହୂର୍ତ୍ତରେ ସଙ୍କେତ ମିଳିଥାଏ । କୁକୁଡା ଏବଂ କାଉର'ରାବରୁ ସକାଳ ହେଲା ବୋଲି ଜଣାଯାଇଥାଏ । ପ୍ରେମିକାଟି ପ୍ରେମିକ ସହିତ ଆନନ୍ଦରେ ରାତି କଟାଇଲାବେଳେ ସମୟ କେମିତି ଯାଇଛି ସେ ଜାଣି ପାରିନି । ଭୋର୍ ହେବାରୁ କୁକୁଡା ରାବିଛି । ପ୍ରେମିକାଟି କୁକୁଡ଼ାକୁ ଗାଳିଦେଇ କହୁଛି ତୁ ଜଙ୍ଗଲୀ କୁକୁଡା, ରାତି ନ ପାହୁଣୁ କାହିଁକି ବୋବେଇଲୁ ? ତୋ ପାଇଁ ମୋର ପ୍ରିୟତମ ମୋତେ ଛାଡି ଚାଲିଯିବ । ଝିଅଟି ରାଗିଯାଇ କୁକୁଡାକୁ ଅଭିଶାପ ଦେଉଛି, ତୁ ଦୁଇପ୍ରେମୀଙ୍କୁ ଅଲଗା କଲୁ, ତତେ ଲୋକମାନେ ପଛରୁ ଗୋଡେଇ ଗୋଡେଇ କଷ୍ଟଦେଇ ମାରିବେ ।

କୁକୁରା କୁକୁରା ଅଜାତି କୁକୁରା
ଭୁକୁଥାଇ ମାରିମ ଐ ତୋକ,
ରାତିନୌ ପୁଆଓଁତେଇ କିୟ ଡାକେ ଦିଲି
ଧନେ ଏରି ଯାୟ ମୋକ ।

ଅସମୀୟା ଲୋକ ସାହିତ୍ୟର ଅମୂଲ୍ୟ ସଂପଦ ବିହୁଗୀତ ଗୁଡିକରେ ଆସାମର ପ୍ରାକୃତିକ ଚିତ୍ର ଫୁଟି ଉଠିଥିବାର ଲକ୍ଷ୍ୟକରି ଏହା କୁହାଯାଇପାରେ ଯେ, ଦୂର ଅତୀତରୁ ଅସମୀୟାର ପ୍ରକୃତି ସହିତ ନିବିଡ଼ ସମ୍ବନ୍ଧ ଅଛି ।

## ପଞ୍ଚମ ପରିଚ୍ଛେଦ

ସଙ୍କେତ ସୂଚୀ-

୧) କପୌ ଥେରେଙ୍କୁ, ନାହର ଜେତୁକା- ଆଜିର ବାତରି- ୧୯୯୭-୧୩-ଏପ୍ରିଲ୍ । ଯତୀନ୍ଦ୍ର ମୋହନ ଶଇକୀୟା ।

୨) 'ଅସମର ଲୋକସଂସ୍କୃତି'- ନିର୍ମଳପ୍ରଭା ବରଦଲୈ- ପୃ-୨୨୦



କୁକୁରା- କୁକୁଡ଼ା, ଭୁକୁଥାଇ-ପଛପଟୁ ଧରି ଛେଚି ଛେଚି, ଗୋଡେଇ ଗୋଡେଇ ମାରିବେ ।

# ଷଷ୍ଠ ପରିଚ୍ଛେଦ
## ବିହୁଗୀତରେ ସାମାଜିକ ଜୀବନର ଚିତ୍ର

ବିହୁଗୀତ ମୁଖ୍ୟତଃ ପ୍ରେମ ଓ ଆନନ୍ଦର ଗୀତ ହେଲେ ହେଁ ସମାଜର ବିଭିନ୍ନ ସମସ୍ୟା, ସୁଖଦୁଃଖର ଚିତ୍ର ଏଥିରେ ପ୍ରତିଫଳିତ ହୋଇଛି । ପରଂପରାରେ ବିଶ୍ୱାସ ରଖିଥିବା ସରଳ ମଣିଷର ଦୈନନ୍ଦିନ ଜୀବନର ବିଭିନ୍ନ ଚିତ୍ର, ଘରକରଣା ଜିନିଷ ଗୁଡ଼ିକର ବର୍ଣ୍ଣନା ତଥା ସ୍ନେହ - ପ୍ରେମ, ପ୍ରୀତି ଏବଂ ପରଶ୍ରୀକାତରତାର ଚିତ୍ର ମଧ୍ୟ ବିହୁଗୀତଗୁଡ଼ିକରେ ଉଦ୍‌ଭାଷିତ ହୋଇ ଉଠିଛି । ଶତ୍ରୁତା-ମିତ୍ରତାର କଥା ସ୍ପଷ୍ଟଭାବେ ଲୋକକବି ଗାଇବା ସଂଗେ ସଂଗେ ଧର୍ମୀୟ ଭାବର ଆଲୋଚନା କରିଛନ୍ତି । ପ୍ରେମ ଓ ପ୍ରଣୟ ବିହୁଗୀତ ଗୁଡ଼ିକର ମୁଖ୍ୟ ଆଧାର ହୋଇଛି । ମଝିରେ ମଝିରେ ସାମାଜିକ ରୀତିନୀତି ତଥା ବିଶ୍ୱାସ ଅବିଶ୍ୱାସ ଏବଂ ଲୋକ ଚଳଣୀର ଅତ୍ୟନ୍ତ ଉତ୍କୃଷ୍ଟ ଉଦାହରଣ ମିଳିଛି । ନଦୀର ଏ ପଟରେ ପୁରୁଷ ପ୍ରେମିକଟି ପ୍ରେମିକାକୁ ଅପେକ୍ଷା କରି କରି ବିହୁ ନାମ ଗାଉଛି । ପ୍ରେମିକାଟି ନଦୀର ସେପଟେ ରହି କାଖରେ ପୂରା ମାଠିଆଟି ନେଇ ତା'ର ଉତ୍ତର ସଂକ୍ଷେପରେ ଦେଉଛି । ବିହୁନାମ ଗାଇବା ଛଳରେ ପୁରୁଷଟି ତା'ର ନାରୀଟିକୁ ଅନେକ ପ୍ରଶ୍ନ କରୁଛି । ତା'ର ପ୍ରେମିକାକୁ ଲାହରୀ ବୋଲି ସମ୍ବୋଧନ କରି ସେ ମଧୁର କଣ୍ଠରେ ତା'କୁ ଡ଼ାକୁଛି । ପ୍ରେମିକାଟି କାଖରେ ପାଣି ମାଠିଆ ଧରି ବହୁ ସମୟ ହେଲା ପ୍ରଶ୍ନର ଉତ୍ତର ଦେଉଥିଲେ ହେଁ ତା' ଭିତରେ ସେ ଆନନ୍ଦ ପାଉଛି । ଭରା ମାଠିଆର ଓଜନକୁ ସେ ନିଜ ଇଚ୍ଛାରେ ଓ ଖୁସୀରେ ସହିଛି । ଅସମୀୟା ନାରୀର କଷ୍ଟ ସହିଷ୍ଣୁତାର ପରିଚୟ ଏହି ଗୀତରୁ ମିଳିଛି ।

ତୁମି ନାମେ ଗୋଆ    ଲାହରୀ ମାତେରେ
    ନୈରେ ପାନୀ ଘାଟତ ରୈ;
ଆମି ଉତ୍ତର କାଟୋ    ତୋମାର ଐ ନାମରେ
    କାଁଷତ ଭରା କଳହ 'ଲୈ ।

ଏହାପରେ ଅନେକ ପ୍ରଶ୍ନ ଓ ଉତ୍ତର ଛଳରେ ଉଭୟ ଉଭୟଙ୍କର ମନୋଭାବକୁ ବ୍ୟକ୍ତ କରିଛନ୍ତି । ପ୍ରେମିକାଟି କହୁଛି ମୁଁ ତିନିଖଣ୍ଡି କଅଁଳିଆ ପାନକୁ ସୁନ୍ଦର ଭାବରେ କାଟି ପାନ ଭାଙ୍ଗିଲି ତା' ଭିତରେ ଗୁଆ ତଥା ଅନ୍ୟାନ୍ୟ ମସଲା ଦେଇ ତା'କୁ ଏକାଠି ବାନ୍ଧିଲି ତା'ପରେ ତତେ ଚାଷଜମି ସାରା ଖୋଜିଲି, ତୁ କେଉଁ ଜମିରେ ଧାନ କାଟୁଥିଲୁ ? ଏହି ବର୍ଣ୍ଣନା ମଧ୍ୟରେ ସାମାଜିକ ଜୀବନର ଚିତ୍ର ଓ ଏହା ମଧ୍ୟରେ ଥିବା ସ୍ନେହ ଓ ଆନ୍ତରିକତା

---
ନାମେ - ବିହୁନାମ ବା ଗୀତ, କାଷତ - କାଖରେ; ଭରାକଳହ - ଭର୍ତ୍ତିକଳସୀ ।

ଫୁଟି ଉଠିଛି । ପ୍ରେମିକ ପୁରୁଷଟି କର୍ମବ୍ୟସ୍ତତା ଭିତରେ ଘରକୁ ଆସି ପାନନେବା ପାଇଁ ସମୟ ନାହିଁ, ପ୍ରେମିକାଟି ସ୍ନେହରେ ପାନଭାଙ୍ଗି ଜମିରୁ ଜମିକୁ ତା'କୁ ଖୋଜି ଖୋଜି ବୁଲିଛି । ସେ ତା'ର ମନୋଭାବକୁ ନଦୀଘାଟରେ ଥାଇ କହୁଛି-

ଥୁରିୟାବୁ କାଟିଲୋଁ ତାମୋଲ ତିନି ଖନି
ନୁରିୟାଇ ବାନ୍ଧିଲୋଁ ପାନ ;
ପଥାରେ ପଥାରେ ବିଚାରି ଫୁରିଲୋଁ
କ'ତେ ଦାଇ ଆଛିଲା ଧାନ ?

ପ୍ରେମିକଟି ଦୂରବାଟକୁ ଚାଲିଯିବା ପରେ ପ୍ରେମିକାର ମନରେ ଦୁଃଖ ଆସିଛି । ଦୁଃଖ ଓ ମାନସିକ ଯନ୍ତ୍ରଣାରେ ଛଟପଟ ହୋଇ ସେ ତା'ର ଦୈନନ୍ଦିନ ଜୀବନର ସୁଖର ଦିନଗୁଡିକୁ ମନପକାଇ କହୁଛି ମୋତେ କିଏ ଲୁଣିଆ ଓ ଖଟା ଅଁଳା କୋଳି ଆଣିଦେବ, କିଏ ମୋତେ ଖଟାଳିଆ ଫଳ ଆଣିଦେବ ? ଶଦିଆରେ ତା'ର ମନର ମଣିଷଟି ରହୁଛି, ଏତେ ଦୂରରୁ ତାଁ'ର ଭଲମନ୍ଦ ଖବର କିଏ ଆଣିବ ? ଶଦିଆ ସ୍ଥାନଟି ଆସାମର ତିନିସୁକିଆ ଜିଲ୍ଲାରେ ଅବସ୍ଥିତ । ଅରୁଣାଚଳ ପ୍ରଦେଶର ସୀମାନ୍ତରେଖା ଏହି ଜିଲ୍ଲାର ଗୋଟିଏ ପଟେ ସ୍ପର୍ଶ କରିଛି । ପ୍ରେମିକାଟି ତା' ପୁରୁଷର କଥା ଚିନ୍ତା କରି କରି ଦିନକୁ ଦିନ କ୍ଷୀଣ ହୋଇଯାଉଛି । ଏହି ଉକ୍ତି ମାଧ୍ୟମରେ ଆସାମର ନାରୀମାନେ କିପରି ଅଁଳା କୋଳି ଏବଂ ଅନ୍ୟାନ୍ୟ ଖଟାଫଳ ଖାଇବାକୁ ଭଲପାଆନ୍ତି, ତା'ର ଆଭାସ ମିଳିଛି ।

କୋନେ ଆନିଦିବ ଲୋନେ ଆମଲଖି
କୋନେ ଆନିଦିବ ଜରା ;
କୋନେ ଆନିଦିବ ଧନରେ ବାତରି
ଶଦିୟା ରାଜରେ ପରା ?

ସମାଜରେ ମିତ୍ରତାର ମହତ୍ତ୍ୱ ରହିବା ସଂଗେ ସଂଗେ ଶତ୍ରୁ କିପରି ବାଟରେ ବାଟ ଓଗାଳି ଥାଏ, ତାହା ବିହୁଗୀତରୁ ବାଦ୍ ପଡିନାହିଁ । ପ୍ରେମିକଟି ପ୍ରେମିକାକୁ କହୁଛି ମୁଁ ତୁମ ଘରକୁ ଯାଇଥିଲି, ତୁ ଭାତ ଖାଇ ବସିଥିଲୁ । ଭାବିଥିଲି ତୁ ଚୋପା ଛଡ଼େଇ ମତେ କଅଳିଆ ଗୁଆ ଖଣ୍ଡେ ଦେବୁ କିନ୍ତୁ ତୁ ବାହାରକୁ ଆସିଲୁନି କି ଗୁଆ ଖଣ୍ଡେ ଦେଲୁନି ଏମିତିକି ଥରଟେ ବି ଡାକିଲୁନି । ମୁଁ ବହୁତ ସମୟ ଅପେକ୍ଷା କରି କରି ଶେଷରେ ଘରକୁ ଫେରିଲି । ଗୁଆଖଣ୍ଡେ ମାଗିବା ଭିତରେ ଆସାମର ଲୋକମାନଙ୍କର ପାନ ଖାଇବାର ପରଂପରାର କଥା କୁହାଯାଇଛି । ଅସମୀୟାମାନେ କଞ୍ଚାଗୁଆର ଚୋପା ଛଡେଇ ଗୁଆକୁ ଦୁଇଖଣ୍ଡ କରି କଳରେ ଜାକି ଖାଇଥାଆନ୍ତି । କଞ୍ଚାଗୁଆ ଖାଇବାର୍ ଅଭ୍ୟାସଂପ୍ରାୟତଃ ଭାରତବର୍ଷରେ ଅନ୍ୟାନ୍ୟ ରାଜ୍ୟରେ ପ୍ରଚଳିତ ନୁହେଁ ମାତ୍ର ଅସମୀୟାମାନେ କଞ୍ଚାଗୁଆ ଖାଇବାକୁ ଅଧିକ ପସନ୍ଦ କରିଥାଆନ୍ତି ।

ଲୋନେ ଆମଲଖି - ଲୁଣିଆ ଅଁଳା କୋଳି, ଜରା - ଖଟାଳିଆ ଫଳ, ବାତରି - ଖବର ।

ତହଁତର ଘରଲୈ ଗୈଛିଲୋଁ ଲାହରୀ
ତଇ ଖାଇ ଅଛିଲି ଭାତ ;
ତାମୋଲ ଛାଲି ଦିବଲୈ ନୋଲାଲି ଲାହରୀ
ଓଲାଇ ନଲଗାଲି ମାତ ।

ଝିଅଟି ଏ କଥା ଶୁଣି ସଂଗେ ସଂଗେ କହୁଛି ତମ ଆସିଲାବେଳେ ମୁଁ ଭାତ ଖାଉ ନଥିଲି କିନ୍ତୁ ଜାଣିଶୁଣି ପଦାକୁ ଆସିଲିନି କାରଣ ଆମ ଘରକୁ ତୁମର ଚିରଶତ୍ରୁ ଲୋକଟି ବୁଲି ଆସିଥିଲା । ସେ ତୁମକୁ ବଦନାମି କରିଥାଆନ୍ତା । ସେ ମୋତେ ଘର ଦୁଆର ମୁହଁରେ ଭେଟିଲା । ମୁଁ ଆଉ ପଦାକୁ ଆସିଲିନି । ଅତି ସ୍ନେହରେ ନାରୀଟି ପ୍ରେମିକକୁ 'ସେନାଇ' ସମ୍ବୋଧନ କରି କହୁଛି-

ଆମାରେ ଘରଲୈ ଆହୋଁତେ ସେନାଇ ঐ
ମଇ ଖାଇ ଥକା ନାଇ ଭାତ
ତାମୋଲ ଛାଲି ଦିବଲୈ ନୋଲାଲୋଁ ସେନାଇ ঐ
ଶତ୍ରୁରୁୟେ ଭେଟିଲେ ବାଟ ।

ସମାଜରେ 'କଥାରେ ନଥା' ଲଗାଇ କହିବା ପ୍ରଥା ପ୍ରତ୍ୟେକ ଦେଶରେ ଅଛି । କଥାରେ କଥାରେ ତତେ ନ ଦେଖି ମୁଁ ଶୁଖି ଶୁଖି କାଠ ହେଲିଣି ଆଦି କଥା ଲୋକମାନେ କିପରି ସୁନ୍ଦର ଭାବରେ ବର୍ଣ୍ଣନା କରି ଉପମାର ପ୍ରୟୋଗ କରିଥାଆନ୍ତି, ତାହା ବିହୁଗୀତରୁ ବାଦ୍ ପଡିନାହିଁ । ଆଖି ଆଗରେ ବ୍ୟବହୃତ ଜିନିଷ ବା ପରିବେଶ ମଧ୍ୟରୁ ହିଁ ଲୋକକବି ଉପମାଗୁଡ଼ିକୁ ଗୋଟେଇ ଆଣିଥାଆନ୍ତି । ଯୁବକଟି ପ୍ରିୟାକୁ ଅତି ସ୍ନେହରେ କହୁଛି ହେ ଲାହରୀ, ତୋ' ଘର ସେପଟେ, ମୋ ଘର ଏପଟେ, ମଝିରେ ଗୋଟିଏ ବଡ଼ ଜଙ୍ଗଲ । ଯେଉଁ ଜଙ୍ଗଲଟି ଅତି ଘଞ୍ଚ, ଯାହାକୁ ପାର ହୋଇ ଯିବା ଅତି କଷ୍ଟସାଧ୍ୟ କଥା, ମୁଁ ସେ ଜଙ୍ଗଲକୁ ପାର ହୋଇ ଯାଇପାରୁ ନଥିବାରୁ ତୋ କଥା ଦିନରାତି ବସି ଭାବି ଭାବି ଜାଳେଣି କାଠ ଭଳି ଶୁଖି ଗଲେଣି ।

ତୋମାର ଘର ସିପାରେ ଆମାର ଘର ଇପାରେ
ମାଜତ ବ୍ରତାନି ହାବି ;
ଖରି ଶୁକୁଆଦି ଶୁକାଲୋଁ ଲାହରୀ
ତୋମାକ ଦିନେରାତି ଭାବି ।

ଯୁବକଟି ବିନା ସ୍ନେହରେ ବଞ୍ଚି ପାରିବନି । ଛୋଟବେଳୁ ସୁଖ ଦୁଃଖ ଭିତରେ ବଢିଛି । ପର ଘରେ କାମ କରି ଗୋରୁ ରଖି ନିଜର ପେଟ ପୋଷୁଥିଲା, ବଡ ହେବାରୁ ତନ୍ତରେ କପଡ଼ା ବୁଣି ପେଟ ପୋଷୁଛି । ସଂଜବେଳେ କାମ ବ୍ୟସ୍ତତା ଭିତରେ ସେ ତନ୍ତକୁ ଓଲଟ

---

ତାମୋଲ ଛାଲି - ଗୁଆର ଚୋପା ଛଡେଇ, ବ୍ରତନି - ଘଞ୍ଚ ଜଙ୍ଗଲ, ଖରି - କାଠ, ଶୁକୁଆ - ଶୁଖେଇବା, ଶୁଖିଲା ।

ପାଲଟ କରି ସୂତା ବୁଣୁଥିଲା; ଏହି ସମୟରେ ତା'ର ପ୍ରିୟ ଧନଟି ତା'କୁ ଡାକିଦେଲା । ଜୀବନର ସୁଖଦୁଃଖର ଚିତ୍ର ଦେଇ ଯୁବକଟି ପେଟ ପୋଷିବା ପାଇଁ କିପରି କଷ୍ଟ କରିଛି, ଏହା ଭିତରେ ଅଧିକାଂଶ ଯୁବକମାନଙ୍କର କଷ୍ଟସହିଷ୍ଣୁ ତଥା ଆତ୍ମନିର୍ଭରଶୀଳତାର ପରିଚୟ ମିଳିଛି ।

ସରୁ ହୈ ଆଛିଲୋଁ ଗରୁ ରାଖିଛିଲୋଁ
ଡାଙ୍ଗର ହୈ ଲଗାଲୋଁ ଡ଼ଁତ ;
ଓଲୋଟାଇ ଓଭୋତାଇ ମାକୋ ମାରିଛିଲୋଁ
ମୋର ଧନେ ଲଗାଲେ ମାତ ।

ନାରୀ ଯୁଗେ ଯୁଗେ ସୁଖଦୁଃଖରେ ପୁରୁଷ ସହିତ ଭାଗୀଦାର ହୋଇଥାଏ । ସେଥିପାଇଁ ତା'କୁ ଦୁଃଖହରଣକାରିନୀ ବା 'ହାରୈ' କୁହାଯାଇଥାଏ । ଏଠାରେ ଯୁବକଟି ନିଜର ସଂପର୍କୀୟା ଝିଅଟିକୁ 'ହାରୈ' କହିଛି । ସେ ଝିଅଟି ହାରଭଳି କଟା କଟା ମାଦଳ ସଦୃଶ ଗଳାର ଅଳଙ୍କାର ପାଇଁ ଯୁବକକୁ କହିଥିଲା । ଆଉଜଣେ ସଂପର୍କୀୟା ଝିଅ 'ପାରୈ' ବା 'ପାର୍ବତୀ' ଯିଏ କି ମାଳି ଆଣିବା ପାଇଁ କହିଥିଲା କିନ୍ତୁ ହୃଦୟଠୁ ବଳି ପ୍ରିୟ ତା'ର ପ୍ରିୟତମା ଶେଷରେ ହାତୀଦାନ୍ତର ପାନିଆ ପାଇଁ କହିଥିଲା । ଅସମୀୟା ନାରୀମାନେ ହାତୀଦାନ୍ତର ପାନିଆକୁ ମୁଣ୍ଡ ଖୋଷାରେ ଖୋଷିବା ପାଇଁ ବହୁତ ଭଲ ପାଆନ୍ତି, ଏହି ଗୀତରେ ତା'ର ଉଦାହରଣ ମିଳିଛି ।

ହାରୈୟେ ଖୁଜିଲେ ହାରେ କଟା ମାଦଳି
ପାରୈଏ ଖୁଜିଲେ ମଣି ;
ବୁକୁର ନୁମଲୀୟେ ଖୁଜି ପଠିୟାଲେ
ହାତୀ ଦାଁତର ଏଖନି ଫନି ।

ଧଳା ବା ନାଲି ରଂଗର ଗାମୁଛାରେ ହାତରେ ବୁଣା ହୋଇଥିବା ଫୁଲ ଗୁଡ଼ିକ ଅତି ସୁନ୍ଦର ଦେଖାଯାଉଥିବାରୁ ପ୍ରତିଟି ଅସମୀୟା ପୁରୁଷର ଏହା ଅଧିକ ପ୍ରିୟ ଅଟେ । ହାତବୁଣା ମେଖଳା ଚାଦର ବା ଧୋତି ଓ ଗାମୁଛାକୁ ଘରେ ଘରେ ଲୋକମାନେ ତନ୍ତରେ ବୁଣି ପିନ୍ଧିଥାଆନ୍ତି । ନାଲି ଗାମୁଛାରେ ଅନ୍ୟ ଏକ ରଂଗର ସୂତାରେ ବୁଣା ହୋଇଥିବା ପାଢ଼ି ଅଧିକ ଆକର୍ଷଣୀୟ ହୋଇଥାଏ । ଏହି ଗାମୁଛାକୁ ପ୍ରେମିକାଟି ଯେତେବେଳେ ପ୍ରେମିକକୁ ଉପହାର ଦେଇଥାଏ, ପ୍ରେମିକଟିର ଆନନ୍ଦର ସୀମା ନଥାଏ । ସେ ଖୁସୀରେ ପ୍ରେମିକାକୁ କହେ ତୁ ଗୁଆଖଣ୍ଡେ କାଟି ମୋତେ ଦେ; ମୁଁ ଖାଇବି । ମୋ ଲାହରୀ ହାତରେ ଭଂଗା ପାନ ଖଣ୍ଡେ ଖାଇଲେ ମୋତେ ବହୁତ ଭଲ ଲାଗେ । ସେ ଶେଷରେ ପ୍ରେମିକାର ହାତରେ ଭଂଗା ପାନ ଖଣ୍ଡେ ଖାଇବା ପାଇଁ ମୁହଁ ଖୋଲି କହିଛି-

---

ପାରୈ, ହାରୈ - ଝିଅର ନାଁ, ହାରେ କଟା ମାଦଳି - ଗଳାର ଏକପ୍ରକାର ଅଳଙ୍କାର, ଫନି - ପାନିଆ ।

ରଙ୍ଗାକୈ ଗାମୋଛା ମାଜେ ଶେଲ ଦିୟା
ତୁମି ତାମୋଲ କାଟି ଖୋଆ
ଲାହରୀ ହାତେରେ ଥୁରିୟାଇ ଥୁରିୟାଇ
ଆମାକୋ ଏଖନି ଦିୟା ।

ପାନଦେବା ପ୍ରେମର ପ୍ରତୀକ ରୂପେ ବହୁ ପ୍ରାଚୀନ କାଳରୁ ଧରା ଯାଇଥାଏ । ପ୍ରେମିକଟି ପ୍ରିୟା ହାତରେ ପାନ ଖାଇଲେ ତା'ର ପ୍ରେମଭାବର ସଂକେତ ମଧ ଏହା ଭିତରେ ପାଇବ ବୋଲି ଆଶା କରିଛି ।

ଆସାମରେ ନାରୀମାନେ ଚାଷଜମିରେ ଚଳିରୁଆଠ୍ ଆରମ୍ଭ କରି ଫସଲ ଅମଳ ପର୍ଯ୍ୟନ୍ତ ପ୍ରତ୍ୟେକ କାମରେ ଅତି ତତ୍ପରତାର ସହିତ ପୁରୁଷମାନଙ୍କ ସହିତ ମିଳି କାମ କରନ୍ତି । ପ୍ରତ୍ୟେକ ଲୋକଗୀତରେ ନିଜର ଦୈନନ୍ଦିନ ଜୀବନର ଚିତ୍ର ପ୍ରତିଫଳିତ ହେଲାଭଳି ବିହୁଗୀତରେ ନାରୀମାନେ କିପରି ଧାନବୋଝକୁ ମୁଣ୍ଡରେ ରଖି ସାଙ୍ଗହୋଇ ଘରକୁ ଫେରନ୍ତି, ତା'ର ବର୍ଣ୍ଣନା କରାଯାଇଛି । ଓସାରିଆ ଚାଷଜମିରୁ ଧାନକାଟି କେତୋଟି ନାରୀ ଘରକୁ ଫେରିଲାବେଳେ ସମସ୍ତଙ୍କ ହାତରେ ଧାନକଟା ଦାଆ ଖଣ୍ଡେ ଖଣ୍ଡେ, ଆଉ ଗୋଟିଏ ହାତ ଧାନବୋଝ ଉପରେ । ଲୋକକବି ଏହି ଦୃଶ୍ୟ ଭିତରେ କର୍ମନିଷ୍ଠାର ପରିଚୟ ପାଇ ଅତି ଖୁସୀ ହୋଇ ପ୍ରେମିକ ଦୃଷ୍ଟିରେ ସେମାନଙ୍କୁ ଦେଖୁଛନ୍ତି । ସେ ପଚାରୁଛନ୍ତି ତୁମମାନଙ୍କ ହାତରେ ସିନ୍ଦୂର ଭଳି ଲାଲ୍ ରଙ୍ଗର ଗୋଟିଏ ଗୋଟିଏ ଦାଆ ଅଛି । ତୁ ଏବଂ ତୋ'ର ବଡ଼ ଭଉଣୀ ଦି ଜଣ ଦେଖିବାକୁ ଏକାଭଳି । ତୁମ ଦୁଇଜଣଙ୍କ ଭିତରୁ ମୁଁ କାହାକୁ ଠିକ୍ କରିବି ବିଭା ହେବାକୁ ?

ବହଳକୈ ପଥାରତ ଧାନେ ଦାଇ ଆଛିଲା
ହାତତ ହେଙ୍ଗୁଲୀୟା କାଚି ;
ବାୟେକେ ଭନୀୟେକ ଦୁୟୋଜନୀ ଏକେ
ଆନୋ କୋନେ ଜନୀ ବାଛି ।

ସମାଜରେ ବହୁ ପ୍ରାଚୀନ କାଳରୁ ବିଭିନ୍ନ ପ୍ରକାର 'ସଂକେତ'ର ପ୍ରଚଳନ ରହିଛି । ଘର ଭିତରେ ଅନ୍ୟ ଲୋକମାନେ ଥିଲେ ମନର ଭାବକୁ ପ୍ରକାଶ କରିବାକୁ ହେଲେ କେତେଗୁଡ଼ିଏ ସଂକେତର ବ୍ୟବହାର କରାଯାଏ, ତାହା କେବଳ କଥା ହୋଇଥିବା ଦୁଇଜଣ ବ୍ୟକ୍ତିଙ୍କ ବ୍ୟତୀତ ସେଠାରେ ଥିବା ଅନ୍ୟ ଲୋକମାନେ ବୁଝି ପାରନ୍ତି ନାହିଁ । ଯେପରି ଅଂଗପ୍ରତ୍ୟଙ୍ଗର ବିଭିନ୍ନ ଭଂଗୀ ଯଥା ଆଖିଠାର ମାରିବା ବା ବିଭିନ୍ନ ପ୍ରକାରର ସ୍ୱର ଓ ଶବ୍ଦରେ ନିଜର ଭାବ ବ୍ୟକ୍ତ କରାଯାଇଥାଏ । ଠାର ଭାଷା ଭଳି ଠାର ଶବ୍ଦର ପ୍ରଚଳନରେ ମଧ ପ୍ରେମିକ ପ୍ରେମିକା ଅଥବା ବନ୍ଧୁବାନ୍ଧବର ଭାବକୁ ବୁଝିଥାଏ । ପ୍ରେମିକଟି ଆଗରୁ କହି

---

ବହଳ - ଓସାରିଆ, ହେଙ୍ଗୁଲୀୟା - ଲାଲ, ବାୟେକ - ଭନୀୟେକ - ବଡ଼ ଓ ସାନ ଭଉଣୀ ।

ରଖିଛି ଯେ ସେ ସୁସୁରି ବଜାଇଲେ ପ୍ରେମିକା ସଂଗେ ସଂଗେ ବାହାରକୁ ଆସିବ, ସେମାନେ ସାଙ୍ଗହୋଇ ବୁଲିଯିବେ । ତା' ପୂର୍ବରୁ ପ୍ରେମିକାଟିକୁ ବୁଲେଇ ନେବାପାଇଁ ସେ ତା'ର ପୁରୁଷକୁ ଅନୁରୋଧ କରି କହିଛି ତମେ ଗୋଲିଆ ଲେମ୍ବୁଫଳ ଅର୍ଥାତ୍ କମଳା ଏକୁଟିଆ ଖାଇବନି, ମୋତେ ଦେବ । ଜୋରହାଟ ବୁଲିଗଲେ ମୋତେ ସାଙ୍ଗରେ ନେବ ।

ଚକଲା ଟେଙ୍ଗାଟି ଅକଲେ ନେଖାବା
ଆମାକୋ ଏଚକଲ ଦିବା ;
ଜୋରହାଟ ଜିଲ୍ଲାଲେ ଅକଲେ ନେଯାବା
ଆମାକୋ ଲଗତେ ନିବା ।

ପୁରୁଷଟି ତା'କୁ କହୁଛି ତେଲ ଟାଟିଆରେ ତେଲ ବହୁଦିନ ରହିଲେ ଗନ୍ଧାଏ, ଦେହରୁ ଝାଳ ବାହାରିଲେ ଦେହ ବି ଗନ୍ଧାଏ । ଏହା ସହିତ ପଦକୁ ପଦ ମିଳାଇ ଲୋକକବି ପ୍ରକୃତ ଲକ୍ଷ୍ୟ ପଦେ ଶ୍ରୋତା ଆଗରେ କହିଛନ୍ତି । ଏହା ମାଧ୍ୟମରେ ସମାଜରେ ପ୍ରଚଳିତ ଠାର ଭାଷା ବା ଠାର ଶବ୍ଦର କଥା ବର୍ଣ୍ଣନା କରି କହିଛନ୍ତି ପ୍ରେମିକର ସୁସୁରି ଶବ୍ଦ ଶୁଣିଲାମାତ୍ରେ ସେ ବାହାରକୁ ଆସିବ ।

ତେଲରେ ବାଟିତେ ତେଲ ମଲଙ୍ଗିଲେ
ଗାତେ ମଲଙ୍ଗିଲେ ଘାମ ;
ସୁହୁରି ମାରିଲେ ଓଲାଇ ତୁମି ଆହିବା
ଦୁୟୋ ଏକେଲଗେ ଯାମ ।

ପୁରୁଷଟି ଏ କଥା ଆଗରୁ ପ୍ରେମିକାକୁ କହି ରଖିଥାଏ । ସେଥିପାଇଁ ମାଗୁରି ଚାଉଳରେ ରନ୍ଧା ଭାତ କଂସା ପାଖରେ ବସିଲା ବେଳକୁ ପ୍ରେମିକାକୁ ଠାର ଭାଷାରେ ଦେଇଥିବା କଥା ମନେ ପଡିଲା । ସେ ସଂଗେ ସଂଗେ ତା' ଘର ପାଖ ରାସ୍ତାକୁ ଯାଇ ସୁସୁରି ମାରିଲା ଅଥଚ ପ୍ରେମିକାଟି ବାହାରକୁ ଆସିଲାନି କି କୌଣସି ଜବାବ ଦେଲାନି । ପୁରୁଷଟିର ମନରେ ସନ୍ଦେହ ଆସିଲା । ସେ ମନର ଭାବକୁ ଏହିଭଳି ଭାବେ ବ୍ୟକ୍ତ କରିଛି-

ଭାତର କାଁହୀ ଆଗତଲେ ତୋଲେ ମନତ ପରେ
ମାଗୁରି ଧାନରେ ଭାତ ;
ପଦୁଲି ମୁଖତେ ସୁହୁର ମାରିଲୋଁ
ଓଲାଇ ନ ଲଗାଲି ମାତ ।

ଝିଅଟି ତା' ଦୁଃଖପୂର୍ଣ୍ଣ ଜୀବନର କଥା ତା'କୁ କହୁଛି । ସେ କହୁଛି ତମେ ଯେତେବେଳେ ସୁସୁରି ମାରିଲ ସେତେବେଳେ ମୁଁ ଭାତ ରାନ୍ଧୁଥିଲି । ଦିନ ଥାଉ ଥାଉ ମୁଁ ରନ୍ଧା ଶେଷ କରିବି ଭାବି ତରତରରେ ରୋଷେଇ ଆରମ୍ଭ କଲି କିନ୍ତୁ ମୋର କପାଳ

ଚକଲା-କମଳା, ଅକଲେ-ଏକୁଟିଆ, ମଲଙ୍ଗିଲେ-ଗନ୍ଧାଇଲେ, ମାଗୁରି - ତାଳୁଅ ଧାନ ।

ଖରାପ, କଞ୍ଚାକାଠରେ ଖାଲି ଘରସାରା ଧୂଆଁମୟ ହୋଇଗଲା, ମୁଁ ଧୂଆଁ ଖାଇ ଖାଇ ମଲି, ଆଖିରୁ ଲୁହଧାର ଗଡ଼ିଗଲା, ମୁଁ ସେତେବେଳେ ନିରୁପାୟ ।

ତୁମି ଯେତେ ବେଲି ସୁହୁରି ମାରିଲା
ମଇ ତେତେ ବେଲି ରାନ୍ଧୋ ;
କେଚା ଖରି ବୁଲି ଆଫାଲି ସାଫାଲି
ଧୋଁଆଇ ଖାଇ ବୁଲି କାନ୍ଦୋ ।

କଞ୍ଚାକାଠରେ ରୋଷେଇ କରିବା କିପରି କଷ୍ଟଦାୟକ, ଏକଥା ଅତି ସୁନ୍ଦର ତଥା ନିପୁଣ ଭାବେ ବିହୁଗୀତରେ ପ୍ରକାଶ ପାଇଛି ।

ସମୟ ସମୟରେ ଅତି ଆପଣାର ଲୋକ ମଧ୍ୟ ନିଜଙ୍କୁ ବିଶ୍ୱାସ କରନ୍ତି ନାହିଁ । ଜଣେ ଜଣକୁ ଭଲପାଏ, ମାତ୍ର ତାହା କିପରି ତା'କୁ ବୁଝାଇବ ଯେ ସେ ପ୍ରକୃତରେ ତା'କୁ କେତେ ଭଲପାଏ ? କେତେଗୁଡ଼ିଏ ଶବ୍ଦ ପ୍ରୟୋଗ କରି କେବଳ ଅନ୍ୟକୁ ବୁଝାଇବାର ପ୍ରୟାସ କରିବ ମାତ୍ର ଯଦି ପ୍ରିୟ ଲୋକଟି ନ ବୁଝେ, ତେବେ ମନରେ ବହୁତ ବଡ଼ ଆଘାତ ଲାଗିବ । ସେ ନିଜେ ବ୍ୟଥିତ ହୋଇ କହେ ହେ ଲାହରୀ, ମୁଁ ତତେ ବହୁତ ଭଲପାଏ, ଦୁନିଆଁରେ ତୋ ବ୍ୟତୀତ ଆଉ କାହାକୁ ମୋ ମନ ଦେଇ ପାରିବିନି, ଏକଥା ମୁଁ ତତେ କେବେ କହିନି ଯଦିଓ ମୋ ମନ ଭିତରେ ସେ କଥା ପଦକ ଅଛି, ହେଲେ ତତେ ମୁଁ କେତେ ଭଲପାଏ, ତାହା ଦେଖାଇ ଦେଇ ପାରିବିନି । ଏ ମନ ଯଦି ଡଂଗାପାନ ଖଣ୍ଡେ ହୋଇଥାଆନ୍ତା ତା' ହେଲେ ମୁଁ ତା'କୁ ଖୋଲି ଦେଖାଇ ପାରିଥାଆନ୍ତି ।

ଲୋକଲୈ ପୀରିତି କରାନାଇ ଲାହରୀ
ମନତ କଥାଷାରି ଆଛେ ;
ତାମୋଲ ହୋଆ ହଲେ ଫାଲି ଯେନ ଦେଖୁଆମ
ଭିତରତ କି କଥା ଆଛେ ।

ଆସାମରେ ବ୍ରିଟିଶ୍ ଶାସନ କାଳରେ ରେଳ ଲାଇନ୍ ତିଆରି ହେଲା, ଏକଥା ବିହୁ ନାୟକ ଗାଇବା ପାଇଁ ଭୁଲିନାହିଁ । ପ୍ରେମିକଟି ପଚାରୁଛି ରେଳ ଯିବାପାଇଁ ପୋଲ କିଏ ତିଆରି କଲେ, କିଏ ପୁଣି ଯୁଦ୍ଧ ପାଇଁ ଗଡ଼ ନିର୍ମାଣ କରି ତା' ଉପରକୁ ଯିବାପାଇଁ ରାସ୍ତା ନିର୍ମାଣ କଲେ । ଏହା ଏକ ସାଧାରଣ କଥା ନୁହେଁ । ଯେଉଁମାନେ ଏଭଳି କାମ କରୁଛନ୍ତି, ସେମାନେ ବଡ଼ ବଡ଼ କାରିଗର । ଏହି କଥା ମାଧ୍ୟମରେ ପ୍ରେମିକଟି ପ୍ରେମିକାକୁ ବୁଝାଇ କହିଛି, ତୋ'ର ମୋର ମନ ଏକ ହୋଇଥିଲା ଅଥଚ ତୋ'ର ମନ କାହିଁକି ମୋ'ଠୁ ଦୂରେଇ ଗଲା ? ମୁଁ ଆଦୌ ଏକଥା ସହି ପାରୁନି ।

ରେଲର ଆଲି ବନ୍ଧାଲେ କୋନେ ଐ ଲାହରୀ
ଗଡ଼ ଆଲି ବନ୍ଧାଲେ କୋନେ

---

ଆଫାଲି ସାଫାଲି - ଶୀଘ୍ର ଶୀଘ୍ର ପକେଇ ।

ତୁମିଯେ ଆମିଯେ ମିଲେରେ ଆଛିଲୋଁ
ତୋମାର ମନ ଭଙ୍ଗାଲେ କୋନେ ?

ପ୍ରେମିକାଟି ତା' ପ୍ରିୟର ସନ୍ଦେହ ଦୂର କରିବାକୁ ଯାଇ କହୁଛି କେହି ମୋର ମନ ଭାଙ୍ଗିନାହାନ୍ତି । ତମେ ମୋ'ମନକୁ ହରଣ କରିଛ । ମୁଁ ମୋର ମୁଣ୍ଡ ଧୋଇବି ବୋଲି ଜଙ୍ଗଲରୁ ଘିଲାଫଳ ଖୋଜି ଆଣିବା ପାଇଁ ଯାଇଥିଲି । ଏହି ଫଳରେ ମୁଣ୍ଡ ଧୋଇଲେ ମଇଳା ଧୋଇହୋଇ ମୁଣ୍ଡ ପରିଷ୍କାର ହୁଏ । ଘିଲା ଫଳ ସାବୁନ ଭଳି ଲୋକମାନେ ବ୍ୟବହାର କରିଥାଆନ୍ତି । ବିଭିନ୍ନ ପ୍ରକାର ଫଳ, ଲତା ତଥା ଚେରମୂଳିକାର ବ୍ୟବହାର ବିଷୟରେ ଅସମୀୟା ଲୋକମାନଙ୍କର ଧାରଣା ସଂପର୍କରେ ଏଠାରେ କୁହାଯାଇଛି । ଆୟୁର୍ବେଦରେ ବିଶ୍ୱାସ ରଖିଥିବା ଏବଂ ବିଭିନ୍ନ ପ୍ରକାର ବୃକ୍ଷର ପତ୍ର, ଛେଲି, ଫଳ ଓ ଚେରମୂଳିକା ଆଦିର ଔଷଧୀୟ ଗୁଣ ବିଷୟରେ ଲୋକମାନେ ବହୁଦିନ ଆଗରୁ କିପରି ପରିଚିତ ଥିଲେ ତାହା ଜଣାଯାଇଥାଏ ।

କୋନେ ଓ ଭଂଗା ନାଇ କୋନେ ଓ ଛିଙ୍ଗା ନାଇ
ଆପୁନି ବିରହିଲ ମନ ;
ମୋର ମୂର ଧୁବଲୈ ଘିଲା ଖୁଜିଛି ଲୋଁ
ସିନୋ କିମାନର ବନ ?

ଚାଉଳକୁ ଭାଜି ଗୁଣ୍ଡକରି ଆସାମର ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ପାଣି ଓ ଚିନି କିମ୍ବା ଗୁଡ଼ ସାଙ୍ଗରେ ମିଶେଇ ଖାଇ ସାଧାରଣତଃ କାମଧନ୍ଦାରେ ବାହାରି ଥାଆନ୍ତି । ଏହା ପେଟ ତଥା ସ୍ୱାସ୍ଥ୍ୟପାଇଁ ଉପଯୋଗୀ ତଥା ବାୟୁନାଶକ ବୋଲି ବିଶ୍ୱାସ କରାଯାଇଥାଏ । ସକାଳୁ ଉଠି ପିଠାଗୁଣ୍ଡ ବା ଭଜାଚାଉଳ ଗୁଣ୍ଡର ଛତୁଆ ଖାଇ ଘରର ପଶ୍ଚିମ ଦିଗକୁ କାମ କରିବାକୁ ଯାଉଥିବା ପୁରୁଷକୁ ନାରୀଟି ଯିବାପାଇଁ ବାରଣ କରି କହୁଛି ଏତେ ବାଟକୁ କାମ କରିବା ପାଇଁ ଯିବା ଦରକାର ନାହିଁ । ନଦୀ ପାର ହୋଇ ନିମ୍ନ ଅଞ୍ଚଳକୁ ଗଲେ ତୁମ ଗୋଡ଼ରେ କଣ୍ଟା ଫୁଟିବ, କଷ୍ଟ ପାଇଲେ ସାଂଗରେ ସମଭାଗୀ ହେବାପାଇଁ ତୁମର ସହଧର୍ମୀଣି ନାହିଁ ।

ଭାଟୀଲୈ ଭଟୀୟାଇ ଯାବଗୈ ନେଲାଗେ
ଶୁକାନ ପିଠାଗୁରି ଖାଇ ;
କୋନୋବା ରାଜତେ ହୁଲେ ଫୁଟି ମାରିବ
ତୋମାର ଲଗତ କାନ୍ଦୋତା ନାଇ ।

ଅସମୀୟା ନାରୀ ଫୁଲପ୍ରିୟ ଅଟନ୍ତି । ଗଭାରେ ଫୁଲଖୋଷି ନିଜର ସୌନ୍ଦର୍ଯ୍ୟ ବଢ଼ାଇ ଥାଆନ୍ତି । ନଖରେ ଜେତୁକା ଲଗାଇ, ପାନଖାଇ ଓଠନାଲି କରି ସେମାନେ ନିଜର ସୌନ୍ଦର୍ଯ୍ୟ ଚେତନତାର ପରିଚୟ ଦେଇଥାଆନ୍ତି । ଚଂପାଫୁଲ, ମାଳତୀ ଫୁଲ, କେତକୀ ଫୁଲ ଆଦି

---

ଘିଲା - ସିଠା ଫଳ, ହୁଲେ - କଣ୍ଟା, ପିଠାଗୁରି - ଚାଉଳ ଗୁଣ୍ଡ ।

ପିନ୍ଧିବାରେ ସେମାନେ ଆଗ୍ରହୀ । ପ୍ରେମିକଟି ପ୍ରେମିକାର ଯୌବନକୁ ଦେଖି ନିଜର ଜୀବନସାଥି ରୂପେ ଆଦରି ନେବାପାଇଁ ସ୍ଥିର କରିଛି । ଯୌବନ ପାର ହୋଇଗଲେ ବୁଢୀ ସମୟରେ କିଏ ଆଉ ନେବ ? ଚଂପାଫୁଲ ନ ପିନ୍ଧି ଓଉଫୁଲ କିଏ ପିନ୍ଧିବ ? ଅର୍ଥାତ ଯୌବନ ସମୟରେ ଯଦି ନେବାଲୋକ ପାଖରେ ନାହିଁ, ବୁଢ଼ୀ ହେଲେ କିଏ ବାହାହେବ ?

ଚଂପାଫୁଲ ଫୁଲୋଁ ତେ ପିନ୍ଧୋତା ନ ହଲେ
ଔ ଫୁଲ ପିନ୍ଧିବ କୋନେ ;
ଗାଭରୁ କାଳତେ ନିଓଁତା ନ ହଲେ
ବୁଢ଼ୀ ହଲେ ନିବନୋ କୋ଼ନେ ?

ନଦୀଘାଟରେ ପ୍ରେମିକଟି ବହୁସମୟ ଧରି ପ୍ରେମିକାଙ୍କୁ ବିହୁଗୀତ ଛଳରେ ଅନେକ ପ୍ରଶ୍ନ କରିଛି । ପ୍ରେମିକାଟି ଗୀତ ଛଳରେ ମଧ ତା'ର ଉତ୍ତର ଦେଇଛି । ବହୁ ସମୟ ପର୍ଯ୍ୟନ୍ତ ପ୍ରଶ୍ନ ଓ ଉତ୍ତର କଟାକଟି ହେବାପରେ ଯୁବକଟି ତା'ର ପ୍ରିୟ ଯୁବତୀକୁ କହିଛି ଆଉ ବିହୁନାମ ଗାଇବା ଦରକାର ନାହିଁ । ତୁ ଯେତେଶୀଘ୍ର ପାରିବୁ ଘରକୁ ଚାଲି ଯା । ରାସ୍ତାରେ ତୁ ଆଉ ଅଟକିବୁନି, କାରଣ ତୁମ ଘର ସହିତ ଏବଂ ମୋ ସହିତ ବହୁତ ଲୋକଙ୍କର ଶତୃତା ରହିଛି । ସେମାନେ ଆମର ସଂପର୍କକୁ ସହି ପାରନ୍ତି ନାହିଁ । ଘରେ ଯାଇ ବିଭିନ୍ନ ପ୍ରକାର କଥା ଲଗେଇ ମିଛସତ କରି କହିବେ । ତୁ ଘରକୁ ଫେରି ଯା ମଣିଷ ମଣିଷ ଭିତରେ ହିଂସାଭାବ, ଜଣକର ଅନ୍ୟ ଜଣକ ପ୍ରତି ଶତ୍ରୁତା ଆଚରଣ ବହୁ ପ୍ରାଚୀନ କାଳରୁ ମଧ ଲୋକସମାଜରେ ରହିଛି । ମଣିଷ ବେଳେବେଳେ ହିଂସାର ବଶବର୍ତ୍ତୀ ହୋଇ ପଶୁଭଳି ମଧ ହିଂସ୍ର ହୋଇଉଠେ । ଏହା ବିହୁଗୀତରୁ ବାଦ୍ ଯାଇନାହିଁ ।

ଆରୁ ନାମ ନେଗାବି ଘରଲୈ ଗୁଛି ଯା
ବାଟତ ନେଥାକିବି ରୈ ;
ତୋମାରେ ଆମାରେ ଅନେକଟି ଶତ୍ରୁରୁ
ଦିବଗୈ ଘରତେ କୈ ।

ପରମ୍ପରାରେ ବିଶ୍ୱାସ ରଖିଥିବା ସରଳ ମଣିଷଟି ଭଗବାନ୍ ତଥା ନ୍ୟାୟ ଓ ଅନ୍ୟାୟର ବିଶ୍ୱାସ କରେ । ଗଙ୍ଗାରେ ସ୍ନାନ କଲେ ଭଗବାନ୍‌ଙ୍କର ଅସୀମ କରୁଣା ମଣିଷ ଉପରେ ଝରିପଡେ । ସେ ଭଗବାନଙ୍କୁ ଯାହା ମାଗେ, ଭଗବାନ୍ ତା'ର ମନୋକାମନା ପୂର୍ଣ୍ଣ କରନ୍ତି । ଏହା ସହିତ ମଣିଷର ଧର୍ମପରାୟଣ ମନୋବୃତ୍ତି ଜଡ଼ିତ ହୋଇଛି ଏକଥା ଯୁବତୀଟି ସ୍ପଷ୍ଟ ଭାବେ ବିହୁଗୀତରେ କହିଛି । ତା'କୁ ପାଇବାକୁ ହେଲେ ଗଙ୍ଗାରେ ସ୍ନାନକରି ବିଧାତାଙ୍କୁ ବର ମାଗିବ, ତା' ହେଲେ ବିଧାତା ତା'ର ଇଚ୍ଛା ପୂରଣ କରିବେ । ତା' ସହିତ ଅସମୀୟା ଯୁବକର ବୀରତ୍ୱ ତଥା ସାହସିକତାର ପରିଚୟ ଏହି ଗୀତରେ ମଧ ମିଳିଛି । ପର୍ବତରେ ବୁଲିବୁଲି ଯୁବକମାନେ ଜଙ୍ଗଲି ଘୁଷୁରି ତଥା ପାହାଡ଼ର ଶିଖର ଦେଶରେ ଗଣ୍ଡା ଶିକାର କରିଥାଆନ୍ତି । ସେମାନେ କିପରି ଜଙ୍ଗଲି ଘୁଷୁରି ତଥା ଗଣ୍ଡାଭଳି ଅନ୍ୟାନ୍ୟ ଜଙ୍ଗଲି ପଶୁଙ୍କୁ ଶିକାର କରି ନିର୍ଭୀକତାର ପରିଚୟ ଦେଇଛନ୍ତି, ଏହା ମଧ ବିହୁଗୀତରେ ପ୍ରତିଫଳିତ ହୋଇଛି ।

ପର୍ବତ ତ ମାରିଲା ଲୁରୁମା ଗାହରି
ଭୈୟାମତ ମାରିଲା ଗଁଡ଼ ;
ଆମାକେ ପାବଲେ ଗଙ୍ଗାସ୍ନାନ କରାଗେ
ବିଧାତାକ ମାଗା ଗେ ବର ।

ମଣିଷ ଯେତେ ଉତ୍ତରୋତ୍ତର ଉନ୍ନତି କରିଲେ ହେଁ ଭାଗ୍ୟରେ ବିଶ୍ୱାସ ରଖିଥିବା ଧର୍ମଭୀରୁ ମଣିଷ ବେଳେବେଳେ କର୍ମଫଳ କହି ନିଜକୁ ଶାନ୍ତ୍ୱନା ଦେଇଥାଏ । ମଣିଷର ଚିନ୍ତାଧାରା ତଥା ଭବିଷ୍ୟତ ସେହି ଅଦୃଷ୍ଟ ଭଗବାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ବୋଲି ଆମେ ସାଧାରଣତଃ ବିଶ୍ୱାସ କରିଥାଉ । ଭଗବାନ୍‌ଙ୍କର ମଣିଷ ପ୍ରତି ସୁଦୃଷ୍ଟି ପଡିଲେ ସେ ଉତ୍ତରୋତ୍ତର ଉନ୍ନତି କରି ଚ୍ଛାଲେ ଏବଂ ତା' ପରିବାର ଉପରକୁ କୌଣସି ପ୍ରକାର ବିପଦ ଆସେ ନାହିଁ । କେହି କେହି ''ମଣିଷ ଯେମିତି କର୍ମ କରେ ସେମିତି ଫଳ ପାଏ'' କହିଲାବେଳେ ଅନ୍ୟ କେତେକ ଲୋକ ''ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ'' ଆଦି ମନ୍ତବ୍ୟ ପ୍ରଦାନ କରିଥାଆନ୍ତି । ତେବେ ମଣିଷ ଭାବେ ଯଦି ବିଧାତା କାହା କପାଳରେ କାହାକୁ କାହାପାଇଁ ଲେଖିଛନ୍ତି, ସେ ଲୋକଟି ରୋଗଗ୍ରସ୍ଥ ହେଲେ ମଧ ସେଥିରୁ ଆରୋଗ୍ୟ ଲାଭକରି ପୁଣି ତା'ର କପାଳ ଲିଖନ ନାରୀଟିକୁ ପାଇ ସଂସାର କରିବ । ସେଥିପାଇଁ ଭଗବାନ ତା'କୁ ବଞ୍ଚାଇ ରଖିବେ ।

କର୍ମ ତଥା ଭାଗ୍ୟରେ ବିଶ୍ୱାସ ରଖିଥିବା ଲୋକମାନେ ସବୁବେଳେ ଭଗବାନଙ୍କର ନାମ ଓ ଗୁଣ ଗାନ କରି ପାପପୁଣ୍ୟର ବିଚାର କରିଥାଆନ୍ତି । ସେମାନଙ୍କ ଚିନ୍ତାଧାରା ଏକ ଭିନ୍ନ ଧରଣର ।

ଯଦି ହେ ନ ମରି ଜୀୟାଇ ଥାକୋଁ ଲାହରୀ
ତୋମାକ ଦେଖିବଲେ ପାମ ;
ଯଦି ମୋର କପାଳତ ତୋମାକ ଐ ଲିଖିଛେ
ଶରୀର ଜୁରାବଲେ ପାମ ।

ସାମାଜିକ ଜୀବନରେ ଦାରିଦ୍ର୍ୟତା ମଣିଷକୁ ବେଳେବେଳେ ଏମିତି ଆଘାତ ଦେଇଥାଏ ଯେ ମଣିଷ ବାଧହୋଇ ଦାରିଦ୍ର୍ୟତାର ବଶତା ସ୍ୱୀକାର କରେ । ଘର୍‌କୁ ଘରଣୀ ଆଣି ସୁଖରେ ସଂସାର କରିବ ବୋଲି ସ୍ୱପ୍ନ ଦେଖୁଥିବା ମଣିଷଟି ଯେତେବେଳେ ପେଟ୍‌ପୂରା ଦୁଇଓଳି ଖାଇବାକୁ ପାଏନି, ସେତେବେଳେ ସେ ତା'ର ସ୍ୱପ୍ନକୁ ଭୁଲିଯାଇ ବାସ୍ତବବାଦୀ ହୋଇଉଠେ । ଜୀବନଠୁ ବଳି ଭଲ ପାଉଥିବା ନାରୀଟିକୁ କଥା ଦେଇଥିଲେ ହେଁ ବାଧ ହୋଇ ତା'ଠୁ ଦୂରେଇଯାଏ । ପାନଖଣ୍ଡିଏ ଖାଇବାକୁ ଯାଇଁ ତା' ଭିତରେ ବୁଢିଆଣୀ ବସାକରି ଅଣ୍ଡା ଦେଇଥିବାର ଦେଖେ, ଚୂନରେ ସେମିତି ପୋକ ଲାଗିଥିବାର ଦେଖେ । ଶୋଇବା

ଲୁରୁମା ଗାହରି – ବୋଦକା ଜୁଷୁରୀ, ଭୈୟାମ - ସମତଳ ଅଞ୍ଚଳ, ଜୁରାବ - ଥଣ୍ଡା କରିବା ।

ପାଇଁ ଛପାଖଣ୍ଡେ ଆଣି ଦେଖେ ତ ତା' ଦେହସାରା ଖାଲି ଧୂଳିମାଟି ଭର୍ତ୍ତି । ରହିବା ପାଇଁ ଭଲ ଘର ଖଣ୍ଡେ ନାହିଁ । ଦୁଃଖ ଓ ଦାରିଦ୍ର୍ୟତା ଭିତରେ ପେଷିହୋଇ ଯାଇଥିବା ମଣିଷଟି ବାଧହୋଇ ସାଂସାରିକ ଜୀବନଠୁ ଦୂରରେ ରହେ ।

କେତେଗୁଡ଼ିଏ ଅସମୀୟା ଯୁବକର ଦୈନନ୍ଦିନ ଜୀବନର ଦାରିଦ୍ର୍ୟତାପୂର୍ଣ୍ଣ ସଂଘର୍ଷମୟ ଜୀବନର ଚିତ୍ର ଅତି ସୁନ୍ଦର ଭାବେ ନିମ୍ନଗୀତରେ ଫୁଟି ଉଠିଛି । ବିହୁଗୀତଗୁଡ଼ିକ ସାମାଜିକ ଜୀବନର ବାସ୍ତବତାକୁ ଜୀବନ୍ତଭାବେ ରୂପଦେଇ ଗାଉଁଲିଆ ମଣିଷର ଅଧିକ ଆଦର ଲାଭ କରିଛି ।

ପାନତେ ପାଲୋଁ ମଇ ପାନରେ ମକରା[1]
ଚୂନତେ ପାଲୋଁ ମଇ ପୋକ
ଶୋବା ଚାରିପାଚୀ ତ ପାଲୋଁ ଧୂଳିମାଟି
ସେଇ ଦେଖି ଏରିଲୋଁ ତୋକ ।

ପୁରୁଷଟିର ଦୁଃଖ ଶୁଣି ନାରୀଟି ତା' ଦୁଃଖରେ ସମଭାଗୀ ହେବାପାଇଁ ନିଜର ଇଚ୍ଛା ପ୍ରକାଶ କରିଛି । ସେ ନିଜର ନିଃସ୍ୱାର୍ଥପର ମନୋବୃତ୍ତିର ପରିଚୟ ଦେଇଛି । ସେ ପୁରୁଷଟିକୁ କହିଛି ମୋତେ ତମେ ସାଂଗରେ ନେଇଯାଅ, ମୁଁ ତୁମର ପାନରୁ ବୁଢ଼ିଆଣୀ ଝାଡିଦେବି, ଘରଦ୍ୱାର ସଫା ରଖିବି, ବିଛଣାପତ୍ର ଝାଡ଼ିଝୁଡ଼ି ଠିକ୍ କରିଦେବି । ଅସମୀୟା ନାରୀ ନିଜର କର୍ମନିଷ୍ଠ ଜୀବନର କଥା ଏହି ଗୀତ ମାଧମରେ ବଖାଣିଛି । ତା'ର ମନର ମଣିଷଟି ସହିତ ଚିରଦିନ ଏକାଠି ରହିବାର ଅଭିଳାଷ ପୋଷଣ କରି ସେ ସବୁକଷ୍ଟ ସହିବା ପାଇଁ ରାଜିଅଛି ।

ପାନରେ ଗୁଚାଇଦିମ ପାନରେ ମକରା ।
ଚୂନରେ ଗୁଚାଇଦିମ ପୋକ ;
ଶୋଆ ଚାରିପାଚୀର ଧୂଳିମାଟି ଗୁଚାଇଦିମ
ଏଇବେଲି ଲୈ ଯୋଆ ମୋକ ।

ବିହୁଗୀତଗୁଡ଼ିକରେ ସମାଜ ଜୀବନର ସୁଖଦୁଃଖର ଚିତ୍ର ପ୍ରତିଫଳିତ ହୋଇଥାଏ । ସେଥିପାଇଁ ବିହୁ ଅଧିକ ଲୋକପ୍ରିୟ ହୋଇଛି । ବିହୁପର୍ବ ଆଗରୁ ଜଣେ ଦୁଃଖି ଲୋକଟି ଭଲ ଘର ଖଣ୍ଡେ କରିବ ବୋଲି ଆଶାକରି ବଜାରକୁ ଘରର ଅତ୍ୟାବଶ୍ୟକୀୟ ଜିନିଷ ଭାବେ ଭଲ ଛପା ଖଣ୍ଡେ ତିଆରି କରିବା ଲାଗି ଛୋଟ ଛୋଟ କାଠି କିଣିବାକୁ ଯାଇଛି । ବଜାରରେ ଜିନିଷର ଦାମ୍ ଶୁଣି ମୁଣ୍ଡରେ ହାତ ଦେଇଛି । ସେ କହୁଛି ଛୋଟବେଲୁ ଦୁଃଖ ମୋର ଭାଇବନ୍ଧୁ ।

---

[1] ମକରା - ବୁଢ଼ିଆଣୀ ।

ଦୁଃଖର ଭାଇ କକାଇ ହଲୋଁ ଐ ଦୁଖିୟା
ସାଜି ଲବ ନୋଆରୋଁ ଘର ;
ପଟୀୟା ପାଟୀକେ କିନିଲବ ନୋଆରୋଁ
ତାତୋ କରେ ଛକୁରି ଦର ।

ନୀରବତା ମଧ୍ୟରେ ପ୍ରକୃତିର ସୌନ୍ଦର୍ଯ୍ୟ କବିର କଳ୍ପନାକୁ ଆକୃଷ୍ଟ କରିଥାଏ । ସମୟ ସମୟରେ ପ୍ରାକୃତିକ ବିପର୍ଯ୍ୟୟର କଥା ଭାବି କବି ମନ ବିଚଳିତ ହୁଏ । ସେ ଲୋକଗୀତ ଗୁଡିକରେ ସୁନ୍ଦର ଭାବରେ ସେଗୁଡିକୁ ବର୍ଣ୍ଣନା କରିଥାଆନ୍ତି । ବେଳେବେଳେ ଋତୁ ପରିବର୍ତ୍ତନର ପ୍ରତିକୂଳ ଅବସ୍ଥା ଯୋଗୁ ଆଶାନୁରୂପ ଫଳ ମିଳି ନଥାଏ । ଲୋକମନରେ ଆଘାତ ଆସିବା ସ୍ୱାଭାବିକ । ନିଜର ଆଶା କେବଳ ଆଶାରେ ହିଁ ରହିଯାଏ, ତଥାପି ମନର ଭାବ ଗୀତରେ ପ୍ରକାଶ ପାଇଥାଏ ।

ବଛରି ବଛରି ଆମେ ମଲିୟାଲେ
ବଛରି ବଛରି ଖାୟ ;
ଏଇ ବେଲି ଗଛତେ ଆମେ ନାଇକିୟା
କେନିବାକ କଲୈ ଯାୟ ।

ପ୍ରତିବର୍ଷ ଆମ୍ବଗଛରେ ଆମ୍ବ ଭରପୂର ହୋଇଉଠେ । ଲୋକମାନେ କଞ୍ଚା-ପାଚିଲା ଖାଇ ମଧ୍ୟ କଞ୍ଚାବେଳେ ବର୍ଷକ ପାଇଁ ଶୁଖେଇ କରି ରଖି ପରବର୍ଷ ଫଳ ଧରିଲା ପର୍ଯ୍ୟନ୍ତ ଖାଇଥାଆନ୍ତି । ମାତ୍ର ଗୋଟିଏ ବର୍ଷ ଗଛରେ ଭଲ ଫଳ ନ ଥିବାରୁ ଲୋକମନରେ ପ୍ରଶ୍ନ ଉଠୁଛି ଏ ବର୍ଷ ଆମ୍ବଗଛରୁ ଆମ୍ବସବୁ କୁଆଡ଼େ ଗଲା ? ସ୍ୱାଭାବିକ ଜୀବନର ଘଟଣାବଳୀ ସହିତ ପ୍ରକୃତିର ସୁଷମାକୁ ଲୋକକବି ସରଳ ସୁନ୍ଦର ଭାଷାରେ ରୂପ ଦେଇଛନ୍ତି ।

**ବିହୁଗୀତରେ ଇତିହାସ-** ବିହୁଗୀତ ଗୁଡିକରେ କେବଳଯେ ସାମାଜିକ ଜୀବନର କଥା କୁହାଯାଇଥାଏ ତା' ନୁହେଁ, ଇତିହାସ ଅଥବା କିମ୍ବଦନ୍ତୀ ବିହୁଗୀତରେ ଅତି ସୁନ୍ଦର ଭାବେ ବର୍ଣ୍ଣନା କରାଯାଇଛି । ଅହୋମ ରାଜତ୍ୱ ସମୟରେ କେହି ଜଣେ ରାଜା ଗୋଟିଏ ପୋଖରୀ ଖୋଳି ଜନସାଧାରଣଙ୍କ ପାଇଁ ମଂଗଳ କାମଟିଏ କରିଯାଇଛନ୍ତି । ସେ ରାଜାଙ୍କର କାର୍ଯ୍ୟ ଅତି ପ୍ରଶଂସନୀୟ ଅଥଚ୍ ସେ ରାଜାଙ୍କ ନାମ କେହି ଜାଣିନାହାନ୍ତି । ହୁଏତ ଗାଁ ଗ୍ରାଉଁଲୀରେ କେହି ଜାଣିଥାଇ ପାରନ୍ତି ମାତ୍ର ପୋଖରୀର ନାମ ଗୌରୀସାଗର ଏ କଥା ପ୍ରାୟ ସବୁଲୋକ ଜାଣିଛନ୍ତି । କେଉଁକାଳରୁ କେତେ ରାଜା ଯାଇଛନ୍ତି, ଅହୋମ ରାଜବଂଶର କୀର୍ତ୍ତିସ୍ତମ୍ଭ ରୂପେ ଗୌରୀସାଗର ପୋଖରୀ ଆଜି ଲୋକସାଧାରଣଙ୍କ ଉପକାର କରୁଛି । କଥାରେ କହନ୍ତି 'ପାଦ କାଢ଼ିଲେ କଷ୍ଟ'ଏ ଲୋକ ନିଜେଇପାଦ ବାଟଚାଲି ହାଲିଆ ହୋଇ ପଡୁଛନ୍ତି କିନ୍ତୁ ଲୋକମାନେ ଅଦମ୍ୟ ପରିଶ୍ରମ କରି ଗୌରୀସାଗର ଭଳି ଏତେ ବଡ଼ ପୋଖରୀ ଖୋଳିଛନ୍ତି, ଏହାଠୁ ବଳି ଆନନ୍ଦର କଥା ଆଉ କ'ଣ ହୋଇପାରେ ? ଏହି ପୋଖରୀ ଅସମୀୟାର କର୍ମନିଷ୍ଠାର ଏକ ଜ୍ୱଳନ୍ତ ଉଦାହରଣ । ସମୟକ୍ରମେ ମଣିଷ କିପରି

ଯାନ୍ତ୍ରିକତା ଆଡ଼କୁ ଗତି କରି ପାଦେ ପାଦେ କଷ୍ଟ ଅନୁଭବ କରୁଛି, ଯେତେବେଳେ ତା'ର ପୂର୍ବଜ ମାଇଲ ମାଇଲ ରାସ୍ତା ଖୁସୀ ମନରେ ଅତିକ୍ରମ କରୁଥିଲେ, ତା'ର ପ୍ରମାଣ ନିମ୍ନୋକ୍ତ ଗୀତରୁ ମିଳିଥାଏ ।

ଖୋଜକେ କାଢ଼ିଲୌଁ ହେଲାୟେ ହେଫାୟେ
ଗାତୋ ଲାଗିଲେ ଭାଗର ;
କୋନ ସ୍ୱର୍ଗ ଦେବେ ପୁଖୁରୀ ଖନାଲେ
ନାମ ଥଲେ ଗୌରୀ ସାଗର ।

ସେ ପୋଖରୀ ଖୋଳି ପୋଖରୀ ହୁଡ଼ାରେ ମନ୍ଦିର ତିଆରି କଲେ । ଏହି କାମ କରି ତାଙ୍କର ଗୁଣ ବା କୀର୍ତ୍ତି ସବୁଆଡ଼େ ବ୍ୟାପିଗଲା । ତାଙ୍କ ଗୁଣ ଯୋଗୁ ସମସ୍ତ ଅହୋମ ଜାତିର ପ୍ରଶଂସା ସବୁଆଡ଼େ ବ୍ୟାପିଗଲା । ଅହୋମ ଜାତିର ଗର୍ବ ଓ ଗୌରବ ସବୁଦିନ ପାଇଁ ଟେକ ହୋଇ ରହିଲା ।

ପୁଖୁରୀ ଖନାଲେ ଭାଲକେ କରିଲେ
ପାରତୋ ବନ୍ଧାଲେ ଦ'ଳ ;
ଦ'ଳ କୋ ବନ୍ଧାଲେ ଜେଉତି ଚରାଲେ
ଜାକତ ଜିଲିକା ହ'ଲ ।

ଆସାମବାସୀଙ୍କ ପାଇଁ ଆହୋମ ରାଜବଂଶର ଅବଦାନ ଅନସ୍ୱୀକାର୍ଯ୍ୟ । ସେମାନଙ୍କର ଉଦ୍ୟମ, ନିଷ୍ଠା ତଥା ତତ୍ପରତା ଓ ତ୍ୟାଗଭାବ ସମଗ୍ର ଆସାମବାସୀଙ୍କୁ ଅନୁପ୍ରେରିତ କରିଛି । ସେଥିପାଇଁ ବିହୁଗୀତ ଗୁଡ଼ିକରେ ଆହୋମ ରାଜାମାନଙ୍କର କାର୍ଯ୍ୟକଳାପ ତଥା ଅବଦାନର କଥା କୁହାଯାଇଛି ।

ଆହୋମ ରାଜାମାନଙ୍କର ତ୍ୟାଗ ଓ କୀର୍ତ୍ତି ଏବେ ମଧ୍ୟ ଲୋକମୁହଁରୁ ଶୁଣାଯାଇଥାଏ । ସେମାନଙ୍କୁ ବିହୁଗୀତଗୁଡ଼ିକରେ ଅତ୍ୟନ୍ତ ପ୍ରଶଂସା କରାଯାଇଛି । ଆସାମରେ 'ତାମୁଲୀ' କହିଲେ ଯେଉଁ ଲୋକମାନେ ପାନଭାଙ୍ଗି ରାଜାଙ୍କ ପାଖରେ ଦେଉଥିଲେ । ଅନ୍ୟ ଗୋଟିଏ ତାମୁଲୀ କହିଲେ ଶ୍ରେଷ୍ଠ ବା ଉଚ୍ଚପଦସ୍ଥ ବିଷୟାକୁ ବୁଝାଇଥାଏ । ଏଠାରେ ଜୋନ ବା ଜହ୍ନ ପାଖରେ 'ତାମୁଲୀ ତରା' ସବୁଠାରୁ ଶ୍ରେଷ୍ଠ ଅଟେ ବୋଲି କୁହାଯାଇଛି । ତା' ସହିତ ଆହୋମ ରାଜାଙ୍କ ପାଖରେ ଶ୍ରେଷ୍ଠ ବିଷୟା ଗନ୍ଧୀୟା ଫୁକନ ଥିଲେ ଯିଏ କି ଅଧମାଇଲ ଦୂରରୁ ଲୋକଙ୍କୁ ଦେଖି ଗର୍ଜି ଉଠୁଥିଲେ ।

ଜୋନରେ ତାମୁଲୀ ତରା ସମନୀୟା
ଜୋନରେ ତାମୁଲୀ ତରା ;
ସ୍ୱର୍ଗ ଦେବର ତାମୁଲୀ ଗନ୍ଧୀୟା ଫୁକନେ
ମାତେ ତାଂ କାକର ପରା ।

---

ଭାଗର - ଦୁର୍ବଳ, ଖନାଲେ - ଖୋଳିଲେ, ଜେଉତି - ଦୀପ୍ତି, ଜାକ ଦଳ, ଜିଲିକା-ଦୀପ୍ତିମନ୍ତ, ସ୍ୱର୍ଗଦେବ - ଅହୋମ ରାଜା ।

ବହୁଦିନ ତଳେ ଲୋକମାନେ ମିଳିମିଶି ଜଙ୍ଗଲକୁ ଶିକାର କରିବା ପାଇଁ ଯାଉଥିଲେ । ଆସାମର ଲୋକମାନେ ଅଧିକ ଶିକାରପ୍ରିୟ ଅଟନ୍ତି । ଏହାର ସୂଚନା ବିହୁଗୀତରୁ ମିଳିଥାଏ । ଲୋକମାନେ ମିଶି ହରିଣ ଧରିବା ପାଇଁ ଚଟାଇ ପର୍ବତରେ ଜାଲ ବସେଇ ହରିଣକୁ ଜଗି ରହିଲେ । ବହୁସମୟ ଅପେକ୍ଷା କଲାପରେ ପର୍ବତରେ ସନ୍ଧ୍ୟା ହେଲା । ହରିଣ ଆସି ଜାଲରେ ପଡିଲା କିନ୍ତୁ ଜାଲକୁ ଫଟେଇ ଦେଇ ହରିଣ ଚାଲିଗଲା । ଶିକାର ସହିତ ହରିଣ ମାଂସ ପ୍ରତି ଥିବା ଆଗ୍ରହ ଏହି ବିହୁ ଗୀତଟିରୁ ଜଣାଯାଇଥାଏ ।

ଚଟାଇ ପରେବତତ ପହୁର ଜାଲ ପାତିଲୌଁ
ଚଟାଇତେ ଗଧୂଲି ହ'ଲ ;
ସମନୀୟାଇ ସୁଧିଲେ କମେ କି ଏ ବୁଲି
ଜାଲ ଫାଲି ହରିଣା ଗ'ଲ ।

ଆସାମରେ ତୀର ମାରିବା କେବଳ ଏକ ସଉକ ନୁହେଁ, ଏହା ଏକ ପ୍ରଧାନ ଅସ୍ତ୍ରରୂପେ ମଧ୍ୟ ବ୍ୟବହୃତ ହୋଇଥାଏ । ଆଜିର ଯୁଗରେ ଆସାମର ଘରେ ଘରେ ତୀର ମାରିବାର ଆଗ୍ରହ ଅଳ୍ପ ବହୁତ ପରିମାଣରେ ଲୋକମାନଙ୍କର ରହିଛି । ତା'ର ଆଭାସ ବିହୁଗୀତରେ ସ୍ପଷ୍ଟ ।

ପୂବେଦି ଓଲାବର ରେଣୁ ଐ ମଇନା
ପୂବେଦି ଓଲାବର ରେଣୁ;
ସୋନ୍ଦର ବର ଗୋଁହାଇ ରଣଲୈ ଓଲାଲେ
ଆଟାଇ ଘୁନେ ଖୋଆ ଧେନୁ ।

ଏହି ଗୀତରେ ପ୍ରକୃତିର ଏକ ପରିବେଶର ବର୍ଣ୍ଣନା ପ୍ରସଂଗରେ ହାସ୍ୟରସ ସୃଷ୍ଟି ହୋଇଛି । ପୂର୍ବଦିଗରେ ଧୂଳି ଉଡୁଛି, ଯୁବକଟି ପ୍ରିୟାକୁ 'ମଇନା' ବୋଲି ସ୍ନେହରେ ଡାକି କହୁଛି ଆହୋମ ରାଜବଂଶର ସୋନ୍ଦର ବରଗୋହାଇଁ ଯୁଦ୍ଧ କରିବା ପାଇଁ ବୀରବେଶରେ ନିଜକୁ ସଜାଇ ବାହାରିଲେ, ମାତ୍ର ତାଙ୍କର ସମସ୍ତ ଧନୁ ପୋକ ଖାଇ ଶେଷ କରିଛନ୍ତି । ଧୀରେ ଧୀରେ ଲୋକମାନଙ୍କର ଧନୁଶର ପ୍ରତି ଥିବା ଆଗ୍ରହ ଓ ଯତ୍ନ ମଧ୍ୟ କମିଆସିଛି । ଆସାମରେ ପ୍ରାୟତଃ ବିଭିନ୍ନ ଫଳମୂଳ ତଥା ଜିନିଷ ଗୁଡିକରେ ବହୁତ ଶୀଘ୍ର ପୋକ ଲାଗିଥାଏ । ଏପରିକି ଲୋକବିଶ୍ୱାସରେ ବହୁଦିନ ତଳେ କେହି ଜଣେଲୋକର ଅଭିଶାପରେ ଫଳଗୁଡିକ ପାଚିଲା ପୂର୍ବରୁ ପୋକଲାଗେ ବୋଲି ଶୁଣାଯାଇଥାଏ ।

ବିହୁର ଆକର୍ଷଣ ଯୁବକର ମନକୁ ବିଚଳିତ କରିଦେଇଥାଏ । ପାଗଳର ମନ ଭଳି ଯୁବମନ ବିହୁତଳିକୁ ଆକର୍ଷିତ ହୋଇଥାଏ । ଶିଶୁମାନେ ଧୂଳିରେ ଆଣ୍ଠୋଇ ଆଣ୍ଠୋଇ ଯେପରି ପାଗଳ ପରି ନାଚନ୍ତି, ଭକ୍ତମାନେ ଯେପରି ଧର୍ମରେ ପାଗଳ ଭଳି ଆକୃଷ୍ଟ ହୋଇ ନାଚି ଥାଆନ୍ତି, ସେହିଭଳି ଯୁବକମାନେ ବିହୁତଳିରେ ନାଚିବାପାଇଁ ପାଗଳ ଭଳି ହୋଇଥାଆନ୍ତି ।

---

ଗଧୂଳି - ସନ୍ଧ୍ୟା ।

ତେଣୁ ବିହୁ କେମିତି ପାଳନ ନ କରି ଯୁବକମାନେ ରହିବେ ?

ଧୂଳିମାଟିତ ପଗଲା ଆଠୁ କଢ଼ା ଲ'ରା
ଧର୍ମତ ପଗଲା ସାଧୁ ;
ଆମି ଡେକା ଲ'ରା ବିହୁତେ ବଲିୟା
ନେ ପାତି କେନେ କୈ ଥାକୋଁ ।

ବିହୁଗୀତରେ ନାରୀ ମନର ଆବେଗ ପ୍ରକାଶ ପାଇବା ସଂଗେ ସଂଗେ ନିଜର ପ୍ରିୟ ଲୋକପ୍ରତି ଥିବା ଆଗ୍ରହ ଏବଂ ପ୍ରିୟର ରୂପ ବର୍ଣ୍ଣନା କରାଯାଇଥାଏ । ପ୍ରେମିକା ପାଇଁ ତା' ପ୍ରେମିକ ସବୁଠାରୁ ସୁନ୍ଦର ଏବଂ ଆକର୍ଷଣୀୟ ହୋଇଥାଏ । ତମ୍ବାଧାତୁ ଯେପରି ଝଲସୁଥାଏ, ପିତଳ ଯେପରି ଝଲସୁଥାଏ, ଆକାଶରେ ତାରାମାନେ ଯେପରି ଝଲସୁଥାଆନ୍ତି, ତା'ଠୁ ଅଧିକ ତା' ପ୍ରିୟର ମୁଖମଣ୍ଡଳ ଝଲସୁଥାଏ । ଏ କଥା ପ୍ରେମିକାଟି ଗୀତରେ କହେ । ପ୍ରିୟର ମୁଖମଣ୍ଡଳକୁ ଦିନରାତି ଅନେଇ ରହିବା ପାଇଁ ମନହୁଏ ଟିକିଏ ଦୂରରୁ କେବଳ ମୁଖମଣ୍ଡଳକୁ ଚାହିଁବାକୁ ଇଚ୍ଛା ହୁଏ, କିନ୍ତୁ ସ୍ପର୍ଶ କରିବାକୁ ମନହୁଏ ନାହିଁ ।

ତାମେ ଜ୍ଞିଲିକନ ପିତଳ ଜିଲିକନ
ଜ୍ଞିଲିକନ ସରଗର ତରା ;
ଅତି କୈ ଜ୍ଞିଲିକନ ଧନର ମୁଖେଖନି
ଚାଇଥାକ ନିଲଗର ପରା ।

ବିହୁଗୀତରେ ପ୍ରେମ ଓ ଉତ୍କଣ୍ଠା ପ୍ରକାଶ ପାଇବା ସ୍ୱାଭାବିକ କାରଣ ବସନ୍ତର ଆଗମନରେ ଲୋକମନରେ ଯେଉଁ ଏକ ପରିବର୍ତ୍ତନ ହୋଇଥାଏ, ତା'ର ପ୍ରତିଫଳନ ବିହୁଗୀତରେ ପଡିବା ସ୍ୱାଭାବିକ । ମାତ୍ର ଏହା ସହିତ ସାଂସାରିକ ଜୀବନର ସୁଖଦୁଃଖର ଚିତ୍ର ଅତ୍ୟନ୍ତ ଜୀବନ୍ତ ଭାବେ ପ୍ରତିଫଳିତ ହୋଇଛି । ଲୋକର ଜୀବିକାର୍ଜନର ପନ୍ଥା, ଆଗ୍ରହ ତଥା ଦୈନ୍ୟତା ମଧ ବିହୁଗୀତରେ ଆତ୍ମପ୍ରକାଶ କରିଛି । ଆସାମର ଲୋକସମାଜ ଭିତରେ ହାତୀଧରିବା ଭଳି କଷ୍ଟକର କାମ କିପରି ଆଦର ଲାଭ କରିଛି ତା'ର ପରିଚୟ ବିହୁଗୀତରୁ ମିଳେ । ପାହାଡ଼ ଉପରେ ରାତି ରାତି ଖରା କାକର ସହି ହାତୀ ଧରିବା ପାଇଁ ଲୋକମାନେ ଜଗି ରହନ୍ତି, ମାଛଧରିବା ପାଇଁ ଏକାଠି ମିଳି ନଦୀରେ ଜାଲ ବିଛାଇବା ଦୃଶ୍ୟ କିଭଳି ସୁନ୍ଦର, ତାହା ବିହୁଗାୟକ ବିହୁଗୀତରେ ଜୀବନ୍ତ କରି ତୋଳିଥାଏ ।

୧ - ଟଟାଇ ପରବତେ ଧୁଁଅଲୀ କୁଁଅଲୀ
କୋନେ ଭାତ ରାନ୍ଧି ଖାୟ;
ମା'କ ନାନ୍ନ ମାଉରା ତିରୀ ନାଇ ବରଲା
ହାତୀ ଧରିବଲୈ ଯାୟ ।

---

ତାମ - ତମ୍ବା, ନିଲଗ - ଦୂରରୁ, ଜିଲିକନ - ଝଲସିବା, ଘୂନେ - ପୋକ୍; ଧେନୁ - ଧନୁ, ଧୁଁଅଲୀ କୁଁଅଲୀ - ଧୂଆଁ ଓ କୁହୁଡି,

୨ - କଠୀୟାତଲୀ ତେ ପାନୀ ଚଲୁ ଚଲୁ
ଜକାଇ ଖୋଆଚେରେକ ବାଓଁ ;
ଉଠେଇ କି ନୁଠେ ଐ ମୋଆ ଦରିକନା
ମନକେ ପତିୟାଇ ଚାଓଁ ।

ଧାନଗଛ ରୋଇ ଜମିରେ ପାଣି ମଡ଼ା ଯାଇଥାଏ, ସେଥିପାଇଁ ଜମିରେ ପାଣି ଚପର ଚପର ହେଉଥାଏ । ପାଣି ଯିବା ବାଟରେ ଲୋକମାନେ ଖାଳେଇରେ ମାଛ ଧରନ୍ତି କିନ୍ତୁ ମାଛ ପାଇବେ କି ନାହିଁ, ସେ କଥା ମନେ ମନେ ଚିନ୍ତା କରି ଅନେଇ ରହିଥାଆନ୍ତି ।

ଆସାମରେ ବାଉଁଶର କାମ କରିବାରେ ଲୋକମାନେ ସିଦ୍ଧହସ୍ତ । ବାଉଁଶର ଛୋଟ ଛୋଟ ଘରକରଣା ଜିନିଷଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ସରଞ୍ଜାମ ତଥା ବାଉଁଶର ସୁନ୍ଦର ପଟି ତିଆରି କରିବା ମାଧ୍ୟମରେ ଆସାମର ଲୋକମାନଙ୍କର ହସ୍ତଶିଳ୍ପର ପରିଚୟ ମିଳିଥାଏ । ଆସାମରେ ଭଲୁକା ନାମରେ ଏକପ୍ରକାର ବାଉଁଶର ଆଦର ସବୁଠୁ ଅଧିକ । ଜଙ୍ଗଲରୁ ବାଉଁଶ କାଟିବା ପାଇଁ ଗଲେ ଲୋକମାନେ ପ୍ରଥମେ ଭଲୁକା ବାଉଁଶର ସନ୍ଧାନ କରିଥାଆନ୍ତି । କେହି ଯଦି ବିହୁ ହୁଁଚରି ଗାଇବା ପାଇଁ ଆସି ଜଣକର ଘରେ ବେଶୀ ସମୟ ରହିଯାଆନ୍ତି, ନିଜ ତରଫରୁ ଘରର ସମସ୍ତ ସଦସ୍ୟଙ୍କ ମଂଗଳ କାମନା କରି ଯିବାପାଇଁ ବିଦାୟ ମାଗନ୍ତି । ସେହି ସମୟରେ ସେମାନେ ଏହିଭଳି କେତେଗୁଡିଏ କଥାକୁ ଗୀତରେ ପ୍ରକାଶ କରି ତା' ମାଧ୍ୟମରେ ନିଜ ମନୋଭାବକୁ ମଧ୍ୟ ପ୍ରକାଶ କରିଥାଆନ୍ତି ।

ଭଲୁକା ବାଁହରେ ଆଖି ସମନୀୟା
ଭଲୁକା ବାଁହରେ ଆଖି ;
ବତାହ ବରଷୁଣେ ଆନ୍ଦୋଳାଇ ଆନିଛେ
ଆମାକୋ ନ ଥବା ରାଖି ।

ବିହୁନାଚ ଦେଖୁ ଦେଖୁ ରାତି ଅନେକ ହୋଇଯାଏ; ସମୟ ଜାଣିହୁଏ ନାହିଁ । ଘରର ସବୁ କାମଧନ୍ଦା କଥା ମନରୁ ଭୁଲି ହୋଇଯାଏ । ଢୋଲର ଧିନିକ୍ ଧିନିକ୍ ଶବ୍ଦ ସାଂଗକୁ ମୃଦଙ୍ଗର ତାଓଁ ତାଓଁ ବା ଡାଉଁ ଡାଉଁ ଶବ୍ଦ ତାଳ ମିଳାଇ ବାଜୁଥାଏ । ନାଚୁଣୀ ନାଚି ନାଚି ହାଲିଆ ହୋଇ ପଡିଲେ ବି ପୁଣି ନାଚିବାକୁ ମନ କହେ । ରାତି ବଢିବା ସଂଗେ ସଂଗେ ନାଚୁଣୀର ନାଚର ଗତି ମଧ୍ୟ ବଢି ଚାଲେ । ଦର୍ଶକ ତଥା ପରିବେଶକ ମଧ୍ୟରେ ଏକ ଅପୂର୍ବ ଯୋଗସୂତ୍ର ସ୍ଥାପନ ହୋଇଥାଏ । ବିହୁତଳିରୁ କେହି ଘରକୁ ଫେରିବା ପାଇଁ ଇଚ୍ଛା କରନ୍ତିନି । ନାଚୁଣୀର ହଠାତ୍ ନିଜର ଜୀବିକାର୍ଜନର କଥା ମନେ ପଡ଼େ । ସେ ସୂତା ଅଧାକଟା କରି ଥୋଇଦେଇ ଆସିଥିଲା, ସେଥିପାଇଁ ସମସ୍ତଙ୍କ ପାଖରେ ଆସିବା ପାଇଁ ଅନୁରୋଧ ଜଣାଇ ବିଦାୟ ମାଗିଥାଏ । ଏହି ଦୃଶ୍ୟର ବର୍ଣ୍ଣନା ଅତି ଜୀବନ୍ତ ।

---

ଜକାଇ - ଖଇଣ୍ଡି, ଦରିକନା - କରାଣ୍ଡିଭଳି ଛୋଟ ମାଛ, ପତିୟାଇ - ଭାବି, ଭାବି ।

ଢୋଲେଟି କରିବର ଧିନିକ୍ ଧିନିକ୍
ମୃଦଙ୍ଗେ କରିବର ତାଓଁ ;
କାଟନି ସୂତାର ଐ ଆମନି କରିଛେ
ବିଦାୟ ଦିୟା ଘରଲୈ ଯାଓଁ ।

କାଉଁରୀ କାମାକ୍ଷାର ଦେଶରେ ବ୍ରହ୍ମପୁତ୍ର ଭଳି ବଡ଼ନଦୀଠାରୁ ଆରମ୍ଭ କରି ଅନେକ ଛୋଟବଡ଼ ନଦୀ ରହିଛି । ପାହାଡ଼ ପର୍ବତ ମାଳିନୀ କାମାକ୍ଷା ସୁନ୍ଦରୀର ଦେଶରେ ନଦନଦୀର ଅପରୂପ ସୌନ୍ଦର୍ଯ୍ୟ ଲୋକମନକୁ ବାହ୍ୟଜଗତକୁ ଟାଣି ନେଇଥାଏ । ନଦନଦୀର ପାଣିକୁ ଛୋଟବେଳୁ ଦେଖି ଦେଖି ବାଲ୍ୟାବସ୍ଥାରୁ ନଦୀ ସହିତ ଅସମୀୟା ଯୁବକ ଅତି ଆପଣାର ହୋଇଯାଆନ୍ତି । ନଦୀରେ ଦଳ ଦଳ ହୋଇ ମାଛ ମାରିବାର ଆନନ୍ଦ ଭିତରେ ବହୁ ସମୟ ଅତିବାହିତ ହୋଇଯାଏ ତଥାପି ପରିଶ୍ରମ ଜାଣିହୁଏ ନାହିଁ । ମାଛ ଧରିବା ଏକ ସଉକ ଓ ଆକର୍ଷଣ ଅଟେ । କେହି ମାଛ ଧରିବାକୁ ଗଲେ ସମସ୍ତଙ୍କୁ ଘରେ ଘରେ ବୁଲି ଡାକେ, ଏକାଠି ମିଳିମିଶି ମାଛ ଧରିବାର ଆନନ୍ଦ ସ୍ୱତନ୍ତ୍ର । ମାଛ ଧରିବାକୁ ଗଲାବେଳେ କେହି ଜଣେ ଥଟ୍ଟାରେ କହୁଛି ମାଛ ଧରିବା ପାଇଁ ତୂରୀ ବାଜୁଛି, ବହୁତ ବଡ଼ କାମରେ ବି ସେ ତୂରୀ ବାଜେ ନାହିଁ । ରଂପୁର ନଗରରେ ରାଜାଙ୍କର ପ୍ରାସାଦ ତିଆରିହେଲା, ବହୁପ୍ରକାର ବାଦ୍ୟ ବାଜିଥିଲା । ସବୁଲୋକ ନିମନ୍ତ୍ରିତ ହୋଇ ଆସିଲେ ଅଥଚ ଘରର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଦିଆଯାଇଥିବା ବାଉଁଶର ଦୁଇଟା ମୁଣ୍ଡ ଠିକ୍ ଭାବରେ ଯୋଡ଼ା ଖାଇଲାନି । ତେଣୁ ଏତେ ପ୍ରକାର ଆଡମ୍ବର କରିଗଲେ ଶେଷରେ ରଂପୁର ରାଜପ୍ରାସାଦ ତିଆରି ଭଳି ହେବ । ମାଛ ନପାଇ କେବଳ ଲାଜପାଇ ଫେରିବାକୁ ହେବ । ଏହା ସହିତ ଆସାମରେ ବାଉଁଶରେ ବହୁତ ମଜଭୁତ ଘର ତିଆରି କରାଯାଉଥିଲା । ଏପରିକି ରାଜପ୍ରାସାଦ ତିଆରି କରା ହେଉଥିଲା, ତା'ର ପ୍ରମାଣ ବିହୁଗୀତରୁ ମିଳିଥାଏ ।

କିନୋ ମାଛ ମାରିବର ତୁରା ସମନୀୟା
କିନୋ ମାଛ ମାରିବର ତୁରା;
ରଂପୁର ନଗରତ କାରେଂଘର ସାଜିଲେ
ମାରଲିର ନେ ଖାଲେ ଜୋର୍ା ।

ପ୍ରତିଟି ବିହୁଗୀତରେ ସାମାଜିକ ଚିତ୍ର ସହିତ ବିଭିନ୍ନ ପରିବେଶର ବର୍ଣ୍ଣନା, ବିଭିନ୍ନ ସମୟର ତଥା ଜାତିର ଚିତ୍ର ସ୍ପଷ୍ଟ ଭାବେ ପ୍ରତିଫଳିତ ହୋଇଥାଏ । ଜଣେ ଝିଅଟି ବଡ଼ୋ କଚାରୀ ଜନଜାତିର ଯୁବକକୁ ଅତି ଆପଣାର ବୋଲି ଭାବିଛି । ସେ ଯୁବକଟି ଛୋଟବେଳୁ ନିଜ ମା'କୁ ହରାଇଛି । ଦିନେ ରାସ୍ତାକେ ଗଲାବେଳେ ଯୁବକଟି ଗୋଟିଏ କାଠ ଜିନିଷକୁ ତାଛି ତାଛି ଯାଇଛି । ରାସ୍ତାସାରା କାଠଜିନିଷଟିର ଛେଲିଗୁଡ଼ିକ ପଡ଼ିଛି । ତା'କୁ ଦେଖି ତା ପ୍ରତି ଆକୃଷ୍ଟ ହୋଇଥିବା ଝିଅଟି କହୁଛି ବିଜୁଳୀ ଭଳି ଆଖି ଦୁଇଟି ସୁନ୍ଦର ଓ ଚଳଚଞ୍ଚଳ,

କାରେଂ - ରାଜପ୍ରସାଦ ।

ଛୋଟବେଲୁ ମା'ର ମୁଣ୍ଡକୁ ଖାଇଛି । ସେ ତା'କୁ ପୁଣି କହୁଛି ବିଜୁଳୀ ଚକୁଆ, ତୁ ଥରେ ତୋ'ର ପେଁପା ବଜାଇଦେ, ମୁଁ ନାଚିବି ।

ଏ ଚାରି ଭୋଟାଟୋ କଚାରୀ ଲରାଟୋ
ବାଟତ ପେଲାଇ ଗଲି ଟେଁଟୁ;
ମା'ଗର ମୂରଖୋଆ ବିଜୁଲୀ ଚକୁଆ
ପେଁପା ଟୋ ବଜାଇ ଦେ ନାଚେଁ ।

ଯୁବକଟିକୁ ପେଁପା ବଜାଇବା ପାଇଁ କହି ନିଜେ ଯେମିତି ନାଚିବା ପାଇଁ ସଜ ହୋଇଛି । ସୁନ୍ଦର ଚିକ୍‌ଚିକିଆ ମେଖଳା ଚାଦର ହଳେ ପବନରେ ଆକାଶକୁ ଉଡିଯିବା ପାଇଁ ଅବା ଇଚ୍ଛା କରୁଛନ୍ତି ।

ଝିଅଟି କହୁଛି ଚାରିଓଳି ନ ଖାଇ ମୁଁ ବିହୁ ସଂଗରେ ରହି ପାରିବି କିନ୍ତୁ ବହାଗ ବିହୁକୁ ବିଦାୟ ଦେଇ ପାରିବିନି

କିଁନୋ କାପୋର ଖନି ଫୁଲେ ଜକେମକି
ଉରିଯାୟ ବତାହର ଲଗତ ;
ନେ ଖାୟ ଚାରି ସାଜି ଥାକିବ ପାରୋଁ ମଇ
ବହାଗର ବିହୁରେ ଲଗତ ।

ବହୁଦିନରୁ ଅନେକ ଆଶା ନେଇ ଅତି ଆପଣାର ଲୋକଟିର ଖବର ପାଇବା ପାଇଁ ପ୍ରେମିକ ପୁରୁଷଟି ଅନେଇ ବସି ରହିଥାଏ । ପ୍ରେମିକାକୁ ଦେଖି ଖୁସୀରେ ମନ ଉଛୁଳି ପଡ଼େ । ସେ ଛୋଟ ଝିଅଟିକୁ ପଚାରେ, କହିବୁ କି ବିହୁର ଖବର କ'ଣ ? ଛୋଟ ଝିଅଟି ଜାଣି ଶୁଣି ଚୁପ୍ ରହୁଛି । ପ୍ରେମିକର ମନରେ ଉତ୍କଣ୍ଠା ବଢ଼ି ବଢ଼ି ଯାଉଛି । ଧୀରେ ଧୀରେ ସେ ନିରାଶ ହୋଇ ପଡୁଛି । ତା'ନିଜର ଅବସ୍ଥା କଥା ଝିଅଟିକୁ କହି ଶେଷରେ କହୁଛି ତୁ ଯଦି ମୋତେ ବିହୁର ଖବର ନ ଦେବୁ, ତା' ହେଲେ ତୋ'ର ଅବସ୍ଥା ମୋ ଭଳି ହେବ । ସେ ପୁଣି କହୁଛି ମୁଁ ବାଉଁଶର ଟକା'ଟି ବଜାଇ ଦେଉଛି । ତୁ ବିହୁର ଖବର ମୋତେ କହିବୁ ।

ବାଁ ହରେ ଟକାଟି ବାବିଐ ଭନୀଟି
ବିହୁରେ ବାତରି କବି ;
ବିହୁରେ ବାତରି ନ କବ ଲାଜିଲେ
ନିଜରେ ନିଶିନା হবি ।

ସମାଜର ନିଖୁଣ ଛବିକୁ ପ୍ରତିପାଦନ କଲାବେଳେ ଲୋକକବି ନିଜର ପ୍ରଶଂସାର ଅପେକ୍ଷା କେତେବେଳେ ହେଲେ ରଖେ ନାହିଁ । ଯାହା ତା'କୁ ଭଲ ଲାଗେ, ନିଜର ମନକୁ

---

ଟେଁଟୁ - କାଠର ଛେଲି, ଭନୀଟି - ଭଉଣୀ-ଭଉଣୀ ବା ସାନଝିଅକୁ ସମ୍ବୋଧନ କରିବା, ବାତରି - ଖବର, ନିସିନା - ଭଳିଆ ।

ପାଇଥାଏ, ତା'କୁ ସରଳ ସୁନ୍ଦର ଭାଷାରେ ବନେଇ ଚୁନେଇ ସେହି ଗୋଟିଏ କଥାକୁ କହୁଥାଏ । କିନ୍ତୁ ବେଳେବେଳେ ଲୋକକବିର ମନକୁ ଏମିତି ଏକ ଧାରଣା ଆସିଥାଏ, ଯଦ୍ୱାରା ଗୋଟିଏ ସାଧାରଣ ଖବର ପାଇଲେ ବା ଖବର ପସନ୍ଦ ଯୋଗ୍ୟ ନ ହେଲେ ସେ ଖବର ପଠାଇଥିବା ଲୋକର ବିବେକ-ବୁଦ୍ଧି, ତଥା ସଂପର୍କକୁ ତଉଲିଥାଏ । ଗୋଟିଏ ଜାଗାର ଦାରୋଗାକୁ ମଈଁଷୀ ମାନେ ଭୁଷି ଭୁଷି ମାରିଲେ, କେହି ବନ୍ଧୁକରେ ସେ ମଈଁଷୀକୁ ମାରିଲେ ନାହିଁ । କବିର ଭାଷାରେ ବନ୍ଧୁକ ଆଗରେ ନିଆଁ ଜଳିଲାନି ।

''ମାଟିର ଦାରୋଗାକ ମ'ହେ ଖୁଚି ମାରିଲେ
ବନ୍ଦୁକେ ନିଦିଲେ ଜୁଇ'' ।

ମୈଦାମ ନାମକ ଜାଗାରେ କଞ୍ଚାସୁନା ଅଛି ବୋଲି ପାଇଥିବା ଖବର କାହା ମନକୁ ପାଇନାହିଁ । ଏ କଥା ନିହାତି ମିଛ , କୋଉ ଶତ୍ରୁ ଖାଲିଟାରେ ହଟହଟା କରିବା ପାଇଁ ଏ ଖବର ପଠେଇଛି । ଲୋକକବି ଶତ୍ରୁକୁ ପଦାରେ ପକାଇବା ପାଇଁ ଯେପରି ସଙ୍କଳ୍ପବଦ୍ଧ ।, ତାଙ୍କ ମତରେ ଛାଇ ଜାଗା ପାଇ ବଗୁଲୀ ଚରେ, ପାଣି ଦେଖିଲେ ମାଛ ପାଇବା ଆଶାରେ ବଗୁଲୀ ନାଚିଥାଏ । କିନ୍ତୁ ମୈଦାମରେ ସୁନା ଥିବା ଖବର କେହି ଶତ୍ରୁ ପକ୍ଷରେ ଲୋକ ପଠେଇଛି । ଏହା ପସନ୍ଦ ଯୋଗ୍ୟ ନୁହେଁ । ସୁନାର ଖବର ପାଇଲେ ଲୋକମାନେ ଖୁସୀହେବା ସ୍ୱାଭାବିକ ମାତ୍ର ଏହା ଶତ୍ରୁର କାମ ।

ଛାଁ ପାଇ ବଗଲୀ ଚରେ ସମନୀୟା
ପାନୀ ପାଇ ବଗଲୀ ନାଚେ ;
କୋନ ଶତ୍ରୁୟେ କୈ ପଠିୟା ଲେ
ମୈଦାମତ କେଚାସୋନ ଆଛେ ।

ବିହୁଗୀତ ମାଧ୍ୟମରେ ସମାଜର ଆଳସ୍ୟ ପରାୟଣ ଯୁବକମାନଙ୍କୁ ଉତ୍ସାହ ତଥା ପ୍ରେରଣା ମଧ୍ୟ ଦିଆ ହୋଇଛି । ନିଜର ଆଳସ୍ୟତା ଯୋଗୁ ନିଶବଙ୍କା ହେଲାଭଳି, ନିଜର ଅଳସୁଆ ଗୁଣ ପାଇଁ ପେଟ ଅପୋଷା ରହିଲା ଭଳି ଆସାମର ଯୁବକମାନଙ୍କର ଉଦ୍ୟମହୀନତା ଓ ନିରୁତ୍ସାହ ଭାବକୁ ଦେଖି ବିଭିନ୍ନ ସମୟରେ ବିଭିନ୍ନ ଲୋକ ରଣମୁଖର ହୋଇ ଉଠିଛନ୍ତି । ସେହି ଯୁବକମାନଙ୍କୁ ଲକ୍ଷ୍ୟକରି କୁହାଯାଇଛି-

ଟେକେଲି ଟେକେଲି ମଲା ମୁଆ ଟେକେଲି
ଟେକେଲି ପେଟରେ ଧନ ;
କିନୋ ଟାଇ ଆଛ ହେରା ଡେକା ଲ'ରା
ଲାଗିଛେ ବଙ୍ଗାଳର ରଣ ।

ମ'ହ - ମଈଁଷୀ, ମୈଦାମ - ଅହୋମ ରାଜାମାନଙ୍କର କବରସ୍ଥାନ, ଟେକେଲି-ଛୋଟ କାଣ୍ଡି, ମଲାମୁଆ-ଗୋଲିଆ ମୁହଁ ଥିବା, ଡେକା ଲ'ରା-ଯୁବକ ପୁତ୍ର, ଟାଇ ଆଛ-ଶୁଇଛ, ଠାଇ ବାସ କରିବା, ବଙ୍ଗାଳ-ବାହାରୁ ଆସିଥିବା ଲୋକ ।

ଅଳସୁଆ ଯୁବକମାନଙ୍କୁ ଲକ୍ଷ୍ୟକରି କହିଲା ଭଳି କବିର ଭାଷାରେ ଗୋଲ ମୁହାଁ କାଞ୍ଚି ପେଟରେ ଧନ ରହିଛି । ହେ ବୀର ଯୁବକ, କ'ଣ ଅନେଇ ଦେଖୁଚ, ବଙ୍ଗାଳ ମାନେ (ବାହାରୁ ଆସିଥିବା ଲୋକ)ଯୁଦ୍ଧ କରିବାକୁ ଆସିଛନ୍ତି । ତମେ କିଛି ପ୍ରତିକାର କର ନ ହେଲେ ଆସାମର ଦୁର୍ଦ୍ଦିନ ପାଖେଇ ଆସିବ ।

କେବଳ ସେତିକି ନୁହେଁ, ଏମାନେ ବାହାରୁଧୀରେ ଧୀରେ ଛାଇ ଭଳି ମାଡି ଆସିଲେ । ଶେଷରେ ସାତଟା ଜିଲ୍ଲାକୁ ମିଶେଇ ଗୋଟିଏ ଜିଲ୍ଲା କରି ସମସ୍ତେ ମିଳି ରହିଲେ । ସେ ଜାଗାର ନାମ 'ଜୋରହାଟ' ରଖିଲେ । ଜୋରହାଟରେ ଆସାମ ବାହାରୁ ଆସି ଘରଦ୍ୱାର କରି ବିଭିନ୍ନ ପ୍ରକାର ବ୍ୟବସାୟରେ ଲିପ୍ତ ଥିବା ଲୋକଙ୍କୁ ଲକ୍ଷ୍ୟକରି ଯୁବକ ଯୁବତୀମାନେ ବିହୁଗୀତରେ କେତେଗୁଡ଼ିଏ ଗୀତ ଗାଇଥାଆନ୍ତି । ସାଧାରଣ ଅର୍ଥରେ ଏହା ମନୋରଞ୍ଜକ ଗୀତ ହେଲେ ହେଁ ଏହା ମାଧ୍ୟମରେ ଆସମୀୟା ଯୁବକପ୍ରତି ଅନେକ ପ୍ରେରଣା ଦିଆଯାଇଛି ।

ବଙ୍ଗାଳ ବଙ୍ଗାଳ କିନୋ ଐ ବଙ୍ଗାଳ
ବଙ୍ଗାଳେ ଆଛିଲେ ସାଇ;
ସାତରାଜ ମାରି ଏକେରାଜ କରିଲେ
ଲଲେ ଜୋରହାଟତ ଠାଇ ।

ବହୁଦିନ ତଳେ ଆସାମରେ ଯୁଦ୍ଧ ପାଇଁ ବିଗୁଲ ବାଜିଲେ ସିପାହୀମାନେ ସବୁ କାମଧନ୍ଦା ଛାଡ଼ି ରଣ ପାଇଁ ସଜ ହୋଇଥିଲେ । କଏଦୀମାନେ ମଧ୍ୟ ଯୁଦ୍ଧରେ ଲଢ଼ିବାପାଇଁ ଗଡ଼ ବାନ୍ଧି ଥାଆନ୍ତି । ତା'ର ଉଦାହରଣ ବିହୁଗୀତରେ ଦେଖିବାକୁ ମିଳେ ।

କଏଦୀୟେ ବାନ୍ଧିବ ଗଡ଼ ସମନୀୟା ।
କଏଦୀୟେ ବାନ୍ଧିବ ଗଡ଼;
ପୁଖୁରୀର ପାରତେ ରଣର ବିକୁଲ ବାଜିଲେ
ସିପାହୀ ଲାଗିଲେ ଥର ।

ବହୁସମୟରେ ଲୋକମୁହଁରେ ଅନେକ ପ୍ରକାରର କିମ୍ବଦନ୍ତୀ ଶୁଣିବାକୁ ମିଳିଥାଏ । ବିଦେଶୀ ସାହେବମାନଙ୍କର ହାବଭାବ, ଆସାମର ଚା ବଗିଚାରେ ସେମାନଙ୍କର ବିଭିନ୍ନ ପ୍ରକାର ବିଳାସ ବ୍ୟସନ ପୂର୍ଣ୍ଣ ଜୀବନର କଥା ବିହୁଗୀତରେ ଶୁଣିବାକୁ ମିଳେ । ବ୍ରିଟିଶରମାନଙ୍କର ଶାସନ ପ୍ରଣାଳୀ କେବେକେବେ ଅତି ଅସହ୍ୟ ହୋଇଉଠିଥିଲା । ସରଳ ତଥା ବୋକା ପ୍ରକୃତିର ଲୋକମାନେ ମଧ୍ୟ ତାହା ବୁଝି ପାରୁଥିଲେ । ହାଲ୍‌କନ ନାମରେ ଜଣେ ବିଦେଶୀ ସାହେବର ଅତ୍ୟାଚାର ସହି ନପାରି ନାଗା ଲୋକମାନେ ତା'କୁ କାଟିଦେଲେ, କୌଣସି ସିପାହୀ ତାଙ୍କୁ ବଞ୍ଚେଇ ପାରିଲେନି ।

---

ବିକୁଲ-ବିଗୁଲ ।

ନଗାର ଚାଙ୍ଗେ ଚାଙ୍ଗେ ଫୁରିଲି ହାଲକନ
ନଗାର ଟେପୁକଟୁ ଖାଇ;
ଅକରା ନଗାଇ ଖକରାଇ କାଟିଲେ
ସିପାହୀ ଥାକିଲେ ସାଇ ।

ହାଲକନ ସୋହେବ ଦିନରାତି ନାଗା ଲୋକମାନଙ୍କର ଭାଡ଼ିଘର ଗୁଡ଼ିକର ତଳେତଳେ ବୁଲିଲେ । ସେ ନାଗାଲୋକମାନଙ୍କର 'ଟେପୁସାରୁ'ରେ ତିଆରି ତରକାରୀ ଖାଇଲେ । ଶେଷରେ ସେମାନଙ୍କ ପ୍ରତି ଅନ୍ୟାୟ ଓ ଅତ୍ୟାଚାର କଲେ । ତେଣୁ ସରଳ ବିଶ୍ୱାସୀ ନାଗାଲୋକ କେତେଜଣ ମିଶି ତାଙ୍କୁ କାଟିଦେଲେ । କେବଳ ସେତିକି ନୁହେଁ, ସେ ରାତିରେ ମଲେ । ତା'ପରଦିନ ସକାଳୁ ବିଦେଶୀସାହେବ ତଥା ସିପାହୀମାନେ ଖବର ପାଇଲେ ।

ଇତି ଲିଖିବରେ ଚିଠି ସମନୀୟା
ଇତି ଲିଖିବରେ ଚିଠି;
ହାଲକନ ସାହାବକ ନଗାଇ କାଟିଲେ
ପୁଆଲୈ ପାଲେହି ଚିଠି ।

ହାଲକନ ସାହେବଙ୍କୁ କିଏ ମାରିଲେ ତାହା ଆଜି ମଧ ଏକ ପ୍ରଶ୍ନବାଚୀ । କେହି କେହି ସନ୍ଦେହ କରନ୍ତି ଅରୁଣାଚଳ ପ୍ରଦେଶର ଆବର ନାମକ ଜନଜାତିର ଲୋକମାନେ ଆସାମରେ ହାଲକନ ସାହେବଙ୍କୁ କାଟି ଦେଇଥିଲେ । ତାଙ୍କର ମୁଣ୍ଡ କେହି ଖୋଜି ପାଇଲେନି ।

ହୋରାକୈ ଗଛରେ ମୂଢ଼ା ସମନୀୟା
ହୋରାକୈ ଗଛରେ ମୂଢ଼ା;
ହାଲକନ ସାହାବକ ଆବରେ କାଟିଲେ
ବିଚାରି ନେ ପାଲେ ମୂରା ।

ହାଲକନ ସାହେବଙ୍କର ମୁଣ୍ଡ କେହି ଖୋଜି ଖୋଜି ପାଇଲେନି ଅଥଚ ତା' ସହିତ ବହୁ ପରିମାଣରେ ଗଛର ମୂଳଜମା ହୋଇଥିବା କଥାକୁ ଲୋକକବି ଏହି ପ୍ରସଙ୍ଗରେ ପଦକୁ ପଦମିଳାଇବା ପାଇଁ ସୁନ୍ଦର ଭାବରେ କହିଛନ୍ତି । ଲୋକଗୀତ ଗୁଡ଼ିକରେ ନିଜ ଜୀବନର ପ୍ରତିଟି ଘଟଣାବଳୀ ଜୀବନ୍ତ ହୋଇଉଠିଛି । ସେଥିପାଇଁ ବିହୁଗୀତ ଅସମୀୟାର ମାନସପଟରେ ସ୍ୱତନ୍ତ୍ର ଆସନ ଅଧିକାର କରିଛି ।

ବିହୁ ଆନନ୍ଦର ଉତ୍ସବ । କିନ୍ତୁ ଅର୍ଥନୈତିକ ପରିସ୍ଥିତି ବିହୁର ଆନନ୍ଦକୁ ଉପଭୋଗ କରିବାରେ ବାଧା ଦେଇଥାଏ । ଅନ୍ୟର ଆନନ୍ଦ ଦେଖି ଦେଖିଲୋକ ବିହୁ ପାଳିବ, ବିହୁନାଚରେ ଭାଗ ନେବ ବୋଲି ଭାବି ଘର ଭିତରୁ ବାହାରକୁ ବାହରି ଆସେ । ଆଜିର ସମାଜିକ ପରିବେଶ ସହିତ ପ୍ରାଚୀନ କାଳର ସାମାଜିକ ପରିବେଶର ମେଳ ନଥିଲେ ହେଁ

ଚାଙ୍ଗ-ଭାଡି ବା ମଞ୍ଚାଘର, ମୂଢା-ମୂଳ, ମୂରା-ମୁଣ୍ଡ, ଅକରା-ହୁଣ୍ଡା, ଖର୍କରାଇ-ହଠାତ୍, ହୌନ୍ନା-ବହୁତ, ସାଇ-ଦେଖି ।

ଦୁଃଖୀର ମନର ବେଦନା ସେତେବେଳେ ମଧ ଆଜି ଭଳି ଥିଲା, ତାହାର ସ୍ପଷ୍ଟ ଚିତ୍ର ବିହୁଗୀତ ଗୁଡ଼ିକରେ ଉଦ୍‌ଭାସିତ ହୋଇଉଠିଛି ।

**ବେଶପୋଷାକ** - ନିଜର ବେଶ ପୋଷାକରେ ଅସମୀୟାର ରୁଚି ସ୍ୱତନ୍ତ୍ର ଅଟେ । ଯୁବତୀମାନେ ସାଧାରଣତଃ ଯୁବକମାନଙ୍କୁ ଏବଂ ନିଜର ଗୁରୁଜନମାନଙ୍କୁ ନାଲି ଫୁଲ ପକା ହାତବୁଣା ଧଳା ଗାମୁଛା ଉପହାର ଦେଇଥାଆନ୍ତି । ଗୁଣାକଟା ପଗଡ଼ି, ସୁନାଜରି ଲଗା ମୁଗାର କପଡ଼ା ଏବଂ ବକ୍ଷଦେଶରେ ରିହା ତଥା ମେଖଳା ଚାଦର ଅସମୀୟା ନାରୀର ପ୍ରିୟ ବସ୍ତ୍ର ଅଟେ । ଯୁବତୀମାନେ ଯୌବନ ପ୍ରାପ୍ତି ପାଇଲା ପରେ ତାଙ୍କର ଦେହର ରଂଗ ଅଧିକ ଉଜ୍ଜ୍ୱଳ ହୋଇଉଠେ । ସେମାନେ ମୁଗାକପଡ଼ାର ମେଖଳା ଚାଦର ଓ ରିହା ପିନ୍ଧିଥାନ୍ତି ।

''ଆମାରେ ସେନାଉୟେ ବରଣଟି ସଲାଲେ
ମୁଗା ରିହା ମେରାଲେ ଗାତ''

ସେହିଭଳି ଯୁବକମାନେ ଫୁଲପକା ସେଲେଙ୍ଗ ଦେହରେ ଗୋମଚେଙ୍ଗର ସାର୍ଟ ପିନ୍ଧି ଆଭିଜାତ୍ୟର ପରିଚୟ ହୋଇଥାଆନ୍ତି । ବିହୁଗୀତ ଗୁଡ଼ିକରେ ବଜାରର ଜ୍ୟାକେଟ୍‌ସାର୍ଟ ରେଶମ ରୁମାଲ, କଳା କପଡ଼ାର କୁର୍ତ୍ତା ଆଦିର ବର୍ଣ୍ଣନା କରାଯାଇଥାଏ ।

ବିହୁ ସମୟରେ ଯୁବକମାନେ ନିଜର ପ୍ରିୟାକୁ ନୂଆ ନୂଆ ବସ୍ତ୍ର ଉପହାର ଦେଇଥାଆନ୍ତି । ନିଜର ପ୍ରିୟାକୁ କଳା କିମ୍ବା ଧଳା ରଂଗର କପଡ଼ା ଭଲ ଦିଶିବନି, ସେ ରଂପୁର ଜିଲ୍ଲାରୁ ନାଲି ରଂଗର ପୋଷାକ ଆଣିଦେବ ବୋଲି କହିଛୁ

କ'ଲା ଚୋଲାଇ ନୁଶୁଆୟ ତୋକେ ଐ ଲାହରୀ
ବଗା ଚୋଲାଇ ନୁଶୁଆୟ ତୋ'କ;
ରଂପୁର ଜିଲ୍ଲାତେ ଆଛେ ରଂଗା ଚୋଲା
ଆନି ଦିମ ଶୁଆବ ତୋ'କ ।

ଅସମୀୟା ନାରୀ ଅଳଙ୍କାର ପ୍ରିୟ । ବିହୁସମୟରେ ହାତରେ ଗାମ ଖାଡୁ, ଜୋନବିରି, ମାଦଳି, ମଥାରେ କପାଳି, ଅଣ୍ଟାରେ କକାଳି, ପାଦରେ କଇ, ହାତରେ କେରୁମଣି, ଗଳାରେ ଗଳଫିତା, ପୋଆଲମଣି ଆଦି ପିନ୍ଧିବାକୁ, ସେ ଭଲ ପାଏ । ସ୍ନେହର୍ଦ୍ଦେବିହୁରେ ପ୍ରେମିକା ତା'ର ପ୍ରେମିକକୁ ବିହୁପାନ ଦେଇଥାଏ । ତା'ର ପ୍ରତିଦାନ ସ୍ୱରୂପ ଯୁବକଟି ସୁନା ଓ ପୋହଳା ଦେଇ ତିଆରି କରିଥିବା ଗଳାର ମାଳା ତା' ପ୍ରେମିକାକୁ ଦିଏ ମାତ୍ର ସେ ପୋହଳାର ମାଳା ତା ପ୍ରେମିକାକୁ ସାଜୁଛି ନାଁ ନାହିଁ ଏକଥା ଭାବି ସେ ତା'କୁ ବାରମ୍ବାର ଅନାଏ ।

ଶୁଆୟ କି ନୁଶୁଆୟ ସୋନର ପୋଆଲମଣି
ବନିୟାଇ ବନିୟାଇ ଚାଓଁ;
ଶୁଆୟ କି ନୁଶୁଆୟ ମୋର ଧନ ସେନାଇକ ଐ
ପିନ୍ଧାଇ ଆଣେ ଗୁରି ଚାଓଁ ।

---

ପୋଆଲମଣି-ପୋହଳା ମାଳି, ଶୁଆୟ-ସାଜୁଛି, ଗୋମଚେଙ୍ଗ-ସାପକାତି ଭଳି ଚିକ୍ ଚିକ୍ କରୁଥିବା ରେଶମ କପଡ଼ାର ସାର୍ଟ ।

**ଖାଦ୍ୟପେୟ** - ବିହୁଗୀତ ଗୁଡ଼ିକ ମୁଖ୍ୟତଃ ଯୁବକଯୁବତୀମାନଙ୍କର ପ୍ରେମ ଓ ଯୌବନର ଜୟଗାନ କରିଥିଲେ ହେଁ ଏହା ମାଧ୍ୟମରେ ଅସମୀୟା ଦୁଃଖପୂର୍ଣ୍ଣ ସମାଜ ଜୀବନର ଚିତ୍ର ଅତ୍ୟନ୍ତ ମନୋରମ ଭାବେ ପ୍ରକାଶ ପାଇଛି । ଅସମୀୟା ଲୋକର ରୁଚି ଅନ୍ୟମାନଙ୍କଠାରୁ କେତେ କାଂଶରେ ପୃଥକ୍ । ଭୋକବେଳେ ଭଜାଚାଉଳଗୁଣ୍ଡ କେଇମୁଠିକୁ ପାଣିରେ ମିଶେଇ ଚିନି ବା ଗୁଡ଼ ଟିକିଏ ତା ସାଙ୍ଗରେ ମିଶେଇ ଖାଇ ପାଣି କେଇ ଢ଼ୋକ ପିଇ ଅସମୀୟାଟି ସନ୍ତୁଷ୍ଟି ଲାଭ କରିଥାଏ, ଯେତେବେଳେ ଅମସୀୟାର ଧାନ ଅମାର ଭର୍ତ୍ତି ଥିଲା ସେମିତି ଅଭାବ ଅସୁବିଧାର ସମ୍ମୁଖିନ ହୋଇନଥିଲା । ସେତେବେଳେ ସେ କିପରି ରାନ୍ଧିବାଢ଼ି ଖାଇବାରେ ଆନନ୍ଦ ପାଉଥିଲା ତା'ର ସୁନ୍ଦର ଚିତ୍ର ବିହୁଗୀତରେ ଦେଖିବାକୁ ମିଳେ । ଉତ୍ତମ ବାସ୍ନାଯୁକ୍ତ 'ମାଣିକମଧୁରୀ' ଚାଉଳରେ ଭାତରାନ୍ଧି ଖାଇବାରେଁ ସେ କିପରି ଆନନ୍ଦ ପାଏ ତାହା ବିହୁଗୀତରେ ବର୍ଣ୍ଣିତ ହୋଇଛି । ତା ସାଙ୍ଗକୁ ଚିତଳ ମାଛର ଚର୍ବି, କରାଣ୍ଡିମାଛ ସାଙ୍ଗକୁ କଳା ମିଚିମିଚି ସାରୁ ଏବଂ ଲଙ୍କା ଓ ସୋରିଷ ବେସର ଦେଇ ଝୋଳ ଖାଇବାକୁ ଅସମୀୟାମାନେ ବେଶି ଭଲ ପାଆନ୍ତି ।

'ବଙ୍କୁଲବରା' ଧାନରେ ଖଇ ଭାଜି ଖାଇବାକୁ ଆସାମରେ ସମସ୍ତେ ପସନ୍ଦ କରନ୍ତି । ମହଲୀ ମଇଁଷୀର କ୍ଷୀରରେ ଦହି, ଶୁଖିଲା ଚାଉଳର ପିଠାଗୁଣ୍ଡ, ଦୁଇବାର ଭଜା ହୋଇଥିବା ଚୁଡ଼ା, ନାଲଚୁଟି (ଏକ ପ୍ରକାର ବାସ୍ନାଯୁକ୍ତ ଚାଉଳ) ଚାଉଳର ଭାତ , ସରୁସରୁ କଟା ହୋଇଥିବା ପାନ, ତା ଭିତରେ ଲବଙ୍ଗ, ଗୋଟିଏ ତାଟିଆ ରସୁଣ, ଗୋଟିଏ ତାଟିଆ ପିଆଜ, ଗୋଟିଏ ତାଟିଆ କଣ୍ଟାଲେଉଟିଆ ଶାଗ, ପଖାଳ ଭାତ, ବାର ପ୍ରକାର ଶାଗ, ବାଡ଼ିର ନାଲିଖଡ଼ା, ଜହ୍ଲାମାଛ ଆଦିର ବର୍ଣ୍ଣନାରୁ ଅସମୀୟା ରୁଚିର ପରିଚୟ ମିଳିଥାଏ । ବିହୁଗୀତ ଗୁଡ଼ିକରେ ଏଗୁଡ଼ିକର ବର୍ଣ୍ଣନା ଉଚ୍ଚକୋଟୀର ଅଟେ ।

୧- " ବଙ୍କୁଲ ବରାଧାନର ଆଖୈ ଭାଜିଛିଲୋ"

୨- "ମହଲୀ ମ'ହରେ ଦୈ"

୩- "ଶୁକାନ୍ ପିଠା ଗୁରି"

୪- "ଦୋଆ ଭାଜା ଚିରା"

୫- "ନାଲଚୁଟି ଚାଉଳର ଭାତ"

୬- "ଥୁରିୟାଇ ଥୁରିୟାଇ ତାମୋଲ କାଟି ଦିଛିଲା ତା'ରୋମାଜେ ଦିଛିଲା ଲଂ"

୭- "ଏ ବାଟି ନହରୁ ଏ ବାଟି ପନରୁ,
ଏବାଟି ଖୁଟରା ଶାକ"

୮- "ପଇଁତା ପୋତନି"

୯- "ବାବରି ଶାକ"

୧୦- "ବାରୀର ମରଲୀୟା ଶାକ",

୧୧- 'ମୋଆ ମାଛ" ଆଦି ପ୍ରଧାନ ଅଟେ ।

ବିହୁଗୀତରେ ଲୋକ କାହାଣୀ ଓ ଲୋକବିଶ୍ୱାସ - ଅତୀତରେ ଦିନେ ରଂପୁର ନଗରରେ ଅହୋମ୍ ରାଜତ୍ୱ ସମୟରେ ରାଜାଙ୍କ ପାଇଁ ରାଜପ୍ରାସାଦ ତିଆରି କାମ ଆରମ୍ଭ ହେଲା । ନିପୁଣ ରାଜମିସ୍ତ୍ରୀମାନେ ରାଜ ପ୍ରାସାଦ ତିଆରିରେ ଦିନରାତି ଲାଗି ରହିଲେ । ଅନେକ ପରିଶ୍ରମ ପରେ ଶେଣି ଯୋଡ ଖାଇଲାନି । ଯୁବକଟି ତା ବନ୍ଧୁକୁ ଥଟ୍ଟା କରି କହୁଛି ରାଜପ୍ରାସାଦରେ ଦିନରାତି, ଶ୍ରେଷ୍ଠ କାରିବାର ଲାଗି ଶେଣିର ଯୋଡ ଲଗାଇ ପାରିଲେନି । ତୋ ହାତରେ କି ମାଛ ମରିବେ ? ଏଥିରେ ଲୋକକାହାଣୀର ପରିଚୟ ମିଳିଥାଏ ।

କିନୋ ମାଛ ମାରିବର   ତୁରା ସମନୀୟା
କିନୋ ମାଛ ମାରିବର ତୁରା;
ରଂପୁର ନଗରତ   କାରେଂଘର ସାଜିଲେ
ମାରଲିର ନେଖାଲେ ଜୋରା ।

ସେମିତି ଦିନେ ଅତୀତରେ ମୈଦାମ ନାମକ ସ୍ଥାନରେ କଞ୍ଚା ସୁନା ଅଛି ବୋଲି କେହି ଜଣେ ଉଡ଼ାଖବର ଦେଲା, ଏହା ସବୁଆଡ଼େ ସଂଗେ ସଂଗେ ବ୍ୟାପୀଗଲା । ଛାଇପାଇ ବଗୁଲୀ ଖୁସୀରେ ଚରିଲା ଭଳି, ପାଣି ପାଇ ବଗୁଲୀଆନନ୍ଦରେ ନାଚିଲା ଭଳି ମିଛ ଖବର ପାଇ ଲୋକମାନେ ସେମିତି ଖୁସୀ ହୋଇଥିଲେ । ଅନେକ ଦିନ ତଳର କଥା ହେଲେ ବି ଲୋକମାନଙ୍କର ସ୍ମୃତିରେ ତାହା ଏବେ ମଧ୍ୟ ଜୀବନ୍ତ ହୋଇ ରହିଛି ।

ଚାଁପାଇ ବଗୁଲୀ   ଚରେ ସମନୀୟା
ପାନୀ ପାଇ ବଗଲୀ ନାଚେ;
କୋନ ଶତ୍ରୁୟେ   କୈ ପଠିୟାଲେ
ମୈଦାମତ ଢ଼େଁକାସୋନ ଆଛେ ।

ଆସାମର ଚା ବଗିଚା ଗୁଡ଼ିକରେ ଅସମୀୟା ଯୁବକମାନେ କାମ କରିବାକୁ ପସନ୍ଦ କରୁ ନଥିଲେ । ବଗିଚାଗୁଡ଼ିକ ସାଧାରଣତଃ କଂପାନୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଲୋକବିଶ୍ୱାସରେ ଶିବସାଗର ପୋଖରୀ ଶୁଖିଲେ ଅଫିମଗଛ ସେଠି ହେବ, ଅଫିମ ଫଳିବ । ଚା ବଗିଚାରେ ଯୁବକମାନେ କାମ କରି କରି ବୁଢ଼ା ହୋଇଯିବେ ମାତ୍ର ବାହା ହୋଇ ସଂସାର କରି ପାରିବେ ନାହିଁ । ସେହି ଯୁବକମାନଙ୍କ ସହିତ କଂପାନୀର ଲୋକମାନେ ସୌଦାଗରୀ ବା ଅଫିମ ବେପାର କରି ଧନୀ ହେବେ । ଯୁବକମାନଙ୍କୁ ବୁଢ଼ା କରିବେ ।

ଶିବସାଗର ଶୁକାବ   ଆଫୁକାନି ଓଲାବ
ଆଫିଙ୍ଗତ ପାତିବ ଜୋକା;
କୋମ୍ପାନୀ ବଗିଚା   ସଦାଗରୀ କରିବ
ଡ଼େକା ଲ'ରା କରିବ ବୁଢ଼ା ।

---

ଆଫୁକାନି-ଅଫିମ, ଜୋକା-ରାଗ ବା ନିଶା, କାନୀୟା-ଅଫିମିଆ ।

ଅଫିମିଆକୁ ବାହାହେଲେ କିପରି ଦୀନଗ୍ରା ହେବାକୁ ପଡ଼େ ତାହା ବିହୁଗୀତରେ ବର୍ଣ୍ଣନା କରାଯାଇଛି ।

''କାନୀୟା ଲୈ ନା ଯାବି କାନି ଦିବ ଲାଗିବ ସାଜି
କାନି ତିତା ମାରୋତେ ପିଠା ଦିବ ଲାଗିବ,
ତା'କୋ ଦିବ ଲାଗିବ ଭାଜି''

**ସାମାଜିକ ବୈଷମ୍ୟର ଛବି** - ସମାଜର ସୁଖଦୁଃଖ ଭିତରେ ସମୟ ସମୟରେ ମଣିଷର ଦୁଃଖର ପରିମାଣ ବଢ଼ିଯାଏ ଏବଂ ତା'ର ଧୈର୍ଯ୍ୟଚ୍ୟୁତି ଘଟିଥାଏ । ସେଥିପାଇଁ ମାଟିର ପୃଥିବୀରେ ଦୁଇଦିନ ପାଇଁ ଆସି ସୁଖରେ ବଞ୍ଚିବା ପାଇଁ ଆଶା ପୋଷଣ କରିଥିବା ଲୋକର ମନରେ ଯେତେବେଳେ ଆଘାତ ଆସିଥାଏ, ସେ କିଶିଂ ଜାତିରଲୋକଠୁ ବରବିହ (ବିଷ) ଆଣି ଖାଇ ମରିବ ବା ଶଦିୟାର ରଣଭୂମିରେ ପଡ଼ି ମରିବ ବୋଲି ସ୍ଥିର କରିଥାଏ । ରାସ୍ତାରେ ବାଟ ଚାଲିଲା ବେଳେ ଅଦେଖା କଣ୍ଟାର ଆଘାତରେ ମଣିଷ ଆଘାତ ପ୍ରାପ୍ତ ହୋଇଥାଏ । ଏହି ବାଧା ଅସମୀୟା ସମାଜର ନିଷ୍ଠୁର ପ୍ରତିବନ୍ଧକ । ଅତ୍ୟାଚାରୀ ସମାଜ ବ୍ୟବସ୍ଥାର ନାମାନ୍ତର ମାତ୍ର । ଏହି ସମାଜ ବ୍ୟବସ୍ଥାକୁ ଭାଙ୍ଗିବାକୁ ଯାଇ ଲୋକ ନିଜେ ଚୋଟ ଖାଇଛି, ଶାରୀରିକ ତଥା ମାନସିକ ସ୍ତରରେ କ୍ଷତବିକ୍ଷତ ହୋଇଛି ତଥାପି କୌଣସି ବାଧା ନ ମାନି ମଣିଷର ମନ କଣ୍ଟାର ଆଘାତ ପାଇଲେ ମଧ୍ୟ ସଂଗ୍ରାମ କରିବା ପାଇଁ ଇଚ୍ଛା କରିଥାଏ ।

ବିହୁଗୀତରେ ବ୍ୟକ୍ତିଗତ ଭାବେ ହେଉ ବା ସାମୂହିକ ଭାବେ ହେଉ ମୁଣ୍ଡ ଉଠାଇଥିବା ବିପ୍ଳବୀ ମନର ପରିଚୟ ତଥା ଅସମୀୟା ସମାଜର ବିଧି ବ୍ୟବସ୍ଥାର ରୂପ ଯେ କୋଣେ କୋଣେ ପ୍ରତିଫଳିତ ହୋଇଛି, ତାହା ଅତ୍ୟନ୍ତ ଉଲ୍ଲେଖନୀୟ । ମଣିଷର ଆଶା ଓ ଆକାଙ୍କ୍ଷା ଅର୍ଥ ଅଭାବରୁ କେବଳ ଯେ ଆଶାରେ ରହିଯାଇଥାଏ ସେତିକି ନୁହେଁ, ମଣିଷକୁ ନିଜର ଆର୍ଥିକ ଦୂରାବସ୍ଥା ବେଳେବେଳେ ଅପଦସ୍ଥ ମଧ୍ୟ କରେ । ବହୁଦିନରୁ ମନରେ ବାନ୍ଧିଥିବା ଆଶା କେମିତି ବିପରୀତ ମୋଡ଼ନିଏ, ତାହା ବିହୁଗୀତରେ ପ୍ରତିଫଳିତ ହୋଇଛି ।

''ବଜାରତ କିନିଲୋ ରେଶମର ରୁମାଲ
ରେଲଗାଡ଼ି ଭଟିୟାଇ ଗ'ଲ;
ବିୟା କରାମ ବୁଲି ବରଘର ସାଜିଲୋ
ଗରୁ ବନ୍ଧା ଗୋହାଲି ଗ'ଲ ।

ସେ ବଜାରରୁ ରେଶମ କପଡ଼ାର ରୁମାଲ କିଣି ବାହାରକୁ ବୁଲିବା ପାଇଁ ବା ଚାକିରୀର ଅନ୍ୱେଷଣରେ ଯିବା ପାଇଁ ବାହାରିଲା ବେଳକୁ ତା ଭାଗ୍ୟ ତା'ର ସପକ୍ଷରେ ଗଲାନି । ରେଳଗାଡ଼ି ସେ ପହଞ୍ଚିବା ପୂର୍ବରୁ ଷ୍ଟେସନରୁ ଛୁଟି ଗଲା । ବାହାହେବା ପାଇଁ ବଡ଼କରି ନୂଆ ଘରଟିଏ ତିଆରି କଲା କିନ୍ତୁ ତାହା ବଡ଼ ଗୁହାଳରେ ପରିଣତ ହେଲା । ମଣିଷ ସନ୍ଦୟ ସମୟରେ ବ୍ୟର୍ଥ ହୋଇ ହତୋତ୍ସାହ ହୋଇପଡ଼େ ।

ସମାଜର ବିଭିନ୍ନ ପରିସ୍ଥିତିର କଥା ବିହୁଗୀତରେ ଶୁଣିବାକୁ ମିଳେ । ଯେପରି 'ଶତ୍ରୁରୁଯେ ନିଦିୟେ ବାଟ' ଅର୍ଥାତ୍ ଉନ୍ନତି କରିବା ପାଇଁ ଚେଷ୍ଟା କଲେ ବି ଶତ୍ରୁବାଟ ଛାଡ଼େନି । ନିଜର ମଣିଷକୁ ପାଇବା ପାଇଁ ମଧ ଏହି ଭଳି ଅନେକ ବାଧାବିଘ୍ନ ଆସିଥାଏ । ଯାହାକୁ ସମ୍ମୁଖୀନ କରିବା କଷ୍ଟକର ହୋଇପଡ଼େ, ଯେପରି -

"ତୁମି ରଲା ଇପାରେ, ମଇଁ ରଲୋ ସିପାରେ
ମାଜତ ବରତାନି ହାବି"

ତମେ ଏପଟେ ରହିଲ, ମୁଁ ସେପଟେ ରହିଲି, ମଝିରେ ଘଞ୍ଚ ଜଙ୍ଗଲ ରହିଲା । ତେଣୁ ସାମାଜିକ ସମସ୍ୟାର ଚିତ୍ର ଏଠାରେ ଫୁଟିଉଠିଛି । ସମାଜରେ ବାରଣ କରାଯାଉଥିବା କେତେଗୁଡ଼ିଏ କଥାର ଉଦାହରଣ ମଧ ଦିଆଯାଇଛି । ଯେପରି କେହିଜଣେ ଝିଅ ଯଦି ଗୁଆ କାଟି ସ୍ନେହରେ ଅନ୍ୟ ଗୋଟିଏ ପୁରୁଷକୁ ଦିଏ, ତା' ହାତରୁ କଟା ଗୁଆ ଖାଇବା ପାଇଁ ସମାଜରେ ବାରଣ କରାଯାଇଛି । ଝିଅଟି ଗୁଆ ଖଣ୍ଡେ କାଟି ଯାଚିବାରୁ ପୁରୁଷ ପ୍ରେମିକଟି ତା' କଥା ଏଡ଼ି ନ ପାରି ଖାଇଛି ସତ କିନ୍ତୁ ତା'ର ଜାତିକୁଳ ବିଷୟରେ ସଚେତନ କରି କହିଛି—

"ତୋମାର କଟା ତାମୋଲ ଖାଓଁ କେନେ କରି
ତୁମି ହ'ଲା ଅଜାତି କୁଲ ।"

ତା'ର ପ୍ରିୟା ଜଣକ ଅନ୍ୟ ଜାତିର । ଗୋଟିଏ ଧର୍ମ ଭିତରେ ଥିବା ଅଜସ୍ର ଭେଦାଭେଦର କଥା ଉଲ୍ଲେଖ କରାଯାଇଛି । ତା' ସହିତ ଅର୍ଥର ଅଭାବ ମଣିଷର ସୁଖଶାନ୍ତିକୁ ଛଡ଼େଇନିଏ । ଆସାମରେ ବାହାହୋଇ ଝିଅକୁ ଆଣିବା ପୂର୍ବରୁ ଝିଅର ବାପାକୁ କିଛି ଅର୍ଥ ଦେବାକୁ ହୋଇଥାଏ । ପାଖରେ ପଇସା ନଥିବାରୁ ଯୁବକଟି ଦୁଃଖରେ କହୁଛି—

"ତୋମାକ କେନେ କରି ଆନିମ ପ୍ରାଣେଶ୍ୱରୀ
ହାତ ତ ନାଇକିୟା ବିତ" ।

ଖଟିଖିଆ ଲୋକକୁ ନିଜର ଝିଅପାଇଁ ଅନୁପଯୁକ୍ତ ଭାବି ଝିଅର ବାପ ଅନ୍ୟ ଲୋକର ହାତରେ ଝିଅକୁ ଟେକିଦେଲା । ପ୍ରେମିକଟି ନିଜର ଭାଗ୍ୟକୁ ଦୋଷ ଦେଇ ଚୁପ୍ ରହିବାକୁ ବାଧ ହେଲା । କେବଳ ଦୁଃଖରେ ମନର ବ୍ୟଥାକୁ ପ୍ରକାଶ କଲା ।

ହାଲଲୈ ଲିଖିଲେ ମୋକେ ଐ ମଇନା
କୋରଲୈ ଲିଖିଲେ ମୋକ;
ତିନି ଆଙ୍ଗୁଲ କପାଲତ ବିଧାତାଇ ଲିଖିଲେ
ତୋଲୈ ନିଲିଖିଲେ ମୋକ ।"

ଯୁବକଟିର ଭାଗ୍ୟରେ ବିଧାତା ହଳ କରିବା ପାଇଁ ଲେଖିଲେ କିନ୍ତୁ ମଇନା ବା ପ୍ରେମିକାକୁ ପାଇବା ପାଇଁ ତିନି ଆଙ୍ଗୁଳର କପାଳରେ ଲେଖିଲେନି । ତା' ସହିତ ପ୍ରାକୃତିକ ଦୁର୍ଯୋଗର କଥା ଏବଂ ସାମାଜିକ ବୈଷମ୍ୟର ଛବି ଅଙ୍କିତ ହୋଇଛି । ଆହୁଧାନରେ ପାଣି

ପଶି ଧାନ ଫସଲ ନଷ୍ଟ ହେବା, ମୌଜାଦାର ନାଲି ଆଖି ଦେଖାଇ ଧମକ ଦେବା, ଗୋରୁ ଗାଈ, ମଇଁଷୀ ଆଦି ରୋଗରେ ପଡ଼ି ମରିବାର ସମ୍ଭାବନା ଭିତରେ ପଡ଼ି କୃଷିଜୀବି ଲୋକଟି ଘାଣ୍ଟି ଚକଟି ହୋଇଥାଏ । ଏହା ସହିତ ସରଗକୁ ଛୁଇଁଲା ଭଳିଆ ଘରଟିକୁ ଛପର କରିବାକୁ ହେବ, କତରାରେ ପଡିଥିବା ମା' ବାପକୁ ପାଳନ ପୋଷଣ କରି ତାଙ୍କର ସେବା ଶୁଶ୍ରୁଷା କରିବାକୁ ହେବ । ସ୍ନେହର ଭଉଣୀଟିକୁ ଭଲ ଘର, ଭଲ ବର ଦେଖି ହାତକୁ ଦି ହାତ କରିବାକୁ ହେବ । ଏହା ସହିତ ବାହା ହେଲେ ସ୍ତ୍ରୀକୁ ଗାମଖାଡୁ, ଗଲପତା ତଥା ମୁଗାର ମେଖଳା ଚାଦର ଆଦି ଯୁବକଟିକୁ ଦେବାକୁ ହେବ । ଦୁଃଖର ଜୀବନରେ ଏସବୁ ସମ୍ଭବ ନୁହେଁ । ଝିଅଟିର ମା' ବ୍ବାଇଁର ଦାରିଦ୍ର୍ୟତା ବିଷୟରେ ଆଗରୁ ଜାଣି ନଥିଲା । ଭାବୁଥିଲା ପୁଅଘର ସବୁବେଳେ ଭାତ, ରୋହିମାଛ ତରକାରୀ ଖାଆନ୍ତି ମାତ୍ର ଏବେ ତା'ର ପ୍ରକୃତ ଅବସ୍ଥା ବିଷୟରେ ଜାଣିଲା । ସେମାନେ ମହୁରାଳି ମାଛଟିଏ ଭାତ ସାଙ୍ଗରେ ରାନ୍ଧି ଖାଇବାକୁ ପାଆନ୍ତିନି ।

ଶବ୍ଦତ ଶୁନିଲୋଁ ଦ'ରା ଘର ଚହକୀ
ସାଜତ ରୌ ମାଛେ ଖାୟ;
ଏତିୟା ଜାନିଲୋଁ ଦରାଘର ଦୁଖିୟା
ସାଜତ ମୋଆ ମାଛ ନାଇ ।

ଝିଅ ଘରେ ବିଭାଘରର ପୂର୍ବଦିନ ଆନୁଷ୍ଠାନିକ ଭାବେ 'ଜୋରଣ' ପର୍ବ ପାଳନ କରାଯାଇଥାଏ । ପୁଅଘରୁ ଏହିଦିନ ଝିଅ ପାଇଁ ଅଳଙ୍କାର ଏବଂ ଶାଢ଼ୀ ଆଦି ଆସିଥାଏ । ପୁଅର ଆର୍ଥିକ ଅବସ୍ଥା ଖରାପ ହେଲେ ମଧ୍ୟ ତା'କୁ ଝିଅ ପାଇଁ ଗହଣା ଏବଂ ଶାଢ଼ୀ ଦେବାକୁ ପଡ଼ିବ । ଯଦି ପୁଅ ଘରୁ ଭଲ ଶାଢ଼ୀ ଆସିବନି, ତା' ହେଲେ ଥଟ୍ଟାରେ ଥଟ୍ଟାରେ ସମସ୍ତେ କହିବେ, ଜ୍ବାଇଁ, ଭାଇକୁ କେଉଁଠି ବନ୍ଧା ରଖି ଝିଅପାଇଁ ଶାଢ଼ୀ ଆଣିଛି ।

''ଲାକଟର କାପୋରଖନ ଜୋରୋନତ ଆନିଛେ
ସରୁ ଭାଇକ ବନ୍ଧକତ ଦି ।''

ଝିଅଟିକୁ ବାହାହୋଇ ଘରକୁ ଆଣିବା ପାଇଁ ହେଲେ ଧନର ଯୋଗାଡ଼ କରିବା ନିହାତି ଦରକାର । ସେଥିପାଇଁ ହଳ କରୁଥିବା 'କଳୀ' ଓ 'କମଳା'-ନାମରେ ବଳଦ ଦୁଇଟି ଏବଂ ଗୁହାଳର ସବୁ ଗାଈଙ୍କୁ ବିକ୍ରୀ କରି ପଇସା ଯୋଗାଡ଼ କରିବ ।

''ହାଲରେ ବେଚିମ ମଇ କଲା କମଲା
ଗୋହାଲୀର ବେଚିମ ମଇ ଗାଈ ।''

ଜୀବନରେ ପ୍ରେମ ସବୁକିଛି ନୁହେଁ, ଏହା ସହିତ ସଂସାରର ଭଲ ମନ୍ଦ ଓ ସୁଖଦୁଃଖ ପରିସ୍ଥିତିର ସମ୍ମୁଖିନ ହେବାକୁ ପଡ଼ିବ ଯୁବକ ଯୁବତୀରି ସଂପର୍କ ସାରା ଜୀବନର ସଂପର୍କ ।

---

ଦରାଘର-ଜ୍ବାଇଁଘର, ଚହକୀ-ଧନୀ, ସାଜତ-ଭଲକରି ଗୋଟିଏ ବେଳା ଖାଇବା, ମୋଆମାଛ-ମଉରାଳି, ବେଚିମ-ବିକ୍ରିକରିବା ।

କେହି ବା ଯଦି ଝିଅଟିକୁ ଭୁଲେଇ ନେଇ ଆସେ, ଖାଇବାକୁ କ'ଣ ଦେବ ? ଏହି ... 'ୟରେ ମା ବାପା ବେଶ୍ ସଜାଗ । ସେଥିପାଇଁ ଝିଅକୁ ଧନୀ ଲୋକ ସହିତ ବାହା ଦିଅନ୍ତି ମାତ୍ର ଝିଅଟି ଜୀବନସାରା ମାନସିକ ଅଶାନ୍ତି ଭିତରେ ପଡ଼ି ଛଟପଟ ହୁଏ ।

ଆର୍ଥିକ ଦୁରାବସ୍ଥା, ସାମାଜିକ ଉଚ୍ଚନୀଚ ଭେଦାଭେଦ, ଧନୀ ଦରିଦ୍ରର ପାର୍ଥକ୍ୟ, ସାମାଜିକ ବିଧିବ୍ୟବସ୍ଥା ଲୋକର ମନକୁ ଧକ୍କା ଦେଇଥାଏ । ମନର ନିରାନନ୍ଦ ଭିତର ସେ ବିହୁ ପର୍ବରେ ଥରେ ମନଖୋଲି ହସିବା ପାଇଁ ଚେଷ୍ଟା କରେ । ବିହୁତଳିରେ ବିହୁଗୀତ ଭିତରେ ମନର କଥା କହି ଅନ୍ତରର ବୋଝକୁ ହାଲ୍କା କରିଥାଏ । (୨୨)

**ଭାଗ୍ୟରେ ବିଶ୍ୱାସ–** ପ୍ରତ୍ୟେକ ଦେଶରେ କଥା ପ୍ରସଙ୍ଗରେ ଗାଉଁଲିଆ ଲୋକମାନେ କଥାରେ ନଥା ଲଗାଇ ଦେଇଥାନ୍ତି । କଥାରେ ନଥା ବାକ୍ୟର ଶୋଭା ବର୍ଦ୍ଧନ କରିବା ସଂଗେ ସଂଗେ ଲୋକମାନଙ୍କୁ ଅଧିକ ଆନନ୍ଦ ଦେଇଥାଏ । ଭାଗ୍ୟ ଉପରେ ବିଶ୍ୱାସ କରୁଥିବା ଲୋକମାନେ ଦୁଃଖ ବା ବିପଦ ସମୟରେ କପାଳରେ ହାତ ବାଡ଼େଇ ଫଟା କପାଳ ବୋଲି କହିଥାନ୍ତି ତା' ସହିତ କେହି ଯଦି ମନକୁ ଆଘାତ ଦେଲାଭଳି କଥା କହେ ତା'ହେଲେ ଲୋକମାନେ ଦୁଃଖରେ ''ତା କଥାରେ ଋଷି ବାଳ ଛିଣ୍ଡେଇ ମରିବ'' ଆଦି କଥା ପ୍ରତ୍ୟେକ ଦେଶରେ ଅଳ୍ପ ବହୁତ ପରିମାଣରେ ପ୍ରଚଳିତ ହୋଇଥାଏ । ଆସାମରେ ସେହିଭଳି ମୁଣ୍ଡରୁ କେଶ ଛିଣ୍ଡେଇ ଆଶୀର୍ବାଦ କରୁଛି ବା ଅଭିଶାପ ଦେଉଛି ବୋଲି କୁହନ୍ତି । 'କପାଳରେ ଯାହା ଅଛି ତାହା ଫଳିବ' ଭଳି ବିଶ୍ୱାସ ସରଳ ଲୋକମନରେ ରହିଆସିଛି । ଲୋକମନର ଧାରଣା ଲୋକଗୀତରେ ପ୍ରତିଫଳିତ ହେବା ସ୍ୱାଭାବିକ । ବିହୁଗୀତ ଗୁଡ଼ିକରେ ତା'ର ବର୍ଣ୍ଣନା କେଉଁଠି କେମିତି କାଁ ଭାଁ ଶୁଣାଯାଇଥାଏ ।

ବିହୁ ହୁଁଚରି ଗାଇବାକୁ ଆସିଥିବା ଗାୟକମାନେ ଯିବା ସମୟରେ ଗୃହସ୍ଥଠାରୁ ବିଦାୟ ନେବା ପୂର୍ବରୁ ଆଶୀର୍ବାଦ କରିଥାନ୍ତି । ତେଣୁ ଗୀତ ସହିତ ମେଳ ଖାଇଲା ଭଳି ଅନ୍ୟ କେତେଗୁଡ଼ିଏ ଉଦାହରଣ ଆମେ ତା' ସହିତ ଶୁଣିବାକୁ ପାଇଥାଉ । ଗୋଟିଏ ଟାଟିଆରେ ରସୁଣ, ଗୋଟିଏ ଟାଟିଆରେ ପିଆଜ ଏବଂ ଅନ୍ୟ ଗୋଟିଏ ଟାଟିଆରେ ଖୁତରା ବା କଣ୍ଟା ଲେଉଟିଆ ଶାଗ ଥାଏ, ଏହା ଦୈନନ୍ଦିନ ଜୀବନର ଏକ ସାଧାରଣ କଥା । ପ୍ରସଙ୍ଗକ୍ରମେ ସେହି ଚିତ୍ରକୁ ଆଖିଆଗରେ ରଖି ହୁଁଚରି ଗାୟକ ମୁଣ୍ଡର କେଶ ଛିଣ୍ଡେଇ ଭଲରେ ରହିବା ପାଇଁ ଗୃହସ୍ଥକୁ ଆଶୀର୍ବାଦ କରିଥାନ୍ତି ।

ଏଟା ବାଟିତ ନହରୁ ଏଟା ବାଟିତ ପନରୁ
ଏଟା ବାଟିତ ଖୁତରା ଶାକ;
ମୂରର ଚୁଲି ଛିଙ୍ଗି ଆଶୀର୍ବାଦ କରିଛୋଁ
ଗୃହସ୍ଥେ କୁଶଳେ ଥାକ ।

ଫୁଲଟିଟି-ଘରର ମଝିଖୁଣ୍ଟ, ନହରୁ, ପନରୁ-ରସୁଣ, ପିଆଜ, ମୂର-ମୁଣ୍ଡ ।

ଭାଗ୍ୟ ଉପରେ ବିଶ୍ୱାସ କରୁଥିବା ପ୍ରେମିକାଟି ପ୍ରେମିକଠୁ ଦୂରରେ ରହି ନିଜର ବିଚ୍ଛେଦ ଯନ୍ତ୍ରଣାକୁ କପାଳମନ୍ଦ କହି ସହିଛି । ଶେଷରେ ବହୁଦୂରରୁ ନିଜର ପ୍ରିୟଲୋକର ମଙ୍ଗଳ କାମନା କରିଛି ।

୧ - ''ଚଟିୟେ ବଗାଲେ ଚଟିର ବରଚେଲା
ମାରଲିତ ବଗାଲେ ସାପ;
ଆମାରେ କପାଲତ ଯି ହବର ହଇଛେ
ସେନାଇ ତଇ କୁଶଲେ ଥାକ ।''

୨ - ''ଘରର ଫୁଲଚଟି ମାରୁଲି ମାରଲି
ବଗାୟ କାଁଡ଼ଶଳା ସାପ;
ମୋର ଢାନୋ କପାଲତ ଯି ହବର ହୈଛେ
ସେନାଇ ତଇ କୁଶଲେ ଥାକ ।''

୩- ଲାଫ ମାରି ଆନାଗୈ ଢେ଼ମା ଗଛର ତାମୋଲି
ମୈ ପାରି ଆନୁ ଗୈ ପାନ;
ମୂରର ଚୂଲି ଛିଙ୍ଗି ଆଶୀର୍ବାଦ କରିଛୋଁ
ତୋମାର ଯେନ ହଓକ କଇଲାଣ ।

ଶେଷରେ ପ୍ରେମିକାଟି କହିଛି ତମେ ଡେଇଁକରି ମିଠା ଗୁଆ ଗଛରୁ ଗୁଆ ଆଣ, ମୁଁ ପାନ ପାରି ଆଣିବି । ଏହା ସହିତ ମୁଣ୍ଡର କେଶ ଛିଣ୍ଡେଇ ପ୍ରେମିକ ବା ସେନାଇର କଲ୍ୟାଣ କାମନା କରିଛି ।

ଲୋକ ସମାଜରେ ମନର କେତେଗୁଡ଼ିଏ କଥା ସିଧାସଳଖ ଭାବେ ନିଜର ପ୍ରିୟ ଲୋକକୁ କହି ହୁଏନି କି ମନ ଭିତରେ ରଖି ହୁଏନି । ସେଥିପାଇଁ ପ୍ରେମିକାଟି କହିଛି–

''ଲୋକକେ ଦେଖୁଆଇ କେଟେରାଇ ମାତିବା
ଭିତରି ନେରିବା ବେଥା ।''

ଅର୍ଥାତ୍ ଲୋକଙ୍କୁ ଦେଖେଇ ଦେଖେଇ ମୋତେ ଚିଡ଼େଇ କରି ଡାକିବୁ ନ ହେଲେ ମନ ଭିତରେ କଷ୍ଟ ଲାଗିବ ବୋଲି ପ୍ରିୟ ପୁରୁଷଟି ପ୍ରଣୟୀନିକୁ କହିଛି । ପ୍ରେମିକାଟି ତା'ର ଉତ୍ତର ଦେଇ କହିଛି–

''ବାମୁଣକ ତୋଆଲୋ ମୋଟିରେ ଐ ହାତଖନ,
ତୋମାରେ ଲଗତ ହେ ବିୟା ।''

ବ୍ରାହ୍ମଣ ପଣ୍ଡିତ ତା'ର ହାତଦେଖି ସେହି ମନର ମଣିଷଟି ସହିତ ବିଭାଘର ହେବ ବୋଲି ତା'କୁ କହିଛି । ଗ୍ରାମୀୟ ସରଳ ମଣିଷ ଭାଗ୍ୟ ଉପରେ ଅଧିକ ବିଶ୍ୱାସ ରଖନ୍ତି, ଏହା

---

ଚଟିୟେ-ଘରଚଟିଆ, ବଗାଲେ-ଉଠିଲେ, ମାରିଲି-ଘର ଚାଳର ବାଉଁଶ, ଲାଫ-ଲମ୍ଫ, ଢେ଼ମା- ସୁସ୍ୱାଦୁଯୁକ୍ତ ।

ବିହୁ ଗୀତରେ ସ୍ପଷ୍ଟ ହୋଇଛି । କେହି କେହି ଦୁଃଖ ତଥା ଅଭାବ ଅସୁବିଧା ଭିତରେ ପଡ଼ି ଭଗବାନଙ୍କୁ ନିନ୍ଦା କରି କଣା ବିଧାତା ନାଚାୟ ଚକ୍ଷୁ ମେଲି ଅର୍ଥାତ୍ 'କଣା ବିଧାତା ଆଖି ମେଲି ଦେଖୁନି' ବୋଲି ଲୋକମାନେ ଭାଗ୍ୟ ଓ ଭଗବାନଙ୍କ ଉପରେ ବିଶ୍ୱାସ ରଖି କହିଥାନ୍ତି ।

ଏହିଭଳି ଭାବେ ମାଳି ଚନ୍ଦା ଆଦି ଅସଂଖ୍ୟ ମାଛର ନାମ, ଦିଖୌ, ଦିଚୈ, ଝାଁଝୀ, ଲୁଇତ ଆଦି ନଦୀ ତଥା ଜଙ୍ଗଲର ବାଘ, ବିଭିନ୍ନ ପ୍ରକାରର ଜୀବଜନ୍ତୁ ଓ ପଶୁପକ୍ଷୀର ନାମ ବିହୁଗୀତ ଗୁଡ଼ିକରେ ଚିତ୍ରିତ ହୋଇଛି ।

ବାହାରେ ବର୍ଷା ହେଲେ ମଧ ମଣିଷର ମନ ଭିତରେ ଓ ଶରୀରରେ ଗରମ ଅନୁଭୂତ ହୁଏ । ଏହା ଏକ ପରିବର୍ତ୍ତନ, ପ୍ରେମର ପରିଣତି । ମାତ୍ର ପ୍ରିୟାକୁ ପାଇବାର ସମସ୍ତ ଆଶା ଲୋପ ପାଇଥିଲେ ହେଁ ତା' ପ୍ରତି ଆନ୍ତରିକତା ଥିବାରୁ ସ୍ନେହ ଓ ପ୍ରେମ ଅତୁଟ ରହିଥାଏ । ଏଠାରେ ଲାଭ କ୍ଷତିର ହିସାବ କରାଯାଇ ନଥାଏ । ନିଃସ୍ୱାର୍ଥପର ଭାବେ ଭଲ ପାଉଥିବା ମଣିଷଠୁ ଦୂରରେ ରହି ତା'କୁ ପାଇବା ପାଇଁ ମନ ବ୍ୟାକୁଳ ହୋଇଉଠେ, ତା'କୁ ଭୂଲିହୁଏ ନାହିଁ । ଚିରଦିନ ପାଇଁ ତା'କୁ ପାଇବାର ଆଶା ରଖିଥିବାରୁ ସେ ପ୍ରେମିକର ହୃଦୟରେ ସ୍ୱତନ୍ତ୍ର ସ୍ଥାନ ନେଇଥାଏ ମାତ୍ର ତା'କୁ ପାଇବାର ସମ୍ଭାବନା ନଥିଲେ ମଧ ସେ ତା'କୁ ଆଗ ଭଳି ଯେ ସ୍ନେହ କରୁଛି, ତା'ର ପ୍ରମାଣ ଦେବାକୁ ଯାଇ ସେ କହେ—

ଯଦିଓ ଲାହରୀ ବରଷୁଣ ଆହିଛେ
ତଥାପି ଲାଗିଛେ ଗରମ;
ଯଦିଓ ତୋମାଲୈ ଆଶା ନାଇକିୟା
ତଥାପି ଲାଗିଛେ ମରମ ।

ଯୁବକଟି କାହିଁକି ତା'କୁ ଏତେ ଭଲପାଏ ସେ କଥା ସେ ଥରେ ବି ଚିନ୍ତାକରେ ନାହିଁ । ଅତୀତରେ କେବେ ଥରେ ସେ ନାମ-କୀର୍ତ୍ତନ ବହିଟିଏ ପଢ଼ି, ବହିଟିକୁ ଭଲପାଇ ଅତି ଯତ୍ନରେ ନିଜ ପାଖରେ ରଖିଛି । ବଇଁଶୀଟିଏ ବଜାଇ ସେ ବଇଁଶୀକୁ ସବୁଦିନ ନିଜ ପାଖରେ ରଖିବ ବୋଲି ସ୍ଥିର କଲା କାରଣ ବଇଁଶୀ ପ୍ରତି ତା'ର ଅଧିକ ସ୍ନେହ ଆସିଲା । ବହୁଝିଅଙ୍କ ଭିତରେ ସେହି ଝିଅଟିର ମୁହଁରେ ସୁନ୍ଦର ହସଟିଏ ଦେଖି ତା'କୁ ଦିନେ ଭଲପାଇ ଆପଣାର କରିବ ବୋଲି ଭାବିଥିଲା ।

"ପଢ଼ି ଭାଲ ପାଲୋଁ ନାମରେ ବହିଟି
ବଜାଇ ଭାଲ ପାଲୋଁ ବାଁହୀ;
ଶୋଆଲୀର ଭିତରତ ତୋମାକ ଭାଲ ପାଲୋଁ
ମୁଖତ ମିଚିକିୟା ହାଁହି ।

**ଦର୍ଶନ—** ବିହୁଗୀତ ଗୁଡ଼ିକରେ ସମୟ ସମୟରେ ଲୋକମାନେ ଭାବପ୍ରବଣ ହୋଇ ଉଚ୍ଚଦାର୍ଶନିକ ମନୋଭାବର ପରିଚୟ ଦେଇଥାନ୍ତି । ଦେହର ଅନିତ୍ୟତା ବିଷୟରେ ବିହୁଗୀତରେ

ବରଷୁଣ-ବର୍ଷା, ମରମ-ସ୍ନେହ, ଶୋଆଲୀ-ଝିଅ, ବାଁହୀ-ବଇଁଶୀ ।

ଆଲୋଚନା କରାଯାଇଛି । ମଣିଷ ଏ ମର ସଂସାର ତ୍ୟାଗ କରିବା ସଂଗେ ସଂଗେ ଆରପୁରରେ ଅର୍ଥାତ୍ ଦେବଲୋକରେ ଯାଇ ଭଗବାନଙ୍କର ପାଦପଦ୍ମରେ ମିଶିବ, ଯେଉଁଠି ତା'ର ସମସ୍ତ ଦୁଃଖର ଅନ୍ତ ପଡିବ ।

''ଇପୁରୀ ଯେ ଏରି ଯୈ ପାମ୍ଲେ ଗୈ ସିପୁରୀ
ଦୁଖରୋ ପରିବ ଓର ।''

ସଂସାରକୁ ମଣିଷ ଆସିଲାବେଳେ ସାଙ୍ଗରେ କିଛି ଆଣି ଆସି ନଥାଏ, ଠିକ୍ ସେହିଭଳି ଗଲାବେଳକୁ ମଧ୍ୟ ସାଙ୍ଗରେ କିଛି ନେଇ ନଥାଏ । ଯେଉଁ ଦୁଇଦିନ ପାଇଁ ଏ ମର ସଂସାରକୁ ଆସିଛି, ସେ ଆନନ୍ଦରେ ହସି ଖେଳି, ନିଜର କର୍ମ କରି ସଂସାରରୁ ବିଦାୟ ନେବା ଉଚିତ । କେବଳ ଦୁଃଶ୍ଚିନ୍ତା, ଅନୁତାପ ଭିତରେ ରହି ମୂଲ୍ୟବାନ ସମୟକୁ ନଷ୍ଟ କରିବା ଉଚିତ ନୁହେଁ । ''ଆସିଛୁ ଏକା, ଯିବୁ ଏକା, ସଙ୍ଗେ ନ ଯିବେ କେହି ସଖା'' ବାଣୀ ଭଳି ଅସମୀୟା ସମାଜରେ ଏହିଭଳି ଶୁଣାଯାଇଥାଏ ।

''ଆହିଛା ଅକଲେ ଯାବା ଗୈ ଅକଲେ
ପାର ହୈ ଜୀବନର ସାଁକୋ;
ଦୁଦିନିୟା ସଂସାରତ ଧେମାଲି କରିବା
ଜଗତ ଲୈ ନୋଯୋଆ କାକୋ ।''

**ବିହୁଗୀତରେ ଦେବଦେବୀର ବନ୍ଦନା**— ବରଷକେ ଥରେ ଆସୁଥିବା 'ବହାଗ ବିହୁ' ଅସମୀୟାର ଜାତୀୟ ଜୀବନର ଆଶା-ଆକାଙ୍କ୍ଷା, ଆନନ୍ଦ-ଉତ୍ସାହ ତଥା ଆବେଗ ଅନୁଭୂତିର ଉତ୍ସବ । ଏହିଦିନ ନିଜର ଦୁଃଖକୁ ଭୁଲି ପ୍ରତ୍ୟେକ ଲୋକ ବିହୁ ଉତ୍ସବର ଆନନ୍ଦକୁ ଉପଭୋଗ କରିଥାନ୍ତି । ବିହୁଗୀତ ଗୁଡିକ ଲୋକଜୀବନ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ପ୍ରତ୍ୟେକ ଲୋକର ଜୀବନର କାହାଣୀ ଓ ଅଭିଜ୍ଞତା ବିହୁଗୀତ ମାଧ୍ୟମରେ ଯେପରି ପ୍ରତିଫଳିତ ହୋଇଛି, ସେହିପରି ଗୋଟିଏ ଗୋଟିଏ ଅଞ୍ଚଳର ମଣିଷର ସାମୂହିକ ଜୀବନର ଧର୍ମଧାରା, ଚିନ୍ତା ତଥା ଅନୁଭୂତିରେ କିଛିଟା ସ୍ୱାତନ୍ତ୍ୟ ପରିଲକ୍ଷିତ ହୋଇଛି । ପ୍ରତ୍ୟେକ ଦେଶର ଲୋକସମାଜରେ ଯେକୌଣସି ଶୁଭକର୍ମ ଆରମ୍ଭ କରିବା ପୂର୍ବରୁ ବିଭିନ୍ନ ଦେବଦେବୀ, ଗୁରୁଜନଙ୍କ ପ୍ରତି ପ୍ରଣାମ ଜଣାଯାଇଥାଏ । ତା'ପରେ ନିଜର ପର୍ବ ଆନୁଷ୍ଠାନିକ ଭାବେ ପାଳନ କରାଯାଇଥାଏ, ସେହିଭଳି ଭାବେ ବିହୁଗୀତ ପରିବେଶଣ ସମୟରେ ପ୍ରଥମେ ବିଭିନ୍ନ ଦେବାଦେବୀଙ୍କୁ ପ୍ରଣାମ ଜଣାଇ ତା'ପରେ ଗାଁର ବୟୋଜ୍ୟେଷ୍ଠ ଲୋକଙ୍କୁ ପ୍ରଣାମ କରି ହୁଁଚରି ପରିବେଶଣ କରାଯାଇଥାଏ ।

ପ୍ରଥମେ ପ୍ରଣାମୋ ଆଇ ସରସ୍ୱତୀ
ଦ୍ୱିତୀୟେ ପ୍ରଣାମୋ ହରି;
ତୃତୀୟେ ପ୍ରଣାମୋ ଗାଁଓର ବୁଢ଼ା ମେଥା
ଧରି ଯାଉଁ ନାମରେ ଗୁରି ।

ଏନ୍ଧାର-ଅନ୍ଧାର, ସାକିଦୀପ, ଓର-ଶେଷ, ଆଇ - ମା ।

ଏହାପରେ ସେମାନେ ହରିନାମ ନେଇ ବିହୁଗୀତ ବା ବିହୁ ହୁଁଚରି ଗାଇବା ପାଇଁ ଆରମ୍ଭ କରିଥାନ୍ତି । ବିହୁରେ 'ହୁଁଚରି' ପରିବେଷଣ ଏକ ଧର୍ମୀୟ ଭାବାପନ୍ନ ଅନୁଷ୍ଠାନ । ତେଣୁ ଏଥିରେ ପ୍ରେମର ନଗ୍ନତା ପ୍ରକାଶ ପାଇ ନଥାଏ ବା ଯୌବନର ଉଦ୍ଦାମତା ଖୋଲାଖୋଲି ଭାବେ ପ୍ରକାଶ ପାଇ ନଥାଏ । ସେଥିପାଇଁ ବିଭିନ୍ନ ଦେବାଦେବୀଙ୍କ ନାମ ବନ୍ଦନା ପ୍ରସଙ୍ଗରେ ବ୍ରହ୍ମା, ବିଷ୍ଣୁ ଆଦି ଦେବତାଙ୍କର ନାମକୁ ମଧ୍ୟ ସ୍ମରଣ କରାଯାଇଥାଏ ।

ବ୍ରହ୍ମାଇ ସରଜା ନାମରେ କଠୀୟା
ବିଷ୍ଣୁୟେ ସରଜା ନାମ;
ବେୟା ନାମ ଓଲାଲେ ସର୍ବଦୋଷ ଖେମିବା
ବିହୁରେ ଗୀତକେ ଗାମ ।

ବ୍ରହ୍ମା ମୂଳସ୍ରଷ୍ଟା ଭାବେ ଏବଂ ବିଷ୍ଣୁ ପାଳନକର୍ତ୍ତା ଭାବେ ସୃଷ୍ଟିର ଦାୟିତ୍ୱ ବହନକାରୀ ଅଟନ୍ତି । ତେଣୁ ତାଙ୍କର ନାମ-ଗୁଣ କୀର୍ତ୍ତନ ପରେ ବିହୁ ଗୀତ ଗାଇଲାବେଳେ ଯଦି କିଛିଟା ଖରାପ କଥା ମୁହଁକୁ ଆସିଥାଏ, ତାହେଲେ ସମସ୍ତ ଦୋଷ ଭଗବାନ କ୍ଷମା କରିବେ ବୋଲି ସେମାନେ ଗୁହାରି ଜଣାଇଥାନ୍ତି । ଏହା ସହିତ ସେମାନେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀଙ୍କ ପ୍ରତି ଫାଳବିରି ପ୍ରସାଦ ଅର୍ପଣ କରି କୁହନ୍ତି- ହେ ମା- ତମେ ଆମକୁ ପଦକୁ ପଦ ଗୀତ ସ୍ମରଣ କରାଇଦେବ, ଆମେ ତୁମକୁ ବିରି ପ୍ରସାଦ ଅର୍ପଣ କରୁଛୁ ।

ଆଈ ସରସ୍ୱତୀ ଦେବୀ ପାରେବତୀ
ତୋମାଲୈ ବଢ଼ାଇ ଯାଓଁ ମାହ;
ପାହରା ଗୀତକେ ସୋଁଅରାଇ ଦି ଯାବା
ଗୀତର ଭାଙ୍ଗିଯାବା ଆଁହ ।

ଆସାମରେ କଞ୍ଚାବୁଟ, କଞ୍ଚାବିରି, ନଡିଆ, ଆଖୁ, କଞ୍ଚାମୁଗ, କଦଳୀ ତଥା ଅନ୍ୟାନ୍ୟ ଫଳମୂଳ ଆଦି ଠାକୁରଙ୍କ ପାଖରେ ପ୍ରସାଦ ରୂପେ ଅର୍ପଣ କରାଯାଇଥାଏ । ଲୋକକବି ତା'ର ରଚନାରେ ଅସମୀୟା ଯୁବକର ଭକ୍ତିଭାବର ପରିଚୟ ଦେଇଛନ୍ତି । ବିଭିନ୍ନ ଦେବାଦେବୀଙ୍କୁ ପ୍ରଣାମ ଜଣାଇବା ପରେ ବିହୁନାଚ ପରିବେଷଣ କରୁଥିବା ଯୁବକ ଯୁବତୀମାନେ ଗାଁର ସମସ୍ତ ଲୋକଙ୍କ ତରଫରୁ ସେମାନେ ପୁନର୍ବାର ଦେବାଦେବୀଙ୍କୁ ନିଜର ଭକ୍ତିପୂତ ପ୍ରଣାମ ଜଣାଇ କୁହନ୍ତି ଗାଁର ସମସ୍ତ ଝିଅବୋହୂ ତଥା ଗାଁର ବୟସ୍କ ତଥା ମୁଖିଆ ଲୋକମାନେ ତୁମକୁ ପ୍ରଣାମ ଜଣାଉଛନ୍ତି । ଆମେ ଯୌବନର ଉଦ୍ଦାମତାରେ ଯଦି କ'ଣ ଅବା ଖୋଲାଖୋଲି ପଦେ ଗାଇଦେବୁ, ହେ ଈଶ୍ୱର, ଆମକୁ କ୍ଷମା କରିବ । ତେଣୁ ନିଜର ଗୀତ ମଝିରେ ଅଶ୍ଳୀଳତା ଗୀତ ପରିବେଷଣ ପାଇଁ ସେମାନେ ଭଗବାନଙ୍କ ନିକଟରେ କ୍ଷମା ମାଗି ଥାଆନ୍ତି ।

---

ନାମରେ ଗୁଚି-ହରିନାମ୍ର ମୂଳକଥା, କଠୀୟା-ମୂଳ, ବେୟା -ଖରାପ ।

ଆରୁ ଯେ ପ୍ରଣାମେ ଜୀୟାରୀ ବୋଆରୀ
ପ୍ରଣାମେ ଗାଁଓରେ ବୁଢା;
ନାମର ଅପରାଧ କ୍ଷମିବା ଈଶ୍ୱର ଐ
ଗାଇ ଯାଉଁ ପୁରଣି ଧୁରା ।

ଏହିଭଳି ଭାବେ ବିହୁଗୀତ ଗୁଡିକରେ ତଥା ବିହୁ ହୁଁଚରି ପରିବେଶଣ ବେଳେ ବିହୁଆ-ବିହୁବତୀମାନେ ତଥା ହୁଁଚରି ଗାୟକମାନେ ଦେବଦେବୀଙ୍କର ବନ୍ଦନା କରି ବିହୁ ପରିବେଶଣ କରିଥାନ୍ତି ।

**ବିହୁ ଗୀତରେ ପ୍ରେମିକ ପ୍ରେମିକା**— ବିହୁ ଗୀତରେ ନାରୀର ଅପରୂପ ଉପମା, ଶତ ସୌନ୍ଦର୍ଯ୍ୟ ଝଲସି ଉଠେ । ଗୀତର ଅନ୍ତରାଳରେ ହଜାର ହଜାର ଉପଦେଶ ଲୁଚି ରହିଥାଏ । ଦୀପଶିଖା ନିଜେ ଜଳି ଅନ୍ୟକୁ ଆଲୋକ ପ୍ରଦାନ କଲାଭଳି ବିହୁ ଗୀତର ଆଲୋକରେ ଅସମୀୟାର ମନୋଜଗତର ସହିତ ରୀତିନୀତି, ଭୟ ବିଶ୍ୱାସ, ଧର୍ମ କର୍ମ ତଥା ଖାଦ୍ୟପେୟ, ବେଶ ପୋଷାକରେ ଜାତୀୟ ଜଗତର ଚିତ୍ର ଫୁଟି ଉଠିଛି । ବିଭିନ୍ନ ଉପମାରେ ଯେପରି 'କଲିଜାର ଜୋନ' ଆଦି ଉପମା ପ୍ରିୟତମକୁ ଦିଆଗଲାବେଳେ ବୈଷ୍ଣବ ସାହିତ୍ୟର ପ୍ରଭାବରେ 'ଯମ ସମ ପରାକ୍ରମ୍ୟ' 'ବାୟୁବେଗୀ ରଥ' 'ଯେନ ବିଦ୍ୟାଧରୀ' ଆଦି ଗାଉଁଲିଆ ଲୋକକବିର ସରଳ ପ୍ରାଣର ଅନୁପମ ଉପମାର ତୁଳନା ନାହିଁ ।

''ହାତଲୈ କି ଚାବା ହାତୀର ଶୁଁରେ ଯେନ
ଭରିନୋ କି ଚାବା ଗୋଟ;
ମୁଖଲୈ କି ଚାବା ଦୋଲା ଦାପୋନ ଯେନ
କଁକାଲଟି ବୀନରେ ଗୋଟ ।

ହାତ ଦୁଇଟି ହାତୀର ଶୁଣ୍ଢ ଭଳି ସୁନ୍ଦର, ପାଦ ଦୁଇଟି ଗୋଟିଏ ଛାଞ୍ଚରେ ଗଢା । ମୁହଁଟି ସତେ ଅବା ଦୋଳାୟିତ ଦର୍ପଣ, ଅଣ୍ଟାଟି ଗୋଟିଏ ବୀଣା ସଦୃଶ ।

ବିହୁତଳିରେ ଢୋଲର ଶବ୍ଦ ଶୁଣି ନାରୀମାନଙ୍କର ମନ ଭିତରେ ଉତ୍ତାଳ ଭାବ ଆସିଥାଏ । ସେମାନଙ୍କ ମନ ଶିମୂଳି ତୁଳାଭଳି ବହୁଦୂର ଗଗନକୁ ଉଡିଯାଏ । ତାଙ୍କୁ ଲକ୍ଷ୍ୟକରି ଲୋକକବି କଳ୍ପନାର ଜଗତରୁ ନାରୀର ମନକୁ ତୁଳା ସହିତ ତୁଳନା କରି ନିଜର ଆଳଙ୍କାରିକ ଗୁଣର ପରିଚୟ ଦେଇଛନ୍ତି ।

''କମୋଆ ତୁଲାବୋର 'ଯେନେକୈ ଉରିଛେ
ତେନେକୈ ଉରିବର ମନ ।''

ବିହୁ ଢୋଲର ଆକର୍ଷଣରେ ଆକର୍ଷିତ ହୋଇଥିବା ନାରୀ ମନଟି ଘରର କୌଣସି କାମରେ ଲାଗେ ନାହିଁ । ମନକୁ ଆୟତ୍ତ କରି ନପାରି ବିହୁତଳିରେ ଢୋଲର ତାଳେ ତାଳେ

ଜୀୟାରୀ-ଝିଅ, ବୋଆରୀ-ବୋହୂ, ଗୋଟ-ଗୋଟିଏ ଛାଞ୍ଚରେ ଗଢା ।

ପାଦ ମିଳେଇ ଯୁବତୀମାନେ ନାଚିଥାନ୍ତି । ଢୋଲର ଡାକରେ ଏଭଳି ମାଦକତା ରହିଛି ଯେ ସେମାନେ ହାତରେ ଚଳୁପାଣି ରଖିପାରିବେ କିନ୍ତୁ ମନକୁ ଆୟତ୍ତ କରି ବିହୁତଳିଠୁ ଦୂରରେ ରଖିପାରିବେନି ବୋଲି କହିଥାନ୍ତି ।

"ରାଖିବ-ପାରୋ ମଇ ହାତର ପାନୀ ଚଳୁ
ରାଖିବ ନୋଆରୋ ମନ ।"

ଏଥିରୁ ଆନନ୍ଦରେ ଉତୁଥିବା ନାରୀ ମନର ନିଖୁଣ ପ୍ରତିଛବି ବିହୁଗୀତରେ ଝଲସି ଉଠିଛି । ନାରୀଟି ପୁରୁଷ ପ୍ରତି ଥିବା ଆନ୍ତରିକତା, ବିହୁ ପ୍ରତି ଥିବା ସ୍ନେହ ଓ ଢୋଲର ଶବ୍ଦରେ ସେ କିପରି ବିଭୋର ହୋଇ ବିହୁତଳିକୁ ଧାଇଁ ଧାଇଁ ଆସିଛି, ଏ କଥା କହିଲେ ବି ଯୁବକଟି ନାରୀଟିକୁ ନିଜ କଥାରେ ଆୟତ୍ତ କରିବା ବହୁତ କଷ୍ଟ ବୋଲି ବିହୁଗୀତରେ କହିଥାଏ । ଏହି ଗୀତ ଗୁଡିକରେ ଯୁବକ ଯୁବତୀମାନଙ୍କର ପରସ୍ପର ପ୍ରତି ଥିବା ଆକର୍ଷଣ ଓ ଆନ୍ତରିକତା ସ୍ପଷ୍ଟ ହୋଇଉଠିଛି । ଯୁବତୀଟି ପାଇଁ ଗୋଟିଏ ପର୍ବତକୁ ଚଢ଼ି ଏବଂ ସଂଗେ ସଂଗେ ଓହ୍ଲେଇ ଆଉ ଗୋଟିଏ ପର୍ବତକୁ ଚଢ଼ିବା କମ୍ କଷ୍ଟଦାୟକ ହୋଇପାରେ ମାତ୍ର ଲତାଗୁଡିକ ଉପରେ ଚଢ଼ିବା ଯେପରି କଷ୍ଟକର, ସେପରି ଜଙ୍ଗଲର ଯୋଡିହାତୀଙ୍କୁ ସେ ଆୟତ୍ତ କରିପାରିବ କିନ୍ତୁ ତା'ର ପ୍ରିୟାର ମନକୁ ଆୟତ୍ତ କରିବା କଷ୍ଟ ।

"ପର୍ବତେ ପର୍ବତେ ବଗାବ ପାରୋ ମଇ
ଲତା ବଗାବଲୈ ଟାନ;
ଯୁରୀୟା ହାତୀକ ବଲାବ ପାରୋ ମଇ
ତୋମାକ ବଲାବ ଲୈ ଟାନ ।"

ବିହୁଗୀତ ଗୁଡିକ ମଧ୍ୟରେ ଲୁଚି ରହିଥିବା ଘରୁଆ ଚିତ୍ର ଗୁଡିକର ସହଜ-ସୌନ୍ଦର୍ଯ୍ୟ ଆଡକୁ ଦୃଷ୍ଟି ଦେଲେ ଆଖି ଲାଖି ରହିଯାଏ । ଯେଉଁଠି ପ୍ରାଣ ଭିତରେ ପ୍ରିୟତମର ଛବି ଦେଖାଦେଇ ଲୁଚିଯାଏ, ସେଠାରେ କୁହାଯାଇଥାଏ—

ଶାଲେ ଭୁମୁକିୟାୟ
ଶଲେ ଭୁମୁକିୟାୟ
ଚେଙ୍ଗାଇ ଭୁମୁକିୟାୟ ଖାଲତ
ତୁମି ଭୁମୁକୁଆ ବୁକୁର ଭିତରତ

ଅର୍ଥାତ୍ ଶାଳ ମାଛ, ଶେଉଳ ମାଛ ଏବଂ ଚେଙ୍ଗ ମାଛ ଆଦି ଖାଲରେ ଟିକିଏ ସମୟ ପାଇଁ ମୁହଁ ଦେଖାଇ ଲୁଚି ଯାଆନ୍ତି । ସେହିପରି ତୁମର ଛବି ବାରମ୍ବାର ଆଖି ଆଗରେ ଦେଖା ଦେଇ ଅନ୍ତର ଭିତରେ ଲୁଚିଯାଏ । ପ୍ରେମିକା ଦୁଃଖ ଓ ଅଭିମାନରେ କହେ ମୁଁ ତୁମକୁ ଦେଖାପାଉନି କି ତୁମର ଆଶ୍ରୟ ପାଉନି । ଶିମିଳି ତୁଳା ଭଳି ତମେ ଦୂରରୁ ଦୂରକୁ ଚାଲିଯାଉଛ ।

---

ଶାଲ-ଶେଉଳମାଛ, ଭୁମୁକିୟାୟ-ହାବୁକାମାରେ

''ଯ'ତ ତୋମାର ଆଶ୍ରୟ ଏକୋ ନା ପାଓଁ ଅତଦିନେ
ଯେନେକୋଆ ଶିମଲୂ ତୁଲା ।''

ପ୍ରେମିକା ସବୁବେଳେ ପ୍ରେମିକ ଆଗରେ ବିଭିନ୍ନ ଉଦାହରଣ ଦେଇ ମନର ଭାବକୁ ବ୍ୟକ୍ତ କରିଥାଏ । ସେ ମନର ମଣିଷର ଆବଶ୍ୟକତାକୁ ଉପଲବ୍‌ଧି କରିଛି । ତା' ବିନା ଜୀବନର ସମସ୍ତ କାର୍ଯ୍ୟ ଅସଂପୂର୍ଣ୍ଣ, ସେ ତା'କୁ ଏହିଭଳି ଭାବେ ତୁଳନା କରି କହିଛି–

''ଚାଉଳ ଚାଲିବରେ ସେରେଙ୍ଗା ଚାଲନୀ
ଧାନେ ଝାରିବରେ କୁଲା ।''

ଅର୍ଥାତ୍ ଚାଉଳ ଚାଲିବା ପାଇଁ ଯେପରି ଲମ୍ବା ତଥା ଓସାରିଆ ଚାଲୁଣି ଦରକାର, ଧାନ ଝାଡିବା ପାଇଁ କୁଲା ଦରକାର, ସେହିଭଳି ଭାବେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପୁରୁଷ ପ୍ରେମିକାର ଆବଶ୍ୟକତା ବହୁତ ବେଶି । ତା ଜୀବନରେ ତା'ର ପ୍ରିୟ ପୁରୁଷକୁ ସେ ଅନେକବାର ଅପେକ୍ଷା କରି ରହିଛି । ରୋଷେଇ ଘର ଭିତରେ ଚୁଲିଉପରେ ଭାତ ହାଣ୍ଡି ବସେଇ ଘର ଝାଲିର ବାଡପଟେ ସେ ଅନେକବାର ଝୁଙ୍କି ବାହାରକୁ ଅନେଇଛି, ହାଣ୍ଡିର ଭାତ ଶୁଖିଶୁଖି ଚାଉଳ ହୋଇଛି, ତଥାପି ତା'ର ପ୍ରିୟ ପୁରୁଷକୁ ସେ ଦେଖାପାଇନି । ଅସମୀୟା ବିହୁଗୀତରେ ମୁଖ୍ୟତଃ ଲୋକଭାଷାର ଭାବ ମଧ ଅତ୍ୟନ୍ତ ସରଳ । ପ୍ରେମିକକୁ 'ସେନାଇ' ବୋଲିକହୁଥିବା ଶବ୍ଦର ଅସଂଖ୍ୟ ଆଭିଧାନିକ ଅର୍ଥ ରହିଛି । ପ୍ରେମିକକୁ ଦେଖି ପ୍ରେମିକା ବହୁ ପ୍ରକାର ଶବ୍ଦରେ ସମ୍ବୋଧନ କରି ଗାଏ-

''ତଇ ଯେ କଲୀୟା, ଅଲିୟା ବଲିୟା
ମୋକେ କରି ଗଲି ବାଉଲ;
ଝାଲି କଟା ବେରେଦି ଜୁମି ପଠିୟାଲି
ହୋଆ ଭାତକ କରିଲି ଚାଉଲ ।

-ତୁ କୃଷ୍ଣ କହ୍ନାଇ, ତୁ ହାଉଳା ବାଉଳା ଲୋକଟିଏ, ମୋତେ ତୋ ସହିତ ବାଉଳା କରିଗଲୁ ।

ଅନୁଭୂତି ଏବଂ କଳ୍ପନାର ତୀବ୍ରତା ସହିତ ସରଳ ପ୍ରାଣରୁ ପ୍ରଣୟର ଗଭୀରତା, ଏବଂ ଏକାଗ୍ରତାର ଚରମ ରୂପ ଗୀତଗୁଡିକରେ ପ୍ରତିଫଳିତ ହୁଏ । ସେଥିପାଇଁ ସେ କହିଛି ହେ ପ୍ରିୟତମା, ମୁଁ ତୋ କଥା ଚିନ୍ତା ନ କରି ରହି ପାରିବିନି ବରଂ ନଖାଇ ନପିଇ ମରିଯିବି ।

''ତୋମାର ଐ ଭାବନା ଏରିବ ନୋଆରୋ
ନେ ଖାୟୋ ମରିବ ପାରୋ''

ବିହୁଗୀତଗୁଡିକରେ ପ୍ରେମିକ ଓ ପ୍ରେମିକାର ସ୍ଥାନ ସ୍ୱତନ୍ତ୍ର । ବିହୁ ଗୀତ ମୁଖ୍ୟତଃ ପ୍ରେମ, ପ୍ରୀତି ଓ ଯୌବନର ଜୟଗାନ କରିଥିବାରୁ ଏହା ମାଧ୍ୟମରେ ଯୁବକ ଯୁବତୀମାନଙ୍କର ପ୍ରଣୟ, ମିଳନ ଓ ବିରହର ଚିତ୍ର ଜୀବନ୍ତ ଭାବେ ଫୁଟି ଉଠିଛି ।

ଜୁମି-ଉଙ୍କି, ହୋଆ-ହୋଇଥିବା ।

ବିହୁଗୀତରେ ପରୁଆ ଓ ଟୋଲୋଠା - ଆସାମରେ ଯୁବକମାନେ ନିଜର ପ୍ରିୟାଠାରୁ ବିହୁରେ ହାତବୁଣା ଗାମୁଛା ଏବଂ ହାଁଚତି ଉପହାର ସ୍ୱରୂପ ପାଇଥାଆନ୍ତି । ପ୍ରିୟାମାନେ ଅତି ଯତ୍ନରେ ବିହୁର ବହୁଦିନ ଆଗରୁ ନିଜର ମନର ମଣିଷଟିଏ ପାଇଁ ଗାମୁଛା ଓ ହାଁଚତି ବୁଣା କାମ ଆରମ୍ଭ କରନ୍ତି । ଏହି ଉପହାର ଭିତରେ ଅନ୍ତରର ସମସ୍ତ ପ୍ରେମ ଓ ସ୍ନେହ ଜଡ଼ିତ ରହିଥାଏ । ତେଣୁ ଅସମୀୟା ନାରୀ ପାଇଁ ତନ୍ତଶାଳ ସବୁଠୁ ପ୍ରିୟ ଜିନିଷ । ତନ୍ତଶାଳର ସମସ୍ତ ସରଞ୍ଜାମ ସେମାନେ ବିହୁର ବହୁଦିନ ଆଗରୁ ଯୋଗାଡ଼ କରି ଗାମୁଛା ପାଇଁ ସୂତା ଲଗାଇଥାଆନ୍ତି । ନିଜର ପ୍ରିୟତମକୁ ଟୋଲୋଠା ପାଇଁ ଅନୁରୋଧ କରନ୍ତି । ଯୁବକମାନେ ଜଙ୍ଗଲର ହିଂସ୍ର ପଶୁମାନଙ୍କୁ ଭୟ ନ କରି ପ୍ରିୟାପାଇଁ ଜଙ୍ଗଲକୁ ଯାଇ କାଠ କାଟି ତନ୍ତଶାଳ ପାଇଁ ଟୋଲୋଠା ତିଆରି କରିଦିଅନ୍ତି । ଏହି ଟୋଲୋଠା ଭିତରେ ଯୁବକଟିର ଅନ୍ତରର ପ୍ରୀତି ଜଡ଼ିତ ହୋଇଥାଏ । ତେଣୁ ବିହୁଗୀତରେ 'ଟୋଲୋଠା' ଏକ ମହତ୍ତ୍ୱ ପୂର୍ଣ୍ଣ ସ୍ଥାନ ନେଇଛି । ଯୁବକଟି କାଠ ପାଇଁ ଆଗଭର ହୋଇ ଜଙ୍ଗଲକୁ ଯାଇଛି । ଏହା ମାଧ୍ୟମରେ ଅସମୀୟା ଯୁବ ମନର ଉତ୍କଣ୍ଠା ତଥା କର୍ତ୍ତବ୍ୟ ପରାୟଣର ପରିଚୟ ଦେଇଛି । ତନ୍ତଶାଳର ସୂତା ଗୁଡ଼ାଇବା ପାଇଁ ବ୍ୟବହୃତ ମୁଖ୍ୟ କାଠଗଡ଼କୁ 'ଟୋଲୋଠା' କୁହାଯାଇଥାଏ । ଯୁବକଟି 'ହାଁଚଟି' ଖଣ୍ଡେ ବୁଣିଦେବା ପାଇଁ ତା'ର ପ୍ରିୟାକୁ କହିଥିଲା ମାତ୍ର ଟୋଲୋଠା ନ ଥିବାରୁ ଯୁବତୀଟି ଦୁଃଖ କରି କହୁଛି ତୁମ ମା ବାପା ତୁମକୁ କେତେ ଯତ୍ନରେ ବଢ଼ାଇଥିଲେ, ତମେ ଆଜି ହାଁଚଟି ଖଣ୍ଡେ ପାଇଁ ମୋତେ କହିଲ କିନ୍ତୁ ମୁଁ 'ଟୋଲୋଠା' ଅଭାବରୁ ହାଁଚଟିଟି ବୁଣିଦେଇ ପାରିଲିନି ।

ହାଇ ଦି ତୁଲିବର ଲାଇ ମୋର ସେନାଇ ଐ
　　　　ହାଇ ଦି ତୁଲିବର ଲାଇ ;
ତୁମି ଯେ ଖୁଜିଲା ଏ ଖନି ହାଁଚଟି
　　　　ବବଲୈ 'ଟୋଲୋଠା ନାଇ ।

ପରୁଆ କହିଲେ ସାଧାରଣ ଅର୍ଥରେ ଆସାମରେ ଜହ୍ନାକୁ ବୁଝାଇନ୍ତେ ହେଁ ପ୍ରେମିକଟି ତା'ର ପ୍ରିୟାକୁ 'ପରୁଆ' ବୋଲି ସମ୍ବୋଧନ କରିନିଜର ଭଲମନ୍ଦର କଥା ତଥା ଜୀବନ କାହାଣୀ ଶୁଣାଇଛି । ମାନ-ଅଭିମାନ ଭିତରେ ଜୀବନର ଅନୁଭୂତି ଏବଂ ଭଲ ପାଇବା ପ୍ରକାଶ ପାଇଛି । ଯୁବକଟି 'ଟୋଲୋଠା' ପାଇଁ ଜଙ୍ଗଲକୁ ଯିବା ପାଇଁ ସଜ ହୋଇଛି ।

ସେ ଜଙ୍ଗଲକୁ କେତେଦିନ ପାଇଁଯିବ ନିଜେବି ଜାଣିନି । ଘଞ୍ଚ ଜଙ୍ଗଲ ଭିତରେ ଦିନରାତି କାଠ ଖୋଜିବ, ସେଠାରେ ବହୁଦିନ ହୁଏତ ରହିବାକୁ ପଡ଼ିପାରେ । ସେଥିପାଇଁ ଚାଉଳ ସେରକ ବାନ୍ଧିଦେବା ପାଇଁ କହିଛି । ଯେତେବେଳେ କିଲୋଗ୍ରାମ୍ ବଦଳରେ ମାଣ, ସେର, ପୋଆ ଆଦିର ପ୍ରଚଳନ ଥିଲା, ଲୋକକବି ଏହି ଗୀତ ମାଧ୍ୟମରେ ସେତିକିବେଳେ

ହାଇଦି-ଯତ୍ନରେ, ତୁଲିବା-ପାଳନ କରିବା, ଲାଇ-ବିଶେଷ ଯତ୍ନ ।

ତା'ର ପ୍ରଚଳନ କରିଛନ୍ତି । ବିହୁଗୀତର ପ୍ରାଚୀନତା ସମ୍ବନ୍ଧରେ ଏହି ଗୀତକୁ କିଛିଟା ଆଭାସ ମିଳିଥାଏ ।

ଭାତେ ରାନ୍ଧିଦିୟା ଖାଓଁ ଐ ପରୁଆ
ପାନି ଆନି ଦିୟା ଖାଓଁ;
ଚାଉଲ ମୁଠି ସେରେକ ବାନ୍ଧିଦିୟା ପରୁଆ
ଟୋଲୋଠା ବିଚାରି ଯାଓଁ ।

ଉକ୍ତ ବିହୁଗୀତରେ ଆସାମର ଲୋକବାକ୍ୟର ଏକ ସ୍ୱତନ୍ତ୍ରତା ଲକ୍ଷ୍ୟ କରାଯାଇଥାଏ । ସାଧାରଣତଃ ଅନ୍ୟାନ୍ୟ ରାଜ୍ୟରେ 'ଭାତଖାଇବି' କହିଲାବେଳେ ପାଣି ପିଇବୁ ବୋଲି କୁହାଯାଇଥାଏ ମାତ୍ର ଆସାମରେ ତା'ର ଏକ ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ଯେ କୌଣସି ଜିନିଷ ଯେପରି ଭାତ, ଡ଼ାଲି, ପାଣି, କ୍ଷୀର ସବୁ ଖାଇବୁ କୁହାଯାଇଥାଏ ।

ଯୁବକଟି ଟୋଲୋଠା ଗଛ ଖୋଜି ଖୋଜି ଜଙ୍ଗଲରେ ବହୁତ ଦିନ ଅତିବାହିତ କଲା । ବହୁ କଷ୍ଟ ପାଇଲା କିନ୍ତୁ ଆସାମର ଉପର ତଥା ନିମ୍ନ ଅଞ୍ଚଳରେ ଘୁରି ଘୁରି ଶେଷରେ ବ୍ୟର୍ଥ ହେଲା । ଆସାମରେ 'ଶାଳି' ନାମରେ ଏକ ପ୍ରକାର ଧାନ ହୁଏ ଯାହା ସଂପୂର୍ଣ୍ଣ ଭାବେ ପାଣି ଭିତରେ ବୁଡ଼ି ରହିଥାଏ । ସେ ଧାନଗଛ ବିନାପାଣିରେ ମରିଯାଏ । ଯୁବକଟି ଜଙ୍ଗଲ ଭିତରେ ଠିକ୍ ସମୟରେ ନଖାଇ ନ ପିଇ କଷ୍ଟ ପାଇଛି । ଫଳରେ ସେ କହୁଛି ଧାନ ଫସଲ ଯେତେ ଖରାପ ହେଲେ ବି ବିହନ ପାଇଁ କିଛି ଧାନ ରଖାଯାଇଥାଏ କିନ୍ତୁ ଫସଲ ଯଦି ସଂପୂର୍ଣ୍ଣ ଭାବେ ନଷ୍ଟ ହୋଇଯାଏ ତା'ହେଲେ ବିହନ ପାଇଁ ଧାନ କେମିତି ରଖିବ ? ସେ ଏଠାରେ ତା'ର ଏକ ସୁନ୍ଦର ଉଦାହରଣ ଅବତାରଣା କରି କହିଛି ।

ଶାଲିଧାନର ମରଣା ମାରିଲୋଁ ସେନାଇ ଐ
କଠୀୟାର ନ ଥିଲୋଁ ସଁଚ;
ଉଜନି ନାମନି କେଓରାଜ ମାରିଲୋଁ
ଟୋଲୋଠାର ନେ ପାଲୋଁ ଗଛ ।

ଉପରୋକ୍ତ ବିହୁଗୀତରେ ଲୋକକବି ଏକ ସୁନ୍ଦର ସାମଞ୍ଜସ୍ୟ ରଖି ଲୋକଗୀତର ରଚନା କରିଛନ୍ତି । ଧାନ ପାଚିଲା ପରେ ଆଗାମୀବର୍ଷ ବିହନ ପାଇଁ ଧାନ ନରଖି ସବୁ ଅମଳ କରି ଖର୍ଚ୍ଚ କଲା । ଯୁବକଟି ଜଙ୍ଗଲରେ ଖରାତରାରେ ବୁଲିବୁଲି ଶୁଖିଲା କିନ୍ତୁ ଟୋଲୋଠା ଗଛର ସନ୍ଧାନ ପାଇଲାନି । ନିଜ ମନର ଦୁଃଖକୁ ଯୁବକଟି ଏହି ଭଳି ଭାବେ ପ୍ରକାଶ କରିଛି । ଶାଲିଧାନ ବେଙ୍ଗଳା ପକେଇ ଧାନସବୁ ଖର୍ଚ୍ଚ କଲା କିନ୍ତୁ ଆଗାମୀ ବର୍ଷପାଇଁ କିଛି ବିହନ ରଖିଲାନି । ଏହା ମାଧ୍ୟମରେ ନିଜ ଦାରିଦ୍ର୍ୟତାର ପରିଚୟ ଦେଇଛି । ତଥାପି ଯୁବକଟି ସଂପୂର୍ଣ୍ଣଭାବେ ଭାଙ୍ଗି ପଡ଼ିନାହିଁ । ସେ ଆଶା ରଖିଛି ଯଦି ବା ଅନ୍ୟ କେଉଁଠି

---

ଟୋଲୋଠା-ତନ୍ତରେ ସୂତା ଗୁଡେଇବା ପାଇଁ ବ୍ୟବହୃତ ମୁଖ୍ୟ କାଠ, କଠୀୟା-ଚଳି, ଚୁବୁରୀୟା-ପାଖଲୋକ, ଉଜନି-Upper, ନାମନି-Lower

ଟୋଲୋଠା ଅଛି, ସେ ସେଠାକୁ ଯିବ, ତା ପ୍ରେମିକା ପାଇଁ ନିଶ୍ଚୟ 'ଟୋଲୋଠା' କାଠ ଆଣିବ, ପ୍ରେମିକା ତା' ପାଇଁ ଗାମୁଛା ତଥା ହାଁଚଟି ତିଆରି କରିଦେବ । ବହୁଦିନ ପରେ ସେ ଉଜନି ଆସାମର ଜଙ୍ଗଲଗୁଡ଼ିକ ଭିତରେ ଖୋଜିଖୋଜି ଟୋଲୋଠା କାଠର ସନ୍ଧାନ ପାଇଛି । ଏତେକଷ୍ଟ ସହିଲାପରେ ସେ ଯେଉଁ କାଠ ପାଇଛି, ସେହି ଖୁସୀ ଭିତରେ ସବୁ କଷ୍ଟ ଭୁଲିଯାଇଛି । ଷୋଳହାତ ଲମ୍ବର ସେ କାଠ ଏବଂ ଓସାରରେ ଦୁଇହାତର ସାମ୍ନଳ ପାଇବନି । ଏହାଠୁ ଅଧିକ ଆନନ୍ଦ କ'ଣ ଥାଇପାରେ । କେବଳ ଯେ ଶାଳିଧାନ କଥା ସେ କହିଛି ତା' ନୁହେଁ । ଆଁହୁଧାନ ଏବଂ ଶାଳିଧାନ ସେ ବେଙ୍ଗେଲା ପକେଇଛି । କୁଟା ଝାଡ଼ି ଗଦା ମାଡ଼ି ରଖିଛି । ଶେଷରେ ଉଜନି ଆସାମରେ ଷୋଳହାତ ଲମ୍ବ ଓ ବହୁତ ଚଉଡ଼ାର କାଠ ପାଇଛି । ଏହି ଗୀତ ମାଧ୍ୟମରେ ଆସାମର ଜଙ୍ଗଲ ସଂପଦର ଉପକାରୀତା ତଥା ଭଗବାନଙ୍କର ଅବଦାନ ସଂପର୍କରେ ସରଳ ଗାଉଁଲୀଆ ଯୁବକଟି ସୁନ୍ଦର ଭାବେ କହିଛି ।

ଟୋଲୋଠା ଗଛର ସନ୍ଧାନ ପାଇ ଖୁସୀରେ ଘରକୁ ଫେରି ଆସିଛି । ଗାଁର କେତେଗୁଡ଼ିଏ ଲୋକଙ୍କୁ ଡ଼ାକି ଆଣିବା ପାଇଁ ପରୁଆକୁ କହିଛି । ପରୁଆ ଅର୍ଥାତ୍ କଳା ପିମ୍ପୁଡ଼ି କିନ୍ତୁ ଏଠି ପ୍ରେମିକାଙ୍କୁ ସମ୍ବୋଧନ କରାଯାଇଛି ସେ ସେଥିପାଇଁ କହିଛି -

ଭାତ ରାନ୍ଧି ଦିୟା ଖାଓଁ ମଇ ପରୁଆ
ପାନି ଆନି ଦିୟା ଖାଓଁ;
ଗାଓଁର ଚୁବୁରୀୟା ଯାକ ମାତି ଆନା ପରୁଆ
ଟୋଲୋଠା କାଟିବଲୈ ଯାଓଁ ।

ପରୁଆ ଦୌଡ଼ିଦୌଡ଼ି ଯାଇ ଗାଁ ଲୋକମାନଙ୍କୁ ଡ଼ାକି ଆଣିଛି । ଗୋଟିଏ ଦୁଇଟି କରି ଚାଣିଜଣ ଲୋକଆସି ଯୁବକଟିର ଘରେ ଏକାଠି ହୋଇଛନ୍ତି । ସମସ୍ତେ ବର୍ତ୍ତମାନ ଟୋଲୋଠା କାଟିବା ପାଇଁ ଜଙ୍ଗଲକୁ ଯିବେ । ମନରେ ଏକ ଅକୁହା ଆନନ୍ଦ, ବିଜୟର ଆଶା ସୁନିଶ୍ଚିତ ହୋଇ ପଡ଼ିଛି । ଯୁବକଟି ଖୁସୀରେ କହୁଛି ଜଙ୍ଗଲରେ ତୁଳାଗୁଡ଼ିକ ଗଛରେ ଫୁଟିଲାଣି, ତୋଳିବା ସମୟ ହୋଇଛି । ଜଣେ ଦି ଜଣ କରି ଚାରିଜଣ ଲୋକ ଆସିଲେଣି । ବର୍ତ୍ତମାନ ଟୋଲୋଠା ପାଇଁ କାଠ କାଟିବାର ସୁଯୋଗ ତଥା ସମୟ ମଧ୍ୟ ଆସିଛି ।

''ହାବିତେ ଫୁଲିବର ତୁଲା ଐ ପରୁଆ
ହାବିତେ ଫୁଲିବର ତୁଲା;
ଏଟି ଦୁଟି କରି ଆହିଲା ଐ ଚାରିଟି
ଟୋଲୋଠା କାଟିବର ବେଲା''

ଆସାମର ଲୋକବିଶ୍ୱାସରେ ଗଛରେ ସ୍ୱୟଂ ଭଗବାନ ବିଶ୍ରାମ କରି ଥାଆନ୍ତି । ଅନ୍ୟାନ୍ୟ ଦେଶଭଳି ଆସାମରେ ବହୁ ପ୍ରାଚୀନ କାଳରୁ ବୃକ୍ଷ ପୂଜାର ପରମ୍ପରା ମଧ୍ୟ

---

ହାବି-ଜଙ୍ଗଲ, ଆହିଲ-ଆସିଲେ ।

ପ୍ରଚଳିତ ହୋଇ ଆସୁଛି । ତେଣୁ କେହି ଗଛ କାଟିବା ପୂର୍ବରୁ ଭଗବାନ ଶଙ୍କରଙ୍କୁ ପୂଜା କରିବା ସଂଗେ ସଂଗେ କଟା ଯାଉଥିବା ବୃକ୍ଷକୁ ମଧ ପୂଜା କରିଥାଏ । ଯୁବକଟି ଛେଳି କିଣି ଆଣି ଶିବଙ୍କ ପାଖରେ କାଟି ବଳି ଚଢ଼ାଇବ ବୋଲି ଠକ୍ କରିଛି । ଗୁରୁଜନମାନଙ୍କୁ ମୁଣ୍ଡ ତଳେ ଲଗେଇ ପ୍ରମାଣ କରି ଗଛରେ ଚୋଟ ଦେବ ବୋଲି ସ୍ଥିର କରିଛି । ଶେଷରେ ଠାକୁରଙ୍କ ପାଖରେ ବଳି ଦେଇ ଟୋଲୋଠା ପାଇଁ ବୃକ୍ଷକୁ ପୂଜା କରି କୁରାଢ଼ୀରେ ପ୍ରଥମେ ଛୋଟ ଦେଇଛି ।

ଛାଗ କିନି ଆନି ଦି ଯାଓଁ ବଳି କାଟି
ଚରୋଓଁ ମହେଶ୍ୱରକ ଭୋଗ
ନାମ ଗୁରୁ ଭକତକ ଶିରତ ତୁଳିଲୈ
ଗଛତ ମାରିଲୋଁ କୋବ

ଶେଷରେ ଗଛଟା କଟା ସରିଛି । ଯୁବକଟି ଗଛକଟା ସମୟର ଦୁର୍ଦ୍ଦଶା କଥା ବର୍ଣ୍ଣନା କରିଛି । ଟୋଲୋଠା ଗଛ କାଟିବା ବେଳେ କୁରାଢ଼ୀଟି ଛଅଥର ଛଅଖଣ୍ଡ ହୋଇ ଭାଙ୍ଗିଛି । ଟୋଲୋଠା ପାଇଁ ଗଛ କାଟିବା କିଛି ସହଜ କଥା ନୁହେଁ । ତଥାପି ପରୁଆ ଯେ ହସ୍ତଶିଳ୍ପରେ ଧୁରନ୍ଧରା, ଲୁଗା ବୁଣାରେ ସିଦ୍ଧହସ୍ତା, ତାପାଇଁ ଯେତେ-କଷ୍ଟ ହେଲେ ବି ଟୋଲୋଠା ପାଇଁ ଗଛ କାଟି ଟୋଲୋଠା କାଠ ଆଣିବାକୁ ହେବ । ଏହି ପ୍ରସଙ୍ଗରେ ଯୁବକଟି ନାଓ ବା ଡ଼ଙ୍ଗାରେ ଆହୁଲା ମାରି ମାରି ନଦୀର ଉପର ଅଞ୍ଚଳକୁ ବା ପାଣିର ପ୍ରତିକୂଳ ଦିଗରେ ଯିବା ଯେପରି କଷ୍ଟକର, ତା'ଠୁ ବହୁତ ବେଶି କଷ୍ଟ କରି ଟୋଲୋଠା ଗଛ କାଟି ଆଣିଛି ବୋଲି କହିଛି -

ନାଓଖନ ବାବରେ ଉଠାର ଐ ପରୁଆ
ନାଓଖନ ବାବରେ ଉଠାର;
ପରୁଆ ଶିପିନୀର ଟୋଲୋଠା କାଟୋଁତେ
ଛଅଁରା ଭାଗିଲେ କୁଠାର ।

ବିହୁଗୀତରେ ଲୋକସମାଜକୁ ଆନନ୍ଦ ପ୍ରଦାନ କରିବା, ଲୋକ କବିର ଅନ୍ୟଏକ ଆଭିମୁଖ୍ୟ । ଯୁବକଟି ଗଛକଟା ଦୃଶ୍ୟବର୍ଣ୍ଣନା କରିବା ସଂଗେ ସଂଗେ ଏକ ଆନନ୍ଦ ମୁଖର ପରିବେଶ ସୃଷ୍ଟି କରିଛି। ଟୋଲୋଠା ଗଛ କାଟିବା ଏକ କଷ୍ଟ-ସାଧ କାମ । ସେଥିପାଇଁ ସୁସ୍ଥ ସବଳ ଯୁବକମାନେ କେବଳ ଏହି କାମ କରିଥାଆନ୍ତି । ଲୋକକବି ଏହି ପ୍ରସଙ୍ଗରେ ଚାଷ ଜମି ମଝିରେ ବଡ଼ ଗଛର ମୂଳ ଗୋଟିଏ ଠିଆ ହେବାର ଦୃଶ୍ୟ କିପରି ଅତ୍ୟନ୍ତ ପ୍ରାକୃତିକ ଅଟେ, ତାହା କହିବା ସଂଗେ ସଂଗେ ଟୋଲଠା ଗଛ କାଟିଲାବେଳେ ଗାଁର ଚାରିଜଣ ବୁଢ଼ା ତାତଳେ ପଡ଼ି ମଲେ ବୋଲି କହି ପରିବେଶକୁ ଅଧିକ ଗମ୍ଭୀର କରିଛନ୍ତି ।

କୋବ-ଚୋଟ୍, ଚରାଓଁ-ଚଢ଼େଇବା, ବାବ-ବାହିବା ।

ପଥାରର ମାଜରେ ମୂଢ଼ା ଐ ପରୁଆ
ପଥାରର ମାଜରେ ମୂଢ଼ା;
ପରୁଆ ଶିପିନୀର ଟୋଲୋଠା କାଟୋଁ ତେ
ଗାଁଓର ମରିଲ ଚାରିବୁଢ଼ା ।

ପରୁଆ ପ୍ରତି ଯୁବକର ଆନ୍ତରିକତା ବହୁତ ବେଶି । ସେ ପରୁଆକୁ ଟୋଲୋଠା କାଠ ଆଣିଦେବାରୁ ପରୁଆ ଆନନ୍ଦରେ ନଖାଇ ନପିଇ ସାରା ରାତି ବସି ସୂତା କାଟିଲା । ସକାଳୁ ସେ ତନ୍ତପାଖରୁ ଉଠିଲା । ଲୋକ କବିର ଭାଷାରେ ସାରାରାତି ତନ୍ତକାମ କଲାପରେ ସକାଳୁ ତନ୍ତଶାଳ ବିଶ୍ରାମ ପାଇଲା । ପରୁଆ ରାନ୍ଧିବାଢ଼ି ଥୋଇଲା ଅଥଚ ନିଜେ ନ ଖାଇ ତନ୍ତ କାମରେ ଲାଗିଲା । ଯୁବକ୍ଟିର ମନ ଭିତରେ ଥିବା ସ୍ନେହଶ୍ରଦ୍ଧା ଭିତରେ ଅସମୀୟା ପୁରୁଷର ନିଜର ଆପଣାର ମଣିଷଟି ପ୍ରତିଥିବା ଆନ୍ତରିକତା ଏବଂ ନାରୀ ଜଗତପ୍ରତି ଥିବା ସ୍ନେହର କଥା ଫୁଟି ଉଠିଛି ।

ପରୁଆଇ ରାନ୍ଧିଲେ ପରୁଆଇ ବାଢ଼ିଲେ
ପରୁଆଇ ନେଖାଲେ ଭାତ;
ରାତିରେ ଭିତରତ କାଟୈ ସରୁସୂତା
ପୁଆଲୈ ତରିଲେ ତାଁତ;

ବିହୁଗୀତ କହିଲେ ଯୁବକଯୁବତୀମାନଙ୍କର ଭାବର ଆଦାନପ୍ରଦାନ ତଥା ପ୍ରେମପ୍ରୀତିକୁ ବୁଝାଇଲେ ହେଁ ଏହା ମାଧ୍ୟମରେ ସମାଜ ଜୀବନର ଚିତ୍ର ଏବଂ ଯୁବକ ଯୁବତୀମାନଙ୍କର କର୍ତ୍ତବ୍ୟ ସଚେତନତା ଭାବ ଓ କର୍ମନିଷ୍ଠାର ପରିଚୟ ସୁନ୍ଦର ଭାବେ ଫୁଟି ଉଠିଛି । ତାହା ଅନ୍ୟାନ୍ୟ ଦେଶର ପ୍ରେମ ଓ ପ୍ରଣୟର ଗୀତଗୁଡ଼ିକ ମଧ୍ୟରେ ବିରଳ ।

**ବିହୁଗୀତରେ ଲୋକମନ, ଆନନ୍ଦ ଓ ହାସ୍ୟରସ-** ବିହୁ କହିଲେ ପ୍ରକୃତରେ ବହାଗବିହୁର ନାଚ ଏବଂ ଗୀତକୁ ମୁଖ୍ୟତଃ ବୁଝାଯାଇଥାଏ । ବିହୁଗୀତର ନୃତ୍ୟଗୀତ ମୂଳକ ଅନୁଷ୍ଠାନ ହିଁ ବିହୁଉତ୍ସବ । ଏହି ଉତ୍ସବ ଯୁବକ ଯୁବତୀଠାରୁ ଆରମ୍ଭ କରି ଆସାମର ଲୋକସମାଜ ମଧ୍ୟରେ ଏପରି ପ୍ରିୟ, ଏତେ ଆପଣାର ଯେ ବିହୁ ପାଳନ କରି କେମିତି ରହିବି ଅର୍ଥାତ୍ ବିହୁ ନିଶ୍ଚୟ ପାଳନ କରିବି, ଏହି କଥା ସଭିଙ୍କର ମନ ଓ ପ୍ରାଣରେ ମିଶିଯାଇଛି । ବିହୁପ୍ରତି ଥିବା ଏହି ଆକର୍ଷଣ ବା ଜନପ୍ରିୟତା ଅସ୍ୱାଭାବିକ ନୁହେଁ । ଏହା ଅତ୍ୟନ୍ତ ସ୍ୱାଭାବିକ । ବିହୁ ପ୍ରତି ଥିବା ଅନୁପମ ଆକର୍ଷଣ ବା ଜନପ୍ରିୟତାର ମୂଳ କାରଣ ହେଉଛି ଯେ ବିହୁ ସହିତ ମଣିଷର ଆଦିମ ପ୍ରବୃତ୍ତି ବା ଆତ୍ମରକ୍ଷା ଏବଂ ବଂଶବୃଦ୍ଧିର ଆକାଙ୍‌କ୍ଷା ନିବିଡ଼ ଭାବେ ଜଡ଼ିତ ହୋଇଅଛି । ଆଦିମ ଲୋକସମାଜ ଭଳି ଆଜି ମଧ୍ୟ ଲୋକ ସମାଜ ମଧ୍ୟରେ ଆତ୍ମରକ୍ଷା ଏବଂ ବଂଶବୃଦ୍ଧିର ଆକାଙ୍‌କ୍ଷା ପ୍ରବଳ । ଆଜି ମଧ୍ୟ ଅତି କମ୍‌ରେ ଏକାଂଶ ଲୋକ ସମାଜର ବିଶ୍ୱାସ ଯେ ବିହୁ ଶସ୍ୟ ଏବଂ ସନ୍ତାନ ବୃଦ୍ଧିରେ ସାହାଯ୍ୟ କରେ । ଲୋକସମାଜ ପାଇଁ ଶସ୍ୟ

---

ମୂଢ଼ା-ଗଛର ମୂଳ ।

ଏବଂ ସନ୍ତାନ ଏକ ଏବଂ ଅଭିନ୍ନ । ଶସ୍ୟ ସୁଖି ତଥା ସମୃଦ୍ଧିଶାଳୀ ହେବାରେ ସାହାଯ୍ୟ କରେ ଏବଂ ସେହିପରି ସନ୍ତାନ ମଧ ସାହାଯ୍ୟ କରେ । ସନ୍ତାନ ମଣିଷକୁ ଯେପରି ଜୀବନ ଓ ଜୀବିକାର ନିରାପତ୍ତାର ଆଶ୍ୱାସ ଦେଇଥାଏ । ବଞ୍ଚିବାର ଆକାଙ୍କ୍ଷା ଯେପରି ଅତି ପ୍ରବଳ, ସେହିପରି ଯୌନ ଆକାଙ୍କ୍ଷା ଚରିତାର୍ଥ କରିବାକୁ ହେବ । ବାସ୍ତବବାଦୀ ଦୃଷ୍ଟିରେ ବିଚାର କରିଲେ ସେହି କାରଣରୁ ବିହୁ ଲୋକ ସମାଜ ମଧରେ ଅତିପ୍ରିୟ ଏବଂ ସେଥିପାଇଁ ଲୋକସମାଜରେ "ବିହୁନା ପାତି କେନେକୈ ଥାକୋଁ" ବା ବିହୁ ପାଳନ କରି କେମିତି ରହିବି ବୋଲି କୁହା ଯାଇଥାଏ । ସେହି କାରଣରୁ କେହି ଦୂରଦେଶରେ ରହିଲେ ନିଜର ପ୍ରିୟ ଲୋକକୁ ମନେ ପକାଇ ପ୍ରେମିକାଟି ଦୁଃଖରେ ପ୍ରକୃତିପକ୍ଷରେ ନିଜର ମନର ବେଦନା ପ୍ରକାଶ କରି କହେ-ଚୈତ୍ରମାସ ଯାଇ ବୈଶାଖ ଆସି ପହଞ୍ଚିଲା, ସବୁଆଡ଼େ ଭେରେଲି ଲତା ମାଡ଼ିଛି, ଏହା ବିହୁର ଆଗମନକୁ ସ୍ୱାଗତ କରିଛି । ଅଥଚ କେମିତି ବିହୁ କଥା ଭୁଲି ପ୍ରିୟ ଲୋକଟି ଏତେ ଦୂରରେ ରହିଛି ।

ଚ'ତେ ଚ'ତେ ଗୈୟେ ବହାଗେ ପାଲେହି
ଫୁଲିଲେ ଭେରେଲି ଲତା;
କେନେକୈୟେଥାକୋଁ ଓରକେ ଐନପରେ
ଆମାର ଐ ବିହୁରେ କଥା ।

ବିହୁ ଲୋକସମାଜର ଏକ ଅମୂଲ୍ୟ ସଂପଦ । ତାକୁ ଧନଦେଇ ରଖିବାକୁ ସମସ୍ତେ ଇଚ୍ଛା ପୋଷଣ କରିଥାଆନ୍ତି । ସମସ୍ତେ ସେହି ନାଚରେ ଭାଗ ନେଇଥାଆନ୍ତି । ବିହୁ ପାଳିବାର ଆଗ୍ରହ ଏତେ ବେଶି ପାରିମାଣରେ ଅସମୀୟାର ମନରେ ଥାଏ ଯେ କେହି ଦୂରଠାଇରେ ରହିଲେ କେମିତି ବିହୁ ପାଳନ ନ କରି ରହିବ ବୋଲି ଦୁଃଖ କରି କହିଥାଏ । କେବଳ ଯେ ବିହୁ ପ୍ରତି ଆଗ୍ରହ ତା ନୁହେଁ । ଅସମୀୟା ନାରୀର ତନ୍ତ ଶାଳର ମାକୋ, ମହୁରା ଏବଂ ମୁଗା ସୂତାର କପଡ଼ା ଯେକେତେ ପ୍ରିୟ ତାହା ଏଠାରେ ମଧ ବର୍ଣ୍ଣିତ ହୋଇଛି । ଏହି ପ୍ରସଙ୍ଗରେ ଲୋକ କବିର ବର୍ଣ୍ଣନାରେ ସେହି ଗୋଟିଏ କଥା ଭିନ୍ନ ଭିନ୍ନ ଭାବେ ପ୍ରକାଶ ପାଇଥାଏ । ତା' ମାଧମରେ ଅସମୀୟା ନାରୀର ଦୈନନ୍ଦିନ ଜୀବନର ଚିତ୍ର ଆଂଶିକ ଭାବେ ପ୍ରକାଶ ପାଇଛି ।

ଆସାମର ନାରୀମାନେ ହାତବୁଣା ଲୁଗା, ମୁଗା ପାଟର କପଡ଼ା ତଥା ଗାମୁଛା ଆଦି ନିଜେ ତନ୍ତଶାଳରେ ତିଆରି କରି ବ୍ୟବହାର କରିବା ପାଇଁ ଅଧିକ ପସନ୍ଦ କରିଥାଆନ୍ତି । ସେଥିପାଇଁ ସେମାନେ ନିଜର, ଘରର ସବୁକାମ ସାରି କପଡ଼ା ମଧ ତନ୍ତଶାଳରେ ବୁଣନ୍ତି । ଅସମୀୟା ନାରୀ ପାଇଁ ଏହା ଏକ ଉପାର୍ଜନର ପନ୍ଥା । ସେଥିପାଇଁ ତନ୍ତଶାଳ ଓ ତନ୍ତର ପ୍ରତିଟି ଦରକାରୀ ଜିନିଷ ଅସମୀୟା ନାରୀର ଅତିପ୍ରିୟ ।

ଅତିକୈ ସେନେହର ମୁଗାରେ ମହୁରା
ତାତୋକୈସେନେହର ମାକୋଁ;
ତାତୋକୈ ସେନେହର ବିହୁଗୀତ ଏଫାକି
ନେଗାଇନୋକେନେକୈ ଥାକୋଁ ।
ଅଥବା;
ଅତିକୈ ସେନେହର ମୁଗାରେ ମହୁରା
ଅତିକୈ ସେନେହର ମାକୋଁ;
ତାତୋକୈ ସେନେହର ବହାଗର ବିହୁଟି
ନେପାଢ଼ି କେନେକୈ ଥାକୋଁ ।

ବିହୁ ସମୟ ଆସି ପହଞ୍ଚିଲେ ସମସ୍ତଙ୍କ ଦେହ ଓ ମନକୁ ବିହୁର ଆନନ୍ଦ ସ୍ପର୍ଶ କରିଥାଏ, କି ଧନୀ କି ଗରୀବ ସମସ୍ତେ ଖୁସୀରେ ନାଚି ଉଠନ୍ତି । ଗରୀବ ଗାଉଁଲିଆ ଲୋକ ପାଇଁ ଆନନ୍ଦ ଦିନ କେବେ ଆସେ ନାହିଁ । ସେ ଜମିକୁ ହଳନେଇ ଯାଉ ବା ମୂଲ ଲାଗିବା ପାଇଁ ଯାଉ, ସେହି କର୍ମକ୍ଲାନ୍ତ ଜୀବନ ଭିତରେ ମୁହଁରେ ତା'ର ହସ ଫୁଟିଥାଏ । ସେଥିପାଇଁ ସେ ଅବସର ବିନୋଦନର ସାମଗ୍ରୀ ଖୋଜେନି କି ମନଫୁର୍ତ୍ତିପାଇଁ ପରିବେଶ ଓ ପରିସ୍ଥିତିକୁ ଅପେକ୍ଷା ରଖେ ନାହିଁ । ପେଟରେ ଅଭାବ ଯୋଗୁ ଭାତ ନଥାଏ ।ଦେହରେ ଫଟା କପଡ଼ା ଖଣ୍ଡେ ଥାଏ ତଥାପି ସେ ଥଟ୍ଟା ପରିହାସ ଭିତରେ ମୁହଁରେ ହସ ଫୁଟାଇଥାଏ । ଅନ୍ୟ ମୁହଁରେ ହସର ରେଖା ଟାଣି ଦେଇଥାଏ । ଧନୀ ଲୋକଭଳି ତା'ମୁହଁରେ ହସ ଆଣିବା ପାଇଁ ସେ ନିଜେ ଖର୍ଚ୍ଚାନ୍ତ ହୁଏନି କି ଅନ୍ୟକୁ ଖର୍ଚ୍ଚାନ୍ତ କରେ ନାହିଁ । ଦୈନନ୍ଦିନ ଝଞ୍ଜାଳ ହିଁ ତା'ର ସୁଖଦୁଃଖର ସାଥି ଓ ତା'ରି ଭିତରୁ ସେ ପ୍ରେରଣା ପାଇ ନିଜେ ହସେ, ଅନ୍ୟକୁ ହସାଏ ।

ରୈନୋ ରୈ ଧେମାଲି କରୋଁ ସମନୀୟା
ରୈନୋ ରୈ ଧେମାଲି କରୋଁ,
ପେଟତୋ ଭାତ ନାଇ 'ଗା' ତୋ କପୋର ନାଇ
ତଥାପି ଧେମାଲି ନେରୋଁ ।

ବିହୁର ଆନନ୍ଦ ନେବାପାଇଁ ଗରୀବଠୁ ଧନୀ ପର୍ଯ୍ୟନ୍ତ ସମସ୍ତେ ଯେପରି ତତ୍ପର ହୋଇଉଠନ୍ତି । ନିଜର ଆର୍ଥିକ ଅବସ୍ଥା ତିଥା ସ୍ୱଚ୍ଛଳତାକୁ ଆଖି ଆଗରେ ରଖି ସମସ୍ତେ ନିଜ ନିଜ ପସନ୍ଦରେ ବିହୁପର୍ବକୁ ସ୍ୱାଗତ କରିଥାଆନ୍ତି । ବିହୁପର୍ବକୁ ଜାତୀୟ ପର୍ବଭାବେ ପାଳନ କରିବାରେ ଅହୋମମାନଙ୍କର ଅବଦାନ ଯଥେଷ୍ଟ ରହିଛି । ଅହୋମ ରାଜାମାନେ ବିହୁ ପାଳନ ପାଇଁ ବହୁଦିନ ଆଗରୁ ଅନେକ ପ୍ରକାରଂ ଆଡ଼ମ୍ବରର ବନ୍ଦୋବସ୍ତ କରୁଥିଲେ । ସେଥିପାଇଁ ସେମାନେ ଯେତେବେଳେ ବିହୁ ଉତ୍ସବ ପାଳନ ପାଇଁ ବିହୁତଳିକୁ ଦୋଳାରେ ବସି ଯାଆନ୍ତି,

ଧେମାଲି-ଥଟ୍ଟା, ମଜା ।

ମକର କୁଣ୍ଡଳ ଆଦି ଅଳଙ୍କାରରେ ଭୂଷିତ ହୋଇ ଚାଇନା ସିଲ୍କ କପଡ଼ାରେ ନିର୍ମିତ ସାର୍ଟ ପିନ୍ଧି, ଦେହରେ ସୁବାସିତ ଅତର ଲଗାଇଥାଆନ୍ତି ।

''ସ୍ୱର୍ଗଦେଓ ଓଲାଲେ ବରଚ'ରାର ମୁଖଲୈ
ଦୁଲୀୟାଇ ପାତିଲେ ଦୋଲା;
ଗାତ ଜିଲିକିଲେ ମକରେ କୁଣ୍ଡଳେ
ଗାତ ଗୋମଚେଙ୍ଗର ସୋଲା''

ନିଜର ପାରିବାରିକ ଅଭାବ ଅନାଟନର କଥା କହୁ କହୁ ଲୋକମନରେ ବିଭିନ୍ନ ପ୍ରକାର ସାମାଜିକ ଚିତ୍ର ଝଲସି ଉଠିଥାଏ । ପ୍ରକୃତିର ଅପୂର୍ବ ତଥା ବିଚିତ୍ର ପରିବର୍ତ୍ତନରେ ସେ ବିଭୋର ହୋଇଉଠେ । ବହାଗ ବା ବୈଶାଖ ମାସ ବିହୁରେ ନାଚି ଗାଇ ତଥା ଖାଇ ପିଇ ଆନନ୍ଦରେ ସମସ୍ତେ ବିହୁ ଉପଭୋଗ କରିଥାଆନ୍ତି । ଏହି ସମୟରେ ଅତି ଗରୀବ ଲୋକ ଖାଇବାକୁ ନପାଇ ଦୁଃଖ କରି ନିଜର ଭାଗ୍ୟକୁ ଦୋଷ ଦେଇ ଥାଏ । ବିହୁଠୁ ପ୍ରିୟ ପର୍ବ ଆଉ କିଛି ନାହିଁ । ଚୈତ୍ରରେ ଚଇତମାସିଆ ଚଢ଼େଇ କାନ୍ଦେ, ବୈଶାଖରେ ବେଙ୍ଗ ବୋବାଇଥାଏ । ଲୋକକବିର କଳ୍ପନାରେ ବେଙ୍ଗ କାନ୍ଦୁଛି । ଗାଁର ଗରୀବ ଲୋକଟି ଏହି ସମୟରେ ଖାଇବାକୁ ପାଉନି, ପ୍ରକୃତରେ ବିହୁରେ ପେଟପୂରା ଖାଇପିଇ ଭଲରେ ଦିନ କୋଡୋଟି ଉପଭୋଗ କରିବା କଥା, ଅଥଚ ଏ ସମୟରେ ସେ ଖାଇବାକୁ ପାଉନି । ଶେଷରେ ନିଜ ମନକୁ ନିଜେ ପ୍ରଶ୍ନ କରୁଛି । ଚୈତ୍ରରେ ଚଇତମାସିଆ ଚଢ଼େଇ କାନ୍ଦିଲା, ବୈଶାଖରେ ବେଙ୍ଗ କାନ୍ଦିଲା, ଖାଇବା ସମୟରେ ମୁଁ ଖାଇବାକୁ ପାଇଲିନି, କିଏ କୁକୁଡ଼ାର ଗୋଡ଼କୁ ଖାଇଲା ।

ଚ'ତତେ କାନ୍ଦିଲେ ଚତୁଆ ଚରାଇଟି
ବହାଗତ କାନ୍ଦିଲେ ବେଂ;
ଖାବରେ ସମୟତ ଖାବଲୈ ନୋପଲୋଁ
କୋନ ଖାଲେ କୁକୁରାର ଠେଂ ।

**ବିହୁଗୀତରେ ପାହାଡ଼ ଓ ପର୍ବତର ଜନଜାତି** – ଆସାମର ଯୁବକ ଯୁବତୀମାନେ ଦେଶର ସମସ୍ତ କଥାକୁ ମନେ ପକାଇ ଜାତୀୟ ଭାବରେ ବିଭୋର ହୋଇ ବିହୁଗୀତ ଗୁଡ଼ିକରେ ସେଗୁଡ଼ିକୁ ଝୁଙ୍କି ଝୁଙ୍କି ଗାଉଥିଲେ । ଇତିହାସ କହେ, ଅତୀତରେ ପାହାଡ଼ ଓ ପର୍ବତରେ ବାସ କରୁଥିବା ଅସମୀୟାମାନେ କେବେକେବେ ଦ୍ୱନ୍ଦ କରୁଥିଲେ, ଯୁଦ୍ଧ କରୁଥିଲେ, ପୁଣି ମିଳିମିଶି ଭାଇ ଦାଦା ଭଳି ଏକାଠି ଖିଆପିଆ କରୁଥିଲେ ଏବଂ ବେପାର ବାଣିଜ୍ୟ କରୁଥିଲେ । ଉତ୍ତର ପୂର୍ବାଞ୍ଚଳର ସାତୋଟି ରାଜ୍ୟ ଯେପରି ଆସାମ, ନାଗାଲାଣ୍ଡ, ମେଘାଳୟ,

ଜିଲିକିଲେ-ଝଲସିବା, ଗୋମଚେଙ୍ଗର ସୋଲା-ଚାଇନା ସିଲ୍କ କପଡ଼ାରେ ନିର୍ମିତ ସାର୍ଟ, ସ୍ୱର୍ଗଦେଓ-ଅହୋମ ରାଜା, ଚତୁଆ-ଚଇତ୍ରମାସିଆ ଚଢ଼େଇ ।

ମଣିପୁର, ମିଜୋରାମ, ତ୍ରିପୁରା, ଅରୁଣାଚଳ ପ୍ରଦେଶକୁ ସାତୋଟି ଭଉଣୀ ବା 'Seven sisters କୁହାଯାଇଥାଏ । ବିଦେଶୀର ଆକ୍ରମଣରେ ପର୍ବତର ଭାଇମାନେ ପାହାଡ଼ର ଲୋକମାନଙ୍କ ସହିତ ଏକାଠି ହୋଇ ଶତ୍ରୁର ବିରୁଦ୍ଧରେ ଅସ୍ତ୍ର ଧରୁଥିଲେ । ସେଥିପାଇଁ ଆସାମର ଜାତୀୟ ଉତ୍ସବ ବହାଗ ବିହୁର ରଙ୍ଗ ରହସ୍ୟରେ ଯୁବକ ଯୁବତୀମାନେ ପାହାଡ଼ ପର୍ବତର ଭାଇ ଭଉଣୀମାନଙ୍କୁ ମନେ ପକାଇ ଥାଆନ୍ତି ।

୧- "ନଗାର ସଙ୍ଗତେ ପେଁପାଟି ବଜାଲେ
ଡ଼ଫଲାଇ ଧରିଲେ ଟକା"

୨- "ଇଟୋ ପୂର୍ବତତ କୁକୁରା କାଟିଲେ
ସିଟୋ ପର୍ବତତ ପରିଲେ ତେଜ"

୩- "ମାରୋ ଶଦିୟା, ବାପେରେ ଶଦିୟା"

୪-"ପର୍ବତେ ପର୍ବତେ ବଗାବ ପାରୋ ମଇ"

୫- " ନରାଇ ବେଚିଲେ ନରା ଜାଂପାଇ
ମିରିୟେ ବେଚିଲେ କି"?

୬- "ଟତାଇ ପର୍ବତ ଧୁଁଅଲି କୁଁଅଲି"

୭- "ପର୍ବତର କାନତେ ମୁଗା ମେଲିଛିଲୋ"

୮- "ପର୍ବତେ ମାରିଯାଓଁ ରାଙ୍ଗଲୀ ହରିଣ"

୯- "ପର୍ବତେ ପବିତେ ଖାଲୋ ନଗା ଟେଙ୍ଗା"

୧୦ - "ମିକିର ବର ଚାଙ୍ଗତ ନଗାର ମାତ ଶୁନିଲୋ"

୧୧- "ଧନେ ଗୈ ଆଛେ ଗୈ ମିଶିମିରେ ଦେଶତ
ଆନିବ କପାହର ଜୋଲା"

୧୨- "ପର୍ବତତ ମାରିଲୋ ନୋଦକା ଗାହରି"

୧୩-"ଟେଟାଇ ପର୍ବତତ ପହୁର ଜାଲ ପାତିଲୋଁ"

ଜୀବନର ସୋନାଲି ବୟସରେ ଆସାମର ଯୁବକଯୁବତୀମାନେ ମନଖୋଲି, ପ୍ରାଣ ଖୋଲି ନିଜର ଆପଣାର ଲୋକପ୍ରତି ମନର କଥା ଗୁଡ଼ିକୁ ପ୍ରକାଶ କରିଥାଆନ୍ତି । ଜୀବନର ଆନନ୍ଦ ଉଲ୍ଲାସର ଭାବଗୁଡ଼ିକ ଏହି ବିହୁଗୀତ ଗୁଡ଼ିକରେ ବ୍ୟକ୍ତ ହୁଏ । ଇତିହାସ ଲେଖା ନହେବା ପୂର୍ବରୁ ଆମ ଦେଶର ପାହାଡ଼ ପର୍ବତର ଗଛଲତା ନଦନଦୀ, ବିଲ, ବୃକ୍ଷଲତା ଓ ଫୁଲର ଶ୍ୟାମଳ ସୌନ୍ଦର୍ଯ୍ୟ ମଧ୍ୟରେ ନିଜକୁ ନିମଜ୍ଜିତ କରି ଦେଶର ଛୋଟଠୁ ବଡ଼ ପର୍ଯ୍ୟନ୍ତ ସମସ୍ତ ସଂପଦକୁ ମନରୁ ପାଶୋରି ଯାଇ ଯୁବକଯୁବତୀମାନଙ୍କର ନାଚ ଏବଂ ଗୀତରେ ସମଗ୍ର ଦେଶକୁ ମୁଖରିତ କରିଥାଆନ୍ତି । ବିହୁଗୀତର ବିଶେଷତ୍ୱ ଏହି ଯେ ଯୁବକଯୁବତୀମାନେ ଆସାମର ଧାନ୍ୟକିଆରୀ, ଚନ୍ଦ ଶାଳ ଏବଂ ପର୍ବତର କଥା କେତେବେଳେ ହେଲେ ଭୁଲିଯାଇ ନାହାନ୍ତି । ଭଲ ଭାବେ କରି ଦେଖିଲେ ବିହୁଗୀତର ପ୍ରତିଟି ପାଦରେ, ପ୍ରତିଟି ସୁରରେ

ଆସାମ ଦେଶଟି ଓତଃପ୍ରୋତଭାବେ ମିଳି ଯାଇଛି । ସେଥିପାଇଁ ବିହୁ ଅସମୀୟାର ପ୍ରାଣଠୁ ବଳି ବଡ଼ ଜାତୀୟ ଉତ୍ସବ ।

**ବିହୁଗୀତରେ ମହାଭାରତ** - ବିହୁଗୀତରେ ପ୍ରେମିକ ପ୍ରେମିକାମାନେ ମହାଭାରତର କଥା ମଧ୍ୟ ଆଲୋଚନାକୁ ଆଣିଥାଆନ୍ତି । ପ୍ରେମିକାଟି ପାଖରେ ନଥିଲାବେଳେ ପ୍ରେମିକ ବାରମ୍ବାର ପ୍ରିୟାକୁ ମନର ଭାବକୁ ବ୍ୟକ୍ତ କରି କହେ - ମହାଭାରତରେ ଦ୍ରୌପଦୀ ପଞ୍ଚପତି ଗ୍ରହଣ କରି ସେମାନଙ୍କୁ ପ୍ରେମଦାନ କରି ସନ୍ତୁଷ୍ଟ କରି ପାରିଥିଲା ଅଥଚ ପ୍ରିୟାଟି କେବଳ ତା'ର ପ୍ରେମିକକୁ ପ୍ରେମଦାନ କରିବା ପାଇଁ ତା' ପାଖରେ ନାହିଁ । ଭାଗ୍ୟପ୍ରତି ବିତୃଷ୍ଣା ଭାବ ପୋଷଣ କରି ପ୍ରେମିକଟି କହିଛି

ଭୀମ ଅର୍ଜୁନେ ନକୁଳ ସହଦେବେ
ଯୁଧିଷ୍ଠିରର ପଞ୍ଚଭାଇ;
ଅକଲ ଦ୍ରୌପଦୀୟେ ପ୍ରେମଦାନ କରିଲେ
ଆମାକ ଦାନ କରୋଁତା ନାଇ ।

**ବିହୁଗୀତରେ ଉପାଖ୍ୟାନ** - ପ୍ରେମିକଟି ଉପାଖ୍ୟାନଟିଏ ଆଖି ଆଗରେ ରଖି ପ୍ରେମିକାକୁ ପ୍ରେମର ତତ୍ତ୍ୱ ବୁଝାଇବାକୁ ଚେଷ୍ଟା କରିଛି । ରାଜା ହରିଶ୍ଚନ୍ଦ୍ର ଧର୍ମ ପ୍ରଚାର କରି ମରି ମଧ୍ୟ ଅମର ରହିଲେ । ସେହିଭଳି ନାରଦ ବୀଣା ବଜାଇ ଆଜି ମଧ୍ୟ ପୂଜା ପାଉଛନ୍ତି । ଯୁବକଟି ଛୋଟବେଳୁ ପ୍ରେମ କରି ପ୍ରେମର ଜୟଗାନ କରିବ ବୋଲି ଦୃଢ଼ ଆଶା ରଖିଥିଲା । ପ୍ରେମ ଯେ ଅମର, ଚିର ଭାସ୍ୱର, ଏକଥା ଯୁବକଟି ଭଲଭାବେ ହୃଦୟଙ୍ଗମ କରିଥିଲେ ହେଁ ଭଲ ପାଉଥିବା ଝିଅଟି କେବେହେଲେ ପ୍ରେମର ପ୍ରତିଦାନ ଦେଇନାହିଁ । ସେଥିପାଇଁ ଯୁବକଟି କହୁଛି -

ହରିଶ୍ଚନ୍ଦ୍ର ଗୋଁସାଁୟେ ଧର୍ମପ୍ରଚାର କରିଲେ
ନାରଦେ ବଜାଲେ ବୀନ;
ସରୁରେ ପରା ପୀରତି କରିଲୋଁ
ମରମର ନେପାଲୋଁ ଚିନ ।

**ପ୍ରେମ ଭିତରେ ପ୍ରେରଣା** - ନାରୀ ଯେ ପୁରୁଷକୁ ଯୁଗେ ଯୁଗେ ପ୍ରେରଣା ଯୋଗାଇ ଥାଏ, ତାହା ବିହୁଗୀତରେ ଶୁଣିବାକୁ ମିଳେ । ପ୍ରତ୍ୟେକ ପୁରୁଷର ସଫଳତାର ପଛରେ ନାରୀଥାଏ । ସେଥିପାଇଁ ଯୁବକଟି ତା'ର ପ୍ରେମିକାକୁ ପ୍ରାଣର ପିତୁଳା କହିବା ସଂଗେ ସଂଗେ ଅନ୍ଧାରରେ ଦୀପ ସଦୃଶ ଅଣ୍ଟେ କହିଥାଏ । ସେଥିପାଇଁ ପ୍ରେମିକାଟି ପାଖରେ ନଥିଲେ କେହି ପାଖରେ ନଥିଲା ଭଳି ମନେହୁଏ । ଭୋକ ସମୟରେ ଭାତମୁଠିଏ ରାନ୍ଧି ବାଢ଼ିଦେବା ପାଇଁ ଅଥବା ଶୋଷ ବେଳେ ପାଣି ମୁନ୍ଧାଏ ଦେବାପାଇଁ ଯେପର୍ଯ୍ୟନ୍ତ ଆଉ କେହି ପାଖରେ ନାହାନ୍ତି, ଯୁବକଟି ଅନୁଭବ କରେ ।

ତୁମି ଐ ଲାହରୀ ପ୍ରାଣର ପୁତଲୀ
ତୁମିମୋର ଏନ୍ଧାରର ସାକି;
ତୁମି ଯେ ନ'ହେଲେ ଦିଓଁତା ନ ହ'ବ
ଭୋକତ ଭାତ ପିୟାହତ ପାନୀ'' ।

ବଳୀପ୍ରଥାର ସଂକେତ - ବିହୁଗୀତ ଗୁଡ଼ିକରେ ସାମାଜିକ ଜୀବନର ଚିତ୍ର ସୁନ୍ଦର ଭାବେ ପ୍ରତିଫଳିତ ହୋଇଛି । ଆସାମରେ ଦେବଦେବୀଙ୍କ ନିକଟରେ ପଶୁପକ୍ଷୀ ବଳି ଦିଆଯାଏ । ଏହା ପାରମ୍ପରିକ ରୀତିରେ ପ୍ରଚଳିତ ହୋଇ ଆସୁଛି । ଦେବଦେବୀଙ୍କର ବନ୍ଦନା ପ୍ରସଂଗରେ ଯୁବକ ଯୁବତୀମାନେ ନିଜର ଭକ୍ତିପୂତ ପ୍ରଣାମ ଜଣାଇଲା ବେଳେ ତାଙ୍କ ପ୍ରତି କଞ୍ଚାବିରି ଓ କଞ୍ଚାମୁଗ ପ୍ରସାଦ ଅର୍ପଣ କରି କୁହନ୍ତି ହେ ମା ସରସ୍ୱତୀ, ତୁମ ପାଖରେ ଆମେ ସୁନ୍ଦର ଧଳା ଛେଳିଟିଏ ବଳି ଦେଇ ପ୍ରସାଦ ଚଢ଼େଇବୁ । ତମେ ଆମ ପ୍ରତି ଦୟା କର, ସମସ୍ତ ଗୀତଗୁଡ଼ିକୁ ଗୋଟିକ ପରେ ଗୋଟିଏ କରି ମନେ ପକାଇଦେବ । ଆମେ ମଝିରେ ମଝିରେ ଗୀତର ତାଳ ଭାଙ୍ଗି ଭାଙ୍ଗି ବିଭିନ୍ନ ତାଳରେ ଗାଇବୁ, ତୁ ଦୟାକରି ଆମକୁ ସାହାଯ୍ୟ କରିବୁ ।

ଦେବୀ ପାର୍ବତୀ ବିଦ୍ୟାର ଅଧିଷ୍ଠାତ୍ରୀ । ଦେବୀ ସରସ୍ୱତୀଙ୍କୁ ପ୍ରଣାମ ଜଣାଇ ଚାଉଳ, ବିରି, ତଥା ଧଳା ଛେଳି ସହିତ ଲାଲ୍ ଫୁଲ ଏବଂ ବକୁଳ ଫୁଲ ଚଢ଼ାଇବା ପାଇଁ ମଧ ବିହୁଗାୟକ ଓ ଗାୟିକାମାନେ କହିଥାଆନ୍ତି ।

୧- ଆଇ ସରସ୍ୱତୀ ରଂଫୁଲ ବକୁଲୀ
ତୋମାଲୈ ମାନିଯାଓଁ କି;
ତୋମାଲୈ ମାନିଯାଓଁ ଶୁକୁଲା ଛାଗଲୀ
ମାହେ-ପରସାଦ ଦି ।

୨- ଆଇ ସରସ୍ୱତୀ ଦେବୀ ପାରେବତୀ
ତୋମାଲୈ ମାନିଯାଓଁ ଚାଉଲ;
ପାହରା ନାମକେ ସୋଁଅରାଇ ଦି ଯାବା
ଗୀତର ଭାଙ୍ଗିଯାବା ଆଉଲ ।

୩- ଆଇ ସରସ୍ୱତୀ ଦେବୀ ପାରେବତୀ
ତୋମାଲୈ ମାନିଯାଓଁ ସେବା;
ପୂର୍ବେ ପଶ୍ଚିମେ ଉତ୍ତରରେ ଦକ୍ଷିଣେ
ଆମାକ କରିଯାବା ଦୟା ।

ବିହୁପ୍ରତି ଆନ୍ତରିକତା ଆସାମର ଲୋକଜୀବନରେ ବହାଗ ବା ବୈଶାଖ ବିହୁର ମୂଲ୍ୟ ସବୁଠାରୁ ଅଧିକ । ମାଘ ବିହୁରେ ଭଲଭଲ ଜିନିଷ ଖାଇ ଆନନ୍ଦ ଓ ଉତ୍ସାହରେ

---

ଏନ୍ଧାର-ଅନ୍ଧାର, ସାକି-ଦୀପ, ପିୟାହ-ଶୋଷ, ଶୁକୁଲା-ଶୁକ୍ଳ - ଧଳା ।

ଦିନ କଟାଇଲେ ହେଁ ବହାଗବିହୁରେ ଖାଇବାଠୁ ନାଚ ଗୀତ ସହିତ ନୂଆ ନୂଆ ବସ୍ତ୍ର ପିନ୍ଧି ପରସ୍ପର ଘରକୁ ବୁଲିଯିବାର ଆନନ୍ଦରେ ଏକ ନୂତନ ଉନ୍ମାଦନା ଭରି ରହିଥାଏ । ବିହୁପ୍ରତି ଅସମୀୟାର ଆଗ୍ରହ, ଉତ୍ସାହ ତଥା ଆନ୍ତରିକତା ଏବଂ ଜାତୀୟ ଜୀବନ ସହିତ ଥିବା ଅବିଚ୍ଛେଦ୍ୟ ସଂପର୍କର କଥା ବିହୁଗୀତରେ ଛନ୍ଦେ ଛନ୍ଦେ ଫୁଟି ଉଠିଛି । ବିହୁକୁ ସବୁଦିନ ନିଜ ପାଖରେ ରଖିବା ପାଇଁ ଅସମୀୟାର ଆଗ୍ରହ ଏତେ ବେଶି ଯେ, ତାହା ବିହୁଗୀତରେ ଏହିଭଳି ଭାବେ ପ୍ରକାଶ ପାଇଥାଏ-

ଚତେ ଗୈ ଗୈ ବହାଗ ପାଲେହି
ଫୁଲିଲେ ଭେରେଲି ଲତା ;
କେନେ କୈ ଥାକିଲେ ଓରକେ ନ ପରେ
ବହାଗର ବିହୁରେ କଥା ।

ଓଡିଆ ଅନୁବାଦ-

ଚଇତ ଯାଇ ଯାଇ ବୈଶାଖ ଆସିଲା
ଫୁଟିଲେ ଭେରେଲି ଲତା ;
କିପରି ରହିଲ ମନେ ପଡିଲାନି
ବୈଶାଖ ବିହୁର କଥା ।

ଦୂରରେ କେହି ପ୍ରିୟତମ ରହିଲେ ତା'କୁ ମନେପକେଇ ପ୍ରିୟତମା ଅଧୈର୍ଯ୍ୟ ହୋଇଉଠେ । ସେ କହେ, ସମସ୍ତଙ୍କୁ ଭୁଲିଗଲେ ବି ବୈଶାଖର ବିହୁକୁ କିପରି ଭୁଲି ରହିଲ ? ଏଥିରେ ବିହୁପ୍ରତି ଅସମୀୟାର ଆଗ୍ରହ ଓ ଆନ୍ତରିକତା ସ୍ପଷ୍ଟଭାବେ ପ୍ରତିଫଳିତ ହୋଇଛି-

ଅତିକୈ ସେନେହର ମୁଗାରେ ମହୁରା
ଅତିକୈ ସେନେହର ମାକୋ ;
ତାତୋକୈ ସେନେହର ବହାଗର ବିହୁଟି
ନେ ପାତି କେନେକୈ ଥାକୋଁ ।

ଅସମୀୟାର ସବୁଠୁ ପ୍ରିୟ ମୁଗା କପଡ଼ା ବା ପାଟସୂତାର ଗୁଲି ଓ କପଡ଼ା ବୁଣା ତନ୍ତ ମାତ୍ର ତା'ଠୁ ଅଧିକ ପ୍ରିୟ ତା'ର ବହାଗବିହୁ । ଏହି ବିହୁକୁ ପାଳନ ନକରି କୌଣସି ଜରୁରୀ କାମରେ ମନର ମଣିଷଟି ଦୂରରେ ରହିଲେ ତା'ର ପ୍ରିୟା କାନ୍ଦି କାନ୍ଦି ବିହୁଗୀତରେ ଏହା କହେ ।

ପ୍ରିୟତମଠୁ ଦୂରରେ ରହିଲେ ପ୍ରିୟା ତା'କୁ ମନେ ପକାଇ ଦୁଃଖ ଅନୁଭବ କରିଥାଏ । ବିହୁରେ ଆବାଳ-ବୃଦ୍ଧ-ବନିତା ସମସ୍ତେ ନାଚି ଗାଇ ବିହୁଦିନ କେତୋଟିକୁ କିପରି ଆନନ୍ଦରେ କଟାଇ ଦିଅନ୍ତି । ପ୍ରତ୍ୟେକ ନିଜର ମନର ମଣିଷଟି ପାଖରେ ରହିବା ପାଇଁ ଏହି ସମୟରେ

---

ମୁଗା - ସିଲ୍କ, ମହୁରା - ସୂତା ଗୁଲି, ମାକୋ - ତନ୍ତର ଜିନିଷ, ନେପାତି-ନକରି, ଥାକୋଁ-ରହିବି ।

ଇଚ୍ଛା କରିଥାଆନ୍ତି ତଥାପି କର୍ତ୍ତବ୍ୟର ତାଡ଼ନାରେ କେହି ଦୂର ଦେଶକୁ ଯାଇ ଆସି ନ ପାରିଲେ ପ୍ରେମିକାଟି କୋହକୁ ଚାପି ନ ପାରି ଗୀତରେ ପ୍ରକାଶ କରେ-

ବିହୁରେ ବିରିନା ପାତେ ସମନୀୟା
ବିହୁରେ ବିରିନା ପାତ ;
ବିହୁ ଥାକେମାନେ ବିହୁକେ ବିନାବି
ବିହୁଗଲେ ବିନାବି କାକ ।

ବିହୁ ଉତ୍ସବ ସମୟରେ ସବୁଆଡ଼େ କାଶତଣ୍ଡୀ ଫୁଲ ଫୁଟିଥାଏ । ଏହି ସମୟରେ ସମସ୍ତେ ଦିନରାତି ବିହୁର ଆନନ୍ଦ ଓ ପର୍ବର ଗୁଣାବଳୀ ବିଷୟରେ ଗୀତରେ ଗାଇଥାଆନ୍ତି । ବିହୁ ଉତ୍ସବ ପାର ହୋଇଗଲେ ଆଉ କାହାକୁ ବା ଦିନରାତି ବସି ଜପିବେ ?

କେହି ଜଣେ ନିରୀହା ଝିଅଟି ନିଜର ଦାରିଦ୍ର୍ୟତାକୁ ବିହୁଗୀତ ମାଧ୍ୟମରେ ପ୍ରକାଶ କରିଛି । ବିହୁ ନାଚିବା ପାଇଁ ମୁଗାର ମେଖଳା ଓ ଚାଦର ଦରକାର । ମୁଗାର ସିଲ୍କ କପଡ଼ା ଅତି ମୂଲ୍ୟବାନ୍ । ଏହି କପଡ଼ା ବ୍ୟତୀତ ବିହୁନାଚ ପରିବେଶଣ କରିହେବନି । ତେଣୁ ସେ ନିରୀହା ଝିଅଟି ନିଜକୁ ନିଜେ କହୁଛି-

ଆଜି ବିହୁ ବିହୁ      କାଲି ବିହୁ ବିହୁ
ଆମାର ବିହୁ କାପୋର ନାଇ ;
ସମନୀୟାର ସୁଧିଲେ      କମେ କି ବୁଲି
ସରୁତେ ଏକାକୀ ଆଇ ।

କେହି ଯଦି ବିହୁକଥା ପଚାରିବ, ତା ହେଲେ କ'ଣ ଦୁଃଖ କମିବ ? ଛୋଟବେଳରୁ ତ ସମସ୍ତେ ତା'ର ଅବସ୍ଥା ଦେଖି ଆସିଛନ୍ତି । ଏଠାରେ ଭଗବାନଙ୍କ ଉପରେ ତା'ର ଅଭିମାନ ଆସିଛି ।

ଯାଁତର କହିଲେ ଅସମୀୟା ନାରୀର କପଡ଼ା ବୁଣା ଯନ୍ତ୍ରକୁ ହିଁ ବୁଝାଇଥାଏ ଯାହା ତା'ର ସବୁଠାରୁ ପ୍ରିୟ ବସ୍ତୁ । କିନ୍ତୁ ଯେତେବେଳେ ସବୁଆଡ଼େ ନାହର ଫୁଲ ଫୁଟିଥାଏ, ବିହୁ ଆସି ଉପସ୍ଥିତ ହୁଏ । କାହାର ବା ଅଜଣା ଢୋଲର ଡାକ ଶୁଣି ବିହୁବତୀ ନିଜର ପାଦକୁ ନିଜେ ଆୟତ୍ତ କରିପାରେ ନାହିଁ । ମନର ଅସ୍ଥିରତା ବଢ଼ି ଯାଏ । ନିଜେ ନିଜେ ଘର ଭିତରେ ନାଚିବାକୁ ଆରମ୍ଭ କରେ । ଶେଷରେ ସେ ତା'ର ଲୁଗା ବୁଣା କାମ ବନ୍ଦ କରି ବିହୁତଳିକୁ ଦୌଡିଥାଏ । ସେଥିପାଇଁ ଲୋକକବି ଅସମୀୟା ଯୁବତୀର ମାନସିକ ଅସ୍ଥିରତାକୁ ଲକ୍ଷ୍ୟକରି ଏହା ଗାଇଛନ୍ତି । ଏହି ସମୟରେ ଲୋକକବି ଭାବପ୍ରବଣ ହୋଇ ଉଠିଛନ୍ତି । ସେ ପ୍ରକୃତିର ଅପରୂପ ସୃଷ୍ଟିକୁ ପ୍ରଶଂସା କରିବା ସଂଗେ ସଂଗେ ସମାଜର କେତେଗୁଡିଏ କଥାର ଅବତାରଣା କରିଛନ୍ତି ।

ଡିତା ଧାନ ଖେରର ଛାଇ ସମନୀୟା
ଡିତା ଧାନଖେରର ଛାଇ ।
ଅତି ସେନେହରେ ବହାଗର ବିହୁଟି
ହାତତେ ମଲଙ୍ଗି ଯାୟ ।

ପ୍ରକୃତି ପ୍ରେମୀ କବି ପୁଣି ବିହୁ କଥା କହୁ କହୁ ନାହର ଫୁଲର ସୌନ୍ଦର୍ଯ୍ୟ ତାଙ୍କର ଦୃଷ୍ଟିକୁ ଆକର୍ଷିତ କରିଛି । ବିହୁ ସମୟ ଉପସ୍ଥିତ ହେଲେ ନାହର ଫୁଲ ଫୁଟିଥାଏ । ବସନ୍ତର ପରଶରେ ସେ ବିହୁ କୁଅଁରୀମାନଙ୍କୁ ବିହୁ ଆଗମନି ବାର୍ତ୍ତା ଦେଇଥାଏ । ଯୁବତୀମାନେ ଢଁତକୁ ଗୋଡ଼ରେ ଭାଙ୍ଗି ବିହୁତଳିକୁ ଯିବାପାଇଁ ପ୍ରସ୍ତୁତ ହୋଇଥାଆନ୍ତି । ନାରୀମାନେ ନିଜର କର୍ତ୍ତବ୍ୟବୋଧ ଭିତରୁ କିଛି ସମୟ ପାଇଁ ବିହୁରେ ଅବସର ନେବାକୁ ଚାହାନ୍ତି ।

"ଏଇ ବେଲି ବିହୁଟି ରମକେ ଜମକେ
ନାହର ଫୁଲ ଫୁଲିବର ବତର" ।

ବିହୁ ଯେତିକି ଯେତିକି ପାଖେଇ ଆସେ, ମନଟା ସେତିକି ଉତ୍ତଳା ହୋଇଉଠେ । ବିହୁପାଇଁ ଆଗରୁ ସମସ୍ତେ ଜିନିଷପତ୍ର ଯୋଗାଡ଼ କରି ରଖି ଥାଆନ୍ତି । ଯେପରି ବିହୁଟିକୁ ଆନନ୍ଦ ମନରେ ଉପଭୋଗ କରି ପାରିବେ । ଦୂରବାଟକୁ ଯାଇଥିବା ଲୋକ ଘରକୁ ନ ଫେରିଲେ ମନ ଭିତରେ ଦୁଃଖ ଆସିଥାଏ ।

ବିହୁଲୈ କେଇଦିନଆଛେ ସମନୀୟା
ବିହୁଲୈ କେଇଦିନ ଆଛେ ;
ଉଜନି ନାମନି ମାରୋ କେଓଖନି
ବିହୁଲୈ ଚାରିଦିନ ଆଛେ ।

ବସନ୍ତର ଆଗମନରେ ମାନବ ଜଗତ ସହିତ ସମସ୍ତ ପଶୁପକ୍ଷୀ ମଧ୍ୟ ଏକ ଅକୁହା ଆନନ୍ଦରେ ବିଭୋର ହୋଇଉଠନ୍ତି । 'ବିହୁ'ର ପରଶରେ କେତକୀ ଚଢେଇ ଆନନ୍ଦରେ ଗୀତ ଗାଉଥାଏ, ମରୁଆ କାଠର ଯଁତର ସତେ ଅବା ବିହୁବାର୍ତ୍ତା ଦେଇଥାଏ । ସମୟ ସମୟରେ ସମାଜରେ କର୍ତ୍ତବ୍ୟବୋଧ ଭିତରେ ମଣିଷର ଉତ୍ସାହ କମି କିମି ଆସେ । ବିହୁ ଆସିଲେ ଛୋଟପିଲାଠୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଏହି ପର୍ବରେ ନିଜକୁ ସାମିଲ କରିଦିଅନ୍ତି । ବିହୁ ଆସିବାର ଅନେକ ଶୁଭ ଲକ୍ଷଣ ଭିତରୁ ପ୍ରଥମେ ପ୍ରକୃତିର କୋଳରେ ବସନ୍ତର ପରଶ ଲାଗି ନାହର ଫୁଲ ମୁଣ୍ଡ ଟେକିଥାଏ । ଯେ ପର୍ଯ୍ୟନ୍ତ ନାହର ଫୁଲ ଫୁଟିନି, ଗାଁର ଯୁବକମାନେ କଉଡ଼ି ଖେଳରେ ବ୍ୟସ୍ତ ହୋଇନାହାନ୍ତି ବା ଦେହରେ ବାସ୍ନାତେଲ ଲଗେଇ ନାହାନ୍ତି, ସେ ପର୍ଯ୍ୟନ୍ତ ବିହୁର ମାଦକତା ସ୍ପର୍ଶ କରି ନ ଥାଏ । କବି ଏଠାରେ ଟିକିଏ ରସିକତା ଦେଖାଇ ବାସ୍ନା ତେଲର କଥା କହିଛନ୍ତି । ତା' ସହିତ ପ୍ରାକୃତିକ ପରିବର୍ତ୍ତନର କଥା ସୁନ୍ଦର ଭାବରେ ମିଶେଇ ଦେଇଛନ୍ତି । ନଦୀରେ ପାଣି ବଢ଼ିନି, ତେଣୁ ବିହୁ ସମୟ ଉପସ୍ଥିତ ହୋଇନି ।

---

ଡିତା-ଓଦା, ମଲଙ୍ଗିଯାଏ- ଖସିଯାଏ, ବିରିଣା-କାଶତଣ୍ଡୀ ଫୁଲ ।

ନ ପାନୀ ବଢ଼ା ନାଇ                    ନାହର ଫୁଲ ଫୁଲା ନାଇ
ବିହୁ ବିହୁ ଲଗା ନାଇ ଗା'ତ ;
ଗାଁଓର ଡେକା ଲ'ରାଇ                  କଡ଼ି ଖେଳ ପତା ନାଇ
ଗୋନ୍ଧ ତେଲ ଲୋଆ ନାଇ ଗାତ ।

ବିହୁ ସମୟ ଉପସ୍ଥିତ ହେଲେ 'ବହାଗ ବିହୁ'ର ନାଚତଳିଟି ପ୍ରଥମେ ଠିକ୍‌ଠାକ୍ କରିବାକୁ ହୁଏ । ଗାଁ ମୁଣ୍ଡରେ ଥିବା ଚାଷଜମି ଚୈତ୍ର ବା ବୈଶାଖ ମାସରେ ଖାଲି ପଡିଥାଏ, ନହେଲେ ଗାଁ ମୁଣ୍ଡରେ ଥିବା ଖୋଲା ଜାଗାରେ, ଗଛତଳେ ଯୁବକ ଯୁବତୀମାନେ ବିହୁତଳି ବାଛିନେଇ ବିହୁ ପରିବେଶଣ କରିଥାଆନ୍ତି । ସେଥିପାଇଁ ଆଗରୁ ଯାଇ ଜାଗା ବାଛିଥାଆନ୍ତି । ବିହୁତଳିକୁ ଠିକ୍‌ଠାକ୍ କରିବା ପାଇଁ ଅନ୍ୟମାନଙ୍କୁ ଖବର ଦେବାକୁ ହେବ । ବିହୁତଳିରେ ଦୁବଘାସ ମାଡିଯାଇଛି, ନାଚୁଣିମାନଙ୍କର ଚିନ୍ତା ଆସିବା ସ୍ୱାଭାବିକ କଥା ।

ଚରାଯେ ଖାବରେଧାନ ସମନୀୟା
ଉପରି ପରିବର କନ;
ଅତି ସେନେହରେ ଆମାର ବିହୁ ତଲିତ
ଗଜିଛେ ଦୁବରି ବନ ।

କହୁ କହୁ ବିହୁ ଆସି ଉପସ୍ଥିତ ହେଲା । ପାଣିର ଲହଡିରେ ମାଛ ଉଠିଲେ ଯେପରି ଜଣା ପଡେନି ମଗର କି ଶିଶୁ କିନ୍ତୁ ମାଛ ଲହଡି ସହିତ ଉଠି ଆସିବା ନିଶ୍ଚିନ୍ତ ରୂପେ ସତ ସେହିଭଳି କାନରେ ଢୋଲର ଶବ୍ଦ ଶୁଣିଛି, ପେଁପାର ଶବ୍ଦ ଶୁଣିଛି, ବିହୁ ଉପସ୍ଥିତ ହେଲା ବୋଲି ସମସ୍ତେ ଆନନ୍ଦରେ ଅଧିର ହୋଇ ପଡନ୍ତି ।

ଉଜାଇ ଆହିଲେ ମାଛେ କି ମଗରେ
ଉଜାଇ ଆହିଲେ ଶିହୁ ;
କାନତେ ଢୋଲେଟି ମୁଖତେ ପେଁପାଟି
ପାଲେହି ବହାଗର ବିହୁ ।

କଥା ପ୍ରସଙ୍ଗରେ କବି ବିହୁ ପ୍ରତି ଥିବା ଆନ୍ତରିକତାକୁ ବୁଝାଇବାକୁ ଯାଇ ଅନ୍ୟ ଏକ କଥାର ଅବତାରଣା କରିଛନ୍ତି । ଘରର ଚାଳ ଉପରେ ପାଣି କଖାରୁ ଲଟି ବଡ଼ ହୋଇଗଲେ ଯେପରି ବ୍ୟସ୍ତ ହୋଇପଡ଼େ, ହାଣ୍ଡି ଭିତରେ ଗୁଡ଼ ବ୍ୟସ୍ତହୋଇ ପଡ଼େ, ସେମିତି ବହାଗର ବିହୁରେ ଲୋକମନ ସହିତ ଲୋକଦେହ ମଧ୍ୟ ପେଁପାର ମଧୁର ସ୍ୱର ଶୁଣି ବ୍ୟସ୍ତ ତଥା ଆନନ୍ଦିତ ହୋଇଥାଏ ।

ଚାଲତ ମଲଙ୍ଗିଲେ ଚାଳଦୈ କୋମୋରା
ଟେକେଲିତ ମଲଙ୍ଗେ ଗୁର ;
ବହାଗର ବିହୁଟେ ଗା ମଲଙ୍ଗିଲି
ଶୁନି ବିନନ୍ଦୀୟା ସୁର ।

---

ଗୋନ୍ଧତେଲ-ବାସ୍ନାତେଲ, ଦୁବରି-ଦୁବ, ବନ-ଜଙ୍ଗଲ, ଚାଳଦୈ କୋମରା - ପାଣିକଖାରୁ, ଟେକେଲି- ହାଣ୍ଡି, ଗୁରୁ-ଗୁଡ଼, ବିନନ୍ଦୀୟା - ସୁନ୍ଦର ।

ବିହୁର ଆନନ୍ଦରେ ବିହୁନାଚ ପରିବେଶଣ କଲାବେଳେ ଅନେକ ସମୟ ଧରି ନାଚ ଚାଲିଥାଏ । ଆନନ୍ଦ ଓ ବିଭୋରତା ଭିତରେ ସମୟର ଦୀର୍ଘତା ଜାଣିହୁଏନି, ଶରୀର କ୍ଲାନ୍ତ ହେଲେ ହେଁ ମନ ବଳ ପାଖରେ ଶରୀର ହାର ମାନିଥାଏ, ଯେଉଁଥିପାଇଁ ଯୁବକ ଯୁବତୀମାନେ ଅନେକ ସମୟ ଧରି ନାଚି ଚାଲିଥାଆନ୍ତି । ଆସାମର ଦେଓଧ୍ୱନୀ ନୃତ୍ୟରେ ନର୍ତ୍ତକୀର ଦେହରେ ଦେବୀ ଆସିଥାଆନ୍ତି ବୋଲି ସମସ୍ତେ ଭାବନ୍ତି । ତା'ପରେ ସେ ଆଉ ଅବଶ ନ ହୋଇ କେବଳ ନାଚି ଚାଲିଥାଏ । ସେହି ନାଚ ସମୟରେ ସେ ଐଶ୍ୱରିକ ଶକ୍ତି ଲାଭ କରିଥାଏ ବୋଲି ସମସ୍ତେ ଭାବିଥାଆନ୍ତି । କିଛି ସମୟପରେ ଝିଅଟି ମଞ୍ଚ ଉପରେ ମୂର୍ଚ୍ଛାଗଲେ ତା'ଠୁ ଦେବତା ଛାଡି ଚାଲିଯାଆନ୍ତି, ସେ ପୁଣି ମଞ୍ଚଉପରୁ ଓହ୍ଲେଇ ଆସିଥାଏ । ବିହୁ ପରିବେଶଣ କରୁଥିବା ଯୁବକକୁ 'ଦେଓଧ୍ୱନୀ' ସହିତ ତୁଳନା କରାଯାଇଛି । ଦେଓଧ୍ୱନୀ ନୃତ୍ୟ ସାଧାରଣତଃ ନାରୀମାନେ ପରିବେଶଣ କରନ୍ତି ମାତ୍ର ଯୁବକଟି ଅଧିକ ସମୟ ବିହୁରେ ଢୋଲ ବଜାଇ ନାଚୁଥିବାରୁ ତା'କୁ ଲକ୍ଷ୍ୟକରି କୁହାଯାଇଛି-

ବିହୁ ଆନନ୍ଦୀୟା ବିହୁ ବିନନ୍ଦୀୟା
ବିହୁର ମୌ ମିଠା ମାତ ;
ବିହୁର ବା ଲାଗି ବିହୁଆ କ କାଇର ଐ
ଦେଓଧ୍ୱନୀ ଲାଗିଛେ ଗା'ତ ।

ବିହୁ ପର୍ବରେ ପ୍ରାପ୍ତବୟସ୍କ ଯୁବକ ତଥା ଯୁବତୀମାନେ ଢୋଲର ତାଳେ ତାଳେ ଦଳଦଳହୋଇ ନାଚି ଥାଆନ୍ତି । ଏହି ସମୟରେ କାଶତଣ୍ଡୀ ଗଛରେ ପତ୍ର ମେଲିଥାଏ ଓ ଫୁଲ ଫୁଟିଥାଏ । ବିହୁଗୀତରେ ଏହି ଦୃଶ୍ୟକୁ ଅପୂର୍ବ ରଂଗରେ ରଞ୍ଜିତ କରାଯାଇଛି-

ବିହୁରେ ବିରିନା ପାତ ଐ ଲାହରୀ
ବିହୁରେ ବିରିନା ପାତ ;
ଗାଭରୁ ଶୋଆଲୀନାଚେ ଜୁମେ ଜୁମେ
ଚ'ତର ବିହୁ ଲାଗିଛେ ଗା'ତ ।

କାର୍ତ୍ତିକ ବିହୁ ଏବଂ ମାଘ ବିହୁଠାରୁ ବହାଗ ବିହୁର ଆଦର ବେଶି । ଏହି ବିହୁରେ ଖାଦ୍ୟପେୟଠାରୁ ନୃତ୍ୟଗୀତ ତଥା ବିଭିନ୍ନ ପ୍ରକାରର ଖେଳ କସରତ ଅସମୀୟାର ମନରେ ଅସରନ୍ତି ଆନନ୍ଦ ଭରି ଦେଇଥାଏ । ସେଥିପାଇଁ ବହାଗ ବିହୁରେ ନିଜ ମନର ଭାବକୁ ପ୍ରକାଶ କରୁ କରୁ ଆସାମରେ ଦୈନନ୍ଦିନ ଜୀବନରେ ବ୍ୟବହୃତ କେତୋଟି ଜିନିଷର ଉଦାହରଣ ମଧ୍ୟ ଦିଆଯାଇଥାଏ । ଅସମୀୟା ନାରୀର ହାତୀଦାନ୍ତର ପାନିଆଁ ଏବଂ ବର୍ହମଥୁରି ଯେ କେତେ ପ୍ରିୟ, ତାହା ବିହୁଗୀତରେ କୁହାଯାଇଛି । ବହାଗ ବିହୁ ଆସିଲେ 'ଅଣ୍ଡାକୁ ଅଣ୍ଡା' ଲଗାଇ 'କନି ଯୁଦ୍ଧ' ବା ଅଣ୍ଡା 'ଯୁଦ୍ଧ' କରି ପରସ୍ପର ମଧ୍ୟରେ କିଏ କାହାର ଅଣ୍ଡାକୁ ଆଗ ଫଟାଇବ ଭଳି ଆମୋଦ ଦାୟକ ଖେଳ ଗାଁର ଯୁବକମାନେ ଖେଳି ଥାଆନ୍ତି । ନାରୀମାନେ ନିଜର ଦରକାରୀ ଜିନିଷ ହିସାବରେ ହାତୀଦାନ୍ତ ପାନିଆଁ ଏବଂ ବର୍ହମଥୁରି

ଗଛର ପତ୍ର ପାଇଁ ନିଜର ପ୍ରିୟ ଲୋକଟିକୁ ବରାଦ ଦେଇଥାଆନ୍ତି । ବର୍ହମଥୁରି ଗଛର ପତ୍ରକୁ ଆସାମରେ ନାରୀମାନେ ପାନପତ୍ର ସହିତ ମିଶେଇ ଖାଇବାକୁ ଅଧିକ ଭଲ ପାଆନ୍ତି । ଏହା ବିହୁଗୀତରୁ ବାଦ୍ ପଡିନାହିଁ ।

ଆରୁବେଲିର ବିହୁଟି ଚେରେଙ୍ଗା ବେରେଙ୍ଗା
ଚ'ତର ବିହୁତ ଯୁଁଜାବର କନି ;
ଲୁଇତର ପାରରେ ବର୍ହମଥୁରି ଆନି ବା
ହାତୀଦାନ୍ତର ଆନିବା ଫନି ।

ବିହୁପର୍ବ ପ୍ରତ୍ୟେକ ଅସମୀୟାର ଶିରା ପ୍ରଶିରାରେ ସତେ ଅବା ଆପଣାର ହୋଇ ମିଶିଯାଇଛି । ମଣିଷ ବଂଚି ରହିଲେ ବିହୁପର୍ବ ପାଳନର ଆବଶ୍ୟକତା ତା'ର ଜୀବନରେ ନିହାତି ଦରକାର କାରଣ ତା' ଜୀବନକୁ ସୁନ୍ଦର ଓ ମଧୁର କରିବାରେ ବିହୁର ଦାନ ଅପରିହାର୍ଯ୍ୟ । ଗରୀବ ଶ୍ରେଣୀର ଲୋକ କର୍ତ୍ତବ୍ୟ ତାଡ଼ନାରେ ଗୃହିଣୀକୁ ବିହୁତଳିକୁ ଠିକ୍ ସମୟରେ ପଠାଇ ପାରିନି, ନିଜେ ବି ଯାଇପାରିନି । ଅନ୍ୟଜଣେ ତା'କୁ ବିହୁର ଆନନ୍ଦ ଉପଭୋଗ କରିବା ପାଇଁ ଆଭାସ ଦେଇଯାଇଛି । ଆଜି ବିହୁ ପର୍ବ, ତମେ ଅସମୀୟା, ବିହୁତଳିରେ ତୁମେ ସ୍ୱାମୀ ସ୍ତ୍ରୀ ଦୁଇଜଣ ଆସି ନାଚରେ ଭାଗନେବ, ନହେଲେ ତୁମ ସ୍ତ୍ରୀକୁ ପଠାଇଦେବ ।

"କଲୀୟା କଚୁରେ ଶିୟା ଐ ଦେଓତା
କଲୀୟା କଚୁରେ ଶିୟା ;
ଜୀୟାଇ ଥାକୋଁମାନେ ତୋମାରେ ତିରୋତା
ବିହୁ ଲୈ ପଠିୟାଇ ଦିୟା" ।

ସେ ପୁଣି କହୁଛି- ଧାନ କିଆରୀ ପଟେ ତୁ ସୁନ୍ଦରୀ ଯିବୁନି କାରଣ ଧାନଗଛ ଲାଗିଲେ ତୋ ଦେହ କଟି ଯାଇପାରେ । ତେଣୁ ବିହୁତଳିକୁ ସିଧା ରାସ୍ତାରେ ଯା । ଗାଁ ମୁଣ୍ଡ ବରଗଛ ତଳେ ବିହୁ ନାଚିବା ପାଇଁ ବିହୁତଳି ଠିକ୍‌ଠାକ୍ ହୋଇଛି । ବିହୁତଳି ତୁମ୍ଭମାନଙ୍କର ଆସିବା ବାଟକୁ ଅନେଇ ରହିଛି-

ଧାନନି ଧାନନି ନେ ଯାବି କାଞ୍ଚନୀ
ଧାନର ପାତେ କାଟିବ ଗା ;
ବଡ଼ରେ ତଳତେ ବିହୁତଳି ପାତିଛେ
ବିହୁ ମାରିବ ଲୈ ଯା ।

ବିହୁ ଅସମୀୟାର କେତେ ପ୍ରିୟ, ଏ କଥା ହୁଏତ କେହି କଥାରେ କହି ବୁଝାଇ ପାରିବେନି ମାତ୍ର 'ବିହୁ' ନାଁ ଶୁଣି ଲୋକମାନେ ସବୁକିଛି ଭୁଲି ଯାଆନ୍ତି । ଏଥିରେ ନିଜର

---

ଚେଙ୍ଗେଙ୍ଗା-ନଳମିଶ୍ରା, କନି-ଅଣ୍ଡା, ଫନି-ପାନିଆ, କଳୀୟାକଚୁ-କଳାସାରୁ, ଶିୟା-ଶିର, ତିରୋତା - ସ୍ତ୍ରୀ

କିଛି ଦୋଷ ନାହିଁ, ବିହୁପର୍ବ ପ୍ରତି ଥିବା ଆନ୍ତରିକତା ହିଁ ଏହାର ନିଦର୍ଶନ । କେହିଜଣେ ଲୋକ ଭଗବାନଙ୍କର ନାମ ସଂକୀର୍ତ୍ତନଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାରର ଗୀତ ଗାଇବାରେ ବେଶ୍ ଧୁରନ୍ଧର ଥିଲା । ତା'ର ସ୍ମରଣଶକ୍ତି ଅଧିକ ପ୍ରଖର ଥିବାରୁ ସେ ସବୁ ମନେ ପକାଇ ଗାଇ ପାରୁଥିଲା ମାତ୍ର ବିହୁ ସମୟ ଉପସ୍ଥିତ ହେବାରୁ ଦିନରାତି ବିହୁର ଆନନ୍ଦ ତଥା ବିହ୍ୱଳତା କଥାକୁ ଭାବି ଭାବି ସେ ଅନ୍ୟସବୁ କଥା ଭୁଲିଗଲା ।

ନାମରୋ ଆଛିଲୋଁ ଘାଇ ସମନୀୟା
ଗୀତରୋ ଆଛିଲୋ ଘାଇ ;
ନାମୋ ପାହରିଲୋଁ ଗୀତ୍ରୋ ପାହରିଲୋଁ
ବହାଗର ବିହୁଟି ପାଇ ?

କେହିଜଣେ ଲୋକ ନିଜର ଗୃହିଣୀକୁ ସାଂଗରେ ନେଇ ତେଲଦୀପ ଧରି ବିହୁନାଚ ଦେଖିବା ପାଇଁ ଯାଉଛି । ଅନ୍ଧାର ରାତି ହାତରେ ଲଣ୍ଠନ କି ଟର୍ଚ୍ଚ ନାହିଁ, ତଥାପି ବହୁାଙ୍ଗ ବିହୁର ନାଚ ଦେଖିବା ପାଇଁ ମନର ଆନ୍ତରିକତା ଓ ଆଗ୍ରହକୁ ବରୁଆ ଓ ବରୁଆଣି ଚାପି ରଖି ପାରୁନାହାନ୍ତି, ସେଥିପାଇଁ ସେ ତେଲଦୀପ ନେଇ ରାସ୍ତା ଦେଖି ଦେଖି ବିହୁତଳିରେ ଯାଇ ପହଞ୍ଚିଛନ୍ତି । ଲୋକକବିର ରଚନାରେ କୌଣସି କୃତ୍ରିମତା ନାହିଁ । ସରଳ ତଥା ଅନାବିଳ ଭାଷାରେ ଗାଉଁଲିଆ ପରିବେଶକୁ ନିଜ ଗୀତଗୁଡ଼ିକ ଭିତରେ ସେ ସୁନ୍ଦର ଭାବରେ ଆଙ୍କି ଦେଇଛନ୍ତି । ସେଥିପାଇଁ ବିହୁଗୀତ ଜୀବନ୍ତ ଓ ହୃଦୟସ୍ପର୍ଶୀ ହୋଇଛି ।

ଇ ବୋଲେ ବରୁଆ ସି ବୋଲେ ବରୁଆ
ବରୁଆ କେହେଲେ ଗଲ ;
ତେଲର ଚାକି ହାତତ ଲୈ ବରୁଆନୀକ ଆଗତ ଲୈ
ରାତି ବିହୁ ଚାବଲୈ ଗଲ ।

ରାତି ବିହୁରେ ଯୁବକ ଯୁବତୀମାନେ ମନଖୋଲା ନାଚ ନାଚି ନିଜର ମନୋଭାବକୁ ପରସ୍ପର ଆଗରେ ପ୍ରକାଶ କରିଥାଆନ୍ତି । ଏହା ଅତ୍ୟନ୍ତ ଆକର୍ଷଣୀୟ ତଥା ରୋମାଞ୍ଚକର ହୋଇଥାଏ । ଲୋକକବି ଏହି କଥାକୁ ସ୍ପଷ୍ଟଭାବେ ଲୋକଗୀତରେ କହି ନିଜର ଉଚ୍ଚମନୋବୃତ୍ତିର ପରିଚୟ ଦେଇଛନ୍ତି ।

ଯେଉଁ ବିହୁ ଏତେ ଆନନ୍ଦ, ଏତେ ଖୁସୀ ବାଣ୍ଟିଦେଇ ଥାଏ, ସେ ବିହୁକୁ ଛାଡିବାକୁ କାହାର ବା ଇଚ୍ଛା ହେବ ? ଯେ କୌଣସି ପ୍ରକାରରେ ଯଦି ବିହୁକୁ ରଖି ହୁଅନ୍ତା, ଅସମୀୟା ନାରୀ ନିଜର ଅତି ପ୍ରିୟ ଜିନିଷକୁ ନେଇ ବିହୁକୁ ସବୁଦିନ ନିଜ ପାଖରେ ରଖନ୍ତା କାରଣ ବିହୁ ତା' ପାଇଁ ସବୁଠୁ ପ୍ରିୟ । ସେଥିପାଇଁ ସାରା ରାତି ନାଚି ନାଚି ଟିକିଏ ବି ତା'ର ବିରକ୍ତି ଆସେନି କି କଷ୍ଟ ଲାଗେନି କାରଣ ବିହୁ ପୁଣି ବର୍ଷକ ପାଇଁ ବିଦାୟ ନେଇ ଚାଲିଯିବ ।

---

ଚାକି-ଦୀପ, ବରୁଆ-ଏକ ସାଲଙ୍ଗା ।

ଏ ପର ଦୁପର କରି ନିଶା ପାରେ ହବ
ଆମାର ବିହୁତ ଆମନି ନାଇ ;
ରାତିର ପରେ ପରେ ଫେଁଚାଇ କରୁଳିୟାଇ
ଆମାର ବିହୁ ଭାଙ୍ଗୋ ତା ନାଇ ।

ଶେଷରେ ବିହୁଟି ଯେତେବେଳେ ବର୍ଷକ ପାଇଁ ବିଦାୟ ନେଉଛି, ମନ ଭିତରେ ଦୁଃଖ ଅସହ୍ୟ ହୋଇ ଉଠୁଛି । ହାତରୁ ବିହୁ ଯେପରି ଖସି ଚାଲି ଯାଉଛି । ବିହୁକୁ ବିଦାୟ ଦେଲାବେଳେ ଅସମୀୟାଟି କହୁଛି ପର୍ବତ ଉପରେ ଢେକିୟା ଶାଗ ମୋଡି ମୋଡି ହୋଇ ଲଟେଇଛି, ତା'କୁ ତୋଳିବା ପାଇଁ ମନ ହେଉଛି । ସେହିପରି ବହାଗ ବିହୁକୁ ହାତମୁଠାରେ ରଖିବା ପାଇଁ ମନ ହେଉଛି କିନ୍ତୁ ସେ ହାତରୁ ଖସି ଖସି ଯାଉଛି ।

ପର୍ବତର ଢ଼େକୀୟା ଲିହିରି ଲିହିରି
ଦେଖିଲେ ଲବର ମନ ଯାୟ ;
ଅତି ସେନେହର ବହାଗର ବିହୁଟି
ହାତତେ ମଲଙ୍ଗି ଯାୟ ।

ବିହୁଗୀତ ଗୁଡିକର ଭାଷା ସରଳ, ଭାବ କୋମଳ ଏବଂ ବିହୁପ୍ରତି ଅସମୀୟା ଲୋକର ଥିବା ଆନ୍ତରିକତା ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ବ୍ୟାପୀ ଯାଇଛି, ସେ ଖୁସୀରେ ପିନ୍ଧିଥିବା ନୂଆ ବସ୍ତ୍ରଟିକୁ ବାରମ୍ବାର ଅନେଇ ରହେ । ସତରେ ସେ କପଡ଼ାଟି କିପରି ବିଭିନ୍ନ ରଂଗର ଫୁଲରେ ଚିକ୍‌ଚିକ୍ କରୁଛି, ବିହୁ ସମୟର ପବନରେ ଦେହରୁ କପଡ଼ା ଉଡ଼ି ଉଡ଼ି ଯାଉଛି । ସେ ଚାରିଓଁଳି ନଖାଇ ରହିପାରିବ ଯଦି ଏହି ବିହୁର ଆନନ୍ଦ ସବୁବେଳେ ସେ ପାଇବ ।

ବିନା କାପର ଖନିଫୁଲେ ଢକେମକି
ଭରିଯାଏ ବତାହର ଲଗତ
ନେ ଖାୟ ଚାରିସାଜି ଥାକିବ ପାରୋଁ ମଇ
ବହାଗର ବିହୁରେ ଲଗତ ।



ପର-ପ୍ରହର, ଆମନି - ବିରକ୍ତି ।

# ଉପସଂହାର

ଆସାମର ଅର୍ଥନୈତିକ ଅବସ୍ଥାର ମୂଳ ସମ୍ବଳ ହେଉଛି କୃଷି । ବିହୁ ଆସାମର ଅର୍ଥନୈତିକ ଏବଂ କୃଷିର ସମନ୍ୱୟ ସାଧନରେ ଗୁରୁତ୍ୱ ଆରୋପ କରିଛି । ବର୍ତ୍ତମାନର ଅସମୀୟା ସମାଜ ବ୍ୟବସ୍ଥାରେ କିଛିଟା ସାମାଜିକ ପରିବର୍ତ୍ତନ ଘଟିଛି । ଆଜିର ଅସମର ସଂସ୍କୃତି, ଅର୍ଥନୀତି ଏବଂ ରାଜନୀତିରେ ନୂଆ ହାଓ୍ୱା ପ୍ରବେଶ କରିଛି । ବିହୁରେ ମଧ ରାଜନୀତିର ପ୍ରଭାବ ପଡିଛି । ବର୍ତ୍ତମାନ ମୁକ୍ତ ପ୍ରାଙ୍ଗଣର ବିହୁ ବିହୁନାଚ ପ୍ରତିଯୋଗୀତାକୁ ଉନ୍ନୀତ ହୋଇଛି ।(୧)

ପ୍ରାଚୀନ କାଳରେ ବିହୁ କହିଲେ ହଳ ବୋହୁଥିବା ଗୋରୁ କେତୋଟି ଏବଂ ଚାଷଜମିର କଥା ମନେପଡ଼େ । ଗୋରୁ କେଇଟା ଏବଂ ଚାଷଜମିକୁ ଆଗରେ ରଖି, ଅସମୀୟା ଜାତିଟିର ରଂଗ, ରହସ୍ୟ ଏବଂ ତିନୋଟି ବିହୁ ଅସମୀୟାର ପ୍ରାଣଠୁ ବଳି ପ୍ରିୟ ।

ବିହୁ ଉତ୍ସବ ଉତ୍ପତ୍ତି ମୂଳରେ ଅଷ୍ଟ୍ରିକ୍ ଏବଂ ତିବ୍ୱତବର୍ମୀ ଭାଷୀମାନଙ୍କର ଅବଦାନକୁ ଏଡ଼ି ଦିଆଯାଇ ନପାରେ କାରଣ ବିହୁ ଉତ୍ସବରେ ଅନେକ ଅଣ୍ଡାକୁ ଅଣ୍ଡା ଲଗେଇ 'କନିଯୁଞ୍ଜ' କରିଥାଆନ୍ତି । ଅଷ୍ଟ୍ରିକ୍‌ମାନେ ଅଣ୍ଡାକୁ ପବିତ୍ର ଏବଂ ପ୍ରଜନନର ପ୍ରତୀକ ହିସାବରେ ବିଶ୍ୱାସ କରିଥାଆନ୍ତି । ଆସାମର ଲୋକ ବିଶ୍ୱାସରେ ଅଣ୍ଡାଯୁଦ୍ଧର ଅର୍ଥ ହେଲା ଶସ୍ୟବୃଦ୍ଧି । ବିହୁର ଉଦ୍ଦେଶ୍ୟ ଥିଲା ପ୍ରଜନନ ଜରିଆରେ ପୃଥିବୀକୁ ଶସ୍ୟଶାଳିନୀ କରିବା ମାତ୍ର ଉତ୍ପାଦନ ପ୍ରକ୍ରିୟାର ଉନ୍ନତିର ସଂଗେ ସଂଗେ ସମାଜର ଶ୍ରମଜୀବି ଏବଂ ଅନ୍ୟର ଶ୍ରମ ଉପରେ ନିର୍ଭରଶୀଳ- ଏହିଭଳି ଦୁଇ ଭାଗରେ ବିଭକ୍ତ ହେବାପରେ ଦୁଇଟି ସମାଜରେ ବିହୁ ପାଳନର ନୀତିନିୟମର ପରିବର୍ତ୍ତନ ହେଲା । ଶ୍ରମଜୀବି ସମାଜର ଲୋକମାନେ ସେହିକାଳରୁ ଏକ ପ୍ରକାରର ବିହୁ ଉତ୍ସବ ଚାଷଜମି ବା ପଡିଆରେ ପାଳନ କରି ଆସୁଥିଲାବେଳେ ଅନ୍ୟର ଶ୍ରମ ଉପରେ ନିର୍ଭର କରୁଥିବା ତଥାକଥିତ ସଂସ୍କାରଶୀଳ ସମାଜ ନିଜ ସମାଜକୁ ଖାପ ଖୁଆଇଲା ଭଳି ବିହୁ ଉତ୍ସବର ପରିବର୍ତ୍ତନ କରିଲେ । ଚାଷ ପଡିଆର ବିହୁ ଉତ୍ସବକୁ ଛାଉଣୀ ତଳକୁ ଆଣିଲେ । ତେଣୁ ରାଜା ମହାରାଜା ବା ସମ୍ଭ୍ରାନ୍ତ ବଂଶୀୟମାନଙ୍କର ନିଜର ଅଗଣାରେ ବା ମଞ୍ଚ ଉପରେ ପରିବେଶଣ କରୁଥିବା ବିହୁକାର୍ଯ୍ୟ ହିଁ ତା'ର ଉତ୍କୃଷ୍ଟ ଉଦାହରଣ । (୨)

ବିହୁ ହେଉଛି ପ୍ରେମ ଏବଂ ପ୍ରୀତି ତଥା ପ୍ରଣୟର ଉତ୍ସବ, ଯୌବନ ଓ ଆନନ୍ଦର ଉତ୍ସବ । ବିହୁ ନୂତନତା ସୃଷ୍ଟିର ଉତ୍ସବ, ସନ୍ଧ୍ୟା ହେବା ସଂଗେ ସଂଗେ ଗାଁର ଯୁବକ ଯୁବତୀମାନେ ଏକତ୍ରିତ ହୋଇ ଗାଁର ମୁକ୍ତ ପ୍ରାଙ୍ଗଣରେ ବିହୁନାଚି ସାରା ରାତି କଟାଇ ଦିଅନ୍ତି । ଡଃ ପ୍ରଫୁଲ୍ଲ ଦତ୍ତ ଗୋସ୍ୱାମୀଙ୍କ ଭାଷାରେ ବିହୁନାଚ ଯୁବକ ଯୁବତୀମାନଙ୍କ ଭିତରେ ଚଳିଥାଏ, ବିହୁତଳିରେ ଯୁବତୀମାନେ ନାଚି ଥାଆନ୍ତି, ଯୁବକମାନେ ଢୋଲ୍, ପେଁପା, ତାଳ ଆଦି ବଜାଇଥାଆନ୍ତି । ପ୍ରତ୍ୟେକ ନାଚର ପୂର୍ବରୁ ଯୁବକମାନେ ଗୋଟିଏ ଗୋଟିଏ ଗୀତ ଗାଇଥାଆନ୍ତି । ଢୋଲ, ପେଁପା ବଜାଇ ଯୁବକମାନେ ନାଚିଲାବେଳେ ଯୁବତୀମାନେ ନାଚି

ନାଚି ଗୀତ ମାଧ୍ୟମରେ ମନର ଭାବକୁ ପ୍ରଶ୍ନ ଉତ୍ତର ଛଳରେ କହିଥାଆନ୍ତି । ଯୁବକ ଯୁବତୀମାନେ ଖରା ବର୍ଷାରେ ମାଛ ଧରିଲାବେଳେ ତଥା ଅନ୍ୟାନ୍ୟ କାମବେଳେ ନିଜ ମନର ଭାବ ପ୍ରକାଶ କରିଥାଆନ୍ତି । କୋଡ଼ିଏ ତିରିଶ ବର୍ଷ ତଳେ ଯୁବକ ଯୁବତୀମାନେ ଜୟ ଜୟ ଗାନ କରି ଗୀତ ମାଧ୍ୟମରେ ପ୍ରଶ୍ନ ତଥା ଉତ୍ତର ଦିଆ ଦେଇ ହୋଇ ମନର ପ୍ରଣୟ ଭାବ ଆରମ୍ଭ କରୁଥିଲେ । ମା' ବାପା ଜାଣି ପାରିଲେ ସେମାନଙ୍କୁ ବାହା କରି ଦେଉଥିଲେ । ବହୁ ସମୟରେ ଯୁବକଯୁବତୀ ମିଶି ଦୂର ସଂପର୍କୀୟ ବନ୍ଧୁ ଘରକୁ ଯାଇ ନିଜ ମନର ଭାବ ପ୍ରକାଶ କରୁଥିଲେ । ସେତେବେଳେ ଗ୍ରାମବାସୀମାନେ ଖବର ନେଇ ସେମାନଙ୍କୁ ବିବାହ କରି ଦେଉଥିଲେ । ଏହା ଥିଲା ବିହୁର ପ୍ରକୃତପ୍ରେମ ଏବଂ ଯୌନାଚାରର ସ୍ୱରୂପ । ଏହି ବିହୁକୁ 'ରାତିବିହୁ' କୁହାଯାଇଥାଏ । ବିହୁର ପ୍ରକୃତ ରୂପ ଖୋଜି ବସିଲେ 'ରାତିବିହୁ'ରେ ହିଁ ତା'ର ସ୍ୱରୂପ ଦେଖିବାକୁ ମିଳେ ।(୩)

ଆଲୋଚକ ଡ଼ଃ ଲୀଳାଗଗୈଙ୍କ ଭାଷାରେ ''ବିହୁ ବୁଲିଲେ ଗା ସାଥଖନ-ଆଠଖନ ନକରେ । ଅସମୀୟା ନାଇ ବୁଲିଲେଓ ହୟ । କିନ୍ତୁ ତାହାନି ଚ'ତର ବିହୁ ଆରୁ ବହାଗର ବିହୁ ବୁଲିଲେ ଦୁ'ଟା ସୁକୀୟା ବିହୁକ ବୁଜାଇଛିଲ, ଗୋଟେଇ ଚ'ତର ମାହଟୋ ଡେକା ଗାଭରୁୟେ ବିହୁ ପାତିଛିଲ । ଏଇ ବିହୁତ ଯୌନାଶକ୍ତି ପୂର୍ଣ୍ଣ ଗୀତ ଗାଇ ଡେକା ଗାଭରୁୟେ ମନର ଭାବ ବିନିମୟ କରାଟୋ ଏକୋ ଆଚରିତ ନାଛିଲ'' ।(୪)

ଆସାମରେ ଅତୀତ କାଳରୁ ବସବାସ କରୁଥିବା ମିଶିଂ, ଦେଉରୀ, ଚୁଟୀୟା, କଚାରୀ, ଲାଲୁଂ, ତିଓ୍ୱା ଆଦି ଆଦିବାସୀମାନଙ୍କ ଭିତରେ ନିଜ ନିଜର ଲୋକଗୀତ ଏବଂ ଲୋକନୃତ୍ୟ ଥିଲା, ଏବେ ମଧ ଅଛି । ଅସମୀୟାର ମୁଖ୍ୟ ଲୋକସଂଗୀତ ବିହୁଗୀତ ଏବଂ ନୃତ୍ୟରେ ଏହାର ପ୍ରଭାବ ସଂପୂର୍ଣ୍ଣରୂପେ ପଡ଼ିଛି । ଉଦାହରଣ ସ୍ୱରୂପ କଚାରୀ ଏବଂ ସୋନୋଓ୍ୱାଲ କଚାରୀମାନଙ୍କର ଲୋକଗୀତ ସମୂହ ବିହୁଗୀତରେ ଏହିଭଳି ଭାବେ ପ୍ରବେଶ କରିଛି ଯେପରି ଆସାମର ଆଦିମ ଜନଜାତି ମାନଙ୍କ ମଧରେ ଚୈତ୍ରବିହୁର ଚିର ଯୌବନା ପ୍ରେମପ୍ରୀତି ଆସି ଅନ୍ତର ଭିତରେ ସ୍ପନ୍ଦନ ସୃଷ୍ଟି କରି ଛାତିରେ କଂପନ ଆଣିଥାଏ । ଆଦିମ କାଳରୁ ପ୍ରକାଶ ଭଂଗୀ ମାଧମରେ ଏହାର ନମୁନା ଭଲଭାବେ ଦେଖିବାକୁ ମିଳିଥାଏଁ । ଉଦାହରଣ ସ୍ୱରୂପ-

ଚିଲିଁ ଚିଲ ଚିଲିଙ୍ଗା ବୈ ଘରତ ଯାଂ
ଘୂନ ଘୂନ ଘୂରିନୋ ଚାଂ ସେନାଇଟି
ଫୁଲ ଫୁଲ ଫୁଲିଁ ଆଛା ସେନାଇଟି
ଲାଦୈ ଲାଦୈ ମୁ-ଧନଟି
ପଦୁମ ପାତର ଢ଼ିଚନୀ
ଜାକର ମାଜର ମାଚନୀ
କୈରାଇକୈ ସାବ୍ନି
ଧିନ୍ ଜାଂ ପିନ୍ଂ ପଂ।

ତୋକେ ଐ ପାବି ନାଂ କାହାନି
ଚିଲ ଚିଲ ଚିଲିଙ୍ଗା ବୈ ଘରତ ଐ ପଂ।

ଆହୁରି ସେହିଭଳି ପ୍ରେମିକ ଯୁବକର ଉକ୍ତିରେ ଆଦରର ଯୁବତୀ ଜଣକ ବିହୁଗୀତ ସ୍ୱରରେ ଏହିଭଳି ଉତ୍ତର ଦେଇଥାଏ-

ମୁ- ଧନ କଲିୟା
ମୁ- ଧନ ଚାୟେଙ୍ଗର ଆଲିୟା ଐ ବଲିୟା
ମୁ- ଧନ ନୈ ଘାଟେ ଆନିୟାଇ ଯାୟ
ମୁ- ଧନ ସନ୍ଦଲେ ସଫଲେ
ମୁ- ଧନ ର'ଦେ ବରଷୁଣେ
ମୁ- ଧନ ହେଙ୍ଗୁଲୀ ରହଣେ
ମୁ- ଦନ ଚିପୁଂଟି ବଜାୟେ ଯାୟ
ମୁ- ଧନ ଆଗୌ ବାଟ ତୋମାଲୈ ଚାୟ।

ଜନଜୀବନର ଅଭିବ୍ୟକ୍ତି ଗୁଡିକ ପ୍ରାଚୀନ କାଳରୁ ପ୍ରଚଳିତ ଗୀତଗୁଡିକରେ ସ୍ପଷ୍ଟହୋଇ ଉଠିଛି। ଏଥିରେ ବିଭିନ୍ନ ସମୟର ଜନଜୀବନର ଗୋଟିଏ ଗୋଟିଏ ଅଭିବ୍ୟକ୍ତି ଫୁଟି ଉଠିଛି। ଯେପରି -

ଜିଗୌ ବାଂ ଡେକେରୀ
ଜିଂ ଯାଂ ଡେକାଟି
ନାଚୋନାଟି କାଚୋନାଟି
କନଚେଂ ଡେକାଟି ଚାଂ
ବୟସ ଗ'ଲ ଉଟିୟାଇ
ବେଲି ଗ'ଲ ଲହିଯାଇ
ଔ ବାଂ ନାଚନୀ ନାଇ। (୫)

ବିହୁଗୀତ ଅସମୀୟା ଲୋକସାହିତ୍ୟର ଗୋଟିଏ ଅମୂଲ୍ୟ ସଂପଦ। ଏହାର୍ ହୃଦୟରେ ଜାତିର ପ୍ରାଣର ସ୍ପନ୍ଦନ, ଜୀବନର ଇତିହାସ ଏବଂ ସମାଜର ପ୍ରତିଛବି ଅଛି। ଏହାର ଭାଷା ସରଳ, ଛନ୍ଦ ସାବଲୀଳ, ସ୍ୱର ମନୋମୋହକ ଅଟେ। ଅସମୀୟା ନାରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର କଥା ବିହୁଗୀତର ତାଳେ ତାଳେ ଫୁଟି ଉଠିଛି। ବିହୁତଳିର ଆକର୍ଷଣକୁ ଏଡ଼ି ନ ପାରି ନାରୀମନର ଆନନ୍ଦ ବେଶ ପୋଷାକ ତଥା ସୌନ୍ଦର୍ଯ୍ୟ ଚର୍ଚ୍ଚା ମାଧ୍ୟମରେ ଫୁଟି ଉଠିଥାଏ।

ଘୂରେଇ ପିନ୍ଧିଲି ହାତର ଗାମ୍ଖାଖାରୁ
ଭିଡି ବାନ୍ଧିଲି ମୁଁ ଚୂଡ଼ି ;
ଦର୍ପଣରେ ଦେଖି ବଡ଼ଟିପା ମାରିଲି
ବିହୁ ପାଇଁ ବାହାରିଯିବି ବୋଲି। (୬)

ମଣିଷର ଆନନ୍ଦ ସହିତ ଗୋରୁମାନଙ୍କର ପୂଜା ଅର୍ଚ୍ଚନା ତଥା ଆଦର କୃଷି ସଭ୍ୟତାର ଜ୍ୱଳନ୍ତ ପ୍ରମାଣ । ଗୋରୁ ବିହୁଦିନ ସକାଳୁ ଗୋରୁମାନଙ୍କ ଦେହରେ ଲାଉ, ବାଇଗଣ, କଲରା, ପାଣିକଖାରୁ ଆଦି ଛୋଟ ଛୋଟ ଗୁଣ୍ଡ କରି ଗୋରୁ ଦେହରେ ଘଷିବା ସଂଗେ ସଂଗେ ଗାଧୋଇଦେବା ପରେ ବିଭିନ୍ନ ପ୍ରକାର ପନିପରିବା ଗୋରୁଗାଈମାନଙ୍କୁ ଖାଇବାକୁ ଦିଆଯାଇଥାଏ । ଏହି ସମୟରେ ଲାଉ ଖା, ବାଇଗଣ ଖା, ବର୍ଷକୁ ବର୍ଷ ବଢ଼ି ଯା ଗୀତ ଗାଇ ଆଶୀର୍ବାଦ ଦିଆଯାଇଥାଏ ।

ବିହୁଗୀତ ଗୁଡ଼ିକରେ ପଶୁପକ୍ଷୀର ବର୍ଣ୍ଣନା ପ୍ରସଙ୍ଗରେ ଲୋକକବିମାନେ ପରୋକ୍ଷଭାବେ ଚତୁରତା ସହିତ 'ନାଁଦିଆ' ଭଳି ଶବ୍ଦର ପ୍ରୟୋଗ କରିଛନ୍ତି, ଏହା ମାଧ୍ୟମରେ କବିର ପାଣ୍ଡିତ୍ୟର ପରିଚୟ ମିଳିଥାଏ । ସେ ନିଜର ପରିଚୟ ଦେଇ କହୁଛି ମୁଁ ଆକାଶରେ ଥାଏ, ପାତାଳରେ ଚରେ, ପହରେ ଦି ପହରବେଳେ ମୁଁ ଡାକୁଥାଏ । ପରୋକ୍ଷଭାବେ ନିଜର ପରିଚୟ ଦେଇ ସେ ଉତ୍ତରକୁ ଅପେକ୍ଷା କରିଛି । ସ୍ନେହର ପ୍ରିୟା ତାକୁ ଛାଡ଼ିଗଲା, ଏବେ ସେ କାହାକୁ ବା ଦୋଷ ଦେବ ?

ଥାଁକୋ ମଇ ଆକାଶ ତ ଚରୋଁ ମଇ ପାତାଳତ
ପରେ ପରେ ଦି ଯାଉଁ ଡାକ ;
ଲେରେଲା ସାଦରର ଧନେ ତୋ'କ ଏରିଲେ
ଏତିୟା ଦୁଶିଛା କାକ ।

ଅସମୀୟା ନାରୀର ଅଳଙ୍କାର ତଥା ବେଶ ପରିପାଟୀର ବର୍ଣ୍ଣନା କ୍ଷେତ୍ରରେ ଅସମୀୟା ଲୋକକବି ଅତ୍ୟନ୍ତ ସିଦ୍ଧହସ୍ତ । କେହି ଜଣେ ନାରୀର ଶାଶୂ ଗଳାରେ ସୁନା ଏବଂ ମୁକ୍ତାର ଅଳଙ୍କାର ପିନ୍ଧିଛନ୍ତି । ଅଳଙ୍କାର ଗୁଡିକ ବେକରେ ବହୁଦୂରକୁ ଝଲସୁଥାଏ । ଦେହରେ ପିନ୍ଧିଥିବା ବସ୍ତ୍ର ମଧ୍ୟ ଝଲସି ଉଠେ । ଅସମୀୟା ନାରୀ ବେଶଭୂଷା ପ୍ରତି ଅଧିକ ସତର୍କ ହୁଅନ୍ତି, ତା ସହିତ ସୁନା, ରୂପା ଓ ମୁକ୍ତା ଆଦିରେ ଅଳଙ୍କାର ଗଢ଼େଇ ବହୁ ପ୍ରାଚୀନକାଳରୁ ପିନ୍ଧିବାକୁ ଭଲ ପାଆନ୍ତି, ଏହା ବିହୁଗୀତରୁ ଜଣାଯାଇଥାଏ । ଶାଶୂ ମା ଯେତେବେଳେ ଅଳଙ୍କାର ପିନ୍ଧି ଚିକିମିକି ମୁଗା ପାଟର ମେଖଲା ଚାଦର ପିନ୍ଧି ଘର ଭିତରୁ ବାହାରକୁ ଆସିଲେ, ସେତେବେଳେ ଆକାଶରେ କାହାର ଡାକ ଶୁଣିଲେ ।

ଡିଙ୍ଗିତେ ଜିଲିକେ ସୋନକୈ ମୁକୁତା
କାପୋର ଜିଲିକେ ଗାତ ;
ଓଲାଇ ଆହୋଁତେ ମୋର ଶାହୁ ଆୟେ
ଆକାଶତ ଶୁନିଲେ ମାତ ।

ଶାଶୂ ମା ସେତେବେଳେ ସ୍ଥିର ହୋଇ ଆକାଶକୁ ଅନେଇଲେ । ଆକାଶରେ ଜୋରରେ ମେଘ ପବନ ଛୁଟି ଆସିଲା । ଏଭଳି ପବନରେ ଗଛର କଅଁଳିଆ ପତ୍ର ଗୁଡିକ ଥରି

---

ଲେରେଲା- ଶୁଖିଶୁଖି ବିବର୍ଣ୍ଣ, ସାଦର-ସ୍ନେହ, ଏରିବା-ଛାଡ଼ିବା, ଡିଙ୍ଗି-ବେକ, ଜିରିକେ-ଚକ ଚକ କରେ ।

ଉଠିଲେ । ମାଟିରେ ଥିବା ଲାହି ଶାଗ ଗଛଗୁଡିକ ମଧ ଥରି ଉଠିଲେ । ଏତିକିବେଳେ ଶାଶୁ ବୁଝିପାରିଲେ ଯେ ଆକାଶରେ ମେଘ ପବନ ଘୋଟି ଆସିଲାଣି, ବର୍ତ୍ତମାନ ସେ ଆଉ ବାହାରକୁ ଯାଇ ପାରିବେନି । ପ୍ରାକୃତିକ ବିପର୍ଯ୍ୟୟ ଯେପରି ବତାସ, ବନ୍ୟା ଆଦିରେ ଗଛଲତାଠୁ ଆରମ୍ଭ କରି ପଶୁପକ୍ଷୀ ପର୍ଯ୍ୟନ୍ତ ଏପରିକି ବେଳେବେଳେ ମଣିଷର ଜୀବନ ମଧ ବିପଦାପନ୍ନ ହୋଇଥାଏ । ଲୋକମାନଙ୍କର ଘରଦ୍ୱାର ଭାଙ୍ଗିଯାଏ । ଲୋକମାନେ ଗୃହଶୂନ୍ୟ ହୋଇ ବହୁ କଷ୍ଟପାଇ ଥାଆନ୍ତି ।

ଏ ନା ବତାହତ ଲରେ ଥୁରିପାତ
ମାଟି ସବଳର ଲାଇ ·
ବାୟୁ ବତାହ ବୁଲି ମୋର ଶାହୁ ଆୟେ
ଥୁୟ ହେ ଆଛିଲେ ଚାଇ ।

ଅସମୀୟା ସମାଜରେ ଜାତିଧର୍ମର ବିଚାର କଥା ପ୍ରବେଶ କରିଥିଲା ଏବଂ ଅସମୀୟା ସମାଜରେ ଲୋକମନ ଅତ୍ୟନ୍ତ ସରଳ ଓ ଭାବପ୍ରବଣ ଥିବାରୁ ବିହୁତଳିରେ ନୃତ୍ୟ ପରିବେଶଣ କରୁଥିବା ପ୍ରେମିକ ପ୍ରେମିକା ବିଦ୍ରୋହର ଭାବ ପ୍ରଦର୍ଶନ କରିଥିଲେ ।

ତୋମାଲୈ ଚାଓଁତେ ଜପନା ଦିଓଁତେ
ବିନ୍ଧିଲେ ଏୀ ଅଘୈୟା ହୁଲେ ;
ତୋମାରୋ ମନେ ଗ'ଲେ
ମୋରୋ ମନେ ଗ'ଲେ
କି କରିବ ଅଜାତି - କୁଲେ ।

ନାରୀ ପୁରୁଷର ମିଳନକୁ କେନ୍ଦ୍ରକରି ଯୌଥ ପ୍ରାଚୀନ ନୃତ୍ୟର ଉତ୍ସବ ଆରମ୍ଭ ହେଲା । ଯୌଥ ସଂଘର ପ୍ରାଚୀନ ନୃତ୍ୟର କ୍ରମ ବିକାଶର ଗୁଣରେ ଅସମୀୟାର ଅତିକୈ ସେନେହର ରଙ୍ଗାଲି ବିହୁ, ବହାଗୀ ନୃତ୍ୟ ବା ବୈଶାଖି ନୃତ୍ୟ ଗୀତରେ ପରିପୂର୍ଣ୍ଣ 'ବିହୁ ଉତ୍ସବ' ହେଲା । ଏହା ମୁଖ୍ୟତଃ ଯୌବନର ଉଦ୍ଦମତାରେ ପୂର୍ଣ୍ଣନୃତ୍ୟ ଓ ଗୀତ ।

୧ - 'ଲୁଉତର ବାଲି ବଗୀ ଚକେଚକୀ
କାଛଇ କନି ପାରେ ଲେଖି ;
ଗା'ତ ଜୁଇ ଜ୍ୱଲିଛେ ସରିୟହ ଫୁଟିଛେ
ଧନକ ପାନିଙ୍ଘାଟତ ଦେଖି ।
୨ - ଆଜି ରାତି ଭାଗି ଯାମ ତୋମାର ଲଗତ ଥାକି ଯାମ
ବହଲାଇ ପାରିବା ପାଟୀ ;
ଚନ୍ଦ୍ର ସୂରୁଜକ ମିନତୀ କରି ଥ୍ୱାମ
ଦେରିକୈ ପୁଆବ ରାତି ।

ମାତ-ଡାକ, ବତାହ-ବତାସ, ଲରେ-ହଲେ, ଥୁରିପାତ-କଅଁଳିଆ ପତ୍ର, ଲାହି-ଶାଗ, ହୁଲେ-କଣ୍ଟା ।

ବନଘୋଷାର ବୁକୁରେ ଅସମୀୟା ଜାତିର, ମନର ଏବଂ ପ୍ରାଣର ସ୍ପନ୍ଦନ ସ୍ପନ୍ଦିତ ହୋଇଅଛି ଏବଂ ସାହିତ୍ୟିକ ଦୃଷ୍ଟିରୁ ଏହା ଅପୂର୍ବ ।

୩- ଚକୁରେ ଟୋପନି ଚକୁତ ମାରେ ଗଲେ
ପେଟ ତ ମାରେ ଗଲେ ଭୋକ ;
ଦେହଂ ତ ମାରେ ଗଲେ ଦେହରେ ପୋରନି
ମନତ ମାରେ ଗଲେ ଶୋକ ।

୪- ଛାଁ ପାଇ ବଗଲୀ ଚରେ ସମନୀୟା
ପାନି ପାଇ ବଗଲୀ ଚରେ ;
ଯୌବନର ପୋରଣି ସହିବ ନୋଆରୋଁ
ଶୋକେ ଖୁନ୍ଦା ମାରି ଧରେ ।

ବହାଗ ବିହୁର ନିଶାରେ ଆବାଳ ବୃଦ୍ଧ ବନିତା ସମସ୍ତେ ମାତି ଥାଆନ୍ତି । ଯୁବତୀମାନେ ଢୋଲର ତାଳେ ତାଳେ ନାଚିଲାବେଳେ ଯୁବକମାନେ ଢୋଲ ବଜାଇ ବଜାଇ ପାଖକୁ ଲାଗି ଲାଗି ଆସନ୍ତି । କେହି କେହି ଯୁବକ ଯୁବତୀର ରୂପ ଓ ନାଚରେ ଆକୃଷ୍ଟ ହୋଇ ତା'ର ମନକୁ ଜିତିଥାଆନ୍ତି । ବିହୁ ପରେ ପରେ ଝିଅଟିର ମା-ବାପା ପୁଅଟି ସହିତ ଝିଅଟିକୁ ବିବାହ ଦେବାପାଇଁ ରାଜି ନ ହେଲେ ପୁଅଟି ତା'କୁ ବିଭିନ୍ନ ପ୍ରକାର ଲୋଭ ଦେଖାଇ ଭୁଲେଇ ନେଇଯାଏ । ଝିଅକୁ ନେଇ ପୁଅଟି ପଳେଇଯିବା ଘଟଣା ଝିଅଟିର ମା' ବାପପାଇଁ ଲଜ୍ଜ୍ୟାଜନକ ଘଟଣା ହୋଇଥାଏ । ସେଥିପାଇଁ ଝିଅଟି ଆଗରୁ ସତର୍କ । ଢୋଲିଆକୁ ବିହୁତଳିରେ ସେ ଖୋଲାଖୋଲି ଭାବେ କହେ-

ବିହୁ ମାରି ଥାକିବର ମନେ ଐ ଲଗରୀ
ବିହୁ ମାରି ଥାକିବର ମନ ;
ବିହୁ ମାରି ଥାକୋଁତେ ପଲୁଆଇ ନି ନି ବା
ଭରିବ ଲାଗିବ ଧନ ।

ନୃତ୍ୟ ଓ ଗୀତ ବିଜଡ଼ିତ କୃଷିଭିତ୍ତିକ ଉତ୍ସବ ବହାଗବିହୁ ପ୍ରାଚୀନ କାଳରୁ ଚାଷଜମି ଓ ଗାଁ ମୁଣ୍ଡ ପଡିଆରେ ପାଳିତ ହୋଇ ଆସୁଥିଲା । ମଣିଷର ଜୀବନଧାରଣର ପଦ୍ଧତି ଏବଂ ଦୃଷ୍ଟିଭଂଗୀର ପରିବର୍ତ୍ତନ ହେବା ସଂଗେ ସଂଗେ ଶସ୍ୟକ୍ଷେତ୍ରରେ ବିହୁ ଦ୍ୱିତୀୟବାର ମଞ୍ଚ ଉପରକୁ ଆସିଲା । ରାଜପୃଷ୍ଠପୋଷକତା ଲାଭକରି ମଞ୍ଚ ଉପରକୁ ଆସିଥିବା ରଂଗାଲି ବିହୁର ଆଚାର ଅନୁଷ୍ଠାନର ମୌଳିକ ପରିବର୍ତ୍ତନ ହେଲା । ବିହୁ ଗାଁ ଏବଂ ସହରରେ ପ୍ରଦର୍ଶନମୂଳକ ଅନୁଷ୍ଠାନ ରୂପେ ପୁନର୍ବାର ପ୍ରାଣ୍ଣ ଆଇବା ସଂଗେ ସଂଗେ ଅତୀତର କୃଷିକୈନ୍ଦ୍ରିକ ଆଚାରମୂଳକ ଏହି ଲୋକ ଉତ୍ସବଟି ଆଜିର ପରିବେଶରେ କଳାର ସ୍ଥାନ

---

ପାନ୍ନୀ-ସପ, ଟୋପନି-ନିଦ, ପୋରଣି-ଜ୍ୱଳା, ଖୁନ୍ଦା-ଧକ୍କା

ପାଇଛି ଏବଂ ବିହୁ ଉତ୍ସବର ଆଚାର ଅନୁଷ୍ଠାନଠାରୁ ବିହୁର ନୃତ୍ୟ ଗୀତ ଅଧିକ ପ୍ରାଧାନ୍ୟ ଲାଭ କରିଛି । ଏହି ପ୍ରକ୍ରିୟାରେ ଲୋକ ଉତ୍ସବ ବିହୁର ବହୁତ ଆଚାର ମୂଳକ ଉପାଦାନ ଲୋକ ପାଇବାର ଉପକ୍ରମ ଘଟିଲେ ହେଁ ଆଜିର ବିହୁ ବୃହତ୍ ଅସମୀୟା ଜାତିର ସଂପ୍ରୀତିର ଉତ୍ସବରେ ପରିଣତ ହୋଇଛି । ବିହୁ ସମନ୍ୱୟର ଉତ୍ସବ ହୋଇ ପଡିଛି । (୭)

ଇନ୍ଦ୍ରଧନୁର ସାତୋଟି ରଂଗକୁ ବିଚ୍ଛିନ୍ନ କରି ଦେଖାଇବା ଯେପରି ସମ୍ଭବ ନୁହେଁ, ସେହିପରି ବିହୁ ଉତ୍ସବର ସୃଷ୍ଟି-ସ୍ଥିତି ପରିବର୍ଦ୍ଧିତ ରୂପ ଦେଖାଇବା ସମ୍ଭବ ନୁହେଁ । ଯୁଗ ଯୁଗ ଧରି ପରଂପରାଗତ ଭାବେ ପାଳନ କରିଆସୁଥିବା ବିହୁ ଉତ୍ସବ ବିଭିନ୍ନ କଳାରେ ରଞ୍ଜିତ ହୋଇଛି ଏବଂ ଏହା ମାଧ୍ୟମରେ ଆସାମର ଲୋକସଂସ୍କୃତି ଆତ୍ମପ୍ରକାଶ କରି ଚିରନ୍ତନ ଗତିରେ ଧାବିତ ହେଉଛି । (୮)

**ସଂକେତସୂଚୀ-**

୧) ଆଜିର ବିହୁୟେ ପରଂପରା ଏରିଛେ- 'ଆଜିର ଅସମ'-
୧୩ ଏପ୍ରିଲ- ୧୯୯୭- ଲୀଳାଧର ହାଜରିକା ।

୨) ପ୍ରାଚୀନ ଅସମର ବସନ୍ତ ଉତ୍ସବ- 'ଆଜିର ଅସମ'-
୧୯୯୭- ୧୩- ଏପ୍ରିଲ- ସୂର୍ଯ୍ୟ ଦାସ ।

୩) "ପ୍ରେମ ଆରୁ ଯୌନାଚାରର ଉତ୍ସବ"- ରଂଗାଲି ବିହୁ- 'ରଂପୁର'
୧୯୯୮- ୧୯- ଏପ୍ରିଲ- ସୀମାନ୍ତ କୁମାର ଲେଖାରୁ ।

୪) ଅସମୀୟା ଲୋକ ସାହିତ୍ୟର ରୂପରେଖ- ପୃ- ୧୬୩- ଲୀଳାଗଗୈ ।

୫) 'ବିହୁ ଅସମର ସକଳୋ ଜନଗୋଷ୍ଠୀର ଆମଠୁ'- ଆଜିର ଅସମ- ୧୯୯୭-୧୩-
ଏପ୍ରିଲ, ପ୍ରଫୁଲ୍ଲ ପ୍ରାଣ ମହନ୍ତ ।

୬) 'ଅସମୀୟା ଜନସାହିତ୍ୟ'- ପୃ- ୧୭- ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ ।

୭) 'ସମନ୍ୱୟର ଉତ୍ସବ ବହାଗ ବିହୁ'- ପ୍ରାଚୀନ ଦାସ ।

୮) 'ବିହୁ- କୃଷିଭିତ୍ତିକ ଲୋକ ଉତ୍ସବ'- 'ସାଦିନ'- ଏପ୍ରିଲ୍-୧୨- ୧୯୯୬- ଭୃଗୁମଣି
କାଗୟୁଂ ।

# ସହାୟକ ରଚନା ସୂଚୀ

## ଅସମୀୟା ପୁସ୍ତକ


| | ପୁସ୍ତକର ନାମ | ଲେଖକର ନାମ | ପ୍ରକାଶକ |
|---|---|---|---|
| ୧- | ଅସମୀୟା ଲୋକ•ସାହିତ୍ୟର ରୂପରେଖା | ଡଃ ଲୀଳାଗଗୈ | ଷ୍ଟୁଡେଣ୍ଟ୍ସ ଏମ୍ପୋରିୟମ, ଡିବ୍ରୁଗଡ଼ |
| ୨- | ଅସମୀୟା ଜନ ସାହିତ୍ୟ | ଡଃ ପ୍ରଫୁଲ୍ଲଦତ୍ତ ଗୋସ୍ୱାମୀ | ବାଣୀ ପ୍ରକାଶ, ପ୍ରା:ଲି; ପାନବଜାର |
| ୩- | ଅସମର ଲୋକସାହିତ୍ୟ | ଡଃ ଶଶୀଶର୍ମା | ଷ୍ଟୁଡେଣ୍ଟ୍ସ ଷ୍ଟୋର, ଗୌହାଟୀ |
| ୪- | ଅସମର ସଂସ୍କୃତି | ଡଃ ଲୀଳାଗଗୈ | ଭାରତୀ ପ୍ରକାଶନ, ଯୋରହାଟ |
| ୫- | ଅସମର ଲୋକ ସଂସ୍କୃତି | ଡଃ ବିରଞ୍ଚି କୁମାର ବରୁଆ | ବୀଣା ଲାଇବ୍ରେରୀ, ଗୌହାଟୀ |
| ୬- | ଅସମୀୟା ଲୋକ ସଂସ୍କୃତିର ଆଭାସ | ଡଃ ନବୀନ ଚନ୍ଦ୍ର ଶର୍ମା | ବାଣୀପ୍ରକାଶ ପ୍ରାଇଭେଟ୍ ଲିମିଟେଡ୍, ଗୌହାଟୀ |
| ୭- | ବହାଗୀ | ନକୁଳ ଚନ୍ଦ୍ର ଭୂୟାଁ | ଲୟାର୍ଶ ବୁକ୍ଷ୍ଟଲ୍, ପାନବଜାର- ଗୌହାଟୀ |
| ୮- | ବିହୁଗୀତ ଆରୁ ବନଘୋଷା | ଡଃ ଲୀଳା ଗଗୈ | ଏସିୟାନ୍ ପବ୍ଲିଶିଂ କଂପାନୀ- ନିଉଦିଲ୍ଲୀ |
| ୯- | ସଂସ୍କୃତି ଆରୁ ଲୋକ ସଂସ୍କୃତି | ଡଃ ଭୃଗୁମୋହନ ଗୋସ୍ୱାମୀ | ଚନ୍ଦ୍ରପ୍ରକାଶ, ଗୁଆହାଟୀ |
| ୧୦- | ହୁଁଚରି, ମୁକଳି ବିହୁ ଆରୁ ବିହୁନାଚ | ଜୟକାନ୍ତ ଗନ୍ଧୀୟା | ବନଲତା, ଡିବ୍ରୁଗଡ଼ |

**English Books**

| | | | |
|---|---|---|---|
| 1. | Festivals of Assam | Dr. Prafulla Dutta Goswami | Anundoram Borooah Institute of language, art & culture, Ghty. |
| 2. | Folklore of Assam | Dr. Jogesh Das | National Book Trust India |

## ଅସମୀୟା ପତ୍ରିକା

| ପତ୍ରିକାର ନାମ | ବିଷୟର ନାମ | ଲେଖକର ନାମ | ପ୍ରକାଶନ-ବର୍ଷ/ତାରିଖ |
|---|---|---|---|
| ୧- ଆଜିର ବାତରି | "ସମନ୍ୱୟର ଉତ୍ସବ, ବହାଗ ବିହୁ" | ଡଃ ପ୍ରବୀନ ଚନ୍ଦ୍ର ଦାସ | ୧୯୯୭/ ଏପ୍ରିଲ୍-୧୨ |
| ୨- ସାଦିନ | "ବିହୁ ଆମାର ଜାତୀୟ ଉତ୍ସବ" | ଶରତ ଚନ୍ଦ୍ର ସିଂହ | ୧୯୯୬/ ଏପ୍ରିଲ୍-୧୨ |
| ୩- ସାଦିନ | "ବିହୁ-କୃଷିଭିତ୍ତିକ ଲୋକ ଉତ୍ସବ" | ଭୃଗୁମଣି କାଗୟୁଂ | ୧୯୯୬/ ଏପ୍ରିଲ୍-୧୨ |
| ୪- ସାଦିନ | "ବିହୁ ଅସମୀୟା ବାସୀର ଏକମାତ୍ର ଜାତୀୟ ଉତ୍ସବ" | ଯୋଗେଶ ଦାସ | ୧୯୯୬/ ଏପ୍ରିଲ୍-୧୨ |
| ୫- 'ଆଜିର ଅସମ' | ପୁରଣି ଜୀବନ, ନତୁନ ଉତ୍ସବ : ବିହୁ | ନିରଞ୍ଜନ ଦାସ | ୧୯୯୭/ ଏପ୍ରିଲ୍-୧୩ |
| ୬- 'ଆଜିର ଅସମ' | "ଆଜିର ବିହୁୟେ ପରମ୍ପରା ଏରିଛେ" | ଲୀଳାଧର ହାଜରିକା | ୧୯୯୭/ ଏପ୍ରିଲ୍-୧୩ |
| ୭- ଆଜିର ଅସମ | "କପୌଥେରେକୁ ନାହର ଜେତୁକା" | ଯତୀନ୍ଦ୍ର ମୋହନ ଶଇକୀୟା | ୧୯୯୭/ ଏପ୍ରିଲ୍-୧୩ |
| ୮- ଆଜିର ଅସମ | "ବିହୁର ପରମ୍ପରାଗତ ରୂପ ଥାକିବ ନେ" | ପ୍ରବୀନ ଚନ୍ଦ୍ର ବର୍ମନ | ୧୯୯୭/ ଏପ୍ରିଲ୍-୧୩ |
| ୯- 'ଆଜିର ବାତରି' | "ଏଇବେଲି ବିହୁତେ" | ହେମଲତା ଦତ୍ତ ହାଜରିକା | ୧୯୯୬/ ଏପ୍ରିଲ୍-୧୨ |
| ୧୦-'ଆଜିର ବାତରି' | "ବିହୁର ଉରୁକାଦିନା ସରୁ ଧନ" | ଲିଖେନ ଦତ୍ତ | ୧୯୯୬/ ଏପ୍ରିଲ୍-୧୨ |
| ୧୧-ଆଜିର ବାତରି | "ବିହୁନାଚ ଆରୁ ଲୋକବିଶ୍ୱାସ" | ମିସ୍ ଦେଇଜୀ ନୃତୀୟା | ୧୯୯୬/ ଏପ୍ରିଲ୍-୧୨ |
| ୧୨-'ସାଦିନ' (ସାପ୍ତାହିକ) | "ଅସମର ଲୋକବାଦ୍ୟ ଢୋଲ" | ଧାତୁ କୁମାର ଲେଖାରୁ | ୧୯୯୮/ ଏପ୍ରିଲ୍-୧୦ |

| | | | |
|---|---|---|---|
| ୧୩-'ସାଦିନ' | ''ଚିରିଲୁଇତଲୈ ଚାଇ'' | ଭୂପେନ ସିଂହ | ୧୯୯୮/ ଏପ୍ରିଲ୍-୧୦ |
| ୧୪-'ରଂପୁର' | ''ପ୍ରେମ ଆରୁ ଯୌନାଚାରର ଉତ୍ସବ-ରଂଗାଲି ବିହୁ'' | ସୀମାନ୍ତ କୁମାର ଲେଖାରୁ | ୧୯୯୮/ ଏପ୍ରିଲ୍-୧୯ |
| ୧୫-'ରଂପୁର' | ''ବସନ୍ତ ଋତୁର ଡେକା ଗାଭରୁର ମନ'' | ଦୀପକ କୁମାର ଗୋସ୍ୱାମୀ | ୧୯୯୮/ ଏପ୍ରିଲ୍-୧୯ |
| ୧୬-'ରଂପୁର' | ''ଗୋଆଲପରୀୟା ଲୋକସଂସ୍କୃତିକ ବସନ୍ତ କାଳୀନ ଉତ୍ସବ'' | ହିରଣ୍ୟ କୁମାର ନାଥ | ୧୯୯୮/ ଏପ୍ରିଲ୍-୧୯ |
| ୧୭-'ରଂପୁର' | ''ବସନ୍ତର ଆଗମନର କିଛୁ କଥା'' | ବସନ୍ତ କୁମାର ଶର୍ମା | ୧୯୯୮/ ଏପ୍ରିଲ୍-୧୯ |
| ୧୮-'ରଂପୁର' | ''ବସନ୍ତୋତ୍ସବ'' | ଚିତ୍ରୁ କୁମାର ଲେଖାରୁ | ୧୯୯୮/ ଏପ୍ରିଲ୍-୧୯ |
| ୧୯-'ଆଜିର ଅସମ' | ''ପ୍ରାଚୀନ ଅସମର ବସନ୍ତ ଉତ୍ସବ'' | ସୂର୍ଯ୍ୟ ଦାସ | ୧୯୯୭/ ଏପ୍ରିଲ୍-୧୩ |
| ୨୦-'ଆଜିର ଅସମ' | ''ହୁଚରୀ ଏ ହାଓ'' | ନରହରି ଚୁଟୀୟା | ୧୯୯୭/ ଏପ୍ରିଲ୍-୧୩ |
| ୨୧-'ଆଜିର ଅସମ' | ''ବିହୁ ଅସମର ସକଳୋ ଜନଗୋଷ୍ଠୀର ଆମଠୁ'' | ପ୍ରଫୁଲ୍ଲ ପ୍ରାଣ ମହନ୍ତ | ୧୯୯୭/ ଏପ୍ରିଲ୍-୧୩ |
| ୨୨-'ଆଜିର ଅସମ' | ''ସାତାମ ପୁରୁଷିୟା ବିହୁଟି ଆମାର ଆଧୁନିକା ହ'ଲ'' | ଡଃ ନଗେନ ଦତ୍ତ | ୧୯୯୭/ ଏପ୍ରିଲ୍-୧୩ |
| ୨୩-'ଆଜିର ବାତରି' | ''ଇତର ମାନୁହର ଉତ୍ସବ ବିହୁକ କେନେକୈ କରାହ'ଲ ସଂସ୍କୃତି'' | ଦେବବ୍ରତ ଶର୍ମା | ୧୯୯୬/ ଏପ୍ରିଲ୍-୧୩ |
| ୨୪-'ଆଜିର ବାତରି' | 'ଜୀୟାଇ ଥକାର ସପୋନେଇ ବିହାଗ'' | ଭବାନୀ ପ୍ରସାଦ ସୌକାଧରା | ୧୯୯୬/ ଏପ୍ରିଲ୍-୧୩ |
| ୨୫-'ଆଜିର ବାତରି' | ''ବିହୁରେ ବିରିଙ୍ଗା ପାତ'' | ଇମରାନ ଶ୍ୱାହ | ୧୯୯୬/ ଏପ୍ରିଲ୍-୧୩ |

| | | | |
|---|---|---|---|
| ୨୬-'ଆଜିର ବାତରି' | "ରଙ୍ଗାଲୀର ରଂ" | ମିହିର ଦେଉରୀ | ୧୯୯୬/ ଏପ୍ରିଲ୍-୧୩ |
| ୨୭-'ଆଜିର ବାତରି' | "ବିହୁଗୀତତ ଅସମର ପ୍ରାକୃତିକ ଚିତ୍ର" | ଜଗଦୀଶ ନାଥ | ୧୯୯୮/ ଏପ୍ରିଲ୍-୧୧ |
| ୨୮-'ଅଗ୍ରଦୂତ' (ମାସିକ) | "ଜାପାନର ସାତବିହୁ" | ବନ୍ତି ଗୋହାଇଁ ବରା | ୧୯୯୮/ ଏପ୍ରିଲ୍ |
| ୨୯-'ଅଗ୍ରଦୂତ' | "ଋତୁରାଜ ବସନ୍ତ" | ଲିଖେନ ଦତ୍ତ | ୧୯୯୮/ ଏପ୍ରିଲ୍ |
| ୩୦-'ଅଗ୍ରଦୂତ' | "ମେଜିର ଭୋଜଭାତ" | ମୀରା ଠାକୁର | ୧୯୯୮/ ଏପ୍ରିଲ୍ |
| ୩୧-'ଅବିକଳ' (ମାସିକ) | "ନେ ପାତି କେନେକୈ ଥାକୋଁ" | ରାଜେନ ଫୁକନ | ୧୯୯୮/ ଏପ୍ରିଲ୍ |
| ୩୨-'ବାର୍ତ୍ତା ପଖୁଲୀ' (ମାସିକ) | "ବିହୁଗୀତତ ଶୃଙ୍ଗାର" | ସଞ୍ଜୟ କଳିତା | ୧୯୯୮/ ଏପ୍ରିଲ୍ |





ଡଃ. ଜ୍ୟୋତ୍ସ୍ନା କୁମାରୀ ବିଶ୍ୱାଳ ରାଉତ

ଲେଖିକା ଡଃ. ଜ୍ୟୋତ୍ସ୍ନା କୁମାରୀ ବିଶ୍ୱାଳ ରାଉତ ଗୌହାଟୀ ବିଶ୍ୱବିଦ୍ୟାଳୟର ଆଧୁନିକ ଭାରତୀୟ ଭାଷା ବିଭାଗରେ ଅଧ୍ୟାପିକା ରୂପେ କାର୍ଯ୍ୟ କରୁଛନ୍ତି । ଡଃ. ରାଉତ ଓଡ଼ିଆ, ଅସମୀୟା ଏବଂ ଇଂରାଜୀ ଭାଷାରେ ବିଭିନ୍ନ ପତ୍ରପତ୍ରିକାରେ ଉଚ୍ଚକୋଟୀର ଗବେଷଣାମୂଳକ ପ୍ରବନ୍ଧ ଲେଖିଛନ୍ତି । ତାଙ୍କର ଓଡ଼ିଆ, ଅସମୀୟା ଓ ଇଂରାଜୀ ଭାଷାରେ କେତୋଟି ପୁସ୍ତକ ପ୍ରକାଶ ପାଇଛି । ଡଃ. ରାଉତ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ବିଭିନ୍ନ ଆଲୋଚନା ଚକ୍ରରେ ସ୍ୱଲିଖିତ ନିବନ୍ଧ ପାଠ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି ।